# ସମ୍ବଲପୁରର ସ୍ୱାଧୀନତା-ସଂଗ୍ରାମ

କୁମାର ହସନ୍




ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ସମ୍ବଲପୁରର ସ୍ୱାଧୀନତା-ସଂଗ୍ରାମ

| | | |
|---|---|---|
| ଲେଖକ | : | କୁମାର ହସନ୍ |
| ପ୍ରକାଶକ | : | ସମ୍ବଲପୁର ବିଶ୍ୱବିଦ୍ୟାଳୟ |
| ସ୍ୱତ୍ୱ | : | ସମ୍ବଲପୁର ବିଶ୍ୱବିଦ୍ୟାଳୟ |
| ପ୍ରଥମ ମୁଦ୍ରଣ | : | ୨୦୦୧ |
| ମୁଦ୍ରଣ | : | ଅପୂର୍ବା ଅଫ୍‌ସେଟ, ଭୁବନେଶ୍ୱର |
| ପ୍ରଚ୍ଛଦ | : | ସୁଧୀର କୁମାର ଲେଙ୍କା, ପରିକଳ୍ପନା : ଜତୀନ ବେହେରା |
| ମୂଲ୍ୟ | : | ଦୁଇଶହ ପଚାଶ ଟଙ୍କା |

## SAMBALPURARA SWADHINATA SANGRAM

(Freedom Movement in Sambalpur)

| | |
|---|---|
| by | **Kumar Hassan** |
| First Edition | **2001** |
| Publisher | **SAMBALPUR UNIVERSITY**<br>Jyoti Vihar, Burla-768 019<br>Sambalpur, Orissa, India. |
| Copyright © | **Sambalpur University** |
| Printed at | **Apurba Offset**, Bhubaneswar |
| Cover Design | **Sudhir Kumar Lenka, Concept : Jatin Behera** |
| Price | **Rs. 250/- (Two Hundred Fifty only)** |

ଇତିହାସର ଅନ୍ଧାରୀ ଗୁହା ଭିତରେ
ହଜି ଯାଇଥିବା ସେହି ହଜାର-ହଜାର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ
ଯେଉଁମାନଙ୍କ ନିଶବ୍ଦ ସ୍ୱାଧୀନତା ସାଧନା ଦ୍ୱାରା
ଦେଶରେ ମୁକ୍ତିର ସୂର୍ଯ୍ୟ ଉଇଁଥିଲା
ଯେଉଁମାନେ ନୀରବରେ ଫୁଲ ପରି ମହକ ବିଂଛି ଦେଇଗଲେ
ଆତ୍ମପ୍ରଚାର ବିରୋଧୀ ସେହି ସମିଧ, ସହିଦମାନଙ୍କୁ
ଯେଉଁମାନେ ସ୍ୱାଧୀନତାର ପୂର୍ଣ୍ଣାହୁତି ଦେଇ
ଇଚ୍ଛାକୃତ ଭାବେ ନିଜକୁ
ଯାବତୀୟ ଉତ୍ସବଧର୍ମିତାରୁ ଅପସାରିତ କରିନେଲେ
ସେହି ମୁକ୍ତିପାଗଳ ଯାଯାବରମାନଙ୍କୁ
ଏବଂ
ମୋର ସ୍ୱର୍ଗୀୟା ମା **ଜୁବେଦା ବାଈଙ୍କୁ**
ବାପା **ମୌଲାନା ମୁସ୍ତକୀମ ଖାଁ ଗୌନ୍ତିଆଙ୍କୁ**
**ଓ ସତ୍ୟଭାମାକୁ...**

-କୁମାର ହସନ୍



# ମୁଖବନ୍ଧ

ଭାରତର ସ୍ୱାଧୀନତା ସଂଗ୍ରାମ ତଥା ସେଥିରେ ଓଡ଼ିଶାର ଯୋଗଦାନ ବିଷୟରେ ଅନେକ ପୁସ୍ତକ ରଚିତ ହୋଇଛି । ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀମାନଙ୍କର ତ୍ୟାଗ ଓ ବଳିଦାନ ଇତିହାସ ପୃଷ୍ଠା ଅଳଂକୃତ କରିବା ସଙ୍ଗେ ସଙ୍ଗେ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଉଦାହରଣ ହୋଇ ରହିଛି, କିନ୍ତୁ ସ୍ଥାନୀୟ ସ୍ତରରେ ଯେଉଁ ଅଗଣିତ ସ୍ୱାଧୀନତା ସଂଗ୍ରାମୀ ଇତିହାସ ପୃଷ୍ଠାରେ ସ୍ଥାନ ପାଇନାହାନ୍ତି ତାଙ୍କ ଅବଦାନ ମଧ କମ୍ ନୁହେଁ । ତାଙ୍କୁ ଲୋକ ଲୋଚନକୁ ଆଣିବା, ସ୍ମରଣ କରିବା ଆମର କର୍ତ୍ତବ୍ୟ । କୁମାର ହସନ୍‌ଙ୍କ 'ସମ୍ବଲପୁରର ସ୍ୱାଧୀନତା-ସଂଗ୍ରାମ' ଏ ଦିଗରେ ଏକ କ୍ଷୁଦ୍ର ଅଥଚ ପ୍ରଶଂସନୀୟ ପଦକ୍ଷେପ ।

ପୁସ୍ତକର ଉପକ୍ରମଣିକା ଭାବରେ ଶ୍ରୀ ହସନ୍ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଉପରେ ଏକ ବିସ୍ତୃତ ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନତା ସଂଗ୍ରାମର ଅବ୍ୟବହିତ ପୂର୍ବରୁ ସମ୍ବଲପୁରର ପ୍ରଶାସନିକ ଓ ସାମାଜିକ ବ୍ୟବସ୍ଥା ଉପରେ ଆଲୋକପାତ କରିଛନ୍ତି । ଏହି ପୃଷ୍ଠଭୂମିରେ ସେ ୧୮୬୦ ଦଶକର 'ଆଦିବାସୀ ଜମିଦାରମାନଙ୍କର ଆନ୍ଦୋଳନ' ତଥା ସୁରେନ୍ଦ୍ର ସାଏଙ୍କର ୧୮୫୭ରୁ ୧୮୬୪ ମସିହାର ସଂଗ୍ରାମର ଅବତାରଣା କରିଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ଓଡ଼ିଶାର ଭାଷା ଆନ୍ଦୋଳନ ପରିପ୍ରେକ୍ଷୀରେ ଉତ୍କଳ ସମ୍ମିଳନୀର ଗୁରୁତ୍ୱପୂର୍ଣ୍ଣ ଅବଦାନ ଓ ସେଥିରେ ସମ୍ବଲପୁରର ଭୂମିକା ବିଷୟରେ ଆଲୋଚନା କରାଯାଇଛି । ତୃତୀୟ ପର୍ଯ୍ୟାୟ ସ୍ୱରୂପ ସମ୍ବଲପୁରରେ ଗାନ୍ଧି-ଯୁଗର ଆନ୍ଦୋଳନ ବିଷୟରେ ସବିଶେଷ ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସମ୍ବଲପୁରର ନାରୀମାନଙ୍କର ଭୂମିକା ସଂକ୍ଷେପରେ ବର୍ଣ୍ଣନା କରାଯାଇଛି । ସମ୍ବଲପୁରୀ ଲୋକ ସାହିତ୍ୟରେ ସ୍ୱାଧୀନତା ସଂ ଗ୍ରାମର ପରିପ୍ରକାଶ ଏହି ପୁସ୍ତକର ଏକ ଅନନ୍ୟ ତଥା ଅଭିନନ୍ଦନୀୟ ପ୍ରୟାସ । ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ବିସ୍ତୃତ ତାଲିକା ଏବଂ ସେମାନଙ୍କ ଶତାଧିକ ଆଲୋକ ଚିତ୍ର ହସନ୍‌ଙ୍କ ପୁସ୍ତକର ଆଉ ଏକ ବୈଶିଷ୍ଟ୍ୟ । ସ୍ୱାଧୀନତା ପରେ ଦେଶରେ ଘଟିଥିବା ନୈତିକ ସ୍ଖଳନ, ସାମାଜିକ ଓ ସାଂସ୍କୃତିକ ଅବକ୍ଷୟ, ଆଦର୍ଶହୀନ ଓ ନୀତିବିହୀନ ରାଜନୀତି ଜନିତ ବ୍ୟାପକ ଅରାଜକତା ପୁସ୍ତକର ଉପସଂହାର ଭାବରେ 'ସ୍ୱପ୍ନଭଙ୍ଗର ସ୍ୱରଲିପି' ଶୀର୍ଷକ ଅଧାୟରେ ଉପସ୍ଥାପନା କରାଯାଇଛି । ଏଥିପାଇଁ ଆଉଏକ ସ୍ୱାଧୀନତା ସଂଗ୍ରାମର ଆବଶ୍ୟକତା ରହିଛି ବୋଲି ଲେଖକ ମତ ପ୍ରକାଶ କରିଛନ୍ତି ।

ଏ ବିଷୟରେ ଗବେଷଣା ପାଇଁ ତଥା ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କରିବା ପାଇଁ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଦତ୍ତ ଆର୍ଥିକ ସାହାଯ୍ୟର ସଦୁପଯୋଗ ହୋଇଥିବା ଆନନ୍ଦର ବିଷୟ । ପୁସ୍ତକଟି ଐତିହାସିକ ଦୃଷ୍ଟିକୋଣରୁ ଉପଯୋଗୀ ଏବଂ ସାଧାରଣ ପାଠକ-ପାଠିକାମାନଙ୍କ ପାଇଁ ସୁଖପାଠ୍ୟ ଓ ଶିକ୍ଷଣୀୟ ହେବ ବୋଲି ବିଶ୍ୱାସ ।

(ଧ୍ରୁବରାଜ ନାୟକ)
କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ଜ୍ୟୋତି ବିହାର
୨୨-୬-୨୦୦୧

# ବିନମ୍ର କୃତଜ୍ଞତା

ସଂପର୍କରେ ଆସିଥିବା ବିଭିନ୍ନ ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ, ସହାୟକ ଗ୍ରନ୍ଥ ପ୍ରଣେତା, ପତ୍ର-ପତ୍ରିକା ଓ ସ୍ମରଣିକା ସଂପାଦକ, ଅନୁଷ୍ଠାନ, ବୟୋଜ୍ୟେଷ୍ଠ ସାମ୍ବାଦିକ ପ୍ରଶାନ୍ତ ଦା' (ପ୍ରଶାନ୍ତ କୁମାର ମହାନ୍ତି), ପ୍ରସନ୍ନ କୁମାର ମିଶ୍ର, ପ୍ରଭାତ କୁମାର ବେହେରା, ଗୋବିନ୍ଦ ତ୍ରିପାଠୀ, ଶ୍ରୀକର ସୂପକାର, ମେହବୃବ୍ ମାହତାବ, ପ୍ରଚ୍ଛଦ ଶିଳ୍ପୀ ଓ ଅନ୍ୟ ସମସ୍ତ ପ୍ରିୟଜନଙ୍କୁ, ଯେଉଁମାନେ ମୋତେ ଅକୁଣ୍ଠ ସହଯୋଗ କରିଛନ୍ତି । ❑❑❑

କହି ରଖୁଛି ଯେ ମୁଁ ଜଣେ ଐତିହାସିକ ନୁହେଁ, ତଥାପି ନିଜ ସଂଘର୍ଷଶୀଳ ମାଟି ଓ ମଣିଷର ଅତୀତକୁ ଜାଣିବାର ସହଜ ମୋହ ମୋତେ ଇତିହାସର ଜଣେ ଜିଜ୍ଞାସୁ ଛାତ୍ରର ଭୂମିକାରେ ଠିଆ କରାଇଛି । ଯେତେବେଳେ ବି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଦେଖିଛି ସେମାନେ ଏକ ନିରାସକ୍ତ ଯୋଗୀ, ସନ୍ୟାସୀ, ସୁଫୀ ଫକୀର ପରି ମୋ ମନ ଭିତରେ ପ୍ରତିଭାତ ହୋଇଛନ୍ତି । ଏହି ସର୍ବସ୍ୱତ୍ୟାଗୀମାନେ ଅକଥନୀୟ ଅନ୍ୟାୟ, ଅତ୍ୟାଚାର, ଦୁଃଖ ଦୁର୍ବିପାକ ସହି ଦେଶ ଓ ଦଶ ପାଇଁ ନିଜର ସବୁକିଛି ଅକାତରରେ ଦେଇଗଲେ । ହେଲେ ସେମାନଙ୍କୁ କେବଳ ମିଳିଲା ସ୍ୱାଧୀନ ଭାରତରେ ଅବଜ୍ଞା ଓ ଅପମାନ । ସେମାନଙ୍କ ସ୍ୱପ୍ନ ଓ ସାଧନା ହେଲା ସଂପୂର୍ଣ୍ଣ ଉପେକ୍ଷିତ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଅଗ୍ରଣୀ ଭୂମିକା ନେଇଥିବା ଅବିଭକ୍ତ ସମ୍ବଲପୁର ଜିଲାର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଏକତ୍ର ଦେଖିବାର ପ୍ରୟାସ ଏ ଯାଏଁ ଆଲୋକକୁ ଆସି ନ ଥିବା କଥା ବଡ଼ ବାଧକର । ଏ ନେଇ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଏକ ପ୍ରକଳ୍ପ ପ୍ରସ୍ତାବ ଦେଇଥିଲି । କୁଳପତି ଡ. ଧ୍ରୁବରାଜ ନାଏକ ମୋ ପ୍ରସ୍ତାବକୁ ଅବିଳମ୍ବେ ଆନନ୍ଦର ସହିତ ଗ୍ରହଣ କଲେ ।

ଏକ ସୀମିତ ସମୟ ଓ ସାଧନ ଭିତରେ ଏ କାମ ମୋତେ ନାନା ଅସୁବିଧା ଭିତରେ କରିବାକୁ ପଡ଼ିଛି । ଏହାକୁ ସଂପୂର୍ଣ୍ଣ ଅଧ୍ୟୟନ ନ କହି ସେଭଳି ଅଧ୍ୟୟନ ଦିଗରେ ଏକ ମୁଖଶାଳା ବୋଲି ଧରା ଯାଇପାରେ । ଏହା ବାହାରେ ବି ଆହୁରି ଅନେକ କିଛି ରହିଛି, ଯାହା ମୁଁ କରି ପାରି ନାହିଁ । କେବଳ ଜନ୍ମ ମାଟିର ସାମାନ୍ୟତମ ରଣ ପରିଶୋଧ କରିବାର ଅପପ୍ରୟାସ କରିଛି । ଜାଣେ ମାଟି କେବେ ରଣ ଦିଏନା କି ସେ ରଣକୁ କେବେ ପରିଶୋଧ ବି କରାଯାଇ ପାରେନା ।

ଏ ବହିଟିର ସମସ୍ତ ଶ୍ରେୟ ମୁଁ ସେଇମାନଙ୍କୁ ଦେଉଛି, ଯେଉଁମାନଙ୍କ ଅକୁଂଠ ସାହାଯ୍ୟ ସହଯୋଗରେ ଏ ବହିଟି ହୋଇ ପାରିଲା । ସେହିପରି ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ଡ. ନାଏକଙ୍କ ପ୍ରତି ମୋର ବିନମ୍ର କୃତଜ୍ଞତା ଜଣାଉଛି । ଡ. ଯଜ୍ଞକୁମାର ସାହୁଙ୍କୁ ମୋର ଆନ୍ତରିକ ସମ୍ମାନ ।

ଏପ୍ରିଲ ୩୦, ୨୦୦୦
ମନୀଷା ଇଣ୍ଟରନେଶନଲ,
ଭୁତାପଡ଼ା, ସମ୍ବଲପୁର-୭୬୮ ୦୦୧

- କୁମାର ହସନ୍

# ପ୍ରସ୍ତାବନା

ଓଡ଼ିଶା ଓ ଓଡ଼ିଶା ଜାତିର ସ୍ଥିତି ଓ ବିକାଶ କ୍ଷେତ୍ରରେ ସମ୍ବଲପୁରରେ ଐତିହ୍ୟ ଓ ପରଂପରାର ଦୃଢ଼ୀଭୂତ ଐକ୍ୟ, ତାହାର ସାମଗ୍ରିକ ସଚେତନତା, ଆଭିମୁଖ୍ୟ, ଯୁଗେ ଯୁଗେ କାର୍ଯ୍ୟ କରି ଆସିଛି । ଅବିଭକ୍ତ ସମ୍ବଲପୁରକୁ ଛାଡ଼ି ପୂର୍ଣ୍ଣାଙ୍ଗ ଓଡ଼ିଶାର କଥା ଯେପରି ଚିନ୍ତା କରାଯାଇ ନ ପାରେ; ସେହିପରି ଓଡ଼ିଶାକୁ ଛାଡ଼ି ସମ୍ବଲପୁରର ଚିତ୍ର ମଧ୍ୟ ଖଣ୍ଡିତ । ପଶ୍ଚିମ ଓଡ଼ିଶାର ପ୍ରାଣକେନ୍ଦ୍ର ସମ୍ବଲପୁର ଏବଂ ପଶ୍ଚିମ ଓଡ଼ିଶାର ଇତିହାସ ଓ ସାମାଜିକ ସଂସ୍କୃତିର ପର୍ଯ୍ୟାଲୋଚ଼ନା ଓଡ଼ିଶାର ଇତିହାସ ଓ ସଂସ୍କୃତିର ଅନୁସନ୍ଧାନଠାରୁ ଭିନ୍ନ ହୋଇ ନ ପାରେ । ସ୍ଥାନୀୟ ଇତିହାସ ଇତିହାସର ବୃହତ୍ତର ପ୍ରକ୍ରିୟାକୁ କେବଳ ଯେ ବୁଝିବାରେ ସାହାଯ୍ୟ କରେ ତା'ନୁହଁ, ବେଳେବେଳେ ତାର ସାମଗ୍ରିକ ଅର୍ଥକୁ ମଧ୍ୟ ବଦଳାଇ ଦିଏ ।

୧୫୯୦ରେ ଗୋଲକୁଣ୍ଡାର କୁତବ ଶାହଙ୍କ ଅଭିଯାନ କାଳରେ, ସମ୍ବଲପୁରର ସାମରିକ ଶକ୍ତି ଯଦି ସ୍ୱତଃପ୍ରବୃତ୍ତ ଭାବରେ ହସ୍ତକ୍ଷେପ କରି ନଥାନ୍ତା ତେବେ ଓଡ଼ିଶା ''ଯବନାମ୍ବୁଧି'' ଗର୍ଭରେ ନିମଜ୍ଜିତ ହୋଇଥାନ୍ତା । ସମ୍ବଲପୁରର ଚୌହାଣ ବଂଶର, ଚୌହାଣ ଶକ୍ତିର ଅଯାଚିତ ସାହାଯ୍ୟ ସହଯୋଗ ବଳରେ ଖୋର୍ଦ୍ଧାର ଭୋଇ ରାଜବଂଶ ଧ୍ୱଂସ ମୁଖରୁ ଉଦ୍ଧାର ପାଇବା ସହିତ ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ପରଂପରା ରକ୍ଷା କରିବାରେ ସକ୍ଷମ ହୋଇଥିଲା ।

ସମ୍ବଲପୁରର ସୁଦୃଢ଼ ସାମରିକ ସଂହତି ହିଁ ସେହି ମୁଖ୍ୟ କାରକଶକ୍ତି, ଯାହା ଫଳରେ ଓଡ଼ିଶାରେ ମରହଟ୍ଟା ଶାସନର ମୂଳ ଭିତ୍ତି ଶେଷ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇ ପାରି ନଥିଲା । ବୀର ସୁରେନ୍ଦ୍ର ସାଏଙ୍କ ବିପ୍ଲବ ଜାତିର ଐକ୍ୟ ପାଇଁ ଏକ ବିରାଟ ଓ ଅଭୂତପୂର୍ବ ସଫଳତା ।

ଓଡ଼ିଆ ଭାଷାର ସୁରକ୍ଷା ସହ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନ ଅଞ୍ଚଳର ମିଶ୍ରଣ ପାଇଁ ୧୮୯୫ରୁ ସମ୍ବଲପୁରରୁ ଆରମ୍ଭ ହୋଇଥିବା ଭାଷା ଆନ୍ଦୋଳନ, କେବଳ ସମ୍ବଲପୁର ନୁହେଁ, ସମଗ୍ର ଓଡ଼ିଆ ଜାତିର ମୁକ୍ତି ଆନ୍ଦୋଳନ ଭାବରେ ଐତିହାସିକ ସ୍ୱୀକୃତିର ଅଧିକାରୀ ।

୧୯୧୯ରେ ମହାତ୍ମା ଗାନ୍ଧୀ ଭାରତୀୟ ଜାତୀୟ କଂଗ୍ରେସକୁ ନୂତନ ନେତୃତ୍ୱ ଦେଲା ପରେ ମନୀଷୀ ଚନ୍ଦ୍ରଶେଖର ବେହେରା ସର୍ବଭାରତୀୟ ଜାତୀୟତାବାଦୀ ଆନ୍ଦୋଳନ ସହିତ ପ୍ରାଦେଶିକ ଅନୁଚିନ୍ତାର ମିଳନ ପାଇଁ ଦେଇଥିବା ଦୃଢ ଆହ୍ୱାନ ମହାଭାରତୀୟ ଜାତୀୟତାର

ଏକ ଗୌରବୋଜ୍ଜ୍ୱଳ ବିଭବ ଓ ବିଭାବ । ସମ୍ବଲପୁରୀ ନେତୃତ୍ୱ ସତତ ଆଞ୍ଚଳିକ ବୈଷମ୍ୟ, ବୈମନସ୍ୟ ଓ ସଙ୍କୀର୍ଣ୍ଣତାର ବହୁ ଉର୍ଦ୍ଧ୍ୱରେ ରହି ଆସିଛି ।

ଇନ୍ଦ୍ରଭୂତି, ଚୈତନ୍ୟ ଦାସ, ଚନ୍ଦ୍ରମଣି ଦାସ, ପ୍ରତାପ ରାୟ, ଭୀମା ଧୀବର, ଭୀମ ଭୋଇଙ୍କଠୁ ଆରମ୍ଭ କରି କବି ଗଙ୍ଗାଧର ମେହେରଙ୍କ ପର୍ଯ୍ୟନ୍ତ ସମ୍ବଲପୁର ଓଡ଼ିଆ ଐକ୍ୟ, ମୈତ୍ରୀ ଓ ସଂସ୍କୃତିର ବାର୍ତ୍ତାବହ ରୂପେ ସକ୍ରିୟ ଭୂମିକା ଗ୍ରହଣ କରି ଆସିଛି । ଇନ୍ଦ୍ରଭୂତି ଥିଲେ ଜଗନ୍ନାଥ  ସଂସ୍କୃତିର ପ୍ରବର୍ତ୍ତକ ଜଣେ ମହାନ ସିଦ୍ଧ । ପୁରୁଷୋତ୍ତମ ଓ ଜଗନ୍ନାଥ ସମୀକରଣ ମାଧ୍ୟମରେ ସେ ଓଡ଼ିଶାର ଧାର୍ମିକ ଚେତନାର ଏକ ମହାମଞ୍ଚ ରୂପେ ଆବିର୍ଭୂତ ହୋଇଥିଲେ । ଭୀମ ଭୋଇଙ୍କ ''ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ''ର ବିଶ୍ୱ ପ୍ରେମ, ବିଶ୍ୱ ମୈତ୍ରୀ, ବିଶ୍ୱ ଚେତନା ବସ୍ତୁତଃ ସମ୍ବଲପୁରୀ ଚେତନା, ଓଡ଼ିଆ ଚେତନା ଓ ମହାଭାରତୀୟ, 'ବସୁଧୈବ କୁଟୁମ୍ବକମ୍'ର ଆପ୍ତ ଚେତନା, ଯାହାକୁ ଆଜି ପାଶ୍ଚାତ୍ୟ ଶିକ୍ଷ ଓ ସାଇବର ସଭ୍ୟତା 'ଜଗତୀକରଣ' ବା 'ବିଶ୍ୱୀକରଣ'ର ଭିନ୍ନ ଅର୍ଥରେ ନିୟୋଜିତ କରିଛି । ସ୍ୱଭାବ କବି ଗଙ୍ଗାଧର ରୀତି ସାହିତ୍ୟ ସହ ଆଧୁନିକ କବିତାର ସମୀକରଣ ସହ ଓଡ଼ିଶାର ସୃଜନଶୀଳତା ସହ ପଶ୍ଚିମାଞ୍ଚଳର କଳାକୃତିର ଅପୂର୍ବ ମିଳନ ଘଟାଇଛନ୍ତି ।

ସମ୍ବଲପୁର ଅଞ୍ଚଳର ଜନଜୀବନରେ ଜାତୀୟତାବାଦର ଯେଉଁ ଦୁର୍ବାର ଜୁଆର ଉଠିଛି, ତାର ଏକ ସଂକ୍ଷିପ୍ତ ଆକଳନ ଶଂସିତ ଅଧ୍ୟୟନର ଏକ ଦିଗ ।

୦.

୧୮୫୭ର 'ପ୍ରଥମ ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମ'ର ଶହେ ବର୍ଷ ପୂର୍ବରୁ ପଲାସୀ ଯୁଦ୍ଧରେ ସିରାଜଉଦ୍ଦୌଲାଙ୍କ ଓ ୧୭୬୪ରେ ବ୍ରିଟିଶମାନଙ୍କ ଦ୍ୱାରା ବଙ୍ଗଳାର ନବାବ ମୀର କାଶିମ, ଅଯୋଧ୍ୟାର ନବାବ ସୁଜାଉଦ୍ଦୌଲା ଓ ଦିଲ୍ଲୀ ସମ୍ରାଟ ଶାହାଆଲମଙ୍କ ମିଳିତ ବାହିନୀର ପରାଜୟ ଏବଂ ଶାହା ଆଲମଙ୍କ ରବର୍ଟ କ୍ଲାଇବଙ୍କୁ ବଙ୍ଗ, ବିହାର, ଓଡ଼ିଶାର ଦେବାନୀ ପ୍ରଦାନ କାଳରୁ ଏ ଅଞ୍ଚଳରେ ଜାତୀୟତାବାଦୀ ପ୍ରତିକ୍ରିୟା ଅନେକ ଛୋଟ ଛୋଟ ରୂପରେ ପ୍ରକାଶ ପାଇ ଆସିଛି । ତେବେ ଏହାର କୌଣସି ରେକର୍ଡ ଏବେ ଖୋଜି ପାଇବା କାଠିକର ପାଠ । ତେବେ ସେହି ସମୟରୁ ଏ ଅଞ୍ଚଳରେ ଅସଙ୍ଗଠିତ ଭାବରେ ବ୍ରିଟିଶ୍ ବିରୋଧୀ ଚେତନାର ଅୟମାରାମ୍ଭ ହୋଇଥିଲା । ଦେଶୀ ଶାସନରେ ଅଭ୍ୟସ୍ତ ଓ ଅତିଷ୍ଠ ପ୍ରଜାବର୍ଗଙ୍କ ପାଇଁ ବିଦେଶୀ ଶାସନ ଥିଲା ବାଧ୍ୟବାଧକତାରେ ଗୃହୀତ ଏକ ଅଗ୍ରାହ୍ୟ ନଳିତା ବିଡ଼ା । ବିଦେଶୀ ଶାସନକୁ ସେମାନେ କେବେହେଲେ ପସନ୍ଦ କରି ନଥିଲେ । ତେଣୁ ଏ ଅଞ୍ଚଳରେ

ମୁକ୍ତି ସଂଗ୍ରାମର ସ୍ୱପ୍ନବୀଜ ଯେ ସେହି ସମୟରୁ ପ୍ରୋଥିତ ହୋଇଥିଲା, ଏହା ନିଃସନ୍ଦେହରେ ଗ୍ରହଣ କରାଯାଇ ପାରେ ।

ତେବେ ଏ ଚେତନାର ପ୍ରଥମ ସଂଗଠିତ ରୂପ ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ ୧୮୫୭ର ତିନି ଦଶକ ପୂର୍ବରୁ ୧୮୨୭ରେ ସଶସ୍ତ୍ର ସଂଗ୍ରାମ ମାଧ୍ୟମରେ ପ୍ରକାଶ ପାଇଥିଲା । ଏହାର ନେତୃତ୍ୱ ନେଇଥିଲେ ବିଶେଇକେଲାର ଆଦିବାସୀ ଜମିଦାର ଅବଧୂତ ସିଂହ , ଝାରସୁଗୁଡ଼ାର ଗୋବିନ୍ଦ ସିଂହ, ଲଚ୍ଛକୁରାର ବାବା ମିଟୁ କୁଅଁର, ଖିଣ୍ଡାର ବଳରାମ ସାଏ, ସୁରେନ୍ଦ୍ର ସାଏ, ଘେଁଷର ମାଧୋ ସିଂହ ପ୍ରମୁଖ । ଏମାନଙ୍କ ମଧ୍ୟରୁ ସୁରେନ୍ଦ୍ରଙ୍କ ସଂଗ୍ରାମ କାଳ ଥିଲା ସବୁଠୁ ଦୀର୍ଘ । ଏ ସମସ୍ତ ଶକ୍ତି ଏକତ୍ରିତ ହୋଇ ପରବର୍ତ୍ତୀ ସମୟରେ 'ସୁରେନ୍ଦ୍ରଶକ୍ତି' ଭାବେ ଆବିର୍ଭୂତ ହୋଇ ତାଙ୍କୁ ଜାତୀୟବୀରର ଗୌରବ ଆଣି ଦେଲା । ସମଗ୍ର ଦେଶରେ ୧୮୫୭ର 'ବିଦ୍ରୋହ'କୁ ଦମନ କରାଯିବାର ଦୀର୍ଘ ୭ ବର୍ଷ ପରେ ମଧ୍ୟ ୧୮୬୪ ମସିହା ପର୍ଯ୍ୟନ୍ତ ଏ ଅଞ୍ଚଳରେ ସୁରେନ୍ଦ୍ର ଶକ୍ତିର ବହ୍ନିଶିଖା ପ୍ରଜ୍ୱଳିତ ହୋଇ ରହିଥିଲା ।

ବ୍ରଜରାଜନଗର, ଲଚ୍ଛକୁରା ଗ୍ରାମର ବାବା ମିଟୁ କୁଅଁର ନିଷ୍ପେସିତ ତଥା ନିପୀଡ଼ିତ ବନବାସୀ ସଂପ୍ରଦାୟର ଆଶା, ଭରସା ଭାବରେ ପଦଦଳିତ ମୁକ୍ତିକାମୀ ଜନତାକୁ ଅତ୍ୟାଚାରୀ ଇଂରେଜ ଶାସନତନ୍ତ୍ର ଓ ରାଜତନ୍ତ୍ର କବଳରୁ ମୁକ୍ତ କରିବା ପାଇଁ ୧୮୪୨ରେ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ କେବଳ ଯେ ସମ୍ବଲପୁରରେ ଗୋରା ସରକାରର ମୂଳଦୁଆକୁ ଦୋହଲାଇ ଦେଇଥିଲେ ତା'ନୁହେଁ, ୧୮୪୫ର ରଣାଙ୍ଗନରେ 'ପ୍ରଥମ ସହିଦ' ହେବାର ଗୌରବ ମଧ୍ୟ ଅର୍ଜନ କରିଥିଲେ ।

ଗଡ଼ଜୋଇସିଂର କେତେ ଯେ କାନକଟା ଗଡ଼ତିଆମାନଙ୍କ ଜୀବନ, ସଂଗ୍ରାମ ଓ ତ୍ୟାଗର କାହାଣୀ ଇତିହାସର ଅନ୍ଧାରୀ ଗର୍ଭରେ ଉପେକ୍ଷିତ, ଅନାଲୋଚିତ, ଅନାବିଷ୍କୃତ ହୋଇ ରହିଛି ତାର ଇୟତ୍ତା ନାହିଁ ।

ଆଣ୍ଡାମାନର ସେଲୁଲାର ଜେଲରେ ମୃତ୍ୟୁବରଣ କରିଥିବା ଘେଁଷ ଜମିଦାର ହଟେ ସିଂହ ଥିଲେ ଏ ମାଟିର ପ୍ରଥମ ଓଡ଼ିଆ ସଂଗ୍ରାମୀ ସହିଦ । ଘେଁଷ ଜମିଦାରଙ୍କ ପରି ଗୋଟିଏ ପରିବାରର ପିତା ଓ ତିନିଗୋଟି ପୁତ୍ର ସ୍ୱାଧୀନତା ପାଇଁ ସହିଦ ହେବା ଘଟଣା ଭାରତ ଇତିହାସରେ ଅଦ୍ୱିତୀୟ ।

ସ୍ୱାଧୀନତା ପାଇଁ ୧୮୨୭ରୁ ୧୮୬୪ର ସଶସ୍ତ୍ର ସଂଗ୍ରାମ ପରି ସମ୍ବଲପୁର ଅଞ୍ଚଳରେ ୧୯୧୯ରୁ ଆରମ୍ଭ ହୋଇଥିବା ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ,

ଆଇନ ଅମାନ୍ୟ ଆନ୍ଦୋଳନ, ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନ, ବାମଣ୍ଡା, ରେଢ଼ାଖୋଲର ପ୍ରଜାମଣ୍ଡଳ ଆନ୍ଦୋଳନ ସମେତ ସ୍ୱଦେଶୀ ଆନ୍ଦୋଳନ, ଖଦୀ ଓ ଚରଖା ଆନ୍ଦୋଳନ, ହରିଜନ ସାକ୍ଷରତା, ଅସ୍ପୃଶ୍ୟତା ନିରୋଧ, ନିଶା ନିବାରଣ ଆଦି ଗାନ୍ଧିଜୀଙ୍କ ଗଠନାତ୍ମକ ସାମାଜିକ ସଂସ୍କାର କାର୍ଯ୍ୟକ୍ରମରେ ମଧ୍ୟ ଏ ଅଞ୍ଚଳର ନିରକ୍ଷର, ଆଦିବାସୀ, ହଳିଆ, ମୂଲିଆ, ଚାଷୀ, ଗାଈଚରାଳି, ଯୁବକ, ଛାତ୍ର, ଶିକ୍ଷକ, ବ୍ୟବସାୟୀ, ନାରୀ ଆଇନଜୀବୀ ଆଦି ସବୁ ଶ୍ରେଣୀର ନାଗରିକଙ୍କ ଅଗ୍ରଣୀ ଭୂମିକା ରହିଥିଲା ।

୧୮୯୫ରେ ସମ୍ବଲପୁର ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ପ୍ରମୁଖ ଭୂମିକା ନେଇ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନରେ ଅଗ୍ରଣୀ ଅବଦାନ ଦେଲା ପରେ ୧୯୨୦ରେ ଭାରତୀୟ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ସମ୍ବଲପୁରର ସଂଗ୍ରାମୀ ଚନ୍ଦ୍ରଶେଖର ବେହେରାଙ୍କ ପ୍ରସ୍ତାବ କ୍ରମେ ଉତ୍କଳ ସମ୍ମିଳନୀ କଂଗ୍ରେସର ଶାଖା ରୂପେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିଲା ।

ମହାତ୍ମା ଗାନ୍ଧୀଙ୍କ ଆହ୍ୱାନ କ୍ରମେ ୧୯୨୧ରେ ସମ୍ବଲପୁର ଜିଲା ସ୍କୁଲର ଛାତ୍ରମାନେ ଦେଶରେ ସର୍ବପ୍ରଥମେ ବିଦ୍ୟାଳୟ ବର୍ଜନ କରିଥିଲେ । ସମ୍ବଲପୁରରେ ଜାନୁୟାରୀ ୩, ୧୯୨୧ରେ ହୋଇଥିବା ହରତାଳ ଓଡ଼ିଶାର ପ୍ରଥମ ହରତାଳ ଥିଲା । ସେହି ବର୍ଷ ସ୍କୁଲତ୍ୟାଗୀ ଛାତ୍ରଙ୍କ ପାଇଁ ଚନ୍ଦ୍ରଶେଖର ବେହେରାଙ୍କ ଉଦ୍ୟମରେ ସମ୍ବଲପୁରର ଫ୍ରେଞ୍ଚର କ୍ଲବରେ ପ୍ରତିଷ୍ଠିତ ଜାତୀୟ ବିଦ୍ୟାଳୟ ଓଡ଼ିଶାର ପ୍ରଥମ ଜାତୀୟ ବିଦ୍ୟାଳୟ । ପଣ୍ଡିତ ନୀଳକଣ୍ଠ ଦାସ କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପନା ଛାଡ଼ି ଏହି ବିଦ୍ୟାଳୟରେ ଶିକ୍ଷକତା କରିବାକୁ ଚାଲି ଆସିଥିଲେ ।

ସମ୍ବଲପୁର ଦୁଇ-ଦୁଇ ଥର ମହାତ୍ମା ଗାନ୍ଧୀଙ୍କୁ ଓ ଅନ୍ୟାନ୍ୟ ଭାରତୀୟ ନେତାଙ୍କୁ ନିଜ କୋଳକୁ ଟାଣି ଆଣିଥିଲା । ୧୯୪୧ରେ ବରପାଲିର ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ ସମ୍ବଲପୁର ଆନ୍ଦୋଳନରେ ଯୋଗ ଦେବା ସହ ବିହାର ଯାଇ ସେଠାରେ ପାହାଡ଼ିଆ ସାନ୍ତାଳମାନଙ୍କୁ ସଙ୍ଗଠିତ କରି ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେଇଥିଲେ । ସମ୍ବଲପୁରର କଂଗ୍ରେସ ଆନ୍ଦୋଳନ ୧୯୪୬ରେ ବାମଣ୍ଡା, ରେଢ଼ାଖୋଲ, ସୋନପୁର ଆଦିର ପ୍ରଜାମଣ୍ଡଳ ଆନ୍ଦୋଳନକୁ ଜନ୍ମ ଦେଇଥିଲା ।

ସ୍ୱାଧୀନତା ପ୍ରାପ୍ତି ପରେ ଜାତିର ଜନକ ଗାନ୍ଧୀଙ୍କୁ ହତ୍ୟା କରାଯିବା ସହ ଏ ଦେଶରେ ତାଙ୍କ ନୀତି, ଆଦର୍ଶ ସବୁକୁ ଅପାଂକ୍ତେୟ କରି ଦିଆ ଯାଇଥିଲେ ମଧ୍ୟ, ବରଗଡ଼ର ପାଣିମୋରା ଏମିତି ଏକ ଗାଁ ଯେଉଁଠି ଗାନ୍ଧୀ, ତାଙ୍କ ନୀତି, ଆଦର୍ଶ, ଅବଧାରଣା ସହ

ଆଜି ବି ଜୀବିତ । ଯେଉଁଠି ଲୋକେ ଗାନ୍ଧୀଙ୍କ ହତ୍ୟା ହୋଇଥିବା ଶୁକ୍ରବାର ଦିନକୁ ଉପବାସ ପାଳନ କରନ୍ତି । ପ୍ରତ୍ୟହ ରାମଧୁନ, ପ୍ରଭାତଫେରି ଦେଖିବାକୁ ମିଳେ । ଲୋକେ ସକାଳୁ ଗାନ୍ଧୀଙ୍କ ସ୍ମାରକ ଦର୍ଶନ କରି ଦିନଚର୍ଯ୍ୟା ଆରମ୍ଭ କରନ୍ତି । ସ୍ୱାଧୀନତା ସଂଗ୍ରାମର ଇତିହାସରେ ସମ୍ଭବତଃ ପାଣିମୋରା ଏମିତି ଏକ ଅନନ୍ୟ ଗାଁ ଯେଉଁ ଗାଆଁର ସମସ୍ତ ପରିବାର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । ଏମାନଙ୍କ ମଧ୍ୟରେ କେହି ଉଚ୍ଚ ଶିକ୍ଷିତ ନ ଥିଲେ । ଏ ସଂଗ୍ରାମରେ ନାରୀ, କିଶୋର ବାଳକ ମଧ୍ୟ ପଛରେ ନ ଥିଲେ ।



# ସୂଚୀ

## ପରିଶିଷ୍ଟ





# ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମି

## ଆଦ୍ୟପର୍ବ :

ପଞ୍ଚଦଶ ଶତାବ୍ଦୀର ଆଦ୍ୟ କାଳରେ ପାଶ୍ଚାତ୍ୟ ପର୍ତ୍ତୁଗୀଜ, ଫରାସୀ, ଦିନାମାର ବଣିକ ଗୋଷ୍ଠୀକୁ କଳେବଳେ କୌଶଳେ ପରାଜିତ କରି ବ୍ରିଟିଶ ବଣିକ ଗୋଷ୍ଠୀର ଇଷ୍ଟ ଇଣ୍ଡିଆ କଂପାନୀ ପ୍ରଥମେ ବଣିକ ପୁଂଜି, ପରେ ଶିଳ୍ପ ପୁଂଜି ଏବଂ ପରିଶେଷରେ ଅର୍ଥ ପୁଂଜିର ଅନୁପ୍ରବେଶ ଘଟାଇ ଆକୁମାରୀ ହିମାଚଳ ଭାରତବର୍ଷକୁ ପରାଧୀନ କଲା । ଭାରତକୁ ଏକ ଉପନିବେଶରେ ପରିଣତ କଲା । ଏହି ବିଶାଳ ଭୂଖଣ୍ଡ ଲୁଣ୍ଠନ, ଦମନର ଏକ ଚାରଣଭୂଇଁରେ ପରିଣତ ହେଲା ।

ସେହି କାଳଠାରୁ ସ୍ୱତଃସ୍ଫୂର୍ତ୍ତ ରୂପଠାରୁ ସଚେତନ, କ୍ରମସଂଗଠିତ, ରାଜନୈତିକ ଲକ୍ଷ୍ୟ, ଆଦର୍ଶରେ ଅନୁପ୍ରାଣିତ ଅଗଣିତ ଆଦ୍ୟ ବିଦ୍ରୋହ, ମେଳି, ସଶସ୍ତ୍ର ପ୍ରତିରୋଧର, ପର୍ବ ପରେ ନବଜାଗରଣ ଯୁଗରେ ଜାତୀୟତାବୋଧ ମାଧ୍ୟମରେ ପରବର୍ତ୍ତୀ କାଳରେ ଯୁଗାନ୍ତକାରୀ ମୁକ୍ତି ସଂଗ୍ରାମର ବିଭିନ୍ନ ପର୍ବର ଆବିର୍ଭାବ ହେଲା ।

ସ୍ୱଦେଶୀ ଆନ୍ଦୋଳନ, ଜାଲିଓ୍ୱାନାବାଲାବାଗ ନରସଂହାର ପରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସର ଅସହଯୋଗ ଆନ୍ଦୋଳନ, ବୈପ୍ଲବିକ ସନ୍ତ୍ରାସବାଦୀ ଅଭିଯାନ, ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନ, ବ୍ରିଟିଶ ସମ୍ରାଜ୍ୟବାଦ ବିରୋଧୀ ଯୁବଛାତ୍ର ଆନ୍ଦୋଳନ, ଭାରତୀୟ ଜାତୀୟ ବାହିନୀ ମୁକ୍ତି ଉଦ୍‌ବେଳନ, ନୌବିଦ୍ରୋହ ଆଦି ଆଶାର ମହାନ ମୁକ୍ତି ସଂଗ୍ରାମର କେତୋଟି ଅବିସ୍ମରଣୀୟ ଘଟଣା ।

୧୭୫୭ର ଐତିହାସିକ ପଲାସୀ ଯୁଦ୍ଧରେ ନିଜର ସେନାପତି ମୀର ଜାଫର ଏବଂ ସୈନ୍ୟବାହିନୀକୁ ଖାଦ୍ୟଯୋଗାଣ ଦାୟିତ୍ୱରେ ଥିବା ବଣିକ ଜଗତା ଶେଠଙ୍କ ବିଶ୍ୱାସଘାତକତା ଫଳରେ ଅଠର ହଜାର ଅଶ୍ୱାରୋହୀ ସୈନ୍ୟ ସତ୍ତ୍ୱେ ସିରାଜଉଦ୍ଦୌଲାଙ୍କୁ ଲର୍ଡ କ୍ଲାଇବଙ୍କ ମାତ୍ର ୩,୮୦୦ ଗୋରା ଓ ଅନ୍ୟାନ୍ୟ ଭଡ଼ାଟିଆ ଭାରତୀୟ ସୈନ୍ୟଙ୍କ ଦ୍ୱାରା ପରାସ୍ତ ହେବାକୁ ପଡ଼ିଥିଲା ।

୧୭୬୪ରେ ବଙ୍ଗଳାର ମୀର କାଶିମ, ଅଯୋଧ୍ୟାର ନବାବ ଓ ଦିଲ୍ଲୀ ସମ୍ରାଟଙ୍କ ମିଳିତ ସମାରିକ ବାହିନୀ ବିଟ୍ରିଶ ବାହିନୀ ଦ୍ୱାରା ପରାଜିତ ହୋଇଥିଲେ । ଏହା ଫଳରେ ସମ୍ରାଟ ଶାହ ଆଲମ ଲର୍ଡ କ୍ଲାଇବଙ୍କୁ ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ ଦାୟିତ୍ୱ ଟେକି ଦେବାକୁ ବାଧ୍ୟ ହୋଇଥିଲେ ।

ରବର୍ଟ କ୍ଲାଇବ୍ ଦେବାନୀ ହାସଲ କରିବା ପରେ ମାନ୍ଦ୍ରାଜ ଓ ଅନ୍ୟାନ୍ୟ ବ୍ରିଟିଶ୍ ଛାଉଣିରୁ କର୍ଣ୍ଣଲ ହରକଟ୍, କର୍ଣ୍ଣଲ ଫର୍ଗୁସନ୍, କେପଟେନ୍ ମାର୍ଟନ୍‌ବି, କର୍ଣ୍ଣଲ ଫେକସଙ୍କ ନେତୃତ୍ୱରେ ଗୋରା ଓ ଭାରତୀୟ ସିପାହୀମାନେ କଟକ, କୁଜଙ୍ଗ, ହରିଶପୁର, ସମ୍ବଲପୁର ଆଦି ଦଖଲ କରିଗଲେ ।

ଭୋଁସଲା ରଘୁନାଥ ରାଓ ଦେଓଗାଁ ଓ ପୁନା ଚୁକ୍ତିରେ ଓଡ଼ିଶା ଶାସନକୁ ବ୍ରିଟିଶ କଂପାନୀ ହାତରେ ସମର୍ପଣ କଲେ । ଅକ୍ଟୋବର ୧୦, ୧୮୦୩ରେ ବାରବାଟୀ ଦୁର୍ଗ ବ୍ରିଟିଶ ଦଖଲକୁ ଆସିଗଲା ।

ନାଗପୁରର ମରହଟ୍ଟା ଭୋଁସଲାଙ୍କ ବର୍ଗୀ ଶାସନରେ ଆତଙ୍କିତ ଓଡ଼ିଶାର ପ୍ରଜାମାନେ ନିଃସ୍ୱ, ଟଳିଟଳାନ୍ତ ହୋଇଥିଲେ ହେଁ, ବିଦେଶୀ ବଣିକ ଗୋଷ୍ଠୀଙ୍କ ବିରୋଧରେ ସ୍ୱତଃସ୍ଫୂର୍ତ୍ତ ସଂଗ୍ରାମ ଭୂଇଁରେ ଅବତୀର୍ଣ୍ଣ ହେଲେ । ସେହି କାଳରୁ ପ୍ରତିରୋଧ ଯଜ୍ଞର ଅୟମାରମ୍ଭ ହୋଇଥିଲା ।

ସ୍ୱାଧୀନତା ଯେ କୌଣସି ମନୁଷ୍ୟ ପରି, ଯେ କୌଣସି ଜାତିର ମଧ୍ୟ ଜନ୍ମସିଦ୍ଧ ଅଧିକାର । ଏହି ଅଧିକାର ହାସଲ କରିବା ପାଇଁ ମଣିଷକୁ ଆତ୍ମ ବଳିଦାନ ଦେବାକୁ ପଡ଼େ । ବୀର ଓଡ଼ିଆ ଜାତିର ଇତିହାସ ସ୍ୱାଧୀନତା ପାଇଁ ଅଗଣିତ ସଂଗ୍ରାମ, ସଂଘର୍ଷ, ଅଗଣିତ ସହିଦଙ୍କ ରକ୍ତାକ୍ଷରରେ ଲିପିବଦ୍ଧ ଓ ଗୌରାବୋଜ୍ଜ୍ୱଳ । ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଇତିହାସକୁ ଫାଶୀ, ଗୁଳି ଓ ଦ୍ୱୀପାନ୍ତରର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ସମ୍ବଲପୁର ମଧ୍ୟ ଏହାର ବ୍ୟତିକ୍ରମ ନୁହେଁ । ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଇତିହାସ ପୃଷ୍ଠଭୂମିରେ ସମ୍ବଲପୁରର ସ୍ୱଧୀନତା ସଂଗ୍ରାମର ଦୃଶ୍ୟପଟ ବେଶୀ ଆନୁଷଙ୍ଗିକ ।

ଓଡ଼ିଶାର ଏହି ରୋମାଞ୍ଚକ ଓ ରକ୍ତରଂଜିତ ଇତିହାସ ପୃଷ୍ଠାରେ ସହିଦ ଜୟୀ ରାଜଗୁରୁଙ୍କ ଠାରୁ ଲକ୍ଷ୍ମଣ ନାୟକ ପର୍ଯ୍ୟନ୍ତ ହସିହସି ଫାଶୀ ଖୁଣ୍ଟରେ ଝୁଲିଥିବା ବ୍ୟତୀତ ବହୁ ଓଡ଼ିଆବୀର ପୁଲିସ, ମିଲଟାରୀ, ରାଜବାହିନୀର ଗୁଳି ଚୋଟରେ ସ୍ୱାଧୀନତାର ଆଲେଖ୍ୟ ବାଢ଼ିଥିଲା ବେଳେ କେତେ ଯେ କୃତ୍ତିବାସ ପାଟଶାଣୀ, ହଟ୍ଟେସିଂହ, ଲୋକନାଥ ବଳମାନେ ସାଗରପାରି ମାଲକା, ଏଡେନ୍ ବା ଆଣ୍ଡାମାନର ସେଲୁଲାର କାଳ କୋଠରି ଭିତରେ ନିଜକୁ ମାତୃଭୂମିର ମୁକ୍ତିଯଜ୍ଞରେ ସମିଧ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ କେତେଙ୍କୁ

ଆମେ ଜାଣୁ ଆହୁରି ଅଧିକା ଆମ ଅଗୋଚରରେ ବିସ୍ମୃତିର ଅନ୍ଧାରୀ ଗର୍ଭରେ ଲୀନ ହୋଇଗଲେ ସେମାନଙ୍କ ହିସାବ ନାହିଁ ଆମ ପାଖରେ ।

ଖୋର୍ଦ୍ଧା ବିଦ୍ରୋହ, ପାଇକ ବିଦ୍ରୋହ, ବାଣପୁର ବିଦ୍ରୋହ, ବୀର ସୁରେନ୍ଦ୍ର ସାଏଙ୍କ ଉଲଗୁଲାନ, ଗାଙ୍ଗପୁରର ଅଦିବାସୀ ବିଦ୍ରୋହ, କେଉଁଝରର ରତନା ମେଳି, ଧରଣୀଧର ମେଳି, ପାରଳାର ବିଶୋଇ ବିଦ୍ରୋହ, ଘୁମୁସର ବିଦ୍ରୋହ, କଳାହାଣ୍ଡିର କନ୍ଧ ବିଦ୍ରୋହ, ଅନୁଗୁଳ ବିଦ୍ରୋହ, ବାଲେଶ୍ୱର ଯୁଦ୍ଧ, ପ୍ରଜା ମେଳି, କନ୍ଧ ମେଳି, ଦଶପଲ୍ଲା, ମୟୂରଭଞ୍ଜ, ଢେଙ୍କାନାଳ, ନୀଳଗିରି, ତାଳଚେର ପ୍ରଜା ଆନ୍ଦୋଳନ, କନିକା ପ୍ରଜା ଆନ୍ଦୋଳନ, ରଣପୁର ଠାରୁ ଏ ପରଂପରା ଭାରତଛାଡ଼ ଆନ୍ଦୋଳନ ଦେଇ ଭାରତର ମୁକ୍ତି ଦିବସ ଯାଏଁ ଲମ୍ବି ଆସିଛି ।

ସେହିପରି ଭଣ୍ଡାରୀ ପୋଖରୀ, ଲୁଣିଆ, ଡୁଡ଼ିଗଡ଼ିଆ, ଇରମ୍, କାଇପଦା, କଳାମାଟିଆ, ନିମାପଡ଼ା, ନୟାଗଡ଼, ନୂଆଗାଁ, ପାପଡ଼ାହାଣ୍ଡି, ମାଟିଲି, ଆମ୍‌କୋ-ସିମ୍‌କୋ ଗୁଳିକାଣ୍ଡ, ସୋନପୁର ପ୍ରଜାମଣ୍ଡଳ ଆନ୍ଦୋଳନ ଆଦି ଭାରତର ମୁକ୍ତି ସଂଗ୍ରାମର ଏକ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ।

## ଖୋର୍ଦ୍ଧା ବିଦ୍ରୋହ

୧୮୦୩ ମସିହାରେ ରାଜା ମୁକୁନ୍ଦ ଦେବ ଦ୍ୱିତୀୟ (୧୭୯୫-୧୮୧୭) ମରାଠାମାନଙ୍କ ଦ୍ୱାରା ଅପହରଣ କରାଯାଇଥିବା ତାଙ୍କ ଖୋର୍ଦ୍ଧା ରାଜ୍ୟର ମୋଗଲବନ୍ଦୀ ଅଞ୍ଚଳ ଫେରି ପାଇବାର ପ୍ରତିଶ୍ରୁତି ଏବଂ ଏକ ଲକ୍ଷ ଟଙ୍କାର ଉତ୍କୋଚ୍ ଗ୍ରହଣ କରି ବ୍ରିଟିଶ୍ ସେନାପତି ହାରକୋଟଙ୍କୁ ନିଜ ରାଜ୍ୟ ମଧ୍ୟ ଦେଇ ପୁରୀ ଅଭିଯାନ କରିବାର ଅନୁମତି ଦେଇଥିଲେ । ତାଙ୍କ ମନ୍ତ୍ରୀ ବେବର୍ତ୍ତା ଜୟୀ ରାଜଗୁରୁ ଏ ଭଳି ଆତ୍ମଘାତୀ ନୀତିର ତୀବ୍ର ବିରୋଧ କରି ଏଥିରୁ ଓହରି ଯିବାକୁ ମୁକୁନ୍ଦ ଦେବଙ୍କୁ ପରାମର୍ଶ ଦେଇଥିଲେ । ହେଲେ ମୁକୁନ୍ଦ ଦେବ ତାଙ୍କ କଥା ରକ୍ଷା କଲେ ନାହିଁ ।

ଜୟୀ ରାଜଗୁରୁଙ୍କ ଆଶଙ୍କା ସତ୍ୟରେ ପରିଣତ ହେଲା । ପୁରୀ ଦଖଲ କଲା ପରେ ଇଷ୍ଟ ଇଣ୍ଡିଆ କଂପାନୀ ମୁକୁନ୍ଦଦେବଙ୍କୁ ଆଦୌ ସାହାଯ୍ୟ କଲେ ନାହିଁ । ଏହାର ପ୍ରତିବାଦ ଜଣାଇବାକୁ ମୁକୁନ୍ଦ ଦେବ ୨୦୦୦ ସୈନ୍ୟ ସାମନ୍ତ ଧରି ମାର୍ଚ୍ଚ ୧୮୦୪ରେ ତତ୍‌କାଳୀନ ଇଂରେଜ କମିଶନର ହାରକୋଟଙ୍କୁ ଦେଖା କରିବାକୁ କଟକ ଯାତ୍ରା କଲେ ।

ହେଲେ ହାରକୋଟ୍ ମୁକୁନ୍ଦ ଦେବଙ୍କୁ ତାଖଣ୍ଡେ ଭୂମି ମଧ୍ୟ ନ ଦେବାକୁ ରୋକ୍‌ଠୋକ୍ ମନା କରିଦେଲେ । ମୁକୁନ୍ଦ ଦେବ ନିଜେ ବ୍ରିଟିଶ୍ ଅଧୀନରେ ରହିଥିବା ତାଙ୍କ ମୋଗଲବନ୍ଦୀ ଅଞ୍ଚଳ ଓ ପୁରୀ ଶ୍ରୀମନ୍ଦିରର ଦାୟିତ୍ୱ ନିଜ ହାତକୁ ଆଣିବାକୁ ଚେଷ୍ଟା କରି ବିଫଳ ହେଲେ ।

ଅପର ପକ୍ଷରେ ପୁରୀ ଦଖଲ ପରେ ଇଷ୍ଟ ଇଣ୍ଡିଆ କଂପାନୀ ସ୍ଥାୟୀ ବନ୍ଦୋବସ୍ତ ମାଧ୍ୟମରେ ମୁକୁନ୍ଦ ଦେବଙ୍କୁ ଜଣେ ସାଧାରଣ ଜମିଦାରରେ ପରିଣତ କରିବାକୁ ଚାହିଁଲେ । ଏଥିରେ ଉତ୍‌କ୍ଷିପ୍ତ ହୋଇ ମୁକୁନ୍ଦ ଦେବ କେନ୍ଦ୍ର ଓଡ଼ିଶାର କୁଜଙ୍ଗ ଓ କନିକାର ସାମନ୍ତ ରାଜାମାନଙ୍କ ସହଯୋଗରେ ଅକ୍ଟୋବର ୧୮୦୪ରେ ବ୍ରିଟିଶ ପ୍ରଶାସନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଦେଲେ ।

ଏହି ରକ୍ତାକ୍ତ ଯୁଦ୍ଧରେ ବରୁଣେଇ ଦୁର୍ଗ ଯେ କେବଳ ଧ୍ୱସ୍ତବିଧ୍ୱସ୍ତ ହେଲା ତାହା ନୁହେଁ ମୁକୁନ୍ଦ ଦେବ ପରାଜିତ ହେଲେ । ତାଙ୍କୁ ପ୍ରଥମେ କଟକ ଜେଲରେ ବନ୍ଦୀ ରଖାଯାଇ ପରେ ମେଦିନୀପୁର କାରାଗାରକୁ ପଠାଇ ଦିଆଗଲା ।

ବିଦ୍ରୋହୀ ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ବନ୍ଦୀ କରି ମେଦିନୀପୁରର ବାଘତୋଟାଠାରେ ଗୋଟିଏ ବରଗଛର ଦୁଇଟି ଡାଳରେ ଦୁଇ ଗୋଡ଼ ବାନ୍ଧି ତାଙ୍କୁ ଦୁଇଖଣ୍ଡ କରି ହତ୍ୟା କରାଗଲା । ଖୋର୍ଦ୍ଧା ରାଜ୍ୟ ବ୍ରିଟିଶ ଶାସନାଧୀନ ହେଲା । ଜୟୀ ରାଜଗୁରୁ ବ୍ରିଟିଶ ବିରୋଧରେ ଓଡ଼ିଶାର ପ୍ରଥମ ସହିଦ ହେଲା ବେଳକୁ ଓଡ଼ିଶାର ଶେଷ ସ୍ୱାଧୀନ ରାଜ୍ୟ ଖୋର୍ଦ୍ଧା ବ୍ରିଟିଶ ସାମ୍ରାଜ୍ୟରେ ମିଶିଗଲା ।

ବ୍ରିଟିଶ କଂପାନୀ ସରକାର ଘନ ଘନ ଅସ୍ଥାୟୀ ବନ୍ଦୋବସ୍ତ ମାଧ୍ୟମରେ ଜମିର ମାଲିକାନା ସ୍ୱତ୍ୱ ପରିବର୍ତ୍ତନ କରିବାକୁ ଲାଗିଲେ । ଜମି ଉପରେ ଚାଷୀର ସ୍ଥାୟୀ ସତ୍ୱାଧିକାର ରଖାଗଲା ନାହିଁ । ବନ୍ୟା, ମରୁଡ଼ି, ଦୁର୍ଭିକ୍ଷ, ଫସଲହାନି କଥା ବିଚାରକୁ ନ ନେଇ ବାରମ୍ବାର ରାଜସ୍ୱ ବୃଦ୍ଧି କରାଗଲା । ବିଭିନ୍ନ ଜମିଦାରମାନେ ଖଜଣା ଦେଇ ନ ପାରି ଜମିଦାରୀମାନ ନାମକୁ ମାତ୍ର ମୂଲ୍ୟରେ ବିକିବାକୁ ବାଧ୍ୟ ହେଲେ ।

ଇଂରେଜଙ୍କ ଓଡ଼ିଶା ଦଖଲର ପନ୍ଦର ବର୍ଷ ମଧ୍ୟରେ 'ସୂର୍ଯ୍ୟାସ୍ତ ଆଇନ' ବଳରେ ଓଡ଼ିଆର ଦୁଇ ତୃତୀୟାଂଶ ମୌରୁସୀ ଜମିଦାରୀ ନିଲାମ ହୋଇ ଅନ୍ୟ ହାତକୁ ଚାଲି ଯାଇଥିଲା । ପାଞ୍ଚ ହଜାର ଟଙ୍କାରୁ ଊର୍ଦ୍ଧ୍ୱ ଜମାର ଜମିଦାରୀ କଲିକତାରେ ନିଲାମ କରାଯାଇଥିଲା ।

ସେତେବେଳେ କଲିକତାକୁ ଯାତାୟାତ ସୁବିଧା ନ ଥିବାରୁ ବହୁମୂଲ୍ୟ ଜମିଦାରୀମାନ ନାମକୁ ମାତ୍ର ମୂଲ୍ୟରେ ନିଲାମ କରି ଦିଆ ଯାଉଥିଲା । ଅଧିକାଂଶ ବଙ୍ଗାଳୀ ଅମଲା, ସାଧାରଣ ଲୋକ, କିଛି ମୁସଲିମ ଓ ଉତ୍ତର ଭାରତୀୟ ରାତାରାତି ଓଡ଼ିଶାର ଜମିଦାରରେ ପରିଣତ ହୋଇଥିଲେ ।

ଏହି ନିଲାମଗୁଡ଼ିକର ସମ୍ବାଦ ବିଳମ୍ବରେ ପକାଶ ପାଉଥିବାରୁ କଲିକତା ଯାଇ ନିଲାମ ଧରିବା ଓଡ଼ିଆମାନଙ୍କ ପକ୍ଷରେ ସମ୍ଭବ ନଥିଲା । ୧୮୦୭ ମସିହାରେ ୨୬୬ଟି ଜମିଦାରୀ ଏମିତି ଭାବରେ ବିକ୍ରୟ ହୋଇଗଲା ବେଳେ ୧୮୧୬ରୁ ୧୮୧୭ ମଧ୍ୟରେ ୧୦୧୧ଟି ଇଷ୍ଟେଟ୍ ବଂଗାଳୀମାନଙ୍କ ହାତକୁ ଚାଲି ଯାଇଥିଲା । ଓଡ଼ିଶାରେ ବଂଗାଳୀ ଜମିଦାରମାନଙ୍କ ସଂଖ୍ୟା ଓ ପ୍ରଭାବ ବୃଦ୍ଧି ପାଇବାକୁ ଲାଗିଲା ।

ଅନେକ ବଂଗାଳୀ ଜମିଦାର ଓଡ଼ିଶାକୁ ନ ଆସି ନିଜ ନିଜ ଏଜେଣ୍ଟ ଜରିଆରେ ଜମିଦାରୀ ପରିଚାଳନା କରୁଥିଲେ । ଏହା 'ଅନୁପସ୍ଥିତ ଜମିଦାରୀ ପଦ୍ଧତି' ନାମରେ ପରିଚିତ । ଏହା ଫଳରେ ଓଡ଼ିଶାର ବହୁପରିମାଣର ଶସ୍ୟ ବଙ୍ଗକୁ ଚାଲିଯାଇ ଓଡ଼ିଶାରେ ଅଭାବ, ଅନଟନ ସୃଷ୍ଟି କଲା । ରାଜକୀୟ ସେବାରୁ ଓଡ଼ିଆମାନଙ୍କୁ ବଞ୍ଚିତ କରାଗଲା ।

ଅବିଭକ୍ତ କଟକ ଓ ବାଲେଶ୍ୱର ଜିଲାରେ ଅଧିକାଂଶ ଖଣ୍ଡାୟତ ଜମିଦାର ଜମିଦାରୀ ହରାଇ ନିଃସ୍ୱ ହେଲେ । ସେମାନଙ୍କ ମଧ୍ୟରେ ଖଣ୍ଡାୟତ, ଚଉପାଢ଼ୀ ଓ ଟପାର ସାମନ୍ତମାନେ ମଧ୍ୟ ରହିଥିଲେ । ସେମାନେ ବହୁ କାଳରୁ ଏକ ଏକ ବିସ୍ତୃତ ଅଞ୍ଚଳର ଶାସନ ଦାୟିତ୍ୱରେ ଥାଇ ରାଜକୀୟ ସୁବିଧା ସୁଯୋଗ ଉପଭୋଗ କରୁଥିଲେ । ସେମାନେ କଂପାନୀ ବିରୁଦ୍ଧରେ ଅଶାନ୍ତିରେ କୁହୁଳିବାକୁ ଲାଗିଲେ । ୧୮୫୭ରେ ଦେଶରୁ କଂପାନୀ ଶାସନର ଲୋପ ଘଟିଲା ବୋଲି ସେମାନେ ବିଦ୍ରୋହ ଆରମ୍ଭ କରିଥିଲେ ।

କର୍ଣ୍ଣୱାଲିସ ପଦ୍ଧତି ଗ୍ରହଣ କରି ବ୍ରିଟିଶ ସରକାର ଏତେବେଳକୁ ଓଡ଼ିଶାରେ ପୁଲିସ ଥାନା ପ୍ରତିଷ୍ଠା କଲେ । ନ୍ୟାୟ, ବିଚାର ପାଇଁ ଜଜ୍, ମାଜିଷ୍ଟ୍ରେଟ୍ ନିଯୁକ୍ତି କରାଗଲା ।

ଲୁଣ ଉପରେ ବ୍ରିଟିଶମାନଙ୍କର ଏକାଧିକାର ଜନସାଧାରଣଙ୍କ ଅର୍ଥନୈତିକ ଜୀବନକୁ ବିପନ୍ନ କଲା । ଲୁଣ ପ୍ରସ୍ତୁତକାରୀ ୨୬ ହଜାର ମାଲଙ୍ଗୀ ଜୀବିକାଶୂନ୍ୟ ହେଲେ । ଜମିଦାରମାନଙ୍କ ଲୁଣା ଜମି ଲୁଣ ବିଭାଗ ହାତକୁ ଚାଲିଗଲା । ଦେଶୀ ଲୁଣର ମୂଲ୍ୟ ବୃଦ୍ଧି ପାଇଲା । ୧୮୬୦ରେ ଶସ୍ତା ଲିଭରପୁଲ ଲୁଣ ଓଡ଼ିଶାରେ ବିକ୍ରୟ କରାଗଲା ।

ମରାଠା ସମୟରେ କଉଡ଼ି ପରିବର୍ତ୍ତେ ସରକାର କଳଦାର ରୁପା ଟଙ୍କାରେ ରାଜସ୍ୱ ଦେବାକୁ ଲୋକଙ୍କୁ ବାଧ୍ୟ କଲେ । ଦ୍ରବ୍ୟ-ବିନିମୟ ପ୍ରଣାଳୀ ଓ କଉଡ଼ିରେ ଅଭ୍ୟସ୍ତ ଲୋକଙ୍କ ଅର୍ଥନୈତିକ ଜୀବନ ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଲା । ଦରଦାମ ବୃଦ୍ଧି ଘଟିବା ସହ ଲୋକଙ୍କ ମନରେ ବ୍ରିଟିଶ ଶାସନ ପ୍ରତି ତୀବ୍ର ରୋଷ, କ୍ଷୋଭ ଓ ବିତୃଷ୍ଣା ବୃଦ୍ଧି ପାଇବାକୁ ଲାଗିଲା ।

# ପାଇକ ବିଦ୍ରୋହ

ଖୋଦ୍ଧା ବିଦ୍ରୋହ ପରେ କଂପାନୀ ସରକାର ଗ୍ରହଣ କରିଥିବା ନୂତନ ନୀତି ଫଳରେ ବଂଶାନୁକ୍ରମରେ ରାଜାଙ୍କ ସେନାବାହିନୀରେ କାମକରି ଆସୁଥିବା ହଜାର-ହଜାର ପାଇକମାନେ କାର୍ଯ୍ୟଚ୍ୟୁତ ହେଲେ ।

ମେଜର ଫ୍ଲେଚ୍‌ରଙ୍କ ନିର୍ଦ୍ଦେଶରେ କରାଯାଇଥିବା ବନ୍ଦୋବସ୍ତରେ ପାଇକମାନେ ବିନା ଖଜଣାରେ ଭୋଗ ଦଖଲ କରି ଆସୁଥିବା ଜମିଦାରି ଉଚ୍ଛେଦ କରି ନିଆଗଲା । ରାତାରାତି ପାଇକମାନେ ମଜୁରିଆରେ ପରିଣତ ହେଲେ ।

ଘନଘନ ବନ୍ଦୋବସ୍ତ ଫଳରେ ଖୋର୍ଦ୍ଧାର ଭୂ-ରାଜସ୍ୱ ମଧ୍ୟ ବୃଦ୍ଧି ପାଇଲା । ବର୍ଦ୍ଧିତ ଖଜଣା ପଇଠ କରିବାକୁ ପ୍ରଜାମାନେ ସରବରାକାର ଓ ପୋଲିସ ଦ୍ୱାରା ଅତ୍ୟାଚାରିତ ହେଲେ । ବହୁ ପାଇକ ଓ ଚାଷୀ ନିଜ ଭିଟାମାଟି ଛାଡ଼ି ନିକଟବର୍ତ୍ତୀ ଗଡ଼ଜାତମାନଙ୍କୁ ଚାଲିଗଲେ ।

୧୮୧୭ ମସିହା ବେଳକୁ ଖୋର୍ଦ୍ଧାରେ ପାଇକ ଓ ରୟତ ଚାଷୀମାନଙ୍କ ସାଧାରଣ ଅର୍ଥନୀତି ବିପନ୍ନ ହୋଇ ସାରିଥିଲା । ସେମାନେ ସର୍ବସ୍ୱାନ୍ତ ହୋଇ ପଡ଼ିଥିଲେ । ମୁକୁନ୍ଦ ଦେବଙ୍କ ସେନାପତି ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ମଧ୍ୟ ୧୮୦୪ରେ ତାଙ୍କର ସମସ୍ତ ନିଷ୍କ ର ଜମି, ପୁରୁଷାନୁକ୍ରମରେ ଭୋଗ କରି ଆସୁଥିବା ରୋଡ଼ଙ୍ଗ ଜମିଦାରୀ ଅମଲାମାନଙ୍କ ଷଡ଼ଯନ୍ତ୍ରରେ ହରାଇ ସାମାଜିକ ଓ ଅର୍ଥନୈତିକ ଭାବରେ ବିପନ୍ନ ହୋଇ ସାରିଥିଲେ ।

୧୮୦୫-୬ରୁ ସେ ଇଂରେଜମାନଙ୍କ ତିନିବର୍ଷୀୟ ବନ୍ଦୋବସ୍ତର ଧାର୍ଯ୍ୟ ଅନୁସାରେ ସେ ନିୟମିତ ଖଜଣା ପଇଠ କରି ଆସୁଥିଲେ ମଧ୍ୟ ଅମଲାମାନେ ଏହି ଟଙ୍କା ଆତ୍ମସାତ କରି ଯାଇଥିଲେ । ଖଜଣା ଦେଉନଥିବା ଆଳରେ ତାଙ୍କ ଜମିଦାରୀ ବିକ୍ରୟ କରି ଦିଆ ଯାଇଥିଲା । ଅପରପକ୍ଷେ ଏ ଜମିଦାରୀ ଦଖଲ କଲାବେଳେ ଜଗବନ୍ଧୁ ଭୟଙ୍କର ପ୍ରତିବାଦ କରି ମଧ୍ୟ ଯଥାଯଥ ନ୍ୟାୟ ପାଇ ପାରିଲେ ନାହିଁ । ସେ ଖୋର୍ଦ୍ଧାରୁ ବ୍ରିଟିଶ ଶାସନ ହଟାଇବାକୁ ବଦ୍ଧ ପରିକର ହୋଇ ମୁକୁନ୍ଦ ଦେବଙ୍କୁ ଏ ବିଦ୍ରୋହର ନେତୃତ୍ୱ ନେବାକୁ ପୁରୀ ଯାଇ ଅନୁରୋଧ କଲେ । କିନ୍ତୁ ରାଜା ଇଂରେଜମାନଙ୍କ ଭୟରେ ଅନୁରୋଧ ରକ୍ଷା କଲେ ନାହିଁ ।

ମାର୍ଚ୍ଚ ୧୮୧୭ର ଶେଷ ସପ୍ତାହରେ ଘୁମୁସରରୁ ୪୦୦କନ୍ଧ ଚୌହାର ଆସି ଖୋର୍ଦ୍ଧାରେ ପହଞ୍ଚିଲେ । ବିଦ୍ରୋହୀ ଦଳ ବେହେରା ଓ କାର୍ଯ୍ୟଚ୍ୟୁତ ପାଇକମାନେ ବକ୍‌ସିଙ୍କ

ସହ ଯୋଗ ଦେଲେ । ସେମାନେ ବାଣପୁରର ଥାନା, ସରକାରୀ କାର୍ଯ୍ୟାଳୟ ଦଖଲ କରି ଖଜଣା ଖାନା ଲୁଟ୍ କଲେ । ସେମାନଙ୍କ ଖୋର୍ଦ୍ଧା ଅଭିଯାନ ସମୟରେ ଶହଶହ ପାଇକ ସେମାନଙ୍କ ସହ ଯୋଗ ଦେଲେ । ଖୋର୍ଦ୍ଧାର ସରକାରୀ କାର୍ଯ୍ୟାଳୟମାନ ପୋଡ଼ି ଦିଆଗଲା । ଖଜଣା ଲୁଟ୍ କରାଗଲା ।

କେତେକ ବିଦ୍ରୋହୀ ପାଇକ ବିଦ୍ରୋହପ୍ରତି ବିଶ୍ୱାସଘାତକତା କରିଥିବା ରାଥ୍‌ପୁର ସରବରାକାର ଚ଼ରଣ ପଟ୍ଟନାୟକଙ୍କୁ ହତ୍ୟା କଲେ ।

ଏପ୍ରିଲ ୧୨, ୧୮୧୭ରେ ବହୁ ସଂଖ୍ୟକ ଚୌହାର ପୁରୀରେ ପ୍ରବେଶ କରି ଦାରୋଗାଙ୍କ ସମେତ ବହୁ ଇଂରେଜଙ୍କ ଘର ପୋଡ଼ିଦେଲେ । ଏପ୍ରିଲ ୧୪ ତାରିଖ ଦିନ ବକ୍‌ସିଙ୍କ ନେତୃତ୍ୱରେ ୫୦୦୦ରୁ ଉର୍ଦ୍ଧ୍ୱ ପାଇକ ଓ କନ୍ଧ ବିଦ୍ରୋହୀ ପୁରୀରେ ପହଞ୍ଚିଲେ । ଏହା ଦେଖି ଇଂରେଜ ସେନାପତି ୱେଲିଂଗଟନ୍ ଭୟରେ କଟକ ପଳାୟନ କଲେ ।

ପୁରୀର ପଣ୍ଡା, ସେବାୟତ ଓ ଜନସାଧାରଣ ବିଦ୍ରୋହୀମାନଙ୍କ ସହ ମିଶି ସରକାରୀ ଖଜଣା ଖାନା ଲୁଟ୍ କଲେ । ମୁକୁନ୍ଦ ଦେବଙ୍କୁ ପୁଣି ନେତୃତ୍ୱ ପାଇଁ ଅନୁରୋଧ କରାଗଲା । ସେ ସ୍ୱୀକାର କଲେ ନାହିଁ । ଖୋର୍ଦ୍ଧାରୁ ପାଞ୍ଚ ଶତାଧିକ ପାଇକ କିଲା ରୂପ୍‌ସା ପହଞ୍ଚି ଗୋପ ଓ କୁଜଙ୍ଗର ପାଇକମାନଙ୍କୁ ମତାଇଲେ । ମାରିଚପୁର, ହରୀଶପୁର ଓ ଗୋଳରାର ପୂର୍ବତନ ଜମିଦାରମାନେ ସେମାନଙ୍କୁ ସମର୍ଥନ କଲେ । କିଛି ମାଳଙ୍ଗୀ ମଧ୍ୟ ସେମାନଙ୍କ ସଙ୍ଗେ ମିଶିଲେ । ବିଦ୍ରୋହୀମାନେ ପୁରୁଆ ଜମିଦାରଙ୍କ କଚେ଼ରି ଲୁଟ୍ କରି କିଳା ରୂପ୍‌ସା ଓ ତାଳପଡ଼ା ଜମିଦାରୀର ଅମଲାମାନଙ୍କ ଘର ଲୁଟି ନେଲେ ।

କେପଟେନ୍ ପି. ଫେଭର୍ ପୁରୀରୁ ବିଦ୍ରୋହୀମାନଙ୍କୁ ଘଉଡ଼ି ଦେଲେ । ଖୋର୍ଦ୍ଧା, ପୁରୀ, ଗୋପ ଆଦିରେ ସାମରିକ ଆଇନ ଜାରି କରାଗଲା । ଅନ୍ୟାନ୍ୟ ଅଞ୍ଚଳକୁ ବିଦ୍ରୋହ ଯେପରି ସଂକ୍ରମଣ ନ ହେବ, ସେଥିପାଇଁ ଇଂରେଜ ପ୍ରଶାସନ ପକ୍ଷରୁ ବ୍ୟାପକ ପଦକ୍ଷେପମାନ ଗ୍ରହଣ କରାଗଲା । ଖୋର୍ଦ୍ଧା ରାଜା ଯେମିତି ନେତୃତ୍ୱ ନେବାର ସୁଯୋଗ ନ ପାଇବେ ସେଥିପାଇଁ ତାଙ୍କୁ ସପରିବାର କଟକରୁ ସ୍ଥାନାନ୍ତରିତ କରାଗଲା । ବିଦ୍ରୋହୀମାନେ ପିପିଲିଠାରେ ରାଜାଙ୍କୁ ଉଦ୍ଧାର କରିବା ଲାଗି ତୁମୁଳ ସଂଘର୍ଷ କଲେ । ଏଥିରେ ୧୯ଜଣ ବିଦ୍ରୋହୀ ନିହତ ଓ ବହୁ ଆହତ ହେଲେ ।

ମେ ୧୮୧୭ ମଧ୍ୟରେ ଖୋର୍ଦ୍ଧା, ପୁରୀ ଓ ପିପିଲିରେ ବିଦ୍ରୋହୀମାନଙ୍କୁ ଦମନ କରାଗଲା । ବର୍ଷାଋତୁ ପରେ ସେପ୍ଟେମ୍ବର ୧୩, ୧୮୧୭ରେ କୁଜଙ୍ଗରେ ବିଦ୍ରୋହ ଦମନ ହେଲା । କୁଜଙ୍ଗର ବିଦ୍ରୋହୀ ରାଜା ଅକ୍ଟୋବର ୨, ୧୮୧୭ରେ ଇଂରେଜ ଆଗରେ ଆତ୍ମସମର୍ପଣ କଲେ ।

ବକ୍‌ସି, କୃତ୍ତିବାସ ପାଟଶାଣୀ ପ୍ରମୁଖ ଓ ସେମାନଙ୍କ ମୁଖ୍ୟ ସହଯୋଗୀଗଣ ଜଙ୍ଗଲକୁ ପଳାୟନ କଲେ । ସେମାନେ ଖୋର୍ଦ୍ଧାର ଜନସାଧାରଣ, ଘୁମୁସର ଓ ନୟାଗଡ଼ ରାଜାଙ୍କ ଗୁପ୍ତ ସାହାଯ୍ୟ କ୍ରମେ ଦୀର୍ଘ ସାତବର୍ଷ କାଳ ଗିରଫଦାରିକୁ ଏଡ଼ାଇ ଯାଇଥିଲେ ।

ଖୋଲା ବିଦ୍ରୋହକୁ ଦମନ କରି ଦିଆ ଯାଇଥିଲେ ମଧ୍ୟ ବିଦ୍ରୋହୀମାନେ ଏପ୍ରିଲ ୧୮୧୮ ଆଡ଼କୁ ଡକାୟତି, ଭଙ୍ଗାରୁଜା, ହତ୍ୟାକାଣ୍ଡ ଆଦିରେ ଲିପ୍ତ ରହି ରାଜସ୍ୱ ଆଦାୟର ଘୋର ବିରୋଧ ଆରମ୍ଭ କରି ଦେଇଥିଲେ ।

କଟକ କମିଶନର ରବର୍ଟ କେର୍ ମୁଖ୍ୟ ବିଦ୍ରୋହୀମାନଙ୍କୁ ନିଃସଙ୍ଗ କରିଦେବା ଉଦ୍ଦେଶ୍ୟରେ ସାଧାରଣ ବିଦ୍ରୋହୀମାନଙ୍କୁ ଏପ୍ରିଲ ୧, ୧୮୧୭ରୁ ମାର୍ଚ୍ଚ ୧,୧୮୧୮ ମଧ୍ୟରେ ସେମାନେ କରିଥିବା ଅପରାଧ ପାଇଁ ସାମୂହିକ କ୍ଷମାଦାନ ଘୋଷଣା କଲେ । ଏହା ଫଳରେ ବହୁ ବିଦ୍ରୋହୀ ଗୃହ ପ୍ରତ୍ୟାବର୍ତ୍ତନ କଲେ । ବକ୍‌ସି ଓ ତାଙ୍କ ମୁଖ୍ୟ ସହଯୋଗୀମାନଙ୍କ ଭୂସଂପତ୍ତି ବାଜ୍ୟାପ୍ତ କରାଗଲା । ବକ୍‌ସିଙ୍କ ପରିବାରକୁ କାରାରୁଦ୍ଧ କରାଗଲା । ତଥାପି ବକ୍‌ସି ତାଙ୍କ ବିଦ୍ରୋହରୁ ନିବୃତ୍ତ ହୋଇ ନ ଥିଲେ ।

ପରେ ସରକାର ଘୋଷଣା କଲେ ଯେ ଯଦି ବକ୍‌ସି କଟକର ମାସିକ ପେନସନଭୋଗୀ ହୋଇ ରହିବାକୁ, ବକ୍‌ସି ଉପାଧି ଛାଡ଼ିବାକୁ ଓ ରୋଡ଼ଙ୍ଗ ଜମିଦାରୀ ଉପରୁ ଅଧିକାର ତ୍ୟାଗ କରିବାକୁ ସର୍ତ୍ତ ଗ୍ରହଣ କରନ୍ତି; ତେବେ ତାଙ୍କୁ କ୍ଷମା କରି ଦିଆଯିବ । ବର୍ଷ-ବର୍ଷର କଠୋର ଆତ୍ମଗୋପନକାରୀ ଜୀବନ, ସହଯୋଗୀମାନଙ୍କ ଅଭାବ, ପରିବାରର ଦୁରବସ୍ଥା ଓ ବୟସାଧିକ୍ୟ ଯୋଗୁଁ ବାଧ୍ୟ ହୋଇ ବକ୍‌ସି ୧୮୨୫ରେ ଆତ୍ମ ସମର୍ପଣ କଲେ । ତାଙ୍କର ଅନ୍ୟତମ ସହଯୋଗୀ କୃଷ୍ଣଚନ୍ଦ୍ର ବଂଦ୍ୟାଧର ମଧ୍ୟ ଆତ୍ମସମର୍ପଣ କଲେ ।

## ଲାର୍କା କୋଲ ବିଦ୍ରୋହ

୧୮୨୧ରେ ମୟୂରଭଞ୍ଜର ଲାର୍କା କୋଲ ବିଦ୍ରୋହ ଛୋଟ ନାଗପୁରର ସୀମାନ୍ତ ଅଞ୍ଚଳ ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା । ବ୍ରିଟିଶ ପ୍ରଶାସନ ଦ୍ୱାରା ଆଦିବାସୀମାନଙ୍କ ପାରଂପରିକ ନେତୃତ୍ୱର ସାମାଜିକ ମର୍ଯ୍ୟାଦାକୁ କ୍ଷୁଣ୍ଣ କରାଯିବା ବିରୁଦ୍ଧରେ ବିଦ୍ରୋହ ଜନାଗ୍ନି ପରି ବ୍ୟାପୀ ଯାଇଥିଲା ।

କେବଳ ଏତିକି ନୁହେଁ ଷଡ଼େଇକଳା ଓ ଅନ୍ୟାନ୍ୟ ରାଜାଙ୍କ ସହ ମୟୂରଭଞ୍ଜ ରାଜାଙ୍କ ସୀମାବିବାଦ ମଧ୍ୟ ଏହି ସଶସ୍ତ୍ର ଆଦିବାସୀ ବିଦ୍ରୋହର ଅନ୍ୟତମ କାରଣ ରହିଥିଲା ।

# ବାମନଘାଟି ବିଦ୍ରୋହ

ଧରୁଆ ସରଦାର ମାଧବ ମହାପାତ୍ର ମୟୂରଭଞ୍ଜ ରାଜାଙ୍କୁ ଆହ୍ୱାନ ଦେବା ଫଳରେ ୧୮୩୦ରେ ବାମନଘାଟି ବିଦ୍ରୋହର ସୂତ୍ରପାତ ହୋଇଥିଲା ।

ସେହିପରି 'ଦେଶ ଲୋଗ' ଓ ଅଣଆଦିବାସୀ 'ଦିକୁ'ଙ୍କ ମଧ୍ୟରେ ଜମି ଓ ଅନ୍ୟାନ୍ୟ ସଂପତ୍ତିବାଡ଼ିର ମାଲିକାନା ସ୍ୱତ୍ୱକୁ ନେଇ ଗଢ଼ି ଉଠିଥିବା ତୀବ୍ର ଉତ୍ତେଜନା ଫଳରେ ୧୮୬୬ରେ ବାନନଘାଟିରେ ପୁଣି ବିଦ୍ରୋହ ଦେଖା ଯାଇଥିଲା । ଏହା ବିଦ୍ରୋହ ୧୮୬୮ ଯାଏଁ ଲାଗି ରହିଥିଲା ।

ମୟୂରଭଞ୍ଜ ରାଜା ଶ୍ରୀନାଥ ଭଞ୍ଜଙ୍କ ଶାସନ କାଳରେ ବାମନଘାଟି ଓ ତା' ଉପର ଅଞ୍ଚଳରେ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ଲୋକମାନେ ଖାଇବାକୁ ନ ପାଇ ପେଟ ବିକଳରେ ବିଦ୍ରୋହ କଲେ । ରାଜା ସେମାନଙ୍କୁ ନିର୍ମମ ଭାବରେ ଦମନ କରିବାକୁ ଲାଗିଲେ । ଏହା ବିଦ୍ରୋହକୁ ଆହୁରି ଭୟାବହ କଲା ।

ଆଦିବାସୀ ଓ ସବର୍ଣ୍ଣ ହିନ୍ଦୁ; 'ଦେଶ ଲୋଗ' ଓ 'ଦିକୁ' ବା ବହିରାଗତ ହାଟୁଆମାନଙ୍କ ମଧ୍ୟରେ ଖାଦ୍ୟ ପାଇଁ ସଂଘର୍ଷ ହେବାକୁ ଲାଗିଲା । ସବର୍ଣ୍ଣ ହିନ୍ଦୁ, ଦିକୁ, ବହିରାଗତ, ହାଟୁଆମାନେ ଥିଲେ ସଂପନ୍ନ ଶ୍ରେଣୀର । ସେମାନଙ୍କ ପାଖରେ ଯଥେଷ୍ଟ ଖାଦ୍ୟ ମହଜୁଦ ଥିଲା ବେଳେ ଆଦିବାସୀମାନେ ଭୋକ ଓପାସରେ ସଢୁଥିଲେ ।

କୋଲ, ସାନ୍ତାଳ ଆଦି 'ଦେଶ ଲୋଗ' ହାଟୁଆ, ଦିକୁମାନଙ୍କ ଦ୍ୱାରା ନାନା ପ୍ରକାରେ ଅତ୍ୟାଚାରିତ ଓ ଶୋଷିତ ହେଉଥିଲେ । ପୁଣି ସେତେବେଳେ ବାମନାଘାଟିରେ ଭୂ-ବନ୍ଦୋବସ୍ତ ପାଇଁ ପ୍ରାଥମିକ ସର୍ବେକ୍ଷଣ କାର୍ଯ୍ୟ ଚାଲିଥିଲା । ସେଥିରେ ହାଟୁଆ, ବହିରାଗତ, ଦିକୁମାନେ ଆଦିବାସୀ ଲୋକଙ୍କ ଅଜ୍ଞାନ ଓ ସରଳ ବିଶ୍ୱାସର ସୁଯୋଗ ନେଇ ଦେଶ୍ ଲୋଗ୍‌ମାନଙ୍କର ଅନେକ ଭୂସଂପତ୍ତି ଦଖଲ କରି ନେଇଥିଲେ ।

ଯେହିପରି ମୟୂରଭଞ୍ଜରେ କୋର୍ଟ ଅଫ ଓ୍ୱାର୍ଡସ ଶାସନ ଚାଲିଥିବା ସମୟରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା । ଫ୍ରାନ୍ସର ମିତ୍ର ବାହିନୀର ଶ୍ରମିକବାହିନୀରେ କାମ କରିବା ପାଇଁ ସରକାର ମୟୂରଭଞ୍ଜରୁ ବହୁ ଆଦିବାସୀମାନଙ୍କୁ ଜୋରଜବରଦସ୍ତ କରି ପଠାଇବାକୁ ଲାଗିଲେ । ଫଳରେ ମେ ୧୯୧୭ରେ ଉତ୍‌କ୍ଷିପ୍ତ ଆଦିବାସୀମାନେ ବିଦ୍ରୋହ କଲେ ।

ଏହି ବିଦ୍ରୋହ ଇଂରେଜ ସରକାରଙ୍କ ଦ୍ୱାରା ଦମନ କରି ଦିଆଗଲା । ପରେ ବାମନଘାଟିରେ ଆଉ ଥରେ ମଧ୍ୟ ଆଦିବାସୀ ବିଦ୍ରୋହ ହୋଇଥିଲା ଓ ଏହାକୁ ମଧ୍ୟ ଦମନ କରି ଦିଆ ଯାଇଥିଲା ।

## ବାଣପୁର ବିଦ୍ରୋହ

ବିପ୍ଲବୀ କୃତ୍ତିବାସ ପାଟଶାଣୀ ଓ ପଞ୍ଚୁ ନାୟକଙ୍କ ନେତୃତ୍ୱରେ ୧୮୩୬ରେ ହୋଇଥିବା 'ବାଣପୁର ବିଦ୍ରୋହ' ଊନବିଂଶ ଶତାବ୍ଦୀର ଏକ ଶ୍ରେଷ୍ଠତମ ବ୍ରିଟିଶ ବିରୋଧୀ ବିଦ୍ରୋହ ବୋଲି ଐତିହାସିକମାନଙ୍କ ମତ ।

ଏହି ବିଦ୍ରୋହ ଭଳି ରକ୍ତପାତ ଓ ଆତ୍ମତ୍ୟାଗର ଦୃଷ୍ଟାନ୍ତ ବିରଳ । ବିଦ୍ରୋହୀମାନେ କିଛି ଦିନ ପାଇଁ ବାଣପୁରକୁ ଇଂରେଜ ଶାସନରୁ ମୁକ୍ତ କରି ଫ୍ରାନ୍ସର 'ପ୍ୟାରୀ କମ୍ୟୁନ୍' ଭଳି ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ସେହି ବିଦ୍ରୋହରେ କୃତ୍ତିବାସଙ୍କ ସମେତ ବହୁ ବିଦ୍ରୋହୀ ଦ୍ୱୀପାନ୍ତରିତ ହୋଇଥିଲେ ।

## ଘୁମୁସର ବିଦ୍ରୋହ

୧୭୭୬ରେ ଘୁମୁସର ସହିତ ଓଡ଼ିଶାର ଦକ୍ଷିଣାଞ୍ଚଳ ଇଂରେଜମାନଙ୍କ ଅଧୀନସ୍ଥ ହୋଇଥିଲା । ୧୭୭୮ରେ ଇଂରେଜ ବାହିନୀ ତ୍ରିବିକ୍ରମ ଭଞ୍ଜଙ୍କୁ ବହିଷ୍କାର କରି ଲକ୍ଷ୍ମଣ ଭଞ୍ଜଙ୍କୁ ରାଜା କରିବା ଫଳରେ ତ୍ରିବିକ୍ରମ ବିଦ୍ରୋହୀ ହୋଇ ଉଠିଥିଲେ । ସେ ବାହାରେ ରହି ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ ।

ସେହିପରି ଘୁମୁସର ସିଂହାସନକୁ କେନ୍ଦ୍ରକରି ଶ୍ରୀକର ଭଞ୍ଜ ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ତାଙ୍କୁ ସାହାଯ୍ୟ କରିବାକୁ ଅନେକ ରାଜା, ଜମିଦାର, ପ୍ରଜା ଆଗେଇ ଆସିଥିଲେ । ବିଜୟନଗର ଓ ଶେରଗଡ଼ର ରାଜା ଶ୍ରୀକରଙ୍କ ପାଇକ ସେନାବାହିନୀ ସହିତ ଯୋଗ ଦେଲେ । ଇଂରେଜବାହିନୀ ତାଙ୍କ ଦୁର୍ଗ ଅଧିକାର କରି ନେବାରୁ ସେ ବଣପାହାଡ଼ରେ ରହି ବିଦ୍ରୋହ ଚଳାଇ ରଖିଲେ ।

ଧନଞ୍ଜୟ ଭଞ୍ଜ ୧୮୩୨ରେ ଦ୍ୱିତୀୟ ଥର ରାଜା ହେଲାପରେ ଇଂରେଜମାନଙ୍କୁ ପେଶକସ୍ ଟଙ୍କା ଦେଇ ପାରିଲେ ନାହିଁ । ଘୁମୁସର ଭଳି ଏକ ଛୋଟିଆ ରାଜ୍ୟ ତୁଳନାରେ ଇଂରେଜମାନଙ୍କ ଦାବି ଅତ୍ୟଧିକ ଥିଲା । ଏହି ଅର୍ଥ ପାଇଁ ପ୍ରଜାମାନଙ୍କ ଠାରୁ ନାନା ରକମ

ଅନ୍ୟାୟ କର ଅସୁଲ କରାଗଲା । ଫଳରେ ଇଂରେଜଙ୍କ ପ୍ରତି ରାଜା ଓ ପ୍ରଜାମାନଙ୍କ ଅସନ୍ତୋଷ ବୃଦ୍ଧି ପାଇଲା ।

ଇଂରେଜମାନେ ପେଶକସ୍ ନ ପାଇବାରୁ ୧୮୩୫ରେ ଘୁମୁସର ଓ କୁଲାଡ଼ଗଡ଼ ଦଖଲ କରିନେଲେ । ଧନଞ୍ଜୟ ଜଙ୍ଗଲକୁ ପଳାୟନ କରି ଘୁମୁସରବାସୀଙ୍କ ସହ ବିଦ୍ରୋହ ଆରମ୍ଭ କଲେ । ସମଗ୍ର ଘୁମୁସର ବିଦ୍ରୋହର ନିଆଁରେ ଜଳି ଉଠିଲା ।

ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ କନ୍ଧ ସରଦାର ଦୋରା ବିଶୋୟୀ । ଧନଞ୍ଜୟଙ୍କ ମୃତ୍ୟୁ ପରେ ମଧ୍ୟ ଦୋରା ବିଶୋୟୀ ବିଦ୍ରୋହକୁ ଅବ୍ୟାହତ ରଖିଥିଲେ । ତାଙ୍କର ଅନ୍ୟତମ ସାଥୀ ବୃନ୍ଦାବନ ଭଞ୍ଜ, ଜଗନ୍ନାଥ ଭଞ୍ଜ, ହାତୀରାମ, ସୁନ୍ଦର ରାୟ, କାହ୍ନୁ ବଳେନ୍ଦ୍ର, ସଂଗ୍ରାମ ସିଂହ, ହରି ଭଞ୍ଜ, ମଧୁ ଭଞ୍ଜ, ଉଦୟ ରାୟ ଓ ବଳିୟାର ସିଂହ ।

ହେଲେ ଏ ବିଦ୍ରୋହ ତିଷ୍ଠି ରହି ପାରିଲା ନାହିଁ । ଶେଷରେ ଦୋରା ବିଶୋୟୀ ୧୮୩୭ରେ ବନ୍ଦୀ ହେଲେ ଓ ତାର କେଇ ବର୍ଷ ପରେ ମାନ୍ଦ୍ରାଜର ଗୁଟି କାରାଗାରରେ ମୃତ୍ୟୁବରଣ କରିଥିଲେ ।

## କନ୍ଧ ବିଦ୍ରୋହ

ଘୁମୁସର ବିଦ୍ରୋହ ପରେ ବଉଦ, ଦଶପଲ୍ଲା, ଚିନାଖେମୁଣ୍ଡି ଓ କଳାହାଣ୍ଡିର ପାର୍ବତ୍ୟ ଅଞ୍ଚଳରେ କନ୍ଧମାନଙ୍କ ଏକ ଇଂରେଜ ବିରୋଧୀ ବିଦ୍ରୋହ ୧୮୫୬ ପର୍ଯ୍ୟନ୍ତ ଦୀର୍ଘ କୋଡ଼ିଏ ବର୍ଷ ଧରି ଚାଲିଥିଲା । କନ୍ଧମାନଙ୍କ ମେରିଆ ବଳି ଭଳି ବିଭିନ୍ନ ଧାର୍ମିକ, ସାମାଜିକ ପରଂପରାରେ ପ୍ରଶାସନିକ ହସ୍ତକ୍ଷେପ ଯୋଗୁଁ ସେମାନେ ଇଂରେଜ ପ୍ରଶାସନ ବିରୁଦ୍ଧରେ ରକ୍ତ ଚାଉଳ ଚୋବାଉଥିଲେ । ପୁଣି ଇଂରେଜମାନଙ୍କ ଅର୍ଥନୈତିକ ଶୋଷଣ ନୀତି ଯୋଗୁଁ ସେମାନେ ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ଇଂରେଜମାନେ ସେମାନଙ୍କ ଉପରେ ବିଭିନ୍ନ ରକମ କର ବସାଇ ତାହା ଅସୁଲ କରିବାରେ ବାଧ୍ୟବାଧକତା ପ୍ରଣାଳୀ ଗ୍ରହଣ କରିଥିଲେ । ସେମାନଙ୍କ ବାସନକୁସନ ଛଡ଼େଇ ନିଆ ଯାଉଥିଲା । ମରୁଡ଼ି, ଦୁର୍ଭିକ୍ଷ ସ୍ଥିତିରେ ମଧ୍ୟ କରରୁ ରିହାତି ଦିଆଯାଉ ନଥିଲା । ଏଥିରେ କନ୍ଧମାନେ ଅତିଷ୍ଠ ହୋଇ ଉଠିଲା ବେଳକୁ ମେରିଆ ପ୍ରଥା ବିରୁଦ୍ଧରେ ସରକାରୀ ନିଷେଧାଜ୍ଞା ବିଦ୍ରୋହକୁ ବହୁତାୟତ କରି ଗଢ଼ି ତୋଳିଲା ।

ଘୁମୁସରରେ କନ୍ଧମାନେ ଅସ୍ଥିର ହୋଇ ଉଠିଲା ବେଳକୁ କଳାହାଣ୍ଡିର କନ୍ଧମାନେ ମଦନପୁର ଜମିଦାର ହରିହର ସିଂହ ମର୍ଦ୍ଧରାଜଙ୍କ ନେତୃତ୍ୱରେ ସଙ୍ଗଠିତ ହେଲେ । କଳାହାଣ୍ଡିର

ମହାରାଜା ଆଦିତ୍ୟ ପ୍ରସାଦ ସିଂହଦେଓ ବ୍ରିଟିଶ ସରକାରଙ୍କ ସମର୍ଥକ ଥିବାରୁ କନ୍ଧମାନେ କ୍ଷୁବ୍ଧ ଥିଲେ ।

ଅରଣ୍ୟ ଓ ପର୍ବତ ଅଞ୍ଚଳରେ ସଙ୍ଗଠିତ ବିଦ୍ରୋହ ଦମନ କରିବାଟା ସମ୍ଭବ ନ ଥିବାରୁ ଇଂରେଜମାନେ କନ୍ଧ ଅଞ୍ଚଳକୁ କେନ୍ଦ୍ର ସରକାରଙ୍କ ଅଧୀନରେ ମିଶାଇ ୧୮୪୫ରେ ''ମେରିଆ ଏଜେନ୍‌ସି'' ପ୍ରତିଷ୍ଠା କଲେ । କେପଟେନ୍ ଏମ.ସି. ମେକ୍‌ଫରସନ୍ ଏହାର ପ୍ରଥମ ପ୍ରଶାସକ ଏଜେଣ୍ଟ ହେଲେ ।

ଏହି ବ୍ୟବସ୍ଥା କନ୍ଧମାନଙ୍କୁ ଆହୁରି ଉତ୍‌କ୍ଷିପ୍ତ କଲା । ସେମାନେ ମିଳିତ ହୋଇ ଦୁଇ-ଦୁଇ ଥର ଏଜେଣ୍ଟଙ୍କ ଅଧିଷ୍ଠାନ ଆକ୍ରମଣ କରି ଇଂରେଜମାନେ ଉଦ୍ଧାର କରି ଆଣିଥିବା କେତେକ ମେରିଆଙ୍କୁ ଛଡ଼ାଇ ନେଲେ ।

ଘୁମୁସରର ବହୁ କନ୍ଧ ବିଦ୍ରୋହରେ ଯୋଗ ଦେବା ଫଳରେ ଅବସ୍ଥା ଭୟଙ୍କର ରୂପ ନେଲା । ଚକ୍ର ବିଶୋୟୀ ଏହାର ନେତୃତ୍ୱ ନେଇଥିଲେ । ବଉଦର କନ୍ଧ ନେତା ବୀର କହଁରଙ୍କ ନିମନ୍ତ୍ରଣ କ୍ରମେ ୧୮୪୪ରେ ସେ କନ୍ଧ ବିଦ୍ରୋହରେ ଯୋଗ ଦେଲେ ।

ଚକ୍ର ବିଶୋୟୀଙ୍କ ନେତୃତ୍ୱରେ ସଙ୍ଗଠିତ ବିଦ୍ରୋହ ଇଂରେଜମାନଙ୍କ ପକ୍ଷରେ ଦମନ କରିବା କାଠିକର ପାଠ ହେଲା । ସେମାନଙ୍କ ଦୃଢ଼ କାର୍ଯ୍ୟାନୁଷ୍ଠାନ ଫଳରେ ବୀର କହଁର, ମହେଶ୍ୱର କହଁର ଗିରଫ ହେଲେ । ନବଘନ କହଁର ଆତ୍ମ ସମର୍ପଣ କଲେ । ଚକ୍ର ବିଶୋୟୀ ଆତ୍ମ ସମର୍ପଣ ନ କରି ଗରିଲା ଯୁଦ୍ଧ ଚାଲୁ ରଖିଲେ ।

ଚକ୍ର ବିଶୋୟୀଙ୍କୁ ସାହାଯ୍ୟ କରୁଥିବା ଅନୁଗୁଳ ରାଜା ସୋମନାଥ ସିଂହଙ୍କ ପତନ କନ୍ଧମାନଙ୍କୁ ଗଭୀର ଭାବରେ ନିରାଶ କଲା । କନ୍ଧମାନଙ୍କ ଅନେକ ପୁରୁଣା ନେତା ଶାମ ବିଶୋୟୀ ପ୍ରମୁଖ ଆତ୍ମସମର୍ପଣ କଲେ ।

ଇଂରେଜମାନଙ୍କ ଦଲାଲ କୃତ୍ତିବାସ ବାବୁଙ୍କ କୂଟନୀତି ଫଳରେ ବୌଦର କନ୍ଧମାନେ ବୀର କହଁର ଓ ନୀଳାଦ୍ରି କହଁରଙ୍କ ନେତୃତ୍ୱରେ ବିଭାଜିତ ହୋଇ ଗୋଷ୍ଠୀ ସଂଘର୍ଷରେ ଲିପ୍ତ ହେଲେ । ଏ ଗୋଷ୍ଠୀ ସଂଘର୍ଷ ଓ ବିଭାଜନ ସେମାନଙ୍କୁ ଦୁର୍ବଳ କଲା ।

ଘୁମୁସରର ରାଜକୁମାର 'ରଜାପିଲା' ଲକ୍ଷ୍ମୀନାରାୟଣ ଭଞ୍ଜ ବୌଦର କନ୍ଧମାନଙ୍କ ମଧ୍ୟରେ ଆତ୍ମଗୋପନ କରି ରହିଥିଲେ ।

ସୋନପୁରର ରାଣୀ ଚକ୍ର ବିଶୋୟୀଙ୍କୁ ସାହାଯ୍ୟ କରୁଥିଲେ । ନୟାଗଡ଼ର 'କର ବନ୍ଦ' ଆନ୍ଦୋଳନରେ ଚକ୍ର ବିଶୋୟୀ ବିଦ୍ରୋହୀ ନେତା କମଳଲୋଚନ ପାଇକରାୟଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଉଥିଲେ ।

ଏତିକିବେଳେ 'ରଜା ପିଲା' ଲକ୍ଷ୍ମୀନାରାୟଣ ଭଞ୍ଜ ଚକ୍ର ବିଶୋୟୀଙ୍କ ସହ କଳହ କରି ୧୮୫୫ରେ ଆତ୍ମ ସମର୍ପଣ କଲେ । ଏ ଅଭାବିତ ଘଟଣା 'କନ୍ଧ ଆନ୍ଦୋଳନ' ପ୍ରତି ଏକ ଶକ୍ତ ଆଘାତ ଥିଲା ।

ଏ ଘଟଣା ପରେ ବ୍ୟଥିତ ହୋଇ ଚକ୍ର ବିଶୋୟୀ ପାଟଣାଗଡ଼ ଓ କଳାହାଣ୍ଡି ଅଞ୍ଚଳରେ ଆଶ୍ରୟ ନେଲେ । ପାଟଣାଗଡ଼ର ଆଟଗାଁ ଜମିଦାର ଧରମ ସିଂହ୍ ମାନ୍ଧାତା ଓ ମଦନପୁରର ଥାଟ ରାଜା ହରିହର ସିଂହ ମର୍ଦ୍ଦରାଜ ତାଙ୍କୁ ସାହାଯ୍ୟ କଲେ ।

ଇଂରେଜମାନେ ତାଙ୍କୁ ଧରିବାକୁ ଆଟଗାଁ ଆକ୍ରମଣ କଲେ । ଆଟଗାଁରେ ଇଂରେଜ ଓ ଚକ୍ର ବିଶୋୟୀଙ୍କ ବାହିନୀ ମଧ୍ୟରେ ଭୟଙ୍କର ସଂଘର୍ଷ ହେଲା । ଚକ୍ର ବିଶୋୟୀ ପରାସ୍ତ ହୋଇ ଘୁମୁସର ପଳାୟନ କଲେ । ତାଙ୍କର ମୁଖ୍ୟ ସହଯୋଗୀ ଭୁତିଆ ସର୍ଦ୍ଦାର ଡୋଇ ଆଦି ଗିରଫ ହେଲେ । ଧରମ ସିଂହ ମାନ୍ଧାତା ଇଂରେଜ ଶକ୍ତିକୁ ଭ୍ରୂକ୍ଷେପ ନ କରି କନ୍ଧମାନଙ୍କ ବିଦ୍ରୋହୀ ନେତା ଚକ୍ର ବିଶୋୟୀଙ୍କୁ ସାହାଯ୍ୟ କରି ଓ ଆଶ୍ରୟ ଦେଇ ଓଡ଼ିଶା ଇତିହାସରେ ସ୍ମରଣୀୟ ହୋଇ ରହିଛନ୍ତି ।

ଚକ୍ର ବିଶୋୟୀ ଅଳ୍ପକାଳ ୧ [illegible]ର ଘୁମୁସରରୁ ପୁଣି କଳାହାଣ୍ଡି ଫେରି ଆସିଲେ । ସେ ମଦନପୁରର ଥାଟ ରାଜାଙ୍କ ସାହା[illegible]ରେ ପୁଣି କନ୍ଧମାନଙ୍କୁ ସଙ୍ଗଠିତ କଲେ । ବସ୍ତରର ଥାଟ ସାହେବ ଦଳଗଞ୍ଜନ ସିଂହ ମଧ୍ୟ [illegible]ାଙ୍କୁ ସାହାଯ୍ୟ କଲେ । ହେଲେ ଏଥରକର ବିଦ୍ରୋହକୁ ସହଜରେ ଦମନ କରି ଦିଆଗଲା ।

ଏହି ସମୟରେ କନ୍ଧମାନଙ୍କ ଏକ ନୂଆ ଧର୍ମଦେବତା ଆବିର୍ଭାବ ହୋଇଥିବାର ଗୁଜବ କଳାହାଣ୍ଡି ସାରା ଖେଳିଗଲା । ଏହା କନ୍ଧମାନଙ୍କୁ ସଙ୍ଗଠିତ କଲା । ସେମାନେ ଦଳବଦ୍ଧ ହୋଇ ଇଂରେଜ ଓ ସେମାନଙ୍କ ସମର୍ଥନକାରୀଙ୍କ ଉପରେ ଆକ୍ରମଣ ଚଳାଇଲେ । ବାଲିଗୁଡ଼ା, ଝୋରାପାଣିରୁ ଏ ବିଦ୍ରୋହ ଆରମ୍ଭ ହୋଇ ଚାରିଆଡ଼େ ବ୍ୟାପିଗଲା । କଳାହାଣ୍ଡି ମହାରାଜା ଇଂରେଜ ସମର୍ଥକ ଆଦିତ୍ୟ ପ୍ରତାପ ଦେଓ ଇଂରେଜମାନଙ୍କ ସାହାଯ୍ୟରେ ଏ ବିଦ୍ରୋହ ଦମନ କରିବାକୁ ଆଗେଇ ଆସିଥିଲେ । ଏଥିରେ ତାଙ୍କ ବିଶ୍ୱସ୍ତ କନ୍ଧ ମୁଠମାନଙ୍କ ପାତ୍ରମାନେ ତାଙ୍କୁ ସାହାଯ୍ୟ କରିଥିଲେ । ଫଳରେ ଭୁଲୁ ମଲ୍ଲିକ,ସମେତ ବହୁ କନ୍ଧ ଓ ଶବର ନେତା ଗିରଫ ହେଲେ । ଚକ୍ର ବିଶୋୟୀ କିଛି କାଳ ଆତ୍ମଗୋପନ କରି ରହିଲେ ଓ ପରେ ପାରଳାଖେମୁଣ୍ଡିକୁ ପଳାୟନ କଲେ ।

ପାଟଣାଗଡ଼ ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ୧୮୨୦ରେ ମୃତ୍ୟୁ ହେଲା ପରେ ତାଙ୍କର ଜ୍ୟେଷ୍ଠପୁତ୍ର ଭୂପାଳ ଦେବ ଇଂରେଜ ସରକାରଙ୍କଠାରୁ ସ୍ୱତନ୍ତ୍ର ସନନ୍ଦ ଲାଭ କରି ସମ୍ବଲପୁର ରାଜ୍ୟରୁ ସ୍ୱାଧୀନ ହେଲେ । ସେ ଇଷ୍ଟ ଇଣ୍ଡିଆ କଂପାନୀର ସାର୍ବଭୌମତ୍ୱ ସ୍ୱୀକାର କରିଥିଲେ ।

ତାଙ୍କ ସମୟରେ ବୋଡ଼ାସମ୍ବରର ବିଂଝାଲ ଜମିଦାର ରାମଜଲ ବରିହା ବିଦ୍ରୋହ କରିଥିଲେ । ଏହି ବିଦ୍ରୋହ ଦମନ କରିବାକୁ ଯାଇ ଭୂପାଳଦେବଙ୍କ ଦେବାନ ବଳଭଦ୍ର ନିହତ ହେଲେ । ଶେଷରେ ଆଟଗାଁ ଜମିଦାର ଧରମ ସିଂହ ମାନ୍ଧାତା ବିଦ୍ରୋହୀ କରିହାଙ୍କୁ ପରାସ୍ତ କରି ବନ୍ଦୀ କଲେ । ରାଜା ଭୂପାଳ ଦେବ ବରିହାଙ୍କୁ କ୍ଷମା ଦେଲେ ଓ ଧରମ ସିଂହଙ୍କୁ ନିଜର ଦେବାନ ଉପାଧିରେ ଭୂଷିତ କଲେ ।

## ଶବର ବିଦ୍ରୋହ

ପାରଳା ଖେମୁଣ୍ଡିରେ ଗାଇବର ବିଶୋୟୀ, ରାଧାକୃଷ୍ଣ ଦଣ୍ଡସେନାଙ୍କ ନେତୃତ୍ୱରେ ଶବରମାନଙ୍କ ଏକ ଭୟାବହ ବିଦ୍ରୋହ ଦେଖା ଦେଇଥିଲା । ଚକ୍ର ବିଶୋୟୀ ସେମାନଙ୍କ ସହ ଯୋଗ ଦେଲେ । ଏହି ବିଦ୍ରୋହ ଦମନ କରିବା ଇଂରେଜଙ୍କ ପକ୍ଷରେ କଷ୍ଟକର ହୋଇଉଠିଥିଲା । ଅତ୍ୟଧିକ ଚାପ ଫଳରେ ଶେଷରେ ଚକ୍ର ବିଶୋୟୀ ଓ ଦଣ୍ଡସେନା ପାରଳାରୁ ପଳାୟନ କଲେ ।

୧୮୫୬ରେ ଚିତା ଖେମୁଣ୍ଡି ଓ ପାରଳା ଖେମୁଣ୍ଡିରେ ପୁଣି ଥରେ 'ଶବର ବିଦ୍ରୋହ' ହୋଇଥିଲା । ମାସେ କାଳ ଏହି ଉଭୟ ଖେମୁଣ୍ଡିରେ ଇଂରେଜମାନଙ୍କ ଦମନଲୀଳା ଚାଲିଲା । ମାତ୍ର ଏଥରକ ମଧ୍ୟ ସେମାନେ ଚକ୍ର ବିଶୋୟୀଙ୍କୁ ଗିରଫ କରିବାରେ ସଫଳ ହେଲେ ନାହିଁ । ହେଲେ ଚକ୍ର ବିଶୋୟୀ ଏହିଠାରୁ କୁଆଡ଼େ ଗଲେ, କଣ କଲେ, ତାହାର କୌଣସି ଖବର ଅନ୍ତର ଆଉ ମିଳିଲା ନାହିଁ । ସେ ଇତିହାସରେ ଏବେ ମଧ୍ୟ ନିଖୋଜ ।

## ବିଶୋଇ ବିଦ୍ରୋହ

ପାରଳା ଖେମୁଣ୍ଡିର ବିଶୋଇ ବିଦ୍ରୋହରେ ରାୟଗଡ଼ ଓ ଲାବଣ୍ୟଗଡ଼ର ବିଶୋୟୀ ସମେତ ୧୫ ଜଣଙ୍କୁ ଫାଶୀ ଓ ୧୨ ଜଣଙ୍କୁ ଆଜୀବନ ଦ୍ୱୀପାନ୍ତରିତ ଦଣ୍ଡ ଦିଆ ଯାଇଥିଲା ।

## ପୋଡ଼ାହାଟ ବିଦ୍ରୋହ

୧୮୫୭ର ଭାରତର ପ୍ରଥମ ସ୍ୱତନ୍ତ୍ରତା ସଂଗ୍ରାମରେ ପୋଡ଼ାହାଟ, ଚକ୍ରଧରପୁରର ଓଡ଼ିଆ ରାଜା ଅର୍ଜୁନ ସିଂହଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । କୋଲମାନଙ୍କ ସହଯୋଗରେ ଏହି ବିଦ୍ରୋହ ଭୟଙ୍କର ରୂପ ଗ୍ରହଣ କରିଥିଲା ।

ରାଜା ଅର୍ଜୁନ ସିଂହଙ୍କ ମୁଖ୍ୟ ସହଯୋଗୀ ଜଗୁ ଦେୱାନଙ୍କୁ ଇଂରେଜମାନେ ସର୍ବସାଧାରଣରେ ଫାଶୀ ଖୁଣ୍ଟରେ ଝୁଲାଇ ଦେଇଥିଲେ ।

ଫେବୃଆରୀ ୧୫, ୧୮୫୯ରେ ରାଜା ଅର୍ଜୁନ ସିଂହ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ତାଙ୍କୁ ଇଂରେଜମାନେ ଗାଦିଚ୍ୟୁତ କରି ବନାରସ ପଠାଇ ଦେଲେ । ଏହି ବିଦ୍ରୋହ ଦମନରେ ଇଂରେଜମାନଙ୍କୁ ସାହାଯ୍ୟ କରିଥିବାରୁ ଷଢ଼େଇକଲା ଓ ଖରସୁଆଁ ରାଜାଙ୍କୁ ପୋଡ଼ାହାଟ ରାଜ୍ୟର କିଛି କିଛି ଅଂଶ ପୁରସ୍କାର ସ୍ୱରୂପ ଦିଆଯାଇ ବାକି ଅଂଶକୁ ଇଂରେଜମାନେ ଖାସ କରି ନେଇଥିଲେ ।

## ବାଲିଆ ବିଦ୍ରୋହ

ଯାଜପୁର ଥାନା ବାଲିଆର ଏକ ଟପା ହିସାବରେ ଖଣ୍ଡାୟତ ସମାଜର ପ୍ରସିଦ୍ଧି ରହିଛି । କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ବଂଶଧର ବାଲିଆର ଜମିଦାର ରାମକୃଷ୍ଣ ସାମନ୍ତସିଂହାର ୧୮୫୭ର ରାଷ୍ଟ୍ର ବିପ୍ଳବରେ ଅଂଶଗ୍ରହଣ କରିଥିଲେ । ତାଙ୍କୁ ଓ ତାଙ୍କ ମୁଖ୍ୟ ସହଯୋଗୀ ଦୀନବନ୍ଧୁ ମହାପାତ୍ର ଓ ଉପେନ୍ଦ୍ର ଜେନାଙ୍କୁ ବନ୍ଦୀ କରି କାରାରୁଦ୍ଧ କରା ଯାଇଥିଲା ।

ପରେ ଉପେନ୍ଦ୍ର ଜେନା ମୁକ୍ତ ହୋଇଥିଲେ ମଧ୍ୟ ରାମକୃଷ୍ଣ ସାମନ୍ତସିଂହାର ଓ ଦୀନବନ୍ଧୁ ମହାପାତ୍ର ପାଞ୍ଚ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ପାଇଥିଲେ । ସାମନ୍ତସିଂହାରଙ୍କ ସମସ୍ତ ସଂପତ୍ତି ବାଜ୍ୟାପ୍ତ ହୋଇଥିଲା । ନଭେମ୍ବର ୧୮୫୮ରେ ରାଜକ୍ଷମା ଘୋଷଣା ହେବା ଫଳରେ ସେମାନେ ମୁକ୍ତି ପାଇଥିଲେ ।

## ଚାଖୀ ଖୁଣ୍ଟିଆ

୧୮୫୭ର ଗଣବିପ୍ଳବରେ ଜଣେ ଅନ୍ୟତମ ସାରଥି ଭାବରେ ଚାଖୀ ଖୁଣ୍ଟିଆଙ୍କ ଆବିର୍ଭାବ ହୋଇଥିଲା । ସେ ଥିଲେ ପୁରୀ ଜଗନ୍ନାଥଙ୍କ ପୂଜାପଣ୍ଡା । ସିପାହୀମାନଙ୍କ ପଣ୍ଡା ଭାବରେ ସେମାନଙ୍କ ସହ ତାଙ୍କର ଅତି ଘନିଷ୍ଠ ସଂପର୍କ ରହିଥିଲା ।

ଲକ୍ଷ୍ନୌର ବିଦ୍ରୋହୀ ସିପାହୀମାନଙ୍କ ସହ ସେ ସଂପୃକ୍ତ ଥିବା ସନ୍ଦେହରେ ତାଙ୍କୁ ବିହାରରେ ବନ୍ଦୀ କରାଯାଇଥିଲା । ତାଙ୍କର ସମସ୍ତ ସଂପତ୍ତି ବାଜ୍ୟାପ୍ତ ହୋଇଥିଲା । ସରକାରୀ କ୍ଷମା ଘୋଷଣା ପରେ ତାହା ତାଙ୍କୁ ଫେରାଇ ଦିଆ ଯାଇଥିଲା ।

ବିଦ୍ରୋହ ଦମନ ନ ହେଲା ପର୍ଯ୍ୟନ୍ତ ଚାଖୀ ଖୁଣ୍ଟିଆ ନାମରେ ଲୋକପ୍ରିୟ ପ୍ରବାଦ ପୁରୁଷ ଚନ୍ଦନ ହଜୁରୀଙ୍କ ଉପରେ ସରକାରଙ୍କର ତୀକ୍ଷଣ୍ ଦୃଷ୍ଟି ରହିଥିଲା ।

ସେ ବନ୍ଦୀଥିଲା ବେଳେ ତାଙ୍କର କୌଣସି ଖବର ଅନ୍ତର ନ ପାଇ ତାଙ୍କ ପତ୍ନୀ ସିନ୍ଦୂର, କଜ୍ଜଳ ମାଖିବା ବନ୍ଦ କରି ଅପେକ୍ଷାରେ ରହିଥିଲେ । ସେ ଫେରିବା ନେଇ ଓଡ଼ିଆରେ ଏକ ଡଗ ରହିଛି :

''ନଈରେ ବାଲିଆ ଚହଟିଲା
ସିନ୍ଦୂର, କଜ୍ଜଳ ନାଆଲୋ ରାଣ୍ଡ
ପୁଣି ଚାଖିଆ ଲେଉଟିଲା''

## ପ୍ରଜାମେଳି

ପ୍ରଜାମାନଙ୍କ ଉପରେ ହେଉଥିବା ବେଠି, ବେଗାରି, ଅନ୍ୟାୟ କର ଆଦାୟ ଜନିତ ଜୋର, ଜୁଲମ, ଅତ୍ୟାଚାରର ମଧ୍ୟଯୁଗୀୟ ସାମନ୍ତବାଦୀ ଶୋଷଣର ମୁଖ୍ୟ କାରପଟଦାର ଥିଲା ଇଂରେଜ ଶାସନ । ଏହି ଶାସନ ବିରୁଦ୍ଧରେ ପ୍ରଜାମାନଙ୍କର ଅବଦମିତ କ୍ରୋଧ ବିଭିନ୍ନ ସ୍ଥାନରେ 'ପ୍ରଜାମେଳି' ଭାବରେ ବିସ୍ଫୋରିତ ହୋଇଥିଲା ।

କେଉଁଝରର ଆଦିବାସୀ ଭୂୟାଁମାନଙ୍କ ମଧ୍ୟରେ ସଙ୍ଗଠିତ ପ୍ରଜା ମେଳି 'ରତନା ମେଳି' ଭାବରେ ପରିଚିତ । ୧୮୬୩ ମସିହାରେ ରତନା ନାୟକଙ୍କ ନେତୃତ୍ୱରେ ପ୍ରଥମ ମେଳି ହୋଇଥିଲା । ଏହି ମେଳି ଊନବିଂଶ ଶତାବ୍ଦୀର ଏକ ଉଲ୍ଲେଖନୀୟ ଘଟଣା ତଥା ପରବର୍ତ୍ତୀ ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନର ଇତିହାସର ଏକ ଆଦ୍ୟ ରକ୍ତରଂଜିତ ଅଧ୍ୟାୟ ।

ଅଗଷ୍ଟ ୧୮୬୮ରେ ଭୂୟାଁ ସରଦାର ରତନା ନାୟକ ଗିରଫ ହୋଇଥିଲେ । ପରେ ମେଳି ଅଭିଯୋଗରେ ରତନା ନାୟକ, ନନ୍ଦ ନାୟକ, ରତୋୟା କୋହ୍ଲ, ଟୁନି ରଣା ପ୍ରମୁଖ ୫ ଜଣ ବ୍ରିଟିଶ ସରକାର ଆଗରେ ମୁଣ୍ଡ ନୁଆଇବାକୁ ମନା କରି ଫାଶୀ ଖୁଣ୍ଟରେ ଝୁଲି ଯାଇଥିଲେ । ୨୭ ଜଣ ବିଦ୍ରୋହୀଙ୍କୁ କଳାପାଣି ଦଣ୍ଡରେ ଦଣ୍ଡିତ କରା ଯାଇଥିଲା ।

ଏମାନଙ୍କ ତ୍ୟାଗ ଭୂୟାଁମାନଙ୍କ ମଧ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଏତିକି ବେଳେ ଆଦିବାସୀମାନଙ୍କ ଉପରେ ରାଜା ଧନୁର୍ଜୟଙ୍କ ଅତ୍ୟାଚାର ବୃଦ୍ଧି ପାଇଲା । ୧୮୯୧ରୁ ୧୮୯୩ ପର୍ଯ୍ୟନ୍ତ ଏହି ବିଦ୍ରୋହ ଧରଣୀଧର ନାୟକଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲା ।

ଧରଣୀଧର ଜାନୁଆରୀ ୧୮୯୧ରେ ସରକାରଙ୍କୁ ଏକ ସ୍ମାରକପତ୍ର ଦେଇ ଭୂୟାଁମାନଙ୍କ ଉପରେ ହେଉଥିବା ରାଜ ଅତ୍ୟାଚାର ବିରୁଦ୍ଧରେ ଅଭିଯୋଗ କଲେ । ହେଲେ ତାର କିଛି ସୁଫଳ ମିଳିଲା ନାହିଁ । ଏଥିରେ ବ୍ୟଥିତ ହୋଇ ସେ ଭୂୟାଁ, ଜୁଆଙ୍ଗ ଆଦି ଆଦିବାସୀମାନଙ୍କ ଏକ ସଭା ପଓ୍ୱାରୀ ଗ୍ରାମରେ ଆହ୍ୱାନ କଲେ । ରାଜା ଅନେକ ଚେଷ୍ଟା କରି ମଧ୍ୟ ତାଙ୍କୁ ଗିରଫ କରି ପାରିଲେ ନାହିଁ ।

ମେ ୨, ୧୮୯୧ରେ କେଉଁଝର, ବଣାଇଁ ଓ ସିଂହଭୂମିର ପ୍ରାୟ ବାର ଶହ ଆଦିବାସୀ ଚକମପୁର ଦଣ୍ଡପାଟ ଲୁଣ୍ଠନ କରି ବହୁ ପୁଲିସ ଓ ପାଇକମାନଙ୍କୁ ବନ୍ଦୀ କଲେ । ଏହା ପରେ ଧରଣୀଧର ସହ ଅନ୍ୟ କେକେତ ନେତା କାଳିକାପ୍ରସାଦ ଦଣ୍ଡପାଟରେ ପ୍ରାୟ ପାଞ୍ଚ ଶହ ଆଦିବାସୀଙ୍କୁ ସଙ୍ଗଠିତ କଲେ । ଏମାନଙ୍କ ସଂଖ୍ୟା ୨୦୦କୁ ବୃଦ୍ଧି ପାଇଲା । ଏହା ଦେଖି ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଗଡ଼ରୁ ଆନନ୍ଦପୁରକୁ ପଳାୟନ କଲେ ଓ ଇଂରେଜମାନଙ୍କ ସାହାଯ୍ୟ ଭିକ୍ଷା କଲେ । ଏଥିରେ ତାଙ୍କୁ ଦେଓ୍ୱାନ ବ୍ୟାସକବି ଫକୀର ମୋହନ ସେନାପତି ସାହାଯ୍ୟ କରିଥିଲେ ।

ଇଂରେଜଙ୍କଠୁ ସେ ଆଶ୍ୱାସନା ପାଇ ଫେରିଲା ବେଳକୁ ବିଦ୍ରୋହୀମାନେ କେଉଁଝର ଗଡ଼ ଦଖଲ କରି ନେଇଥିଲେ । ହେଲେ ସେମାନେ ରାଜ ପ୍ରସାଦରେ ପ୍ରବେଶ କରିପାରି ନ ଥିଲେ ।

ଫକୀର ମୋହନ ଦଳେ ପାଇକ ନେଇ ରାଣୀ ଓ ରାଜପରିବାରକୁ ଉଦ୍ଧାର କରିବାକୁ ଗଲା ବେଳେ ବିଦ୍ରୋହୀମାନଙ୍କ ହାତରେ ବନ୍ଦୀ ହେଲେ । ତାଙ୍କୁ ରାଇସୁଆଁ ଗିରି ଦୁର୍ଗକୁ ନିଆ ଗଲା । ଫକୀର ମୋହନ ତାଙ୍କ କୂଟନୀତି ବଳରେ ବିଦ୍ରୋହୀ ଧରଣୀଧରଙ୍କ ମନ୍ତ୍ରୀ ହେଲେ । ମନ୍ତ୍ରୀ ଭାବରେ ସେ ଯେତେ ବିଶ୍ୱସ୍ତତା ପ୍ରକାଶ କଲେ ପରେ ଭିତରେ ଭିତରେ ସେତିକି ବିଶ୍ୱାସଘାତକତା କରି ତାଙ୍କୁ ଇଂରେଜମାନଙ୍କ ହାତରେ ଧରାଇ ଦେବାକୁ ଗୁପ୍ତ ଉଦ୍ୟମ ଚଳାଇଲେ । ଏହାର ବଡ଼ ପ୍ରମାଣ ତାଙ୍କ ଦ୍ୱାରା ଲିଖିତ ସେ ବିଖ୍ୟାତ ଚିଠି :

'' ଭୋଳାନାଥ ଖମାରିଆ ଜାଣିବୁ । ରାଣୀଙ୍କ ପୁତ୍ର ସକାଶେ ଅତ୍ୟନ୍ତ ଆବଶ୍ୟକ । ଶହେ ହେଲେ ପାନ ଓ ଦୁଇଶହ ଗୁଆ ପଠାଇବୁ । ଉତ୍ତର ଦିଗରୁ ମାହ ରା କରି ଆଖୁବାଡ଼ିରେ ପାଣି ମଡ଼ାଇବୁ । ନହିଲେ ଆଖୁବାଡ଼ି ବିନାଶ ଗଲା ବୋଲି ଜାଣିବୁ ।''

ଇଂରେଜମାନଙ୍କ ନ ପହଞ୍ଚିଲା ପର୍ଯ୍ୟନ୍ତ ସେ ବିଭିନ୍ନ ଆଳରେ ଭୂୟାଁମାନଙ୍କ ଗଡ଼ ଆକ୍ରମଣକୁ ବିଳମ୍ବିତ କରି ଚାଲିଲେ ।

ଇତମଧ୍ୟରେ ଇଂରେଜ ସେନାପତି କେପଟେନ୍ ତ'ସନଙ୍କ ନେତୃତ୍ୱରେ ଇଂରେଜ ସେନାବାହିନୀ କେଉଁଝରର ଆକ୍ରମଣ କରି ରାଇସୁଆଁ ଯାତ୍ରା କଲେ । ଏଠାରେ ମଧ୍ୟ ଫକୀର ମୋହନ ଇଂରେଜ ସେନାପତିଙ୍କୁ ଦୂରରୁ ଦେଖି ବିଦ୍ରୋହୀମାନେ ଆକ୍ରମଣ ଉଦ୍ୟମ କଲା ବେଳେ ତାଙ୍କୁ ମହାରାଣୀ ବିଷ୍ଣୁପ୍ରିୟା ଦେବୀଙ୍କ ଭୃତ୍ୟ ଏବଂ ସେ ମହାରାଣୀ ପୁତ୍ର ଧରଣୀଧରଙ୍କୁ ଅଭିନନ୍ଦନ ଜଣାଇବାକୁ ଆସୁଥିବା ପ୍ରକାଶ କଲେ । ନିଜକୁ ମହାରାଣୀଙ୍କ ପୁତ୍ର ବୋଲାଉଥିବା ଧରଣୀଧର ନିଜ ବିଶ୍ୱସ୍ତ ମନ୍ତ୍ରୀଙ୍କ ବିଶ୍ୱାସଘାତକତାର ଟେର ପାଇ ପାରିଲେ ନାହିଁ । ସରଳବିଶ୍ୱାସୀ ଧରଣୀଧର ଏକଥା ଜାଣି ନିଜେ ଅଶ୍ୱପୃଷ୍ଠରେ ତାଙ୍କୁ ପାଛୋଟି ଆଣିବାକୁ ଯାଇ ସହଜରେ ଇଂରେଜ ହାତରେ ବନ୍ଦୀ ହେଲେ ।

ଇତିମଧ୍ୟରେ ବିଦ୍ରୋହ ଦମନ ପାଇଁ ଇଂରେଜବାହିନୀ ଢେଙ୍କାନାଳ, ପାଲ୍ଲାହଡ଼ା, ବାମଣ୍ଡା, ସିଂହଭୂମି, ମୟୂରଭଞ୍ଜକୁ ମଧ୍ୟ ପହଞ୍ଚି ଯାଇଥିଲେ । ତଥାପି ଇଂରେଜ ସେନାପତି ମାତ୍ର ୩୬ଜଣ ଭୂୟାଁ ବିଦ୍ରୋହଙ୍କୁ ଗିରଫ କରି ପାରିଲେ ।

ଇଂରେଜ ସେନାପତିଙ୍କ ସହ ରାଜା ଗଡ଼କୁ ଫେରିଲା ବେଳେ ଭୂୟାଁମାନଙ୍କ ପ୍ରବଳ ଆକ୍ରମଣର ଶିକାର ହୋଇଥିଲେ । ଏହି ଖଣ୍ଡ ଯୁଦ୍ଧରେ ୭ଜଣ ବିଦ୍ରୋହୀ ନିହତ ହୋଇଥିଲେ ।

ଜୁନ୍ ୧୮୯୧ରେ ଧରଣୀଧରଙ୍କୁ ୭ବର୍ଷ ସଶ୍ରମ କାରାଦଣ୍ଡାଦେଶ ହେଲା । ତାଙ୍କୁ କଟକ ଜେଲରେ ରଖାଗଲା । କେତେକ ଭୂୟାଁ ତାଙ୍କ ମୁକ୍ତି ପାଇଁ ଦାର୍ଜିଲିଂ ପର୍ଯ୍ୟନ୍ତ ଯାତ୍ରା କରି ବିଫଳ ହେଲେ । ଫଳରେ ୧୮୯୩ରେ ଆଉ ଏକ ଭୟାବହ ବିଦ୍ରୋହ ଦେଖାଗଲା । ୧୮୯୭ରେ ଧରଣୀଧର ମୁକ୍ତି ପାଇଲେ ଓ ଭରଣପୋଷଣ ପାଇ କଟକରେ ଅବସ୍ଥାନ କଲେ ।

## ଗାଙ୍ଗପୁର ବିଦ୍ରୋହ

ଗାଙ୍ଗପୁର ରାଜବଂଶର ୧୮ଶ ରାଜା ରଘୁନାଥ ଶେଖର ଦେବ ପ୍ରଜାମାନଙ୍କ ଠାରୁ ନାନା ପ୍ରକାର କର ଆଦାୟ କରି ଲୋକପ୍ରିୟତା ହରାଇଥିଲେ । ଫଳରେ ୧୮୯୮ରେ ମାଡ୍ରି କାଲୋଙ୍କ ନେତୃତ୍ୱରେ ଗାଙ୍ଗପୁରରେ ଏକ ବିରାଟ ଆଦିବାସୀ ବିଦ୍ରୋହ ଦେଖା ଦେଇଥିଲା ।

ରାଜା ଏହାକୁ ଦମନ କରି ନ ପରି ଇଂରେଜ ସରକାରଙ୍କ ସାହାଯ୍ୟ ଲୋଡ଼ିଥିଲେ । ସିଂହଭୂମିର ଡେପୁଟି କଲେକ୍ଟର ଗାଙ୍ଗପୁର ଆସି ବିଦ୍ରୋହ ଦମନ କରିଥିଲେ ।

ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟମାନଙ୍କ ପରି ଓଡ଼ିଶାର ଚତୁର୍ଥ ବୃହତ୍ତମ ଗଡ଼ଜାତ ରାଜ୍ୟ ଗାଙ୍ଗପୁରର ପ୍ରଜାବର୍ଗ ସାମନ୍ତବାଦୀ ଶୋଷଣ ଓ ଉତ୍ପୀଡ଼ନରୁ ମୁକ୍ତ ନ ଥିଲେ । ଏହା ଫଳରେ

୧୮୯୭ରେ ସ୍ୱେଚ୍ଛାଚାରୀ ରାଜତନ୍ତ୍ର ବିରୁଦ୍ଧରେ ଗାଙ୍ଗପୁରରେ ପ୍ରଥମେ ଜନଜାଗରଣ ମୁଣ୍ଡ ଟେକିଲା । ଆଦିବାସୀ ଗୌନ୍ତିଆ ମାଦ୍ରୀ କାଲୋ ଏହାର ନେତୃତ୍ୱ ନେଲେ । ପ୍ରଶାସନିକ ନଥିପତ୍ରରେ ଏହାକୁ ''ଗୌନ୍ତିଆ ମେଳି'' କହି ଏହାର ଗୁରୁତ୍ୱହ୍ରାସ କରିବାର ଅପଚେଷ୍ଟା କରାଯାଇଛି ।

ରାଜାଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରହିଥିବା ରାଜସ୍ୱ ଖାଲସା ଗ୍ରାମମାନଙ୍କରେ ଶାନ୍ତିଶୃଙ୍ଖଳା ରକ୍ଷା କରିବା ସହ ପ୍ରଜାଙ୍କଠାରୁ ମାଲଗୁଜାରି ଓ ଅନ୍ୟାନ୍ୟ ରାଜସ୍ୱ ଆଦାୟ କରି ରାଜକୋଷରେ ପଇଠ କରିବା ଦାୟିତ୍ୱ ଗାଁ ମୁଖିଆ ଗୌନ୍ତିଆମନଙ୍କ ଉପରେ ନ୍ୟସ୍ତ ଥିଲା । ଏଥିପାଇଁ ସେମାନେ କିଛି 'ଭୋଗରା' ବା ନିଷ୍କର ଭୂମିବୃତ୍ତି ଭୋଗ କରୁଥିଲେ । ଆଦାୟ ଖଜଣାର ଶତକଡ଼ା ୨୫ ଭାଗ ମଧ୍ୟ ସେମାନଙ୍କ ମାହାସୁଲ ରହୁଥିଲା । ଏହି ବୃତ୍ତି ଥିଲା ପାଞ୍ଚବର୍ଷୀୟ । ପାଞ୍ଚ ବର୍ଷ ପରେ ଏକ ମୋଟା ଅଙ୍କର ନଜରାନା ଦେଇ ରାଜାଙ୍କ ଦରବାରରେ ତାହାର ନବୀକରଣ କରାଯାଉଥିଲା । ଏହି ସମ୍ମାନଜନକ ଓ ଲାଭଦାୟକ ପଦ ପାଇଁ ନଜରାନା ଦେବା କ୍ଷେତ୍ରରେ ପ୍ରତିଯୋଗିତା ଲାଗି ରହିଥିଲା ।

ବାମଣ୍ଡା ଓ ବ୍ରିଟିଶ ଶାସନାଧୀନ ସମ୍ବଲପୁର ତୁଳନାରେ ଗାଙ୍ଗପୁରର ଗୌନ୍ତିଆମାନେ ଗୌନ୍ତିଆରୀ ଅଞ୍ଚଳର ସମଗ୍ର ଭୂମିର ଏକପଞ୍ଚମାଂଶରୁ ଅଧିକ ଭୋଗରା ବର୍ତ୍ତନୀ ଭାବରେ ଭୋଗ କରୁଥିଲେ । ଫଳରେ ପ୍ରତିବେଶୀ ଅଞ୍ଚଳର ବ୍ରାହ୍ମଣ, ତେଲି, ଅଘରିଆ ଓ ଅନ୍ୟ ସଂପ୍ରଦାୟର ଧନୀ ଲୋକମାନେ ଆଦିବାସୀ ଗୌନ୍ତିଆମାନଙ୍କଠୁ ବେଶୀ ନଜରାନା ଦେଇ ସେ ସବୁ ହାସଲ କରି ମନଇଛା କର ଆଦାୟ କରିବାକୁ ଲାଗିଲେ ।

ରାଜା ଚନ୍ଦ୍ରଭାନୁ ଶେଖର ଦେଓଙ୍କ ବିଧବା ପାଟରାଣୀ କୁଂଜମଣି କୁମାରୀଙ୍କ ଦୟାରୁ କକା ଗଜରାଜ ଶେଖର ଦେଓଙ୍କୁ ବାଜିମାତ୍ କରି ରାଜବଂଶର ବିରାଦରି ବିରିବିରା ଖୋରାକ ପୋଷାକଦାର ପରିବାରରୁ ଆସି ରାଜା ହୋଇଥିବା ରଘୁନାଥ (୧୮୭୧-୧୯୧୭)ଙ୍କ ଅର୍ଥ ଲାଳସାରେ ସୀମା ନ ଥିଲା । ରାଜ୍ୟର ଆୟ ବୃଦ୍ଧି ତାଙ୍କର ନିଶା ଥିଲା । ସେ ଶୁଆଗଡ଼କୁ ରାଜଧାନୀ କରି ସୁନ୍ଦରଗଡ଼ ନାମ ଦେଇଥିଲେ ଓ ତାକୁ ସୁନ୍ଦର କରି ସଜ୍ଜିତ କରାଇଥିଲେ ।

ତାଙ୍କର ନାଗପୁରୀ ଘୋଡ଼ା, ମୂଲ୍ୟବାନ ବିଳାସ ସାମଗ୍ରୀ ଓ ଭବ୍ୟ ରାଜପ୍ରସାଦ ନିର୍ମାଣ ପାଇଁ ପ୍ରଚୁର ଧନ ଆବଶ୍ୟକ ଥିଲା । ଏଥିପାଇଁ ସେ କେତେକ ଗାଁରେ 'ନଜରକୁତ୍ ବନ୍ଦୋବସ୍ତ' ପ୍ରଚଳନ କଲେ । ତା'ସହିତ ଦେଓ୍ୱାନୀ ରାଜସ୍ୱ ୫୨୦୦ଟଙ୍କାକୁ ବଢ଼ାଇ ୧୫,୦୦୦ଟଙ୍କାରେ ପରିଣତ କଲେ ।

ସମ୍ବଲପୁର ଅଞ୍ଚଳର ବ୍ରାହ୍ମଣ, ଅଘରିଆ, ତେଲି ସଂପ୍ରଦାୟଠାରୁ ଅଧିକା ନଜରାନା ମିଳି ପାରିବ ବୋଲି ସେ ୧୮୯୫ରୁ ଗୌନ୍ତିଆମାନଙ୍କ ମିଆଦ ପୂରିଲା କ୍ଷଣି ସମସ୍ତ ଆଦିବାସୀ ଗୌନ୍ତିଆମାନଙ୍କୁ ଉଚ୍ଛେଦ କଲେ ଓ ଏମାନଙ୍କୁ ଗୌନ୍ତି ପ୍ରଦାନ କଲେ ।

ଆଦିବାସୀଙ୍କ ମଧ୍ୟରେ ଅସନ୍ତୋଷ କୁହୁଳିବାକୁ ଲାଗିଲା । ଠିକ୍ ଏହି ସମୟରେ ବିହାରର ସୀମାନ୍ତ ଅଞ୍ଚଳରେ ''ଧରତୀ ଆବ୍ବା'' ବିର୍ସା ମୁଣ୍ଡାଙ୍କ ''ଆବୁଆ ରାଜ'' ଆନ୍ଦୋଳନ ଡାକରା ପାହାଡ଼, ବଣ, ଭୂଇଁକୁ ଥରାଇ ଦେଇଥିଲା । ତାଙ୍କର ସ୍ଲୋଗାନ୍ ବ୍ରିଟିଶ୍ ରାଜକୁ ଦୋହଲାଇ ଦେଇଥିଲା ।

''ଆବୁଆ ରାଜ ଇତେ ଯାନା, ମହାରାନୀ ରାଜ ତୁଣ୍ଡୁ ଯାନା ।''

ଚାଲ ଆମେ ରାଣୀର ଶାସନକୁ ଖତମ୍ କରି ଆମର ଶାସନ ପ୍ରତିଷ୍ଠା କରିବା

ଏହା ଆଦିବାସୀମାନଙ୍କ ମଧ୍ୟରେ ଅଦମ୍ୟ ପ୍ରାଣଶକ୍ତି ସଂଚାର କଲା । ସେମାନେ ମାଦ୍ରୀ କାଲୋଙ୍କ ନେତୃତ୍ୱରେ ବିଦ୍ରୋହରେ ଝାସ ଦେଲେ । ହେଁଲେ ଗାଙ୍ଗପୁର ଆସି ସିଂହଭୂମି ଡେପୁଟି କଲେକ୍ଟର ଏହି ବିଦ୍ରୋହ ଦମନ କଲେ ଓ ମାଦ୍ରୀ କାଲୋଙ୍କୁ ଆଜୀବନ କାରାଦଣ୍ଡ ଦିଆଗଲା ।

ହେଲେ ଗାଙ୍ଗପୁରର ମେଳିଆ ସର୍ଦ୍ଦାର ମାଦ୍ରି କାଲୋଙ୍କୁ ଦମନ କରିବାରେ ଇଂରେଜମାନଙ୍କୁ କମ୍ କଷ୍ଟ ସ୍ୱୀକାର କରିବାକୁ ପଡ଼ି ନଥିଲା । ତାଙ୍କ ବିଦ୍ରୋହ ଦମନ କରିବାକୁ ଅଧିକା ଫୌଜ ମଗାଗଲା । ୧୮୯୧ ରେ ବେଙ୍ଗଲ-ନାଗପୁର ରେଳପଥ ନିର୍ମାଣ ସରିଥିବାରୁ ସିଂହଭୂମିରୁ ଡେପୁଟି କଲେକ୍ଟରଙ୍କ ନେତୃତ୍ୱରେ ଏକ ପ୍ଲାଟୁନ ଫୌଜ ଆସି ବିଦ୍ରୋହ ଦମନରେ ନିଯୁକ୍ତ ହେଲେ । ହେଲେ ଏଥିରେ ଅସଫଳ ହୋଇ ଇଂରେଜମାନେ କୂଟନୀତିର ଆଶ୍ରୟ ନେଇ କୁରଙ୍ଗା ଗ୍ରାମର ଗୌନ୍ତିଆ ତଥା ମାଦ୍ରୀଙ୍କ ଅତ୍ୟନ୍ତ ବିଶ୍ୱସ୍ତ ବନ୍ଧୁଙ୍କୁ ହାତକରି ବିଶ୍ୱାସଘାତକତା ନୀତିରେ ତାଙ୍କୁ ବନ୍ଦୀ କରାଯାଇଥିଲା ।

## ବାମଣ୍ଡା ବିଦ୍ରୋହ

୧୮୧୭ରେ ତୃତୀୟ ମରହଟ୍ଟା ସମର ପରେ ସମ୍ବଲପୁରର ଗଡ଼ଜାତ ରାଜ୍ୟମାନଙ୍କରେ ବ୍ରିଟିଶ ଆଧିପତ୍ୟ ପ୍ରତିଷ୍ଠିତ ହେଲା । ବାଂମଣ୍ଡା ବ୍ରିଟିଶ ସାର୍ବଭୌମତ୍ୱରେ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା ।

ଆକାର, ଜନସଂଖ୍ୟା ଓ ସମ୍ବଳ ଦୃଷ୍ଟିରୁ ଅଲଗା ଅଲଗା ହେଲେ ମଧ୍ୟ ବାମଣ୍ଡା, ପାଟଣା ଓ କଳାହାଣ୍ଡି ଗଡ଼ଜାତ ମଧ୍ୟରେ ଏକ ଅସମ୍ବେଦନଶୀଳ ଅତ୍ୟାଚାରୀ ରାଜଶାସନ ଅଧୀନରେ ସ୍ଥାନୀୟ କନ୍ଧମାନଙ୍କ ଅସନ୍ତୋଷ ଲାଗି ରହିଥିଲା ।

ବାମଣ୍ଡା, ତାର ପ୍ରାୟ ଚାରି ଶହ ବର୍ଗମାଇଲ କ୍ଷେତ୍ରଫଳ ଦୃଷ୍ଟିରୁ ଛୋଟିଆ ରାଜ୍ୟ ଥିଲା ଓ ଏହାର ଏକ ଷଷ୍ଠମାଂଶରେ କୃଷି କରାଯାଉଥିଲା । ନିଖୋଜ ବାମଣ୍ଡାର ପାର୍ବତ୍ୟ ଅଞ୍ଚଳରେ ପ୍ରାୟ ୨୪୦୦ଟି କ୍ଷୁଦ୍ର ପଲ୍ଲିରେ ପ୍ରାୟ ୪୨୦୦ କନ୍ଧ ପୁରୁଷ ବସବାସ କରୁଥିଲେ । ରାଜାଙ୍କୁ ଏକ ନିର୍ଦ୍ଧାରିତ ପେଶଗି ବା ନଜରାନା ଉପହାର ଦେଲା ପରେ ଆଉ ଅଧିକା ସଂପର୍କ କିଛି ରହୁ ନ ଥିଲା ।

ହେଲେ ସ୍ଥାନୀୟ ଜମିଦାରମାନଙ୍କ ସହ ରାଜାଙ୍କ ନିୟମିତ ଶତ୍ରୁତା ରହୁଥିଲା । ତେଣୁ, କନ୍ଧ ଅଞ୍ଚଳରେ ଶାସନ କରିବା ରାଜାଙ୍କ ପକ୍ଷରେ କାଠିକର ପାଠ ଥିଲା । କନ୍ଧ ଚାଷୀ ଜମିଦାର ପରିବାରକୁ କନ୍ଧ ସମର୍ଥନ ଦେଉଥିବାରୁ ସେମାନଙ୍କ ଶକ୍ତି ବୃଦ୍ଧି ପାଇ ଚାଲିଥିଲା । ଜମିଦାରମାନଙ୍କ ବିରୁଦ୍ଧରେ ଯେ କୌଣସି ପଦକ୍ଷେପ କନ୍ଧମାନଙ୍କ ଦ୍ୱାରା ପ୍ରତିହତ ହେଉଥିଲା ।

ଯେତେଦିନ ଯାଏ ଘଟଣା ଗୁରୁତର ଆକାର ଧାରଣ କରି ଆଇନ ଶୃଂଖଳା ପରିସ୍ଥିତି ସୃଷ୍ଟି କରୁ ନ ଥିଲା; ବ୍ରିଟିଶ ସରକାର ବାମଣ୍ଡା ରାଜା ଓ ଜମିଦାରମାନଙ୍କ ବିବାଦରେ ମୁଣ୍ଡ ପୂରାଉ ନଥିଲେ ।

ପୁନଶ୍ଚ କନ୍ଧମାନେ ଥିଲେ ଅତ୍ୟନ୍ତ ସ୍ୱାଧୀନତାପ୍ରିୟ । ମୁଖିଆ ପ୍ରତି ସେମାନଙ୍କ ଅନ୍ଧ ଅନୁରକ୍ତି ଥିଲା । ତେଣୁ ଏକ ଅଜ୍ଞାତ ଅନ୍ଧାରୀ ଅଞ୍ଚଳର ସ୍ୱତନ୍ତ୍ର ଜାତି ଉପରେ ରାଜନୈତିକ ବ୍ୟବସ୍ଥା ପାଇଁ ସାମରିକ ପଦକ୍ଷେପ ଗ୍ରହଣ ଇଂରେଜମାନଙ୍କ ପକ୍ଷରେ କମ୍ ଅସୁବିଧାଜନକ ନଥିଲା ।

ସେହିପରି ଜମିଦାରମାନଙ୍କ ବ୍ରିଟିଶ ସରକାର ପ୍ରତି କୌଣସି ରକମ ଆନୁଗତ୍ୟ ନଥିଲା । ବାମଣ୍ଡା ଗଙ୍ଗବଂଶର ୨୬ଶ ରାଜା ବ୍ରଜସୁନ୍ଦର ଦେବ ତ୍ରିଭୁବନ ଦେବଙ୍କ ସମୟରେ ୧୮୫୭ରେ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଦେଖା ଦେଇଥିଲା । ସୁରେନ୍ଦ୍ରଙ୍କ ପ୍ରତି ରାଜାଙ୍କ ଗୋପନ ସହାନୁଭୂତି ରହିଥିଲେ ମଧ୍ୟ ସେ ଇଂରେଜମାନଙ୍କୁ ଖୋଲା ସାହାଯ୍ୟ, ସମର୍ଥନ କରୁଥିଲେ ।

ଏହି ସମୟରେ ଜମିଦାର କୃପାସିନ୍ଧୁ, କୃଷ୍ଣ ବେହେରା ପ୍ରମୁଖଙ୍କ ନେତୃତ୍ୱରେ ବାମଣ୍ଡାରେ ସୁରେନ୍ଦ୍ର ସାଏଙ୍କ ସମର୍ଥନରେ ବିଦ୍ରୋହ ଦେଖା ଦେଇଥିଲା । ସେମାନେ ସୁରେନ୍ଦ୍ରଙ୍କୁ ସାହାଯ୍ୟ କରୁଥିଲେ ।

ଏହା ଫଳରେ ସରକାର କେତେକ କ୍ଷେତ୍ରରେ ଜମିଦାରୀ ଉଚ୍ଛେଦ କରି ନେଇଥିଲେ ମଧ୍ୟ ଅବିଳମ୍ବେ ସେଗୁଡ଼ିକ ପୁଣି ଫେରାଇ ଦଂଆ ଯାଇଥିଲା ।

୧୮୬୮ରେ ସରକାରଙ୍କ ଏ ନୀତି ଭୟଙ୍କର ଭାବରେ ବିଫଳ ହେଲା । ସେତେବେଳେ ଜମିଦାର କୃପାସିନ୍ଧୁଙ୍କ ବିଦ୍ରୋହ ରାଜଦ୍ରୋହର ଚୂଡ଼ାନ୍ତ ସ୍ତରରେ ପହଞ୍ଚିଥିଲା ।

କୃପାସିନ୍ଧୁ ନିଜ ସହଯୋଗୀ ଓ ସୈନିକମାନଙ୍କୁ ନେଇ ରାଜାଙ୍କ ସମର୍ଥନକାରୀ ଜମିଦାରମାନଙ୍କ ବିରୁଦ୍ଧରେ କଠୋର ପଦକ୍ଷେପ ନେଲେ । ଗାଁ ପରେ ଗାଁ ଲୁଟ୍ କରି ଚାରିଆଡ଼େ ଆତଙ୍କରାଜ ଖେଳାଇ ଦେଲେ । ରାଜା ଅନନ୍ୟୋପାୟ ହୋଇ ପୋଲିସ ସାହାଯ୍ୟ ପାଇଁ ବ୍ରିଟିଶ ଅଧିକାରୀମାନଙ୍କୁ ବାରମ୍ବାର ନିବେଦନ କଲେ ।

ଫଳରେ ସରକାର ଅନାଗ୍ରହ ସତ୍ତ୍ୱେ ହସ୍ତକ୍ଷେପ କରିବାକୁ ବାଧ୍ୟ ହେଲେ । ଏ ହସ୍ତକ୍ଷେପ ଆକ୍ରମଣାତ୍ମକ ନହୋଇ ଆତ୍ମରକ୍ଷାତ୍ମକ ଥିଲା । ଚିଫ କମିଶନର ଇଂରେଜ ସୈନ୍ୟମାନଙ୍କୁ ପାହାଡ଼ର ବେଶୀ ଭିତରକୁ ନ ପଶିବାକୁ କି ବେଶୀ କ୍ଷୟକ୍ଷତି ନ ଘଟାଇବାକୁ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ ।

ଇଂରେଜଙ୍କ ନିର୍ଦ୍ଦେଶରେ ରାଜା ବ୍ରଜସୁନ୍ଦର ଦେବ ନାନା ପ୍ରକାର ଉଦ୍ୟମ କରି ମଧ୍ୟ କୃଷ୍ଣ ବେହେରାଙ୍କୁ ଗିରଫ କରି ପାରିନଥିଲେ ।

ଚିଫ କମିଶନରଙ୍କ ଉପରୋକ୍ତ ନିର୍ଦ୍ଦେଶ ଫଳରେ ପୋଲିସ କାର୍ଯ୍ୟାନୁଷ୍ଠାନ କେବଳ ରାଜନୈତିକ କାର୍ଯ୍ୟାନୁଷ୍ଠାନ ସହ ସଂପୃକ୍ତ ଥିଲା । ଆତ୍ମସମର୍ପଣ କରିବାକୁ ଆଗ୍ରହୀ କନ୍ଧମାନଙ୍କୁ ରାଜକ୍ଷମା ଏହାର ଅଂଶବିଶେଷ ଥିଲା ।

ଜମିଦାରମାନଙ୍କୁ ଆତ୍ମସମର୍ପଣ କରିବାକୁ ବାଧ୍ୟ କରିବା ନିମନ୍ତେ ସେମାନଙ୍କ ସ୍ତ୍ରୀ, ସଂପର୍କୀୟମାନଙ୍କୁ ଧରି ନେଇ ରାଜାଙ୍କ ପଣବନ୍ଦୀ ଭାବରେ ରଖା ଯାଉଥିଲା ।

କୃପାସିନ୍ଧୁଙ୍କଠାରୁ କନ୍ଧମାନଙ୍କୁ ବିଚ୍ୟୁତ କରିବା ଓ ରଜାଙ୍କ ସହ ଆଦିବାସୀମାନଙ୍କ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ ଏ କାର୍ଯ୍ୟକ୍ରମର ଅଂଶ ଥିଲା ।

ଛତିଶଗଡ଼ କମିଶନର ମେଜର କମ୍ବର୍ଲିଜ ରାଜାଙ୍କ ସହ ମିଶି ବିଦ୍ରୋହୀ କନ୍ଧମାନଙ୍କୁ ଆୟତ୍ତ କଲେ । କନ୍ଧମାନଙ୍କୁ ବିଶ୍ୱାସ ହେଲା ଯେ ବ୍ରିଟିଶ ସରକାରଙ୍କ ସୁରକ୍ଷା ଓ ସହଯୋଗପ୍ରାପ୍ତ ରାଜାଙ୍କ ବିରୁଦ୍ଧରେ ଲଢ଼େଇ କରି ସେମାନଙ୍କ ବିଜୟ ଆଉ ସମ୍ଭବପର ନୁହେଁ ।

ବ୍ରିଟିଶ ସରକାରଙ୍କ ଏହି ନୀତି ରାଜ୍ୟରେ ଶୀଘ୍ର ଶାନ୍ତି ଓ ବ୍ୟବସ୍ଥା ଫେରାଇ ଆଣିଲା ।

ସ୍ଥାନୀୟ ଭୂରାଜସ୍ୱ ପ୍ରଶାସନରେ ସରକାର କେତେକ ନିର୍ଦ୍ଦିଷ୍ଟ ବୁଝାମଣାମୂଳକ ବ୍ୟବସ୍ଥା ପ୍ରବର୍ତ୍ତନ କଲେ । ବାମଣ୍ଡାରେ ଉପାର୍ଜିତ ଫସଲକୁ ଚାହିଁ ରାଜସ୍ୱ ନିର୍ଦ୍ଧାରିତ

କରାଗଲା । ସେହିପରି ବୁଣାବିହନର ପରିମାଣ ବା 'ପଡ଼ନ' ଅନୁସାରେ ଅଞ୍ଚଳ ବିଭାଜନ ହେଲା । ଏ ପାରମ୍ପରିକ ପଦ୍ଧତିକୁ ମରହଟ୍ଟାମାନେ ମଧ୍ୟ ଗ୍ରହଣ କରିଥିଲେ ।

୧୮୭୭ରେ ଏକ ମାନକ ୧୦' ୫.୫'' ଲମ୍ବ ବାଉଁଶ ଦଣ୍ଡ ସାହାଯ୍ୟରେ ବାହାଲ ଜମିର ପରିମାପ କରାଯାଇଥିଲା । ମାଟିର ନିଲାମ ଓ ଉତ୍ପାଦନ ଅନୁସାରେ ଗାଁଗୁଡ଼ିକର କିସମ ନିର୍ଦ୍ଧାରିତ ହେଲା ।

ବାମଣ୍ଡାର କନ୍ଧ ଅଧ୍ୟୁଷିତ ପାର୍ବତ୍ୟ ଅଞ୍ଚଳକୁ ଏପରି ନିୟମିତ ବନ୍ଦୋବସ୍ତରୁ ମଧ ବାଦ୍ ଦିଆଯାଇଥିଲା ।

## ଅନୁଗୁଳ ବିଦ୍ରୋହ

ଅନୁଗୁଳର ରାଜା ସୋମନାଥ ଦେବଶର୍ମା ଇଂରେଜଙ୍କ ବିରୋଧରେ ମଧ ବିଦ୍ରୋହ କରିଥିଲେ । ଫଳରେ ୧୮୪୮ରେ ଅନୁଗୁଳକୁ ବ୍ରିଟିଶ୍‌ମାନେ ସାଧାରଣ ଶାସନରେ ସମ୍ମିଳିତ କରି ନେଇଥିଲେ ।

## ସ୍ୱଦେଶୀ ଆନ୍ଦୋଳନ

୧୯୦୫-୭ର ସ୍ୱଦେଶୀ ଆନ୍ଦୋଳନର ବାଣୀ ଓ ତା'ର ସାଫଲ୍ୟ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସ୍ୱାଧୀନତା ସଂଗ୍ରାମର ବହୁମୁଖୀ ଧାରାରେ ସମ୍ମିଳିତ ହୋଇ ଏକ ମହାପ୍ରବାହରେ ପରିଣତ ହୋଇଥିଲା ।

ବଙ୍ଗ ବିଭାଜନର ପ୍ରତିକ୍ରିୟା ସ୍ୱରୂପ ଦେଶରେ ବିଦେଶୀ ଦ୍ରବ୍ୟ ବର୍ଜନ ଓ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ପାଇଁ ଆନ୍ଦୋଳନ ଚାଲିଲା । ପୂର୍ବରୁ ଚରମପନ୍ଥୀ ନେତା ବାଳଗଙ୍ଗାଧର ତିଲକ, ବିପିନଚନ୍ଦ୍ର ପାଲ, ଲାଲା ଲଜପତ ରାୟ ପ୍ରମୁଖ ଭାରତର ପ୍ରାଚୀନ ସଂସ୍କୃତି ପାଇଁ ଗର୍ବ ଅନୁଭବ କରିବାକୁ ଜନସାଧାରଣଙ୍କୁ ଉତ୍ସାହିତ କରିଥିଲେ ।

ଏହି ସ୍ୱଦେଶୀ ଆନ୍ଦୋଳନ ଦେଶୀୟ ଶିଳ୍ପର ଉନ୍ନତି ପାଇଁ ଲକ୍ଷ୍ୟ ରଖିଥିଲା । ଏହାଫଳରେ ଦେଶରେ ଇଂଲଣ୍ଡର ଶିଳ୍ପଜାତ ଦ୍ରବ୍ୟର ଚାହିଦା କମିଲା । ବିଦେଶୀ ଦ୍ରବ୍ୟ ବିକ୍ରି ହେଉଥିବା ଦୋକାନଗୁଡ଼ିକ ଆଗରେ ଆନ୍ଦୋନକାରୀମାନେ ତାହା ନ କିଣିବାକୁ ଲୋକଙ୍କୁ ପ୍ରବର୍ତ୍ତାଇଲେ । ଛାତ୍ରମାନେ ଏଥିରେ ବିଶେଷ ଅଂଶଗ୍ରହଣ କରିଥିଲେ । ହଜାର ହଜାର ଆନ୍ଦୋଳନକାରୀ ଜେଲ୍ ଗଲେ । ଲାଠି ଚାଳନା ହେଲା । ବିଦ୍ୟାଳୟର ସ୍ୱୀକୃତି

ପ୍ରତ୍ୟାହାର କରି ନିଆଗଲା । ଜାତୀୟବାଦୀ ଖବରକାଗଜଗୁଡ଼ିକର ପ୍ରକାଶନ ନିଷିଦ୍ଧ ହେଲା । ସଭା ସମିତି, ବନ୍ଦେ ମାତରଂ, ଶୋଭାଯାତ୍ରା ଆଦି ନିଷିଦ୍ଧ ହେଲା ।

ସ୍ୱଦେଶୀ ଆନ୍ଦୋଳନ ବଙ୍ଗଭଙ୍ଗ ବିରୋଧରେ ବିରାଟ ଜାତୀୟତାବାଦୀ ଅଭ୍ୟୁତ୍‌ଥାନ ଥିଲା । ଭାରତରେ ହିନ୍ଦୁ-ମୁସଲମାନମାନଙ୍କୁ ଭାଗ-ଭାଗ କରିବାର ଏ ଅପଚେଷ୍ଟାରେ ଇଂରେଜ ସରକାର ବିଫଳ ହୋଇ ଏହାକୁ ପ୍ରତ୍ୟାହାର କରିନେଲା । ହେଲେ ଏହାର ସ୍ୱାଧୀନତା ସଂଗ୍ରାମର ଆବେଦନକୁ ସମଗ୍ର ଦେଶ ଗ୍ରହଣ କରିନେଲା ।

ଓଡ଼ିଶାରେ ମଧ ବ୍ରିଟିଶ୍ ପଣ୍ୟ, ବ୍ରିଟିଶ୍ ବଜାର ବିରୋଧରେ ସ୍ୱଦେଶୀ ଶିଳ୍ପର ପ୍ରତିଷ୍ଠା ଲାଗି ଉତ୍କଳ ଗୌରବ ମଧୁସୂଦନ ଦାଶଙ୍କ ଉଦ୍ୟମ ଉଲ୍ଲେଖନୀୟ । ଏତିକିବେଳେ ଓଡ଼ିଶାରେ ଜାତୀୟତାବାଦୀ ଦେଶପ୍ରେମୀ ଶିକ୍ଷାର ପ୍ରବର୍ତ୍ତନ ହେଲା । କଂଗ୍ରେସକର୍ମୀଙ୍କ ତାଲିମ ପାଇଁ ଗୋପବନ୍ଧୁ ବନବିଦ୍ୟାଳୟ ପ୍ରତିଷ୍ଠା କଲେ । ଶିକ୍ଷା ଓ ତାଲିମ ଉଭୟ ସେଠାରେ ଚାଲିଲା ।

ବଙ୍ଗଭଙ୍ଗ, ସ୍ୱଦେଶୀ ଆନ୍ଦୋଳନରେ ପ୍ରଭାବ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନ୍ୟାନ୍ୟ ସ୍ଥାନରେ ଗଭୀର ଭାବରେ ପଡ଼ିଥିଲା । ପ୍ରତିବାଦ ସଭାମାନ ହୋଇଥିଲା । କଟକ ମ୍ୟୁନିସିପାଲ୍ ହଲ୍‌ରେ ବାବୁ ଜାନକୀନାଥ ବୋଷଙ୍କ ଅଧ୍ୟକ୍ଷତାରେ ଅଗଷ୍ଟ ୨୦,୧୯୦୫ରେ ପ୍ରତିବାଦ ସଭା ହୋଇଥିଲା ।

ସଭାରେ ମଧୁବାବୁ ଓଡ଼ିଶାବାସୀଙ୍କୁ ମାଞ୍ଚେଷ୍ଟର ଲୁଗା, ଲିଭରପୁଲ୍ ଲୁଣ ଆଦି ଦ୍ରବ୍ୟ ବର୍ଜନ କରି ଦେଶୀୟ ଦ୍ରବ୍ୟ ବ୍ୟବହାର କରିବା ପାଇଁ ଆହ୍ୱାନ ଦେଇଥିଲେ । ପୁରୀ, ସମ୍ବଲପୁରରେ ବିଦେଶୀ ଲୁଗା ପୋଡ଼ାଗଲା ।

ସ୍ୱଦେଶୀ ଆନ୍ଦୋଳନକାରୀଙ୍କ ପାଇଁ ଜାତୀୟ ଶିକ୍ଷା ପ୍ରବର୍ତ୍ତନ କରିବାର ପ୍ରେରଣାରେ ଗୋପବନ୍ଧୁ ସାକ୍ଷୀଗୋପାଳ ଠାରେ ଅଗଷ୍ଟ ୧୨, ୧୯୦୯ରେ ସତ୍ୟବାଦୀ ବନବିଦ୍ୟାଳୟ ପ୍ରତିଷ୍ଠା କଲେ । ଓଡ଼ିଆ ଜାତୀୟତାବାଦର ଏହା ଏକ ମୁଖ୍ୟ ଉତ୍ସ ଥିଲା । ଏଥିରେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ପ୍ରମୁଖ ଯୋଗ ଦେଇଥିଲେ ।

## ବିଦ୍ରୋହର କାରଣ

ଏହି ବିଦ୍ରୋହ, ମେଳି ଆଦି ପଛରେ ରହିଥିବା କାରଣମାନ ଅନୁଧାନ କଲେ ଜଣାଯାଏ ଯେ, ରାଜା ପରିବାରର ସିଂହାସନ ପାଇଁ କଳହ, ମରାଠା ଶାସନ ବିରୋଧରେ

ଇଂରେଜମାନଙ୍କ ଠାରୁ ଦେଶୀୟ ରାଜାମାନଙ୍କ ସାହାଯ୍ୟ ସହଯୋଗ ପ୍ରାର୍ଥନା, ବଙ୍ଗରେ ଦ୍ୱୈତ ଶାସନ ବ୍ୟବସ୍ଥା, କମ୍ପାନୀ ଶାସନ, ଲର୍ଡ଼ ଉଏଲସଲିଙ୍କ ଶାସନ, ସନ୍ଧି, ରାଜ୍ୟସ୍ୱତ୍ୱ ଲୋପନୀତି, ଘନ ଘନ ଭୂବନ୍ଦୋବସ୍ତ ଓ ଖଜଣା ବୃଦ୍ଧି, ବିଭିନ୍ନ ରକମ ନୂତନ କର, କର ଆଦାୟ ପାଇଁ ଜୋରଜୁଲମ, ବହିରାଗତମାନଙ୍କ ଦ୍ୱାରା ଦେଶୀୟ ଓ ଆଦିବାସୀ ଜମିରେ ମାଲିକାନା, ଆଦିବାସୀମାନଙ୍କ ସାମାଜିକତା ଓ ଧାର୍ମିକ ପରମ୍ପରାରେ ହସ୍ତକ୍ଷେପ, ସର୍ବୋପରି ନ୍ୟସ୍ତସ୍ୱାର୍ଥ ରାଜତନ୍ତ୍ର ଓ ଇଂଲଣ୍ଡର ହିତକାରୀ ବିଦେଶୀ ପ୍ରଶାସନ ବିରୋଧରେ ସମାଜର ସବା ତଳ ଲୋକ, ସାଧାରଣ ଗରିବ ପ୍ରଜାଶ୍ରେଣୀର ଅବଦମିତ ଅସନ୍ତୋଷ ହିଁ ବିଭିନ୍ନ ସମୟରେ ବିଭିନ୍ନ ମେଳି, ବିଦ୍ରୋହ ଭାବରେ ବିସ୍ଫୋରିତ ହୋଇଆସିଛି ।

ଇଂରେଜମାନଙ୍କ ଭାରତୀୟ ଶାସନ ବ୍ୟବସ୍ଥାରେ ଉଚ୍ଚପଦବୀରେ ଭାରତୀୟମାନଙ୍କ ସ୍ଥାନ ରହିନଥିଲା । ଇଂରେଜ କର୍ମଚାରୀ ଓ ସେମାନଙ୍କୁ ସାହାଯ୍ୟ କରୁଥିବା ଭାରତୀୟ ତଳିଆ କର୍ମଚାରୀଙ୍କ ଅତ୍ୟାଚାର, ଅର୍ଥଗୃଧ୍ନୁତା ସାମାନ୍ୟ ଲୋକଙ୍କ ଦାରିଦ୍ର୍ୟର କାରଣ ଥିଲା ।

ଇଂରେଜ ଶାସନ ପ୍ରତିଷ୍ଠା ପରେ ଖଜଣା ଆଦାୟ ପ୍ରଣାଳୀ ବଳବତ୍ତର ରହିଲା ଓ କମ୍ପାନୀ କର୍ମଚାରୀ ଏହାର ତତ୍ତ୍ୱାବଧାନ କଲେ । ପ୍ରତ୍ୟକ୍ଷ ଖଜଣା ଆଦାୟ ଓ ଏଥିପାଇଁ କରାଯାଉଥିବା ଅତ୍ୟାଚାର ଆକାଶ ଛୁଇଁଲା । ଅର୍ଥ ଆକାରରେ ଖଜଣା ଦେବାକୁ ପଡ଼ିଲା । ତେଣୁ ଚାଷୀମାନେ ଜୀବନ ଉପଯୋଗୀ ବଦଳରେ ବଜାର ଉପଯୋଗୀ ଫସଲ ଉତ୍ପନ୍ନ କରିବାକୁ ବାଧ୍ୟ ହେଲେ । ସ୍ୱଦେଶୀ ଦ୍ରବ୍ୟ ବଦଳରେ ବିଦେଶୀ ଦ୍ରବ୍ୟ ପାଇଁ ଭାରତକୁ ଏକ ବଜାର କରି ଦିଆଗଲା । ଗ୍ରାମର ଆତ୍ମନିର୍ଭରଶୀଳତା ଲୋପ ପାଇଲା । ଲୋକଙ୍କ ଆର୍ଥିକ ଦୁର୍ଗତି ବଢ଼ିଲା ।

ଉଆରେନ୍ ହେଷ୍ଟିଙ୍ଗସ୍‌ଙ୍କ ସମୟରେ ଅଧିକ ଲାଭ ପାଇବା ଆଶାରେ ରାଜସ୍ୱ ଆଦାୟକୁ ନିଲାମ କରାଗଲା । ନିଲାମଦାର (ଜମିଦାରମାନେ) ଚାଷୀମାନଙ୍କ ଠାରୁ ଅତ୍ୟଧିକ ଖଜଣା ଆଦାୟ କରି ମଧ୍ୟ ଧାର୍ଯ୍ୟ ରାଜସ୍ୱ ପଇଠ କରିପାରୁ ନଥିଲେ ।

କର୍ଣ୍ଣଉଆଲିସ୍ ୧୭୯୩ରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ପ୍ରଚଳନ କଲେ । ଫଳରେ ଜମିଦାରମାନେ ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ପରିମାଣ ରାଜସ୍ୱ ଦେଇ ପ୍ରଜାମାନଙ୍କ ଠାରୁ ମନମୁତାବକ ଖଜଣା ଓ କର ଆଦାୟ କଲେ । କର ଦେଇପାରୁ ନଥିବା ପ୍ରଜାମାନଙ୍କୁ ଜମିରୁ ଉଚ୍ଛେଦ କରିବାର ଅଧିକାର ସେମାନେ ୧୭୯୯ରେ ପାଇଲେ । ସେହିପରି ଅନାଦାୟ କର ଆଦାୟ ପାଇଁ ରୟତମାନଙ୍କର ସଂପତ୍ତିବାଡ଼ି ବାଜ୍ୟାପ୍ତ କରିବାର

ଅଧିକାର ମଧ୍ୟ ପାଇଲେ । ଫଳରେ ବହୁ ପ୍ରଜା ନିଜର ଜମି ହରାଇ ଭୂମିହୀନ ମଜୁରିଆରେ ପରିଣତ ହେଲେ । ଏମାନଙ୍କ ସଂଖ୍ୟା ନିରନ୍ତର ବୃଦ୍ଧି ପାଇଲା ବେଳକୁ ଅନ୍ୟପକ୍ଷରେ ନୂତନ ଧନୀ ଜମିଦାର ଗୋଷ୍ଠୀର ସମାଜରେ ଆବିର୍ଭାବ ହେଲା । ସେମାନେ ଜମିଦାରୀରେ ଚାଷ ଜମିର ପରିମାଣ ବଢ଼ାଇଲେ । ବେଶୀ ଖଜଣା ଆଦାୟ କରି ନିଜର ଆୟ ବୃଦ୍ଧି କରିବା ଫଳରେ ଲୋକଙ୍କ ଉପରେ ଅତ୍ୟଧିକ ଚାପ ପଡ଼ିଲା । ବଙ୍ଗ ଓ ବିହାରରେ ପ୍ରଥମେ ଲାଗୁ ହୋଇଥିବା ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ଓଡ଼ିଶା, ଆନ୍ଧ୍ରପ୍ରଦେଶର ଉପକୂଳ ଅଞ୍ଚଳ ଓ ବନାରଶରେ ପ୍ରଚଳିତ ହେଲା । ନିର୍ଦ୍ଦିଷ୍ଟ ଦିନର ନିର୍ଦ୍ଦିଷ୍ଟ ସମୟରେ କଲିକତାରେ ରାଜସ୍ୱ ଦାଖଲ କରିବାକୁ ପଡୁଥିବାରୁ ଓଡ଼ିଶାର ଜମିଦାରମାନେ ଠିକ୍ ସମୟରେ ରାଜସ୍ୱ ଦାଖଲ କରିପାରୁ ନଥିଲେ । ସେମାନଙ୍କ ଜମିଦାରୀ ନିଲାମ ହୋଇ ବଂଗୀୟ ଜମିଦାରମାନଙ୍କ ହାତକୁ ଚାଲିଗଲା । ଫଳରେ ଓଡ଼ିଶାର ଅର୍ଥନୈତିକ ଓ ସାମାଜିକ ଅବନତି ଘଟିଲା ।

ଇଂରେଜମାନେ ଦେଶୀୟ ଶିଳ୍ପର ଅଧୋଗତି ଘଟାଇଥିଲେ । ଇଂରେଜମାନେ ନିଜ ଲାଭ ପାଇଁ ଶିଳ୍ପ, କାରିଗରମାନଙ୍କ ଠାରୁ ଅଳ୍ପ ମୂଲ୍ୟ ଦେଇ ସୂକ୍ଷ୍ମବସ୍ତ୍ର ଓ ବିଳାସସାମଗ୍ରୀ କିଣିଲେ କିନ୍ତୁ ତନ୍ତୀମାନଙ୍କୁ ଚଢ଼ା ମୂଲ୍ୟରେ ତୁଳା ବିକିଲେ । କେତେକ ଦକ୍ଷ ଶିଳ୍ପୀଙ୍କ ଉପରେ ନିଷେଧାଜ୍ଞା ଜାରି ହେଲା ଯେ, ସେମାନେ ଇଂରେଜଙ୍କ ବ୍ୟତୀତ ଅନ୍ୟ କାହା ପାଇଁ ଶିଳ୍ପଜାତ ଦ୍ରବ୍ୟ ତିଆରି କରିପାରିବେ ନାହିଁ ।

୧୭୦୦ ଖ୍ରୀଷ୍ଟାବ୍ଦ ବେଳକୁ ଇଂଲଣ୍ଡ ଓ ଉଉରୋପ୍‌ରେ ଭାରତୀୟ ଛୋଟ ସୂକ୍ଷ୍ମ ବସ୍ତ୍ରର ଆଦର ଏତେ ବୃଦ୍ଧି ପାଇଲା ଯେ, ଇଂଲଣ୍ଡର ବୟସ୍ତ୍ରନ ଶିଳ୍ପର ଅଧୋଗତି ଘଟିଲା । ଏହି ବସ୍ତ୍ରର ଚାହିଦା ରୋକିବା ପାଇଁ ନିୟମମାନ ପ୍ରଣୀତ ହେଲା । ଭାରତୀୟ ବସ୍ତ୍ର ଉପରେ ବହୁ ଆମଦାନୀ ଶୁଳ୍କ ବସାଗଲା । ଶିଳ୍ପ ବିପ୍ଳବ ପରେ କଳ ତିଆରି ବସ୍ତ୍ରର ମୂଲ୍ୟ କମିଲା । ଇଂରେଜମାନେ ଭାରତକୁ ପଠାଉଥିବା ବସ୍ତ୍ର ଉପରୁ ଆମଦାନୀ ଶୁଳ୍କ ଉଠାଇ ନେଲେ ।

୧୮୩୫ରେ ଭାରତରେ ଇଂରାଜୀ ଶିକ୍ଷା ପ୍ରଚଳନ ଆଇନ ପ୍ରଣୟନ କରାଗଲା । ଭାରତରେ ଇଂରାଜୀ ଶିକ୍ଷା ପ୍ରଚଳନ ହେବା ଦ୍ୱାରା ଇଂରାଜୀ ଶିକ୍ଷିତ ଗୋଷ୍ଠୀ ଶତକଡ଼ା ୯୦ ଭାଗ ନିରକ୍ଷର ଥିବା ଭାରତୀୟ ସମାଜ ଠାରୁ ଦୂରେଇଗଲେ । ଭାରତୀୟ ସମାଜରେ ଏହି ଭାଷା ବିଭେଦ ସୃଷ୍ଟି କରିଥିଲେ ମଧ୍ୟ ଏହି ଗୋଷ୍ଠୀ ଆଧୁନିକ ଜ୍ଞାନ, ଦେଶାତ୍ମବୋଧ, ସ୍ୱାଧୀନତା, ସମତା, ଗଣତନ୍ତ୍ର ଆଦି ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇ ଭାରତକୁ ଏକ ଆଧୁନିକ ଦେଶରେ ପରିଣତ କରିବାକୁ ଚାହିଁଲେ । ସାମାଜିକ ସଂସ୍କାର, ଇଂରାଜୀ ଶିକ୍ଷିତ ଗୋଷ୍ଠୀର ଆଧୁନିକ ଭାରତର ସ୍ୱପ୍ନ ସହ ବ୍ୟାପକ ପ୍ରଜା ଅସନ୍ତୋଷ ମିଳିତ ହୋଇ ଜାତୀୟ ଆନ୍ଦୋଳନ ସୃଷ୍ଟି କରିବାରେ ସମର୍ଥ ହେଲା ।

୧୮୫୬ ବେଳକୁ ଭାରତରେ ଇଂରେଜ ସାମ୍ରାଜ୍ୟ ବିସ୍ତାର ପ୍ରାୟ ଶେଷ ହୋଇଥିଲା । ଯେଉଁଠାରେ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର ହେଉଥିଲା ସେଠାରେ କୁଶାସନ ଫଳରେ ଲୋକେ ଇଂରେଜମାନଙ୍କ ବିଦ୍ୱେଶୀ ହୋଇଉଠୁଥିଲେ । ପ୍ରଥମାବସ୍ଥାରେ ଇଂରେଜମାନେ ଏ ଦେଶରେ ଲୁଣ୍ଠନ ଚଳାଇଥିଲେ । ପରବର୍ତ୍ତୀ ଅବସ୍ଥାରେ ଏହା ଦେଶବାସୀଙ୍କୁ ଶୋଷଣ କରିବା ପାଇଁ ଶାସନ ବ୍ୟବସ୍ଥା ଗ୍ରହଣ କଲେ । ଚାଷୀ ଶୋଷଣ ତୀବ୍ରତର ହେଲା । ପାର୍ବତ୍ୟ ଓ ଅରଣ୍ୟପୂର୍ଣ୍ଣ ଅଞ୍ଚଳରେ ରହୁଥିବା ଉପଜାତିମାନେ ମଧ୍ୟ ଇଂରେଜ ଶୋଷଣରୁ ମୁକ୍ତ ନଥିଲେ ।

ଇଂରେଜମାନଙ୍କ ଦ୍ୱାରା ଅଧିକୃତ ରାଜ୍ୟ ଓ ସାମନ୍ତସନ୍ଧି ଗ୍ରହଣ କରିଥିବା ରାଜ୍ୟମାନଙ୍କରେ କାମ ହରାଇଥିବା ଭାରତୀୟ ସୈନ୍ୟ ଓ କର୍ମଚାରୀଗଣ, ଭାରତୀୟ ଶାସକମାନଙ୍କ ପାଇଁ ଶିଳ୍ପଜାତ ଦ୍ରବ୍ୟ ତିଆରି କରୁଥିବା ଶିଳ୍ପୀ ଓ କାରିଗରମାନେ ଇଂରେଜମାନଙ୍କ ଶତ୍ରୁରେ ପରିଣତ ହୋଇଥିଲେ । ଜାଗିରୀ ହରାଇଥିବା ପଣ୍ଡିତ ଓ ବିଜ୍ଞ ବ୍ୟକ୍ତିମାନେ ମଧ୍ୟ ଇଂରେଜ ବିରୋଧୀ ହୋଇଉଠିଥିଲେ ।

ଏହି ଅସନ୍ତୁଷ୍ଟ ଗୋଷ୍ଠୀ ୧୭୬୫ରୁ ୧୮୫୭ ମଧ୍ୟରେ ଭାରତର ବିଭିନ୍ନ ଅଞ୍ଚଳରେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ଇଂରେଜମାନଙ୍କ ବଙ୍ଗ ଅଧିକାର କରିବା ପରେ ଅତ୍ୟାଚାରିତ କୃଷକମାନେ ସନ୍ନ୍ୟାସୀ ଓ ଫକୀରମାନଙ୍କ ନେତୃତ୍ୱରେପ୍ରାୟ ୩୦ ବର୍ଷ କାଳ ଇଂରେଜ ବିରୋଧୀ ଯୁଦ୍ଧ କରିଥିଲେ । ପାର୍ବତ୍ୟ ଓ ଅରଣ୍ୟ ଅଞ୍ଚଳର ଅତ୍ୟାଚାରିତ ଅଧିବାସୀବର୍ଗ ଇଂରେଜ ବିରୋଧରେ ଅସ୍ତ୍ର ଗ୍ରହଣ କରିଥିଲେ । ମହାରାଷ୍ଟ୍ର, ମଧ୍ୟପ୍ରଦେଶର ଭିଲ୍, ଓଡ଼ିଶା ଓ ବଙ୍ଗର କୋହ୍ଲ, ଓଡ଼ିଶାର ଗଣ୍ଡ ଓ କନ୍ଧ, ରାଜସ୍ଥାନର ମେର, ବଙ୍ଗ ଓ ବିହାରର ସାନ୍ତାଳ ଓ ମେଘାଳୟର ଖାସିମାନଙ୍କର ବିଦ୍ରୋହ ଉଲ୍ଲେଖଯୋଗ୍ୟ ।

ଦାକ୍ଷିଣାତ୍ୟର ପଲିଗାର ଜମିଦାରମାନେ ଜନସାଧାରଣଙ୍କ ସମର୍ଥନରେ ଇଂରେଜ ବିରୋଧରେ ଯୁଦ୍ଧ କରିଥିଲେ । ଅତ୍ୟାଚାରିତ ସୈନ୍ୟମାନେ ୧୮୦୬ରେ ଭେଲୋରଓ ୧୮୨୪ରେ ବାରକପୁରରେ ବିଦ୍ରୋହ କରିଥିଲେ । ଇଂରେଜବିରୋଧୀ ଅସନ୍ତୋଷ ୧୮୫୭ରେ ଚରମ ସୀମାରେ ପହଞ୍ଚିଥିଲା ।

ଏ ସବୁର ପ୍ରଭାବ ମଧ୍ୟ ଓଡ଼ିଶା ଉପରେ ପଡ଼ିଥିଲା । ଅସନ୍ତୋଷ ଜନବିସ୍ଫୋରଣ ଊନବିଂଶ ଶତାବ୍ଦୀରେ ଜାତୀୟତାବାଦୀ ଆନ୍ଦୋଳନକୁ ପୁଷ୍ଟ କରିଛି । ନିର୍ଯାତୀତ ଜନସାଧାରଣ ସେ ଜନଜାତି ହୁଅନ୍ତୁ ବା ଖଟିଖିଆ ମଣିଷ ହୁଅନ୍ତୁ, ସେଇମାନେ ହିଁ ଥିଲେ ଏ ବିଦ୍ରୋହ ଓ ମୁକ୍ତି ସଂଗ୍ରାମର ମହାନାୟକ ।

୧୯୧୪ର ଦଶପଲ୍ଲା, ୧୯୧୭ର ମୟୂରଭଞ୍ଜ ପୁଣି ୧୯୧୪ର ତାଳଚେର ପ୍ରଜାବିଦ୍ରୋହ, ୧୯୨୨ରେ ଢେଙ୍କାନାଳ, ୧୯୨୮ରେ ନୀଳଗିରି ସାମନ୍ତବାଦୀ ଶୋଷଣ ଓ ଶାସନ ବିରୋଧରେ ରକ୍ତକ୍ଷୟୀ ସଂଗ୍ରାମର ରୂପ ପରିଗ୍ରହଣ କରିଛି । ଗଡ଼ଜାତର ଅନ୍ଧାରୀ ଶାସନର ତମସାଚ୍ଛନ୍ନ ଇତିହାସ ନୀରିହ ପ୍ରଜାମାନଙ୍କ ରକ୍ତ ପ୍ଲାବନରେ ଲାଲ୍ ହୋଇଉଠିଛି ।

ଏସବୁ ପଛରେ ବିଦେଶୀ ପ୍ରଶାସନର ପୃଷ୍ଠପୋଷକତା ରହିଥିଲା । ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ଦୀର୍ଘସମୟ ଧରି ଜାତୀୟ ଆନ୍ଦୋଳନର ମୁଖ୍ୟ ସ୍ରୋତରୁ ଅଲଗା ରଖାଯିବା ଫଳରେ ଜାତୀୟ ନେତୃବର୍ଗ ମଧ ପ୍ରଜାମାନଙ୍କ ପ୍ରତି ଯଥାର୍ଥ ନ୍ୟାୟ ପ୍ରଦାନରେ ବିଫଳ ହୋଇଛନ୍ତି ।

ମଧ୍ୟଯୁଗୀୟ ଦରବାରୀ ଅନ୍ଧାରୀ ଶାସନ ଓ ସାମ୍ରାଜ୍ୟବାଦୀ ବିଦେଶୀ ପ୍ରଶାସନର ନିଷ୍ଠୁର ଶୋଷଣ ଓ ଅମାନୁଷିକ ନିର୍ଯାତନା ପରବର୍ତ୍ତୀ କାଳରେ ନିପୀଡ଼ିତ ଜନତା ଭିତରେ ସ୍ୱାଧୀନତା ଆନ୍ଦୋଳନର ଜନଜାଗରଣ ସୃଷ୍ଟି କରିଥିଲା ।

## ଉତ୍ତରପର୍ବ :

ଭାରତୀୟ ଜନସମାଜରେ ଉନବିଂଶ ଶତାବ୍ଦୀରେ ନବଜାଗରଣର ଅଭ୍ୟୁଦୟ ଘଟିଥିଲା । ଇଂରେଜୀ ଶିକ୍ଷାପ୍ରାପ୍ତଙ୍କ ଉପରେ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ଏହାର ମୂଳରେ ରହିଥିଲା । ଓଡ଼ିଶାର ସମାଜ-ରାଜନୈତିକ ଜାଗରଣ ପଛରେ ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ପ୍ରଭାବ, ଇଂରାଜୀ ଶିକ୍ଷା, ଛାପାଖାନା, ରାସ୍ତାଘାଟ, ରେଳ, ମୋଟର, କେନାଲ, ପୋଲ, ଗମନାଗମନ, ସଂଚାର-ସୂଚନା ବ୍ୟବସ୍ଥା, ବାଣିଜ୍ୟ, ବ୍ୟବସାୟ ଆଦି ଧୀରେ ଧୀରେ ଲୋକଙ୍କ ପଛୁଆପଣିଆ ଦୂର କରିବାରେ ସାହାଯ୍ୟ କଲା ।

୧୮୬୬ ନ'ଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ କାଳରେ ଓଡ଼ିଶାରେ ଜାତୀୟତାବାଦର ଅଭ୍ୟୁଦୟ ଦେଖାଗଲା । ଏ କ୍ଷେତ୍ରରେ ଉତ୍କଳ-ଦୀପିକା, ସମ୍ବାଦ ବାହିକା, ଉତ୍କଳ ଦର୍ପଣ, ଉତ୍କଳ ପୁତ୍ର, ଓଡ଼ିଆ, ନବସମ୍ବାଦ, ସମ୍ବଲପୁର ହିତୈଷିଣୀ ପ୍ରମୁଖ ସମ୍ବାଦପତ୍ର, ଉତ୍କଳ ଭାଷା ଉନ୍ନତି ବିଧାୟିକା ସଭା (ବାଲେଶ୍ୱର), ଉତ୍କଳ ଭାଷା ଉଦ୍ଦୀପନା ସଭା (କଟକ), ଉତ୍କଳ ଉଲ୍ଲାସିନୀ ସଭା (କଟକ), ଗଞ୍ଜାମ ଉତ୍କଳ ହିତବାଦିନୀ ସଭା (ବ୍ରହ୍ମପୁର), ଉତ୍କଳ ସଭା, ସମ୍ବଲପୁରର ଭାଷା ଆନ୍ଦୋଳନ, ଉତ୍କଳ ସମ୍ମିଳନୀ ଆଦିର ପ୍ରଭାବ ଉଲ୍ଲେଖନୀୟ ।

ଓଡ଼ିଶାରେ ଜାତୀୟତାବାଦର ଉନ୍ମେଷକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଦୁର୍ଭିକ୍ଷ ପରେ ଓଡ଼ିଶାରେ ସୃଷ୍ଟି ହୋଇଥିବା ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ବିଭିନ୍ନ ପତ୍ରପତ୍ରିକା, ସଭା ସମିତି, ସଂଘ, ସଙ୍ଗଠନ ମାଧ୍ୟମରେ ନିଜର ଭାବ, ମହତ୍ୱାକାଂକ୍ଷା, ସମାଜ ସଂସ୍କାର, ଶିକ୍ଷାର ପ୍ରସାର ପାଇଁ ବିଭିନ୍ନ ସଙ୍ଗଠନ କାମ ଆରମ୍ଭ କରିଥିଲେ । କେତେକ ଇଂରେଜ ମଧ୍ୟ ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

୧୮୫୯ରେ କଟକ ଠାରେ ଗଠିତ ମ୍ୟୁଚୁଆଲ୍ ଇଂପ୍ରୁଭ୍‌ମେଣ୍ଟ ସୋସାଇଟିରେ ସାମାଜିକ ସମସ୍ୟାବଳୀ ନେଇ ବିଚାର ଆଲୋଚନା ହେଉଥିଲା । ଏହା ସହିତ କଟକ ଡିବେଟିଂ କ୍ଲବ୍ (୧୮୬୮), କଟକ, ୟଙ୍ଗ୍ ମେନ୍ସ ଆସୋସିଏସନ୍ (୧୮୬୯), ଉତ୍କଳ ବ୍ରହ୍ମସମାଜ (୧୮୬୯), ପୁରୀ, ସୋସାଇଟି (୧୮୭୦), ଗଞ୍ଜାମ, ଉତ୍କଳ ହିତବାଦିନୀ ସଭା (୧୮୭୨), ଭଦ୍ରକ, ଦେଶ ହିତୈଷିଣୀ ସଭା (୧୮୭୪), ଗଞ୍ଜାମ, ନିଶା ନିଷେଧିନୀ ସଭା (୧୦୭୫), ଉତ୍କଳ ସଭା, କଟକ (୧୮୭୭), ବାଲେଶ୍ୱର ନ୍ୟାସନାଲ୍ ସୋସାଇଟି (୧୮୭୮), ମାଦକ ସେବନ ନିବାରିଣୀ ସଭା (୧୮୭୯), ଶିକ୍ଷା ବିଧାୟିନୀ ସଭା (୧୮୮୧), ଓଡ଼ିଶା ପିପୁଲ୍ସ ଆସୋସିଏସନ୍ (୧୮୮୨), ଏଣ୍ଟି କରପ୍ସନ୍ ଏଣ୍ଡ ପ୍ରୋହିବିସନ୍ ସଭା, କଟକ (୧୮୮୪), ଓଡ଼ିଶା ଗ୍ରାଜୁଏଟ୍ ଏଣ୍ଡ ଅଣ୍ଡର ଗ୍ରାଜୁଏଟ୍ ଆସୋସିଏସନ୍ (୧୮୮୮), ଉତ୍କଳ ସାହିତ୍ୟ ସମ୍ମିଳନୀ, କଟକ (୧୮୮୬), ବାଲେଶ୍ୱର ଜିଲ୍ଲା ସ୍କୁଲ୍ ରିଡିଂ କ୍ଲବ୍ (୧୮୯୬), ଆଲୋଚନା ସଭା (୧୮୯୩), କରଣ ସଭା, ଓଡ଼ିଶା ଇସ୍‌ଲାମ୍ ଆସୋସିଏସନ୍ (୧୮୭୫), ଓଡ଼ିଶା ଖ୍ରୀଷ୍ଟିଆନ୍ ଆସୋସିଏସନ୍ (୧୮୯୬) ଆଦି ସଂଗଠନ ଗଢ଼ି ଉଠିଲା ।

ପ୍ରଥମେ ଏହି ନବ୍ୟ ରାଜନୈତିକ ଚେତନା ବିଭିନ୍ନ ପ୍ରଦେଶରେ ବସବାସ କରୁଥିବା ଓଡ଼ିଆମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା । ପରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଏକତ୍ରିକରଣ ଆନ୍ଦୋଳନରେ ପର୍ଯ୍ୟବେସିତ ହେଲା । ଦ୍ୱିତୀୟତଃ ଭର୍ଣାକୁଲର୍ ପ୍ରେସ୍ ଆକ୍ଟ ବିବାଦ, ଲର୍ଡ ରିପନଙ୍କ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ ଓ ଭାରତୀୟ ଜାତୀୟ କଂଗ୍ରେସ ଗଠନ ରୂପରେ ଓ ଜାତୀୟ ରାଜନୈତିକ ସଚେତନା ରୂପରେ ଆତ୍ମପ୍ରକାଶ କଲା ।

ଓଡ଼ିଆଭାଷା ବିବାଦ ଉନବିଂଶ ଶତାବ୍ଦୀରେ ଓଡ଼ିଆ ଜାତୀୟତାବାଦକୁ ଦୃଢ଼ୀଭୂତ କଲା । ଏହି ବିବାଦ ମଧ୍ୟ ଓଡ଼ିଆ ଭାଷା ସାହିତ୍ୟର ଚାଳିକା ଶକ୍ତିରେ ପରିଣତ ହୋଇ ପ୍ରେସ୍, ପୁସ୍ତକ ପ୍ରକାଶନ ଓ ଖବରକାଗଜ ପ୍ରକାଶନ ଅଭିଯାନକୁ ଆଗେଇନେଲା ।

କଟକ, ପୁରୀ, ବାଲେଶ୍ୱରରେ ବଙ୍ଗଳା, ଗଞ୍ଜାମରେ ତେଲୁଗୁ ଓ ପଶ୍ଚିମ ଓଡ଼ିଶାରେ ହିନ୍ଦୀର ସରକାରୀ ଭାଷାକରଣ ବିରୋଧରେ ତୀବ୍ର ସ୍ୱର ଉଠିଲା ।

୧୯୯୫ରେ ଓଡ଼ିଶା ଡିଭିଜନ୍‌ର କମିଶନର ଏଚ୍.ଜି.କୁକ୍ ଓଡ଼ିଆ ଭାଷାଭାଷୀ ସମ୍ବଲପୁର ଜିଲ୍ଲା, ପାଟଣା, ସୋନପୁର, ରେଢ଼ାଖୋଲ, ବାମଣ୍ଡା, କଳାହାଣ୍ଡି, ଗଞ୍ଜାମ ଜିଲ୍ଲା, ଘୁମୁସର ଓ କିପିଡ଼ି ଗଡ଼ଜାତକୁ ଓଡ଼ିଶା ଡିଭିଜନ୍‌ରେ ମିଶାଇବା ପାଇଁ ଦେଇଥିବା ପ୍ରସ୍ତାବ କାର୍ଯ୍ୟକାରୀ ନହେବା ବିରୋଧରେ ସମ୍ବଲପୁରରେ ତୀବ୍ର ଆନ୍ଦୋଳନ ମୁଣ୍ଡ ଟେକିଲା ।

୧୮୦୩ରେ ବ୍ରିଟିଶ୍‌ମାନେ ଓଡ଼ିଶା ଦଖଲ କଲା ପରେ ଏହା ରାଜନୈତିକ ଭାବରେ ତିନୋଟି ପ୍ରଦେଶରେ ବିଭାଜିତ ହୋଇ ରହିଲା । ଓଡ଼ିଶା ଡିଭିଜନ୍‌ରେ ତିନୋଟି ଉପକୂଳବର୍ତ୍ତୀ ଜିଲ୍ଲା-ବାଲେଶ୍ୱର, କଟକ ଓ ପୁରୀ, ବଙ୍ଗରେ, ଗଞ୍ଜାମ, ମାନ୍ଦ୍ରାଜରେ ବିଶାଖାପାଟଣା ଓ ସମ୍ବଲପୁର ଆଦି ସେଣ୍ଟ୍ରାଲ୍ ପ୍ରଭିନ୍‌ସେସ୍‌ରେ ରହିଲା ।

ଏଭଳି ରାଜନୈତିକ ବିଭାଜନ ଓଡ଼ିଆ ଭାଷାଭାଷୀଙ୍କ ଦୈନନ୍ଦିନ ଜୀବନରେ ଗଭୀର ପ୍ରଭାବ ପକାଇଲା । ଏହି ପ୍ରଦେଶଗୁଡ଼ିକରେ ଭାଷା ଦୃଷ୍ଟିରୁ ସଂଖ୍ୟାଲଘୁ ଭାବରେ ଓଡ଼ିଆମାନେ ଥିଲେ ଅତ୍ୟନ୍ତ ଉପେକ୍ଷିତ ।

ସେହିପରି ଓଡ଼ିଶା ଡିଭିଜନ୍‌ରେ ବଙ୍ଗାଳୀ, ସମ୍ବଲପୁର ଡିଭିଜନ୍‌ରେ ହିନ୍ଦୀ, ଗଞ୍ଜାମ ଓ ବିଶାଖାପାଟଣାରେ ତେଲୁଗୁମାନଙ୍କ ବୈମାତୃକ ବ୍ୟବହାର ଓଡ଼ିଆ ଭାଷାକୁ ଅଚଳ କରି ଦେଇଥିଲା । ଓଡ଼ିଆ ଭାଷାଭାଷୀଙ୍କ ଉପରେ ରାଜନୈତିକ, ଶୈକ୍ଷିକ, ଚାକିରୀଗତ ଓ ସାମାଜିକ ନ୍ୟାୟ କ୍ଷେତ୍ରରେ ପାତରଅନ୍ତର କରାଯିବା ସହ ଓଡ଼ିଆ, ଭାଷା, ଲିପି ଓ ସଂସ୍କୃତିର ଉଚ୍ଛେଦ ପାଇଁ କ୍ରମାଗତ ଉଦ୍ୟମ ହେଉଥିଲା । ସରକାରୀ ଅଧିକାରୀ, ଅମଲାମାନେ ମୁଖ୍ୟତଃ ଶିକ୍ଷିତ ବଙ୍ଗାଳୀ ହୋଇଥିବାରୁ ଓଡ଼ିଆ ଭାଷା ସରକାରୀ ପୃଷ୍ଠପୋଷକତାରୁ ବଂଚିତ ଥିଲା । ୧୮୪୮-୪୯ରେ କଟକ କଲେକ୍ଟର ବଙ୍ଗଳାକୁ କୋର୍ଟ ଭାଷା କଲେ ।

୧୮୬୦-୭୦ର ଭାଷା ଆନ୍ଦୋଳନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପରବର୍ତ୍ତୀ ପର୍ଯ୍ୟାୟରେ ଭାରତୀୟ ଜାତୀୟତାବାଦୀ ସ୍ୱାଧୀନତା ସଂଗ୍ରାମର ମୁଖ୍ୟଧାରାରେ ମିଶିଗଲା ।

ଭାରତର ରାଜନୈତିକ ଏକତ୍ରିକରଣ, ଆଇନ ଶାସନ, ପରିବହନ ଓ ସଂଚାର ମାଧ୍ୟମର ଅଗ୍ରଗତି, ଇଂରାଜୀ ଶିକ୍ଷା, ପାଶ୍ଚାତ୍ୟ ସଭ୍ୟତାର ମୁକ୍ତ ଓ ପ୍ରଗତିଶୀଳ ଚିନ୍ତାଧାରା,

ପାଶ୍ଚାତ୍ୟ ପ୍ରଭାବରେ ସଂଭୂତ ସମାଜ-ରାଜନୈତିକ ଜାଗରଣ, ଜାତିଗତ ବିଦ୍ୱେଶ ଓ ବ୍ରିଟିଶ୍ ଶୋଷଣ ପ୍ରତି ସାମଗ୍ରିକ ସଚେତନତା ହିଁ ଭାରତ ଓ ଓଡ଼ିଶାର ଜାତିୟତାବାଦର ଅନ୍ୟତମ କାରଣ ।

ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ରେ ଗଠିତ ହେଲା । କଟକ ପ୍ରିଣ୍ଟିଂ କମ୍ପାନୀ କାର୍ଯ୍ୟାଳୟରେ ମାର୍ଚ୍ଚ ୩, ୧୮୮୬ରେ ଏକ ସାଧାରଣ ସଭା ହେଲା । ସେଥିରେ କଂଗ୍ରେସର ପ୍ରସ୍ତାବକୁ ଗ୍ରହଣ କରାଗଲା ।

ଏହା ପୂର୍ବରୁ କଟକର ଉତ୍କଳ ସଭା, ବାଲେଶ୍ୱରର ନ୍ୟାସନାଲ୍ ଆସୋସିଏସନ୍, ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସଭାର ବିଭିନ୍ନ ପ୍ରତିନିଧିମାନଙ୍କୁ ଜାତୀୟ କଂଗ୍ରେସର ଅଧିବେଶନମାନଙ୍କୁ ପଠାଯାଉଥିଲା ।

୧୯୨୦-୨୧ ପୂର୍ବରୁ ଓଡ଼ିଶାରେ ପ୍ରତ୍ୟକ୍ଷତଃ ଜାତୀୟ କଂଗ୍ରେସ ନଥିଲା । ମଧୁବାବୁ ପୂର୍ବରୁ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇସାରିଥିଲେ ମଧ ଉତ୍କଳ ପ୍ରଦେଶ କଂଗ୍ରେସ ଗଠନ ଦିଗରେ କଂଗ୍ରେସ ନେତାମାନଙ୍କ ସମର୍ଥନ ପାଇ ସେ ଏଥିରୁ ନିଜକୁ ଏକରକମ ଦୂରେଇ ରଖିଥିଲେ ।

ଏହିବର୍ଷ ସେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ ଆରମ୍ଭ କଲେ । ପୂର୍ବରୁ ଅସହଯୋଗ ଆନ୍ଦୋଳନର ଡାକରା ଦିଆଯାଇଥିବା କଂଗ୍ରେସର ନାଗପୁର ଅଧିବେଶନରେ ମଧୁସୂଦନ ଦାଶ, ଗୋପବନ୍ଧୁ ଦାଶ, ଭାଗୀରଥି ମହାପାତ୍ର, ଜଗବନ୍ଧୁ ସିଂହ, ଯଦୁମଣି ମଙ୍ଗରାଜ, ମୁକୁନ୍ଦ ପ୍ରସାଦ ଦାସ, ନିରଂଜନ ପଟ୍ଟନାୟକ, ହରେକୃଷ୍ଣ ମହତାବଙ୍କ ସହିତ ଯୋଗଦାନ କରିଥିଲେ ।

ଏହି ଅଧିବେଶନରେ ଭାଷା ଭିତ୍ତିରେ ପ୍ରାଦେଶିକ କଂଗ୍ରେସ କମିଟିମାନ ଗଠନର ନିଷ୍ପତ୍ତି ନିଆଗଲା । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇନଥିଲେ ମଧ ଓଡ଼ିଶାରେ ଏକ ପ୍ରାଦେଶିକ ଶାଖା ଗଠିତ ହେଲା ମାର୍ଚ୍ଚ ୧୯୨୧ରେ । ଗୋପବନ୍ଧୁ ଏହାର ଅଧ୍ୟକ୍ଷ ଓ ଭାଗୀରଥି ମହାପାତ୍ର ଏହି ଶାଖାର ପ୍ରଥମ ସଂପାଦକ ଥିଲେ ।

ଅଖିଳ ଭାରତ କଂଗ୍ରେସ କମିଟି ପାଇଁ ଉତ୍କଳପ୍ରଦେଶ କଂଗ୍ରେସ କମିଟି ଯେଉଁ ୧୨ଜଣ ସଭ୍ୟଙ୍କୁ ମନୋନୀତ କଲେ ସେଥିରେ ସମ୍ବଲପୁରର ବ୍ରଜମୋହନ ପଣ୍ଡା ଅନ୍ୟତମ ଥିଲେ ।

ସେତେବେଳେ ସମ୍ବଲପୁର ଜିଲ୍ଲା ଦାୟିତ୍ୱ ନୀଳକଣ୍ଠ ଦାସଙ୍କୁ ଦିଆଯାଇଥିଲା । ଗାନ୍ଧିଜୀଙ୍କ ଡାକରାରେ ଅନ୍ୟମାନଙ୍କ ସହିତ ସମ୍ବଲପୁରର ଦୁଇଜଣ ଓକିଲ ମହେନ୍ଦ୍ରନାଥ

ବର୍ମା ଓ ଅଚ୍ୟୁତାନନ୍ଦ ପୁରୋହିତ ଆଇନ ବ୍ୟବସାୟ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ବ୍ରିଟେନ୍ ଯେତେବେଳେ ଖଲିଫା ମୁଖ୍ୟ ଥିବା ଅଟୋମାନ୍ ସାମ୍ରାଜ୍ୟ ବିରୋଧରେ ଯୁଦ୍ଧ କଲା, ତାହା ବିରୋଧରେ ଭାରତରେ ଖିଲାପତ୍ ଆନ୍ଦୋଳନ ହେଲା । କଟକରେ ଅକରମ ରସୁଲଙ୍କ ଅଧ୍ୟକ୍ଷତାରେ ଖିଲାଫତ୍ କମିଟି ଗଠନ କରାଯାଇ ରାଜ୍ୟବ୍ୟାପୀ ମୁସଲିମ୍‌ମାନଙ୍କ ଆନ୍ଦୋଳନ ଚାଲିଥିଲା ।

କଂଗ୍ରେସ ସ୍ୱେଚ୍ଛାସେବୀ ଗୋପବନ୍ଧୁ ଗାନ୍ଧୀଙ୍କ ଅସହଯୋଗ କାର୍ଯ୍ୟକ୍ରମର ପ୍ରସାର ଓ ଜାତୀୟତାବାଦର ବିକାଶ ନିମନ୍ତେ ସତ୍ୟବାଦୀ ବିଦ୍ୟାଳୟରେ ୧୯୧୯ରେ ସାପ୍ତାହିକ 'ସମାଜ' ପ୍ରକାଶନ ଆରମ୍ଭ କଲେ । କଂଗ୍ରେସ କର୍ମୀ ଓ ସ୍ୱେଚ୍ଛାସେବୀଙ୍କ ତାଲିମ ପାଇଁ କଟକରେ 'ସ୍ୱରାଜ ଆଶ୍ରମ' ଓ ଜଗତ୍‌ସିଂହପୁରରେ 'ଅଳକା ଆଶ୍ରମ' ଗଠିତ ହେଲା । ଏହି ସମୟରେ ସ୍ୱେଚ୍ଛାସେବୀ ସଂଗ୍ରହ ପାଇଁ କଟକର ଛାତ୍ରମାନେ 'ସ୍ୱରାଜ ସେବକ ସଂଘ' ଗଠନ କଲେ । ବିଭିନ୍ନ ସ୍ଥାନରେ ବିଦେଶୀ ବସ୍ତ୍ର ପୋଡ଼ାଗଲା ।

୧୯୨୧ରେ ଗୋପବନ୍ଧୁ କଲିକତାରେ ବିଦେଶୀ ବସ୍ତ୍ର ବର୍ଜନ ପାଇଁ ଦେଇଥିବା ଆହ୍ୱାନ ଫଳରେ ଓଡ଼ିଆ ଶ୍ରମିକମାନେ ବିଦେଶୀ ବସ୍ତ୍ର ପରିବହନ କାର୍ଯ୍ୟ ବନ୍ଦ କରିଦେବା ଫଳରେ ବଡ଼ବଜାର ଅଞ୍ଚଳର ବସ୍ତ୍ର ବ୍ୟବସାୟ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା । ଏହି ସମୟରେ ଗୋପବନ୍ଧୁଙ୍କ ସତ୍ୟବାଦୀ ବିଦ୍ୟାଳୟ ଏକ ଜାତୀୟ ବିଦ୍ୟାଳୟରେ ପରିଣତ ହେଲା । ପରେ କଟକ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ବିଭିନ୍ନ ଜାତୀୟ ବିଦ୍ୟାଳୟମାନ ଗଠିତ ହୋଇ ହିନ୍ଦୀ, ଆୟୁର୍ବେଦ, ସୁତାକଟା, ଲୁଗାବୁଣା, ବଢ଼େଇ କାମ ଆଦି ଶିକ୍ଷା ଦିଆଯିବାକୁ ଲାଗିଲା ।

ଅସହଯୋଗ ଆନ୍ଦୋଳନ ସହିତ ଜଡ଼ିତ ହୋଇ କନିକାରେ ପ୍ରଜା ଆନ୍ଦୋଳନ ତେଜି ଉଠିଲା । କଟକ ଓ ବାଲେଶ୍ୱରରେ ଗୁଡ଼ାଏ ପୋଡ଼ାଜଳା, ଭଙ୍ଗାରୁଜା କାର୍ଯ୍ୟ ଚାଲିଲା । ଏହାର ଦମନ କରାଯିବା ସହ ଇଂରେଜ ପକ୍ଷରୁ ଲୋକଙ୍କୁ ଭୟଭୀତ କରାଯିବାକୁ ଲାଗିଲା ।

ଅସହଯୋଗ ଆନ୍ଦୋଳନ ଚୌରୀଚୌରା କାଣ୍ଡ ଯୋଗୁଁ କଂଗ୍ରେସକୁ ଦୁଇଭାଗରେ ବିଭାଜିତ କଲା । କେତେକ କଂଗ୍ରେସୀ ନେତା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକଟ-୧୯୧୯ ଅନୁସାରେ ଶାସନ ବିଧାୟିକାରେ ପ୍ରବେଶ କରିବାକୁ ଚାହିଁଲା ବେଳକୁ ଅନ୍ୟମାନେ ଏଭଳି ବିଧାୟିକାର ବିରୋଧ କରି ଗାନ୍ଧୀଙ୍କ ପ୍ରଦର୍ଶିତ ମାର୍ଗରେ 'ସ୍ୱରାଜ ଦଳ' ଗଠନ କଲେ ।

ପରବର୍ତ୍ତୀ ସମୟରେ ପଣ୍ଡିତ ଗୋଦାବରୀଶ ମିଶ୍ର, ଜଗବନ୍ଧୁ ସିଂହ, ରାଧାରଂଜନ ଦାସ, ନୀଳକଣ୍ଠ ଦାସ ପ୍ରଥମ ଗୋଷ୍ଠୀର ସଭ୍ୟ ହୋଇଥିଲା ବେଳେ ଜଣେ କନେଷ୍ଟବଲ୍‌କୁ ମାଡ଼ ମାରିଥିବାର ମିଥ୍ୟା ଅଭିଯୋଗରେ ଜେଲ୍ ଯାଇଥିବା ଗୋପବନ୍ଧୁଙ୍କ ପ୍ରତ୍ୟାବର୍ତ୍ତନ ପରେ ମଧୁସୂଦନ ଦାସ, ହରେକୃଷ୍ଣ ମହତାବ ପ୍ରମୁଖ ପୂରା ଦମ୍‌ରେ ଅସହଯୋଗ ଆନ୍ଦୋଳନରେ ଲାଗିପଡ଼ିଲେ ।

ଡିସେମ୍ବର ୧୯୨୯, କଂଗ୍ରେସର ଲାହୋର ଅଧିବେଶନରେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ମାଧ୍ୟମରେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବି କଲା । ଜାନୁଆରୀ ୧୬, ୧୯୩୦ରେ ଓଡ଼ିଶା ସମଗ୍ର ଭାରତବର୍ଷ ପରି ସ୍ୱାଧୀନତା ଦିବସ ପାଳନ କଲା । କଟକରେ ଗୋପବନ୍ଧୁ ଚୌଧୁରୀ ସ୍ୱାଧୀନତାର ସନନ୍ଦ ପାଠ କଲେ । ଏତିକିବେଳେ ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର, ନନ୍ଦକିଶୋର ଦାସ, ନାରାୟଣ ବୀରବର ସାମନ୍ତ, ବିଶ୍ୱନାଥ ଦାସ, ନୀଳକଣ୍ଠ ଦାସ ପ୍ରମୁଖ ଶାସନ ବିଧାୟିକାରୁ ଇସ୍ତଫା ଦେଇ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଲେ ।

ମାର୍ଚ୍ଚ ୩୦ରେ ଇଞ୍ଚୁଡ଼ି ଠାରେ ଲବଣ ସତ୍ୟାଗ୍ରହକୁ ସଫଳ କରାଇବାରେ ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ସୁରେନ୍ଦ୍ରନାଥ ଦାସ, ହରିହର ଦାସ ଆଦି ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ଏଥିରେ ପୁରୀ, ଗଞ୍ଜାମ, ସମ୍ବଲପୁର, ବାରିପଦା ଆଦି ଅଞ୍ଚଳର ବହୁ ଲୋକ ଯୋଗ ଦେଇଥିଲେ । ଏପ୍ରିଲ୍ ୩୦ରେ ଗୁଜରାଟରେ କେତେକ ସତ୍ୟାଗ୍ରହୀ ସମେତ ରମାଦେବୀ, ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ବହୁ ମହିଳା ଲବଣ ସତ୍ୟାଗ୍ରହରେ ଯୋଗଦାନ କରିଥିଲେ ।

ଠିକ୍ ସେଇ ସମୟରେ ବାଲେଶ୍ୱରର ସରଠା, କଟକର କୁଜଙ୍ଗ, ପୁରୀର କୁହୁଡ଼ି, ସିଂହେଶ୍ୱରୀ, ଲାଟରା, ଗଞ୍ଜାମର ହୁମା ଆଦିରେ ମଥୁରାମୋହନ ବେହେରା, କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ ପ୍ରମୁଖଙ୍କ ନେତୃତ୍ୱରେ ଲୁଣ ମରାଗଲା । ପୁରୀରେ ନୀଳକଣ୍ଠ ଦାସ, ଜଗନ୍ନାଥ ରଥ, ଗଞ୍ଜାମରେ ବିଶ୍ୱନାଥ ଦାସ, ନିରଂଜନ ପଟ୍ଟନାୟକ, ସରଳା ଦେବୀ, କୁଜଙ୍ଗର ରାଣୀ ଭାଗ୍ୟବତୀ ଦେବୀ ପାଞ୍ଚ ଶତାଧିକ ମହିଳାଙ୍କୁ ନେଇ ଲୁଣ ମାରିଲେ ।

ବିଦେଶୀ ବସ୍ତ୍ର ବର୍ଜନ, ମଦଦୋକାନ ଆଗରେ ପିକେଟିଂ, ଚୌକିଦାରୀ କର ବର୍ଜନ, ଖଦୀର ପ୍ରଚାର ପ୍ରସାର ଆଦିରେ ସ୍କୁଲ୍ ଓ କଲେଜ ଛାତ୍ରମାନେ ବ୍ୟାପକ ଭାବରେ ଯୋଗଦେଲେ ।

ସରକାର ନେତାମାନଙ୍କୁ ଗିରଫ କଲେ । ସେମାନଙ୍କୁ କାରାଦଣ୍ଡ ଦିଆଗଲା । କଂଗ୍ରେସ କାର୍ଯ୍ୟାଳୟ, ଆଶ୍ରମମାନ ଖାନତଲାସ ହେଲା । ଆନ୍ଦୋଳନ ସକ୍ରାନ୍ତ କାଗଜପତ୍ର ଜବତ ହେଲା । 'ସମାଜ', 'ପ୍ରଜାତନ୍ତ୍ର' ଖବରକାଗଜ ପ୍ରକାଶନ ସ୍ଥଗିତ କରି ଦିଆଗଲା ।

ସେତିକି ବେଳେ ଗୋପାଳଚନ୍ଦ୍ର ପ୍ରହରାଜ ଓ ବ୍ରଜସୁନ୍ଦର ଦାସ ଆରମ୍ଭ କରିଥିବା 'ସତ୍ୟ-ସମାଚାର' ଖବରକାଗଜ ମାଧ୍ୟମରେ ଇଂରେଜ ସରକାର ଜନମତକୁ ନିଜ ସପକ୍ଷରେ ମୋଡ଼ିବାର ଅପଚେଷ୍ଟା କଲେ ।

୧୯୩୦ରେ ଲବଣ ସତ୍ୟାଗ୍ରହ ବସ୍ତୁତଃ ଗାନ୍ଧିଙ୍କ ଦ୍ୱିତୀୟ ଅହିଂସା ସଂଗ୍ରାମ ଥିଲା । ସେହି ଅହିଂସା ସଂଗ୍ରାମ ଭିତରେ ବି ସଶସ୍ତ୍ର ସଂଗ୍ରାମର ବଜ୍ର ନିର୍ଘୋଷ ଶୁଭିଥିଲା । ସେଥିମଧ୍ୟରୁ ଭୟାବହ ରୂପ ନେଇଥିଲା ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ବିଦ୍ରୋହ ଓ ପୂର୍ବବଙ୍ଗର ଚଟ୍ଟଗ୍ରାମ ବିଦ୍ରୋହ ।

ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ପୂର୍ବଭାରତର ଯୁବବିଦ୍ରୋହ ଥିଲା ସୀମାନ୍ତ, ବିଦ୍ରୋହ ଅପେକ୍ଷା ଅଧିକ ବ୍ୟାପକ ଓ ଭୟାବହ । ଏହାର ମହାନାୟକ ଥିଲେ ମାଷ୍ଟରଦା' ସୂର୍ଯ୍ୟ ସେନ୍ ।

୧୯୩୦ ଏପ୍ରିଲ୍ ୧୮ରେ ଚଟ୍ଟଗ୍ରାମରେ ପୂର୍ବ ଭାରତର ବୃହତ୍ତମ ଅସ୍ତ୍ରଭଣ୍ଡାର ଦଖଲ କରି ବିଦ୍ରୋହୀମାନେ ମାଉଜର ପିସ୍ତଲ ଠାରୁ ଆରମ୍ଭ କରି ଲୁଇସ୍ ଗନ୍ ପର୍ଯ୍ୟନ୍ତ ଲୁଟି ନେଇଥିଲେ । ଚଟ୍ଟଗ୍ରାମ ସହରରୁ ବ୍ରିଟିଶ୍ ଅସ୍ତିତ୍ୱ ଲୋପ ପାଇଯାଇଥିଲା । ସେଠାରେ ବିପ୍ଳବୀ ସ୍ୱାଧୀନ ସରକାର ଗଠନ କରାଯାଇଥିଲା ।

ଏଥିରେ ଓଡ଼ିଶାର ବିପ୍ଳବୀ ଜେନେରାଲ୍ ଲୋକନାଥ ବଳ ଓ ତାଙ୍କର ୧୫ ବର୍ଷୀୟ ଭାଇ ହରିଗୋପାଳ ବଳ ଯୋଗଦାନ କରିଥିଲେ ।

ଚଟ୍ଟଗ୍ରାମ ଉପକଣ୍ଠରେ ଥିବା ଜଲାଲାବାଦର ପାହାଡ଼ ଯୁଦ୍ଧରେ ପ୍ରଥମ ସହୀଦ୍ ହୋଇଥିଲେ କିଶୋର ହରିଗୋପାଳ ବଳ ।

ପ୍ରାୟ ତିନିବର୍ଷ ଧରି ଚାଲିଥିବା ଆନ୍ଦୋଳନ ଶେଷରେ ମାଷ୍ଟରଦା', ଲୋକନାଥଙ୍କ ସମେତ ଅନ୍ୟ ବିପ୍ଳବୀମାନେ ମଧ୍ୟ ଧରାପଡ଼ିଲେ । ଲୋକନାଥଙ୍କୁ ଆଣ୍ଡାମାନକୁ ଦ୍ୱୀପାନ୍ତରିତ କରାଗଲା ।

ମାର୍ଚ୍ଚ ୫, ୧୯୩୧ରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ଅନୁସାରେ ଭାରତୀୟ ଜାତୀୟ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର କରିନେଲା । ସରକାରଙ୍କ ପକ୍ଷରୁ ସତ୍ୟାଗ୍ରହୀମାନଙ୍କୁ ମୁକ୍ତି ଦିଆଯିବାର ପ୍ରତିଶ୍ରୁତି ଦିଆଗଲା ।

ମହାତ୍ମା ଗାନ୍ଧି ଇଂଲଣ୍ଡ ଠାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ କଂଗ୍ରେସର ଏକମାତ୍ର ପ୍ରତିନିଧି ଭାବରେ ଯୋଗଦେଲେ ।

❑❑❑

# ଜାତୀୟ ଆନ୍ଦୋଳନ

ଲଣ୍ଡନରେ ଗୋଲ୍‌ଟେବୁଲ୍ ବୈଠକ ବିଫଳ ହେଲା ପରେ ପୁରୀ, କଟକ, ସମ୍ବଲପୁର, ବାଲେଶ୍ୱର ଆଦିରେ ବ୍ୟାପକ ଦମନମୂଳକ କାର୍ଯ୍ୟ ଚାଲିଲା । ବହୁ କଂଗ୍ରେସ ନେତା ଗିରଫ ହେଲେ । ସୁରେନ୍ଦ୍ରନାଥ ଦାସ, ନୀଳାମ୍ବର ଦାସ, ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ପଟ୍ଟନାୟକ ପ୍ରମୁଖ ଭୂମିଗତ ହୋଇ ଆନ୍ଦୋଳନ ଚଳାଇଲେ ।

ହରିଜନ ଆନ୍ଦୋଳନରେ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ ପ୍ରମୁଖ ନେତୃତ୍ୱ ନେଲେ । ମେ ୧୯୩୨ରେ ଗାନ୍ଧି ହରିଜନ ଯାତ୍ରାରେ ଝାରସୁଗୁଡ଼ା, ପୁରୀ ଆସିଥିଲେ । ହରିଜନମାନଙ୍କ ଜଗନ୍ନାଥ ମନ୍ଦିର ପ୍ରବେଶ ଅଧିକାର ନଥିବାରୁ ସେ ମଧ ଜଗନ୍ନାଥ ଦର୍ଶନ କରିନଥିଲେ ।

୧୯୩୩ରେ ଦେଶରେ ଏବଂ ଓଡ଼ିଶାରେ ସୋସିଆଲିଷ୍ଟ ଆନ୍ଦୋଳନ ଆରମ୍ଭ ହେଲା । ୧୯୩୫ରେ ଓଡ଼ିଶାର କଂଗ୍ରେସ ସୋସିଆଲିଷ୍ଟମାନେ ଚାଷୀମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଡ. ମହତାବଙ୍କ ନେତୃତ୍ୱରେ କିଷାନ୍ ସଂଘ ଗଠନ କଲେ । ସେହି ସମୟରେ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ଚାଷୀ ଓ ଶ୍ରମିକଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ କୃଷକ ଓ ଶ୍ରମିକ ସଂଗଠନମାନ ଗଠିତ ହେଲା ।

ଏ ସମୟ ଥିଲା ୧୯୩୨ ଜାନୁଆରୀ ପହିଲାରୁ ଆରମ୍ଭ ହୋଇ ୧୯୩୪ ଯାଏଁ ଚାଲିଥିବା ସବିନୟ ଆଇନ ଅମାନ୍ୟ ଆନ୍ଦୋଳନ । ସରକାର ଏ ଭିତରେ କଂଗ୍ରେସକୁ ବେଆଇନ ଅନୁଷ୍ଠାନ ଘୋଷଣା କରିସାରିଥାନ୍ତି । ପୋଲିସ୍‌ର ଅତ୍ୟାଚାର ସତ୍ତ୍ୱେ ଆନ୍ଦୋଳନକାରୀମାନେ କୌଣସି ରକମ ପ୍ରତିରୋଧ ନକରି ଏ ଆନ୍ଦୋଳନ ଚଲାଇଥିଲେ ।

୧୯୩୬ରେ କୃଷକ, ଶ୍ରମିକ ସଂଗଠନମାନଙ୍କ ଦ୍ୱାରା ଓଡ଼ିଶାର ରାଜନୈତିକ ଜୀବନ ଉଦ୍ଦୀପ୍ତ ହୋଇ ସାରିଥିଲା । ପ୍ରତିନିଧିମାନେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ-୧୯୩୫ ଅନୁସାରେ ଇଂରେଜ ଶାସିତ ପ୍ରଦେଶ ଓ ଦେଶୀୟ ରାଜ୍ୟମାନଙ୍କୁ ନେଇ ଭାରତରେ ଏକ ରାଷ୍ଟ୍ରସଂଘ ଗଠିତ ହୋଇ ସାରିଥିଲା । କେନ୍ଦ୍ରରେ ରାଜ୍ୟ ପରିଷଦ ଓ କେନ୍ଦ୍ରୀୟ ବିଧାନସଭା ନାମକ ଦୁଇଟି ଗୃହ ରହିବାର ବ୍ୟବସ୍ଥା ଥିଲା । ପ୍ରାଦେଶିକ ସ୍ୱାତନ୍ତ୍ର୍ୟ, ପ୍ରଦେଶର ଶାସନ ଦାୟିତ୍ୱ ଗଭର୍ଣ୍ଣର ଓ ତାଙ୍କ ମନ୍ତ୍ରୀମଣ୍ଡଳ ଉପରେ ନ୍ୟସ୍ତ କରିବାର ବ୍ୟବସ୍ଥା ରହିଲା । ପ୍ରତ୍ୟେକ ପ୍ରଦେଶରେ ବିଧାନସଭା ଓ ସେଥିରେ ଲୋକଙ୍କ ଦ୍ୱାରା

ନିର୍ବାଚିତ ସଦସ୍ୟ ରହିବାର ବ୍ୟବସ୍ଥା ଅନୁସାରେ ୧୯୩୬-୩୭ରେ ସମଗ୍ର ଦେଶରେ ନିର୍ବାଚନ ହେଲା ।

ଜାନୁଆରୀ ୧୯୩୨ରେ ହୋଇଥିବା ନିର୍ବାଚନରେ କଂଗ୍ରେସ, ଓଡ଼ିଶା ଜାତୀୟତାବାଦୀ ଦଳ ଓ ମିଳିତ ଦଳ ଅଂଶଗ୍ରହଣ କଲେ । ଏଥିରେ କଂଗ୍ରେସ ଓଡ଼ିଶା ସମେତ ଅନ୍ୟ ଚାରୋଟି ପ୍ରଦେଶରେ ସଂଖ୍ୟାଗରିଷ୍ଠତା ଲାଭ କଲା । କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା ।

ମାର୍ଚ୍ଚ ୩୧, ୧୯୩୮ରେ ପୁରୀର ଡେଲାଙ୍ଗ ଠାରେ ଗାନ୍ଧି ସେବା ସଂଘର ଚତୁର୍ଥ ବାର୍ଷିକ ଅଧିବେଶନ ହେଲା । ଏଥିରେ ଗାନ୍ଧି, ସରଦାର ପଟେଲ୍, ରାଜେନ୍ଦ୍ର ପ୍ରସାଦ, ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ଆଚାର୍ଯ୍ୟ କୃପାଳିନୀ, ମୌଲାନା ଆଜାଦ୍, ପଟ୍ଟାଭି ସୀତାରାମାୟା ପ୍ରମୁଖ ଯୋଗ ଦେଇଥିଲେ ।

ଏପ୍ରିଲ୍ ୧୯୩୮ରେ ଓଡ଼ିଶାରେ କଂଗ୍ରେସରେ ଏକ ସାମ୍ବିଧାନିକ ସଙ୍କଟ ଦେଖାଦେଇଥିଲା । ୧୯୩୯ରେ ଉତ୍କଳ କଂଗ୍ରେସ କମିଟି ମଧ୍ୟରେ ତୀବ୍ର ମତବିରୋଧ ଦେଖାଦେଇଥିଲା । ନୀଳକଣ୍ଠ ଦାସ, ଡ. ମହତାବ ପ୍ରମୁଖ କଂଗ୍ରେସ କମିଟିରୁ ଇସ୍ତଫା ଦେଇଥିଲେ ।

ଅଗଷ୍ଟ ୧୯୩୯ରେ ସୁଭାଷଚନ୍ଦ୍ର ବୋଷ କଟକରେ ଓଡ଼ିଶା ଯୁବ ସମ୍ମିଳନୀର ଅଧ୍ୟକ୍ଷତା କଲେ । ଏଥିରେ ବହୁ କଂଗ୍ରେସ ସମାଜବାଦୀ ଫରଓ୍ୱାର୍ଡ଼ ବ୍ଲକ୍‌ରେ ମିଶିଗଲେ ।

## ଜାତୀୟ ଆନ୍ଦୋଳନ ଓ ବିଶ୍ୱ

ଭାରତର ଜାତୀୟ ଆନ୍ଦୋଳନ ସମୟରେ କଂଗ୍ରେସ ପୃଥିବୀର ଅନ୍ୟାନ୍ୟ ଦେଶର ଘଟଣାର ଭାରତରେ ପ୍ରଭାବକୁ ଲକ୍ଷ୍ୟ କରୁଥିଲା । ଆଫ୍ରିକା ଓ ଏସିଆ ମହାଦେଶରେ ଇଂଲଣ୍ଡ ସାମ୍ରାଜ୍ୟ ବିସ୍ତାର ପାଇଁ ଭାରତୀୟ ସୈନିକ ଓ ଅର୍ଥ ବ୍ୟବହାରର କଂଗ୍ରେସ ବିରୋଧୀ ଥିଲା । ସାମ୍ରାଜ୍ୟବାଦର ବିରୋଧାଚରଣ କଂଗ୍ରେସର ଅନ୍ୟତମ ନୀତି ଥିଲା । ଏସିଆ, ଆଫ୍ରିକାର ଜାତୀୟ ଆନ୍ଦୋନଳକୁ କଂଗ୍ରେସ ସମର୍ଥନ ଦେଇଥିଲା । ସେହିପରି ଇଥିଓପିଆ, ସ୍ପେନ୍, ଚେକୋସ୍ଲୋଭାକିଆ ଆଦି ଦେଶର ଫାସୀବାଦ ବିରୋଧୀ ଆନ୍ଦୋଳନକୁ ଏହାର ସମର୍ଥନ ରହିଥିଲା । ୧୯୩୭ରେ ଜାପାନାର ଚୀନ୍ ଆକ୍ରମଣର କଂଗ୍ରେସ ସମାଲୋଚନା କରି ଭାରତରେ ଜାପାନୀ ଦ୍ରବ୍ୟ ବର୍ଜନ ଆହ୍ୱାନ ଦେଇଥିଲା । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଯୁଦ୍ଧରେ ଭାରତ ନୀରପେକ୍ଷ ରହିବ ବୋଲି କଂଗ୍ରେସ ନିଷ୍ପତ୍ତି ନେଇଥିଲା ।

## ଦ୍ୱିତୀୟ ବିଶ୍ୱଯୁଦ୍ଧ

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାଇସ୍‌ରାୟ ଲର୍ଡ ଲିନ୍‌ଲିଥ୍‌ଗୋ ଜାତୀୟ କଂଗ୍ରେସ ଓ ପ୍ରାଦେଶିକ ମନ୍ତ୍ରିମଣ୍ଡଳଗୁଡ଼ିକର ମତାମତ ନନେଇ ଭାରତ ଯୁଦ୍ଧରେ ଯୋଗଦେଲା ବୋଲି ଘୋଷଣା କରିଦେଲେ ।

କଂଗ୍ରେସର ଡାକରାରେ ବିଭିନ୍ନ ପ୍ରାଦେଶିକ ସରକାର ସହ ଓଡ଼ିଶାରେ ମଧ ମନ୍ତ୍ରୀମାନେ ଇସ୍ତଫା ଦେଲେ । ଓଡ଼ିଶାରେ ଯୁଦ୍ଧ ବିରୋଧୀ ଅଭିଯାନ ଓ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଲା । ବରୀ ତାଲିମ କେନ୍ଦ୍ରରେ କଂଗ୍ରେସ ସ୍ୱେଚ୍ଛାସେବୀମାନେ ତାଲିମ ନେଉଥିଲେ ।

ଏତିକିବେଳେ ଡ. ମହତାବଙ୍କ ନେତୃତ୍ୱରେ କଂଗ୍ରେସର କାର୍ଯ୍ୟକ୍ରମ ବିଭାଗ, ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଅଧ୍ୟକ୍ଷତାରେ ହରିଜନ ବିଭାଗ, ମୌଲାନା ମହମ୍ମଦ୍ ଆତାହାରଙ୍କ ସଭାପତିତ୍ୱରେ ସଂଖ୍ୟାଲଘୁ ବିଭାଗ ଏବଂ ଚରଖା ବିଭାଗ ସୃଷ୍ଟି ହେଲା । ଡ. ମହତାବ ଡିସେମ୍ବର ୧, ୧୯୪୦ରୁ ବ୍ୟକ୍ତିଗତ ଆଇନ ଆନ୍ଦୋନଳର ନେତୃତ୍ୱ ନେଇଥିଲେ ।

ଯୁଦ୍ଧବିରୋଧୀ ଭାଷଣ (ଧ୍ୱନି ଆନ୍ଦୋଳନ) ଦେଇ ଡ. ମହତାବ ସରଳା ଦେବୀ, ସମ୍ବଲପୁରର ବୋଧରାମ ଦୁବେ, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ସଦାଶିବ ତ୍ରିପାଠୀ, ମୋହନ ଦାସ, ନବକୃଷ୍ଣ ଚୌଧୁରୀ, ରାଧାକୃଷ୍ଣ ବିଶ୍ୱାସରାୟ, ଲୋକନାଥ ମିଶ୍ର ପ୍ରମୁଖ ଗିରଫ ହେଲେ ।

## ଦେଶୀୟ ରାଜ୍ୟରେ ଆନ୍ଦୋଳନ

ଭାରତରେ ଇଂରେଜ ଶାସନ ସମୟରେ ଦେଶୀୟ ରାଜ୍ୟର ପ୍ରଜାମାନେ ରାଜାମାନଙ୍କ ଅତ୍ୟାଚାର ଓ ଶୋଷଣର ଶିକାର ହେଉଥିଲେ । ଇଂରେଜମାନଙ୍କ ଛତ୍ରଛାୟା ତଳେ ରାଜାମାନଙ୍କ ପ୍ରଜା ନିର୍ଯ୍ୟାତନା ସୀମା ଟପିଥିଲା । ଫଳରେ ରାଜା ଓ ଇଂରେଜମାନଙ୍କ ବିରୋଧରେ ପ୍ରଜାମାନଙ୍କର ଗଭୀର ଅସନ୍ତୋଷ ଦେଖାଦେଇଥିଲା । ଅନେକ ରାଜ୍ୟରେ ଏହା ବିରୋଧରେ ବିଦ୍ରୋହ ହୋଇଥିଲା । ଏହା ମୂଳରେ କାମ କରୁଥିଲା ପ୍ରଜାମଣ୍ଡଳ ବା ଷ୍ଟେଟ୍‌ସ ପିପୁଲ୍ସ କନ୍‌ଫରେନ୍ସ ।

୧୯୨୦ର ନାଗପୁର ଅଧିବେଶନରେ କଂଗ୍ରେସ ଦେଶୀୟ ରାଜାମାନଙ୍କୁ ନିଜ ନିଜ ରାଜ୍ୟରେ ଦାୟିତ୍ୱପୂର୍ଣ୍ଣ ସରକାର ପ୍ରତିଷ୍ଠା କରିବାର ପରାମର୍ଶ ଦେଇଥିଲେ । ୧୯୩୮ରୁ ତ୍ରିପୁରା କଂଗ୍ରେସରେ ଏଭଳି ଦେଶୀୟ ଆନ୍ଦୋଳନରେ କଂଗ୍ରେସ ଜଡ଼ିତ ହେବାକୁ ସ୍ଥିର କଲା । ନେହେରୁଙ୍କୁ ଜାତୀୟ ପ୍ରଜାମଣ୍ଡଳର ସଭାପତି କରାଗଲା ।

ଫେବୃଆରୀ ୧୯୩୮ରେ ଓଡ଼ିଶାର କେତେକ ଗଡ଼ଜାତରେ କର ବନ୍ଦ ଆନ୍ଦୋଳନ ଚାଲିଲା । ତିର୍ତ୍ତୋଲ, କୁଜଙ୍ଗ, କନିକା ପ୍ରଭୃତିରେ ଏହା ତୀବ୍ର ରୂପ ନେଲା ।

ଗାଙ୍ଗପୁର ଅନ୍ଧାରୀ ମୂଳକରେ ଜମିଜମାର ସାନି ବନ୍ଦୋବସ୍ତ, ଖୁଣ୍ଟକାଟି ସ୍ୱତ୍ୱ ପ୍ରଚଳନ, ବେଠି ପ୍ରଥାର ଉଚ୍ଛେଦ, ଗ୍ରାମ୍ୟଜଙ୍ଗଲ ଉପରେ ପ୍ରଜାଙ୍କ ଅଧିକାର, ଖଜଣା ଛାଡ଼, ବେକାରୀ ସମସ୍ୟାର ସମାଧାନ, ଶିକ୍ଷାର ପ୍ରସାର, ଆଦିବାସୀ ସଂପ୍ରଦାୟ ଉପରେ ଅତ୍ୟାଚାର ବନ୍ଦ, ଖଜଣା ବୃଦ୍ଧି ଓ ସେନା ସାହାଯ୍ୟରେ ନାନା ରକମ ନୂଆ କର ଆଦାୟ ବିରୋଧରେ ଅତିଷ୍ଠ ଆଦିବାସୀମାନେ ନିର୍ମଳ ମୁଣ୍ଡାଙ୍କ ନେତୃତ୍ୱରେ ବିଦ୍ରୋହ କଲେ ।

ପଲିଟିକାଲ୍ ଏଜେଣ୍ଟ ଓ ଏସ୍.ଡି.ଓ. ସୈନ୍ୟବାହିନୀ ନେଇ ତତ୍‌କାଳୀନ ରାଜା ବାହିନୀ ତାକୁ ନିର୍ମମ ଭାବରେ ଦମନ କରିଥିଲେ । ରାଇବଗା ନିକଟସ୍ଥ ସିମ୍‌କୋ ଗାଁ ପାଖରେ ପାହାଡ଼କଢ଼ରେ ବ୍ରାହ୍ମଣମୋରା, ଜଲାନା, ଗାବିରା, ତେଲିପୋଷା, ପୁରୁଣାପାଣି, ନୂଆଗାଁ, ମୁରୁଷ, ଦହିଜିରା ଆଦି ଗ୍ରାମର ଲୋକମାନେ ନିର୍ମଳଙ୍କ ଆହ୍ୱାନରେ ରାଜାଙ୍କ ବିରୋଧରେ ପ୍ରତିବାଦ ସଭା କରିବାକୁ ସମବେତ ହୋଇଥିଲା ବେଳେ ଲେଫ୍‌ଟନାଣ୍ଟ ମେଗାର ସେଠାରେ ପହଞ୍ଚି କୌଶଳକ୍ରମେ ନିର୍ମଳଙ୍କୁ ଗିରଫ କରିଥିଲେ । ମେଗାରଙ୍କ ସଙ୍କେତ ବୁଝି ନପାରି ପୁଲିସର ଅବାରିତ ଗୁଳି ଚାଳନାରେ ସେଠାରେ ଦୁଇଜଣ ମହିଳା ସମେତ ୪୦ ଜଣ ନିରୀହ ମୁଣ୍ଡା ଆଦିବାସୀ ନିହତ ଓ ୮୨ ଜଣ ଆହତ ହୋଇଥିଲେ । ବେସରକାରୀ ସୂତ୍ରରେ ଉଭୟ ମୃତାହତ ସଂଖ୍ୟା ଶତାଧିକ ବୋଲି କୁହାଯାଏ । ଏହା ଆମ୍‌କୋ-ସିସ୍‌ମୋ କାଣ୍ଡ ଭାବେ ଖ୍ୟାତ । ଏପ୍ରିଲ୍ ୨୫, ୧୯୩୯ର ନରସଂହାରକୁ ଦ୍ୱିତୀୟ ଜାଲିଆନାୱାଲାବାଗ୍ ନରସଂହାର ବୋଲି କୁହାଯାଏ । ଦୁର୍ଭାଗ୍ୟର କଥା ଯେ, ଆମ୍‌କୋ-ସିମ୍‌କୋ ସହୀଦ୍‌ମାନେ ଏବେ ମଧ୍ୟ ସହୀଦ୍ ମାନ୍ୟତା ପାଇପାରି ନାହାନ୍ତି ।

ଢେଙ୍କାନାଳ ରାଜାଙ୍କ ଅମାନୁଷିକ ଅତ୍ୟାଚାର, ବେଠି, ବେଗାରୀ, କର, ମାଗଣର ଆଖିବୁଜା ନିର୍ଯ୍ୟାତନା, ଯତନନଗର ନିର୍ମାଣରେ ମଧ୍ୟଯୁଗୀୟ ଶୋଷଣ, ଦରବାରୀ ସେନାବାହିନୀକୁ ପଲିଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍‌ଙ୍କ ଗୁର୍ଖା ଓ ଇଂରେଜ ବାହିନୀର

ସହଯୋଗ-ଏସବୁ ପ୍ରତିବାଦରେ ସେଠାରେ ପ୍ରଜାମଣ୍ଡଳର ମରଣସେନା ଗଠିତ ହୋଇଥିଲା । ଅତ୍ୟାଚାର ବୃଦ୍ଧିର ସମାନ୍ତର ଗତିରେ ପ୍ରଜାମଣ୍ଡଳର ସଙ୍ଗଠନ, ରଣକୌଶଳ ବୃଦ୍ଧି ପାଉଥାଏ । ସମସ୍ତ ଦମନ ଲୀଳା ବିଫଳ ହେଉଥାଏ ।

ଅକ୍ଟୋବର ୧୧, ୧୯୩୮ ଦିନ ଭୁବନ ଠାରେ ପ୍ରଜାମଣ୍ଡଳର ବିଶାଳ ସମାବେଶକୁ ବେଜାଲ୍‌ଗେଟ୍ ବେଆଇନ ଘୋଷଣା କଲେ । ଉତ୍ତେଜିତ ଲୋକ ଓ ବ୍ରିଟିଶ୍ ବାହିନୀ ମଧ୍ୟରେ ଧସ୍ତାଧସ୍ତି ପରେ ଇଂରେଜବାହିନୀ ଆଖିବୁଜା ଗୁଳିଚାଳନା କଲା । ଏଥିରେ ପାଣୁ ଲେଙ୍କା, ମଧୁ ନାୟକ, ବେଣୁ ସାହୁ, ନନ୍ଦ ବିଶ୍ୱାଳ, ସୁଦର୍ଶନ ବିଶ୍ୱାଳ, ନରହରୀ ତନ୍ତୀ, ଶମ୍ଭୁ ସାହୁ, ଗଙ୍ଗାଧର ସାହୁ, ଦୀନବନ୍ଧୁ ବେହେରା, ଫଗୁ ସାହୁ, ନାଥ ବିଶ୍ୱାଳ, ଦାସ ସାହୁ, ପବନ୍ ବିଶ୍ୱାଳ, ଦାମ ସାହୁ ପ୍ରମୁଖ ସହୀଦ୍ ହେଲେ ।

ତଥାପି ଆଖପାଖ ଅଞ୍ଚଳର ଲୋକେ ଏଥିରେ ଡରି ନ ଯାଇ ଭୁବନ ଆଡ଼କୁ ସାହସର ସହ ମାଡ଼ି ଚାଲିଲେ । ବେଜେଲ୍‌ଗେଟ୍ ଏଥିରେ ଭୟଭୀତ ହୋଇ ସ୍ଥାନ ପରିତ୍ୟାଗ କଲେ ।

ଫେରିଲା ବେଳେ ବ୍ରାହ୍ମଣୀ ନଦୀ ଘାଟରେ ଅଧରାତି ହେଲା । ରାତିରେ କୌଣସି ରଜାଘର ଲୋକ ବା ସରକାରୀ ଲୋକଙ୍କୁ ଘାଟ ପାରି ନକରାଇବାକୁ ପ୍ରଜାମଣ୍ଡଳ ନିର୍ଦ୍ଦେଶ ଦେଇଥାଏ ।

ଗୋରାବାହିନୀକୁ ରାତିରେ ଡଙ୍ଗା ପାରି କରିବାକୁ ରୋକ୍‌ଠୋକ୍ ମନାକରି ସେମାନଙ୍କ ନିର୍ମମ ଗୁଳି ଚାଳନାରେ ନୀଳକଣ୍ଠପୁରର ଜଣେ ବିଧବାଙ୍କ ୧୨ ବର୍ଷର ପୁଅ ବାଜୀ ରାଉତ ଶହୀଦ୍ ହେଲେ । ତାଙ୍କ ସହ ନଟ ମଲ୍ଲିକ, ଲକ୍ଷ୍ମଣ ମଲ୍ଲିକ, ହୃଷୀ ନାୟକ ଓ ଗୁରି ନାୟକ ମଧ୍ୟ ଶହୀଦ୍ ହେଲେ ।

ପୁରୀ, ରଣପୁରରେ ପ୍ରଜା ନିର୍ଯ୍ୟାତନା, ବେଠୀ, ବେଗାରୀ, ବଳପୂର୍ବକ ରସଦ୍ ମାଗଣ ଆଦାୟ, ବିଦ୍ୟାଳୟ ବନ୍ଦ କରି ରାଜାଙ୍କ ଆମୋଦପ୍ରମୋଦ ପାଇଁ ପିଲାମାନଙ୍କୁ ଯାତ୍ରା, ସୁଆଙ୍ଗ, ନାଟକ, ଥିଏଟର ଶିକ୍ଷାଦାନ, ମଣିନାଗ ପର୍ବତର ଠାକୁରାଣୀଙ୍କ ଆଗରେ ରାଜାଙ୍କ ଦ୍ୱାରା ନିରୀହ ଲୋକଙ୍କୁ ବଳି ଦେବା, ରାଜାଙ୍କ ଷ୍ଟେଟ୍ ସେନାକୁ ପୋଲିସ୍ ଓ ବେଜେଲ୍‌ଗେଟ୍‌ଙ୍କ ସକ୍ରିୟ ସମର୍ଥନ ଭିତରୁ ଜନ୍ମ ନେଇଥିଲେ ବିଦ୍ରୋହୀ ନେତା ଦିବାକର ପରିଡ଼ା ଓ ରଘୁନାଥ ମହାନ୍ତି ।

ସେମାନଙ୍କ ନେତୃତ୍ୱରେ ରଣପୁରରେ ପ୍ରଜା ଆନ୍ଦୋଳନର ନିଆଁ ଜଳିଉଠିଥିଲା । ୧୯୩୪ରେ କଂଗ୍ରେସ ନେତୃବର୍ଗ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେଲେ । କମ୍ୟୁନିଷ୍ଟ

ନେତା ଭଗବାନ ରାମ, ପ୍ରାଣନାଥ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ ପ୍ରଜା ଆନ୍ଦୋଳନ ସଙ୍ଗଠନରେ ଲାଗିପଡ଼ିଲେ ।

ସେତେବେଳକୁ ପ୍ରଜାମଣ୍ଡଳ ନେତା କୃପାସିନ୍ଧୁ ମିଶ୍ର ଗିରଫ ହୋଇସାରିଥାନ୍ତି । ଜାନୁଆରୀ ୫, ୧୯୩୯ ଦିନ ରଣପୁର ରାଜବାଟୀ ସମ୍ମୁଖରେ ୩୦ ହଜାର ବିପ୍ଳବୀ ପ୍ରଜାଙ୍କର ଐତିହାସିକ ସମାବେଶ ହେଲା । ସେମାନେ କୃପାସିନ୍ଧୁଙ୍କ ମୁକ୍ତି, ବେଠି, ବେଗାରୀ, ଶୋଷଣର ବିଲୋପ ଦାବି କଲେ । ରାସ୍ତା ସବୁ ଅବରୋଧ କରାଯାଇଥିଲା । ବେଜେଲ୍‌ଗେଟ୍‌କୁ ଦେଖି ଉତ୍ତ୍ୟକ୍ତ ଜନତା ହତ୍ୟା କଲା । ପ୍ରବଳ ଜନସମୁଦ୍ରରେ ସେନାବାହିନୀରୁ ଛିଟିକି ଯାଇଥିବା ବେଜେଲ୍‌ଗେଟ୍‌କୁ ହତ୍ୟା କରିବା ସହଜ ହୋଇଥିଲା । ସେଦିନ ନାଥ ଭୋଳ, ଅର୍ଜୁନ ରାଉତ ଶହୀଦ୍ ହେଲେ ।

ବେଜେଲ୍‌ଗେଟ୍ ହତ୍ୟାକାଣ୍ଡର ପ୍ରତିଶୋଧ ନେବାକୁ ଦୀର୍ଘଦିନ ଧରି ରଣପୁରରେ ଦମନ ଲୀଳା ଚାଲିଲା ।

ଅଧିକାଂଶ ଲୋକ ରଣପୁର ପରିତ୍ୟାଗ କରି ଖୋର୍ଦ୍ଧା ଖାସମାହାଲରେ ଆଶ୍ରୟ ନେଇ ରକ୍ଷା ପାଇଥିଲେ ।

ରାଜକୀୟ ସେନା, ପୋଲିସ୍ ଓ ଇଂରେଜ ବାହିନୀର ପ୍ରବଳ ଉଦ୍ୟମ ଫଳରେ ରଘୁନାଥ ମହାନ୍ତି, ଦିବାକର ପରିଡ଼ା ଓ ଶତାଧିକ ପ୍ରଜା ଗିରଫ ହେଲେ । ଏପ୍ରିଲ୍ ୪, ୧୯୪୧ରେ ରଘୁ ଓ ଦିବାକର ପ୍ରାଣଦଣ୍ଡ ପାଇଲେ । ୧୬ ଜଣଙ୍କୁ ଜେଲ୍ ଓ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା ।

୧୯୩୮ରେ ସମ୍ବଲପୁରର ଡୁବୁମଠାରେ ସୋନପୁର ପ୍ରଜାମଣ୍ଡଳ ଗଠିତ ହେଲା । ଲକ୍ଷ୍ମଣ ଶତପଥୀ, ସଭାପତି, ରାମଚନ୍ଦ୍ର ଶତପଥୀ, ସମ୍ପାଦକ, ଭୀମସେନ ଭୋଇ, କୋଷାଧ୍ୟକ୍ଷ ଓ ଦାମୋଦର ରଥ, ଦାଶରଥି ପ୍ରସାଦ ରଥ, ଚତୁର୍ଭୁଜ ମିଶ୍ର, ଅମୂଲ୍ୟମଣି ବାବୁ ସଭ୍ୟ ରହିଲେ । ଏଥିରେ ସମ୍ବଲପୁରର ଦୟାନନ୍ଦ ଶତପଥୀ, ଘନଶ୍ୟାମ ପାଣିଗ୍ରାହୀ, ମଙ୍ଗଲୁ ପ୍ରଧାନ ଓ ସୋନପୁରରୁ ନିର୍ବାସିତ ଗୌରୀଶଙ୍କର ରାୟଗୁରୁ ପ୍ରମୁଖ ଯୋଗ ଦେଇଥିଲେ । ଦରବାର ଶାସନ ପୋଲିଟିକେଲ୍ ଏଜେଣ୍ଟ ପାଖକୁ ଏକ୍ସଟ୍ରାଡିସନ୍ ୱାରେଣ୍ଟ ବଳରେ ଉକ୍ତ କର୍ମୀମାନଙ୍କୁ ପଠାଇଦେବାକୁ ଦାବି କଲେ । ତତ୍‌କାଳୀନ ବିଶ୍ୱନାଥ ଦାସ ସରକାରଙ୍କ ଶିକ୍ଷା ଓ ଆଇନ ମନ୍ତ୍ରୀ ବୋଧରାମ ଦୁବେ ଏହି ୱାରେଣ୍ଟକୁ ରଦ୍ଦ କରିଦେଲେ ।

ରେସିଡେନ୍ସ ସାହେବଙ୍କୁ ଦାବିପତ୍ର ଦେବାକୁ ମୋହନ ମିଶ୍ର, ପୀତାମ୍ବର ଭୋଇ, ଲକ୍ଷ୍ମଣ ଶତପଥୀ ସୋନପୁର ଯାତ୍ରା କଲାବେଳେ ବାଟରେ ବିନକା ପୋଲିସ ହାତରେ ଧରାପଡ଼ିଲେ ।

ଏହାପରେ ବହୁ ପ୍ରଜା ମଧ୍ୟ ଗିରଫ ହେଲେ । ଶରଧାପାଲି କେମ୍ପ କୋର୍ଟରେ ଶ୍ରୀ ଶତପଥୀ ଓ ମୋହନ ଏକ ବର୍ଷ କାରାବାସ ଓ ହଜାର ଟଙ୍କା ଲେଖାଏଁ ଜୋରିମାନା ଦଣ୍ଡରେ ଦଣ୍ଡିତ ହେଲେ । ବାଣ୍ଠାବଟ ପୂଝାରୀ ବହୁ ମାଡ଼ ସହି ଆଠ ମାସ ଜେଲ୍ ଭୋଗିଲେ । ଭୀମସେନ ଭୋଇଙ୍କୁ ମଧ୍ୟ ଆଠମାସର କାରାବାସ ହେଲା । ସିନ୍ଦୁରପୁର ପ୍ରଜାମଣ୍ଡଳ କର୍ମୀଙ୍କୁ ମାଡ଼ ଦିଆଗଲା ।

ସେହିବର୍ଷ ପାଟଣା ଷ୍ଟେଟ୍‌ରେ ପ୍ରଜା ଆନ୍ଦୋଳନ ହୋଇ କପୁରଚନ୍ଦ ନାଏକ ଜେଲ୍ ଦଣ୍ଡ ପାଇଲେ ।

ମେଣ୍ଡା ଗ୍ରାମରେ ରାଜାଙ୍କ ପକ୍ଷରୁ ପ୍ରଜାସଂଘ ଗଠନ କରାଯାଇ ସେମାନଙ୍କ ଦ୍ୱାରା ପ୍ରଜାମଣ୍ଡଳ କର୍ମୀମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ ହେଲା । ଏହାର ପ୍ରତିବାଦରେ ସେଠାରେ ମଧ୍ୟ ଆନ୍ଦୋଳନ ହୋଇଥିଲା ।

ତରଭା ଗ୍ରାମର ଧନୀ ବ୍ୟକ୍ତିମାନେ କର୍ମୀମାନଙ୍କ ଉପରେ ମାଡ଼ଗାଳି ଆଦି କରିବାରୁ ଶଶୀଭୂଷଣ ସାହୁଙ୍କ ନେତୃତ୍ୱରେ ସେଠାରେ 'ନୀଳକୁର୍ତ୍ତା ସ୍ୱେଚ୍ଛାସେବକ ବାହିନୀ' ଗଠନ କରି ତା'ର ପ୍ରତିରୋଧ କରାଗଲା ।

## ଭାରତଛାଡ଼ ଆନ୍ଦୋଳନ

୧୯୪୦ରେ ମହାତ୍ମା ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଇଂଲଣ୍ଡର ବିଭିନ୍ନ ରଣକ୍ଷେତ୍ରରେ ପରାଜୟ ଘଟିଲା । ବ୍ରିଟିଶ୍ ସାମ୍ରାଜ୍ୟବାଦ ପରିବର୍ତ୍ତେ ଭାରତରେ ଜାପାନର ଏକଛତ୍ରବାଦ ପ୍ରତିଷ୍ଠା ହେବା ଆଶଙ୍କା କରି ଗାନ୍ଧୀ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ କରିଦେଲେ ।

ଇଂରେଜ ସରକାର ଯୁଦ୍ଧଜନୀତ ସଙ୍କଟ ସ୍ଥିତିରେ ଭାରତର ରାଜନୈତିକ ବାତାବରଣ ଶାନ୍ତ ରଖିବା ଉଦ୍ଦେଶ୍ୟରେ କେତେକ ନୂତନ ପ୍ରସ୍ତାବ ସହ ଷ୍ଟାପୋର୍ଡ଼ କ୍ରିପ୍‌ସ୍‌ଙ୍କୁ ୧୯୪୨ରେ ଭାରତ ପଠାଇଲେ । ହେଲେ ତାଙ୍କ ପ୍ରସ୍ତାବ କଂଗ୍ରେସ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲା ।

ଅଗଷ୍ଟ ୮, ୧୯୪୨ ଦିନ ବମ୍ବେ ଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଭାରତ ଛାଡ଼ ପ୍ରସ୍ତାବ ଗୃହୀତ ହେଲା । ଏଥିପାଇଁ ଏକ ୧୧ ଦଫା କାର୍ଯ୍ୟକ୍ରମ ଘୋଷଣା କରାଗଲା । ଏହି ଘୋଷଣା ପରଦିନ ଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କୁ ଗିରଫ କରି ନିଆଗଲା । ଏ ସମ୍ବାଦରେ ଭାରତୀୟମାନେ ଉତ୍କ୍ଷିପ୍ତ ହୋଇଉଠିଲେ ।

'କର ବା ମର' ଲକ୍ଷ୍ୟ ନେଇ ଲୋକେ ଦାଣ୍ଡକୁ ବାହାରିପଡ଼ିଲେ । ଏହି ଅଗଷ୍ଟ ବିପ୍ଳବ ବେଳେ ସମସ୍ତ ବିଶିଷ୍ଟ ନେତାମାନେ ଗିରଫ ହୋଇ ଯାଇଥିବାରୁ ଆନ୍ଦୋଳନର ସମସ୍ତ ଦାୟିତ୍ୱ ଯୁବଗୋଷ୍ଠୀ ଉପରେ ପଡ଼ିଲା । ଆନ୍ଦୋଳନର କୌଣସି ନିର୍ଦ୍ଦିଷ୍ଟ ଯୋଜନାବଦ୍ଧ ପନ୍ଥା ନଥିବାରୁ ଯାହା ମନକୁ ଯେମିତି ଆସିଲା ଆନ୍ଦୋଳନ ପରିଚାଳନା କଲା ।

ସୋସିଆଲିଷ୍ଟ ପାର୍ଟି ଓ ଫରଓ୍ୱାର୍ଡ ବ୍ଲକ୍ ସାମ୍ନାକୁ ଆସିଯିବାରୁ ଗାନ୍ଧୀଙ୍କ ଆନ୍ଦୋଳନ ଅହିଂସା ପଥରୁ ବିଚ୍ୟୁତ ହୋଇଗଲା । ବିପ୍ଳବୀମାନେ ଥାନା, ପୋଷ୍ଟଅଫିସ୍, ରେଳଷ୍ଟେସନ୍, ଡାକବଙ୍ଗଳା ଆଦି ସରକାରୀ ଅନୁଷ୍ଠାନ ପୋଡ଼ିଦେଲେ । ଟେଲିଫୋନ୍, ଟେଲିଗ୍ରାଫ୍ ତାର କାଟିଦେଲେ । ରେଳଧାରଣା ଉପାଡ଼ିଦେଲେ । ପୋଲିସ୍ ଉପରେ ଆକ୍ରମଣ କଲେ । ସରକାରୀ ଖଜଣାଖାନା, ଅସ୍ତ୍ରାଗାର ଲୁଣ୍ଠନ କଲେ । ଯୁଦ୍ଧ ଆୟୋଜନକୁ ବିପର୍ଯ୍ୟସ୍ତ କଲେ । ସରକାରୀ କଳକୁ ଅଚଳ କରିଦେବାର ଉଦ୍ୟମ କଲେ । ବହୁ ସତ୍ୟାଗ୍ରହୀ ସହିଦ୍ ହେଲେ । ସରକାର ଗିରଫଦାରୀ, ଲାଠିଚାଳନା, ଗୁଳିଚାଳନା ମାଧ୍ୟମରେ ଆନ୍ଦୋଳନ ଦମନ କରିବାର ଆପ୍ରାଣ ପ୍ରଚେଷ୍ଟା ଚଳେଇଲେ । ହେଲେ ଏହାକୁ ଦମନ କରିବା ସମ୍ଭବ ହେଲା ନାହିଁ ।

ଓଡ଼ିଶାରେ ସବୁ କଂଗ୍ରେସ ଅନୁଷ୍ଠାନ ବେଆଇନ ଘୋଷିତ ହେଲା । ନେତାମାନଙ୍କ ଗିରଫଦାରୀ ପରେ ଛାତ୍ର, ଯୁବକ, ଛୋଟ ଛୋଟ ପିଲାମାନଙ୍କ ଦ୍ୱାରା ଆନ୍ଦୋଳନ, ହରତାଳ ବଳବତ୍ତର ରହିଲା । ଅଗଷ୍ଟ ବେଳକୁ ଏହାର ରୂପ ଥିଲା ଅତ୍ୟନ୍ତ ତୀବ୍ର ।

ଅଗଷ୍ଟ ୧୦ରୁ ଅକ୍ଟୋବର ଶେଷ ସୁଦ୍ଧା ଓଡ଼ିଶାର ୧୧ଟି ସ୍ଥାନରେ ପୋଲିସ୍ ଗୁଳିରେ ପ୍ରାୟ ୮୦ ଜଣ ଶହୀଦ୍ ହୋଇଥିଲେ । ଅଗଣିତ କ୍ଷତାହତ ହୋଇଥିଲେ । ୨ ଜଣ ଫାଶୀ ପାଇଥିଲା ବେଳେ ହଜାର ହଜାର ସଂଖ୍ୟାରେ ଗିରଫ ହୋଇଥିଲେ ।

ଅଗଷ୍ଟ ୧୬ରେ କୋରାପୁଟର ବିଭିନ୍ନ ଜାଗାରେ ଜନସମାବେଶ ହେଲା । ଲୋକେ ଲାଠିଗୁଳିର ଶିକାର ହେଲେ । ମାତିଲି ଥାନା ଦଖଲ କରିବାକୁ ଆସିଥିବା ଲୋକଙ୍କ ଉପରେ ଗୁଳି ଚାଳନାରେ ସମରବିଶି ନାୟକ, ନରସିଂହ ବିତଙ୍ଗ, ଅର୍ଜୁନ କାତିଆ, ଲିଙ୍ଗା ପୁଟିଆ, ଶୁକ୍ରା ପାଟେ ଶହୀଦ୍ ହେଲେ । ନେତା ଲକ୍ଷ୍ମଣ ନାୟକ ଅର୍ଦ୍ଧମୃତ ଅବସ୍ଥାରେ ଧରାପଡ଼ିଲେ । ପୋଲିସ୍ ଧସ୍ତାଧସ୍ତିରେ ଦଳିଚକଟି ପ୍ରାଣ ହରାଇଥିବା ଜଣେ ଫରେଷ୍ଟ ଗାର୍ଡ଼ର ହତ୍ୟାର ମିଥ୍ୟା ଅଭିଯୋଗରେ ତାଙ୍କୁ ବ୍ରହ୍ମପୁର ଜେଲ୍‌ରେ ଫାଶୀରେ ଝୁଲାଇ ଦିଆଗଲା ।

ପାପଡ଼ାହାଣ୍ଡି ଅଞ୍ଚଳର ପ୍ରାୟ ୫ ହଜାର ଉତ୍ୟକ୍ତ ଜନତା ନବରଙ୍ଗପୁର ଥାନା ପୋଡ଼ିବାକୁ ଏକ ଶୋଭାଯାତ୍ରାରେ ଯାଉଥିଲା ବେଳେ ତୁରୀ ନଦୀ କୂଳରେ ଇଂରେଜ ବାହିନୀ ସହ ଭୟାବହ ସଂଘର୍ଷ ହୋଇଥିଲା । ପୋଲିସ୍‌ର ଆଖିବୁଜା ଗୁଳିଚାଳନାରେ ଭଗବାନ ପୂଜାରୀ, ବିକ୍ରମ ଭଦ୍ରା, ଖଗପତି ଅମନାତ୍ୟ, ପରମାନନ୍ଦ ଶବର, ଆନନ୍ଦ ଗୌଡ଼, ବାଲି ସଉରା, ରତନ ରଣଧାରୀ, ବୁଡୁ ଅମନାତ୍ୟ, ମଙ୍ଗୁଲୁ ଭଦ୍ରା, ଜଗନ୍ନାଥ ଅମନାତ୍ୟ, ସହଦେବ ପୂଜାରୀ, ରାମଚନ୍ଦ୍ର ଅମନାତ୍ୟ, ଘାଷି ଜାନୀ, ସୁନୁ ଉଦ୍ରା, ଶ୍ୟାମସୁନ୍ଦର ଗଉର, ଶୁକ୍ରା ମୁଦୁଲି, ସଦାଶିବ ରଣା, ରତନ ପୂଜାରୀ, ଦୀନବନ୍ଧୁ ଜାନୀ ପ୍ରମୁଖ ଶହୀଦ୍ ହୋଇଥିଲେ । ଜୟପୁରରେ ୨୬ଟି ଜାଗାରେ ପୋଲିସ୍ ବର୍ଦ୍ଦି ପୋଡ଼ି, ୬ଟି କେନାଲ ରାଜସ୍ୱ କେନ୍ଦ୍ର ପୋଡ଼ି, ୪ଟି ପୋଷ୍ଟ ଅଫିସ୍, ୫ଟି ମଦ ଭାଟି, ୬ଟି ଜମିଦାରୀ କଚେରୀ, ୪ଟି ପି.ଡବ୍ଲ୍ୟୁ.ଡି.ବଙ୍ଗଳା ପୋଡ଼ି ହୋଇଥିଲା ।

ଅଗଷ୍ଟ ୧୭ରେ ୫୦୦୦ ବ୍ୟକ୍ତି ଭଣ୍ଡାରିପୋଖରୀ ଥାନା ଡାକଘର ଓ ପୋଲିସ କ୍ୱାର୍ଟର ପୋଡ଼ି, କାଠପୋଲ ଭାଙ୍ଗିଦେବା ଫଳରେ ହୋଇଥିବା ଗୁଳିଚାଳନାରେ ବହୁଲୋକ ଆହତ ହୋଇଥିଲେ । ଧାମନଗରର ଲୁଣିଆ-ବଣ୍ଡିଆପୋଷି ପଡ଼ିଆରେ ପୋଲିସ ଉପରେ ଆକ୍ରମଣ ହୋଇଥିଲା । ପୋଲିସ୍‌ର ଗୁଳିଚାଳନାରେ ନିଧି ମଲିକ, ଶ୍ୟାମ ମାହାଲିକ, କୃଷ୍ଣ ମହାଲିକ, ନବକୁମାର ନାୟକ, ଗୌରହରି ଜେନା, ଚିନ୍ତାମଣି ଦାସ, ଗୋପୀନାଥ ଜେନା, ଶଙ୍କର ବେହେରା, ଅଗଣି ସାହୁ ଶହୀଦ୍ ହୋଇଥିଲେ ।

ବରୀରେ ସରକାରୀ ଅଫିସ୍ ପୋଡ଼ି ସାଙ୍ଗକୁ କେନାଲ, କେନାଲ ବନ୍ଧ, ଟେଲିଗ୍ରାମ୍ ଲାଇନ୍ କାଟି ଦିଆଯାଇଥିଲା । ବିଂଝାରପୁରରେ ପୋଲିସ୍ ଉପରେ ଆକ୍ରମଣ ହୋଇଥିଲା ।

ଖଇରା ଥାନାର ତୁଡ଼ିଗଡ଼ିଆର ୧୬ ବର୍ଗ କି.ମି. ପରିମିତ ଅଞ୍ଚଳରେ ଜନସାଧାରଣ 'ସ୍ୱାଧୀନ ସରକାର' ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ସେଠାରେ ହୋଇଥିବା ଗୁଳିଚାଳନାରେ ରଘୁ ବେହେରା, ମକର ଲେଙ୍କା, କେଳୁ ସାହୁ ଶହୀଦ୍ ହୋଇଥିଲେ ।

ରକ୍ତତୀର୍ଥ ଇରମରେ ପୋଲିସ୍ ଆଉ ଏକ ଜାଲିଆନାୱାଲାବାଗ୍‌ର ରକ୍ତଚିତ୍ର ଅଙ୍କନ କରିଥିଲା । ସେପ୍ଟେମ୍ବର ୨୮ରେ ବାସୁଦେବପୁରର ଏହି କ୍ଷୁଦ୍ର ଗ୍ରାମରେ ସ୍ୱାଧୀନ ସରକାର ଗଠନ ହୋଇ ସମାନ୍ତରାଳ ସରକାର ଉପରେ ମର୍ମାନ୍ତକ ଆକ୍ରମଣ ହୋଇଥିଲା । ମେଳଣପଡ଼ିଆରେ ଶାନ୍ତିପୂର୍ଣ୍ଣ ଭାବରେ ଲୋକେ ସମବେତ ହୋଇଥିଲା ବେଳେ ବ୍ରିଟିଶ୍ ବାହିନୀ ତିନିପଟୁ ଅବରୋଧ କରି ଆଖିବୁଜା ଗୁଳିଚାଳନା କରିବା ଫଳରେ ବିପ୍ଳବୀଣୀ ପାର ବେୱା, ଦିବାକର ପାଣିଗ୍ରାହୀ. ଲାବନ ରାଉତ, ଛଟି ସାହୁ, ଗୋପାଳ ଚନ୍ଦ୍ର ଦାସ,

ଧ୍ରୁବଚରଣ ଦେ, ବିଶ୍ୱନାଥ ଦାସ, ବିଜୁଳି ଦାସ, ବାସୁଦେବ ସାହୁ, ବଲ୍ଲଭ ବେହେରା, ହୃଷୀ ବେହେରା, ହରି ବେହେରା, ମାଘ ମାହାଳିକ, ମଣି ବେହେରା, କୃଷ୍ଣ ସ୍ୱାଇଁ, କାଳୀ ମାଝୀ, ଭୁଆ ମାଝୀ, ମଦନ ପଲେଇ, ରାଧୁ ମାହାଳିକ, କୃପାସିନ୍ଧୁ ବେହେରା, ରାମ ମାଝୀ, ଗୋବିନ୍ଦ ରାଉତ, ଉପ ମଲ୍ଲିକ, ବୃନ୍ଦାବନ ପଣ୍ଡା, ମଣି ପ୍ରଧାନ, ପରି ଦାସ, ରତ୍ନାକର ପାଣି, ନିଧି ମଲ୍ଲିକ ଓ ଶଙ୍କର ମଲ୍ଲିକ ପ୍ରମୁଖ ୨୯ ଜଣ ଶହୀଦ୍ ହୋଇଥିଲେ ଓ ୫୬ ଜଣ ଆହତ ହୋଇଥିଲେ ।

ଅଇରାଡିହିରେ ପୋଲିସ୍ ସହ ସଂଘର୍ଷରେ ୨ ଜଣଙ୍କର ମୃତ୍ୟୁ, କିରଣ ଗୁଳିକାଣ୍ଡରେ ୨୬ ଜଣଙ୍କର ମୃତ୍ୟୁ ହୋଇଥିଲା । ଯାଜପୁରରେ ୧୦ ହଜାର ଲୋକଙ୍କ ସମାବେଶ ଉପରେ ବିମାନ ଉପରୁ ଡିନାମାଇଟ୍ ବର୍ଷଣ କରାଯାଇଥିଲା ।

କଟକର ଏରସମା ଠାରୁ ଯାଜପୁର ଯାଏଁ ଥିବା ଅଧିକାଂଶ ଥାନା, ପୋଷ୍ଟଅଫିସ୍ ପୋଡ଼ି ହୋଇଥିଲା ।

ଅଗଷ୍ଟ ୨୬ ତାରିଖ ଦିନ କାଇପଦା-କଳାମାଟିଆରେ ପୋଲିସ୍ ଗୁଳିରେ ରଘୁ ବେହେରା, ମକର ଲେଙ୍କା, କେଲୁ ସାହୁ ଶହୀଦ୍ ହୋଇଥିଲେ ।

ନିମାପଡ଼ା ଥାନା ଦଖଲ ଉଦ୍ୟମର ପ୍ରତିରୋଧରେ ଉତ୍ସବ ମଲ୍ଲିକ ସହୀଦ ହୋଇଥିଲେ । ଢେଙ୍କାନାଳର ଉଗ୍ର ଗଡ଼ଜାତ ଆନ୍ଦୋଳନରେ ବୀର ସାହୁ, ବେଣୁ ସାହୁ, ଅନୁକୂଳ ସାହୁ, ଆନନ୍ଦ ସାହୁ, ମୃଷା ମଲ୍ଲିକ ପ୍ରାଣଦଣ୍ଡ ପାଇଥିଲେ । ନୟାଗଡ଼ ଥାନା ଦଖଲ ଉଦ୍ୟମରେ ଆଦିବାସୀ ନେତା କିଷ୍ଟି ଡାକୁଆ ଶହୀଦ୍ ହୋଇଥିଲେ ।

ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱରେ ୪୦ ହଜାରରୁ ଉର୍ଦ୍ଧ୍ୱ ଲୋକ ତାଳଚେର ରାଜପ୍ରାସାଦ ଘେରାଉ କରିବାରୁ ସେମାନଙ୍କ ଉପରେ ବିମାନରୁ ବୋମାମାଡ଼ ଓ ଗୁଳିଚାଳନା ହୋଇଥିଲା । ଏଥିରେ ବାସୁଦେବ ସାହୁ, କୃତ୍ତିବାସ ପ୍ରଧାନ, ଭଗବାନ ସାହୁ, ରଜନୀ ନାୟକ, ମହେଶ୍ୱର ପ୍ରଧାନ, ପଦିଆ ବେହେରା ପ୍ରାଣ ଉତ୍ସର୍ଗ କରିଥିଲେ ।

ନୀଳଗିରିରେ ପୋଲିସ୍ ଗୁଳିରେ ଗଙ୍ଗା ମଲ୍ଲିକ ଓ ବିମାନ ଆକ୍ରମଣରେ ରଘୁ ନାୟକ ପ୍ରାଣବଳି ଦେଇଥିଲେ ।

ଏତିକିବେଳେ ବିଭିନ୍ନ ସ୍ଥାନରେ ଛାତ୍ର ଆନ୍ଦୋଳନମାନ ମଧ୍ୟ ହୋଇଥିଲା ।

ମହାତ୍ମା ଗାନ୍ଧୀ ଏସବୁ ଦେଖି ଫେବୃଆରୀ ୧୦, ୧୯୪୩ରୁ ୨୧ ଦିନ ପର୍ଯ୍ୟନ୍ତ ଜେଲ୍‌ରେ ଅନଶନ କଲେ । ଫଳରେ ଇଂରେଜ ସରକାର ବାଧ୍ୟହୋଇ ୧୯୪୪ରେ ତାଙ୍କୁ ମୁକ୍ତ କଲାପରେ ଭାରତଛାଡ଼ ଆନ୍ଦୋଳନର ଅବସାନ ଘଟିଥିଲା ।

କେବିନେଟ୍ ମିଶନ୍, ଓ୍ୱେଭେଲ୍ ଯୋଜନା ଓ ମାଉଣ୍ଟବାଟେନ୍‌ଙ୍କ ଯୋଜନା ଅନୁଯାୟୀ ଭାରତକୁ ଭାଗକରି ୧୯୪୭ ଜୁଲାଇ ମାସରେ ଭାରତ ସ୍ୱାଧୀନତା ଆଇନ ପ୍ରଣୟନ ହେଲା । ଏହି ଆଇନ ବଳରେ ୧୯୪୭ ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନ ହେଲା ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଭାରତଛାଡ଼ ଆନ୍ଦୋଳନ ଏକ ମାଇଲଖୁଣ୍ଟ । ଏଥିରେ ଓଡ଼ିଶାର ଭୂମିକା ଅତ୍ୟନ୍ତ ଗୌରବମୟ । ଗଡ଼ଜାତର ନିର୍ଯ୍ୟାତୀତ ଗରିବ ଆଦିବାସୀ, ହଳିଆ, ମୂଲିଆଠୁ ଆରମ୍ଭ କରି ସହରର ମଧ୍ୟବିତ୍ତ, ବୁଦ୍ଧିଜୀବୀ, ସଂଖ୍ୟାଲଘୁ, ଯୁବ, ଛାତ୍ର, ମହିଳା, ଶିକ୍ଷିତ-ଅଶିକ୍ଷିତ ସମସ୍ତେ କାନ୍ଧକୁ କାନ୍ଧ ମିଳାଇ ଆନ୍ଦୋଳନର ଅଂଶୀଦାର ହୋଇଥିଲେ । ଶହ ଶହ ମୃତାହତ, ପଙ୍ଗୁ ହୋଇଥିଲେ । ନିର୍ଯାତୀତ ଜନସାଧାରଣଙ୍କ ରକ୍ତର ରଙ୍ଗ ନେଇ ସ୍ୱାଧୀନତାର ସୂର୍ଯ୍ୟ ଆହୁରି ଗାଢ଼ ଲୋହିତ ହୋଇଉଠିଥିଲା ।

❑❑❑

# ଚୌହାଣ ଶାସନରେ ସମ୍ବଲପୁର

ସମ୍ବଲପୁରୀ ଗୀତ, ନୃତ୍ୟ, ଶାଢ଼ୀ, ହୀରାକୁଦ ବନ୍ଧ ପାଇଁ ବିଶ୍ୱବନ୍ଦିତ । ୨୦°୪୪' ଉତ୍ତର ଦ୍ରାଘିମା ଓ ୨୦°୪' ପୂର୍ବ ଅକ୍ଷାଂଶ ମଧ୍ୟରେ ଅବସ୍ଥିତ ସମଲେଶ୍ୱରୀ ଭୂମି ସମ୍ବଲପୁର ଏକ ଅତ୍ୟନ୍ତ ପ୍ରାଚୀନ ପ୍ରସ୍ତର ଯୁଗୀୟ ଭୂଖଣ୍ଡ ।

ଅତୀତରେ ଏହା ଦକ୍ଷିଣ କୋଶଳର ଅନ୍ତର୍ଗତ ଥିଲା । ସମ୍ବଲପୁର କୋଶଳର ନାମ ଦଣ୍ଡକା ବା ଦଣ୍ଡକାରଣ୍ୟ ଥିବାର ରାମାୟଣର ବର୍ଣ୍ଣନାରୁ ଜଣାପଡ଼େ । ମଧ୍ୟଯୁଗରେ ଏହା ଥିଲା ହୀରାଖଣ୍ଡ ସାମ୍ରାଜ୍ୟ ।

ଏଲାହାବାଦ୍ ସ୍ତମ୍ଭଲେଖରୁ ଜଣାଯାଏ ଯେ, ପ୍ରାୟ ଚତୁର୍ଥ ଶତାବ୍ଦୀ ବେଳକୁ ମଗଧରାଜ ସମୁଦ୍ରଗୁପ୍ତ କୋଶଳର ରାଜା ମହେନ୍ଦ୍ରଙ୍କୁ ପରାଜିତ କରିଥିଲେ । ସେତେବେଳେ ସମ୍ବଲପୁର, ରାୟପୁର ଓ ବିଲାସପୁରକୁ ନେଇ କୋଶଳ ଗଠିତ ଥିଲା ।

ଗୁପ୍ତମାନଙ୍କ ପରେ ନଳ, ସରଭପୁରିଆ, ପାଣ୍ଡ, ସୋମ, ତେଲୁଗୁଚୋଡ଼, କଳଚୁରୀ, ଗଙ୍ଗବଂଶ ରାଜତ୍ୱ କରିଥିଲେ । ଗଙ୍ଗବଂଶ ପରେ ରାଜପୁତ୍ ଚୌହାଣ ବଂଶ ପାଟଣା-ସମ୍ବଲପୁରରେ ରାଜତ୍ୱ କରିଥିଲେ । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ଚୌହାଣ ରାଜା ନରସିଂହ ଦେବ ତାଙ୍କ ଭାଇ ବଳରାମ ଦେବଙ୍କୁ ସମ୍ବଲପୁର ଖଣ୍ଡ ପ୍ରଦାନ କରିଥିଲେ । ବଳରାମ ଦେବ ସମ୍ବଲପୁରରେ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରିଥିଲେ ।

ଆଦିମ ଧର୍ମବିଶ୍ୱାସଠୁ ଆରମ୍ଭ କରି ବୈଦିକ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ତନ୍ତ୍ର ଆଦି ଧର୍ମବିଶ୍ୱାସ ସାଙ୍ଗକୁ ପ୍ରାଚୀନ କାଳରୁ ସମ୍ବଲପୁର ମହାନଦୀ ଶଯ୍ୟାରୁ ମିଳୁଥିବା ହୀରା ପାଇଁ ମଧ୍ୟ ପ୍ରସିଦ୍ଧ ଥିଲା । 'ରତ୍ନପରୀକ୍ଷା' ପ୍ରଣେତା ଚଣ୍ଡେଶ୍ୱର 'ବୃହଦ୍ ସଂହିତା'ର ଲେଖକ ବରାହମିହିର ଏହାକୁ ଅତ୍ୟୁଜ୍ଜ୍ୱଳ ହୀରାର ଭୂମି ବୋଲି ବର୍ଣ୍ଣନା କରିଥିଲା ବେଳେ ଖ୍ରୀଷ୍ଟୀୟ ୨ୟ ଶତକର 'ସମ୍ବଲକ'କୁ ବ୍ରିଟିଶ୍ ଐତିହାସିକ ଟଲେମି 'ହୀରାପ୍ରସୂ ପ୍ରାସିକୀ'' (ପ୍ରାଚ୍ୟ) ଭୂମି ବୋଲି ବର୍ଣ୍ଣନା କରିଛନ୍ତି । ଏହି ହୀରା ପାଇଁ ଏହି ସାମ୍ରାଜ୍ୟକୁ ହୀରାଖଣ୍ଡ ସାମ୍ରାଜ୍ୟ ଭାବେ ନାମିତ କରାଯାଇଥିଲା ।

ସମ୍ବଲପୁର 'ଶୈଳକାନନର ମନୋରମ ଭୂମି । ଏହା ପ୍ରାଚୀନ କାଳରୁ ଆଦିବାସୀ ଶବର, ସଉରା, କନ୍ଧ, ଗଣ୍ଡ, ବିଞ୍ଝାଲ, ଭୂୟାଁ, କୋହ୍ଲ, କିସାନ, କୁଡ଼ା, ଖଡ଼ିଆ, ଓରାମ, ମୁଣ୍ଡା, ବେଣ୍ଟକାର, ବୈଗା ଆଦି ଦ୍ରାବିଡ଼ ଜାତି ଦ୍ୱାରା ଅଧ୍ୟୁଷିତ । କନ୍ଧମାନେ ମଧ୍ୟଭାରତ,

ଗଣ୍ଡ, ବିଂଝାଲମାନେ ବିନ୍ଧ୍ୟ-ସାତପୁରା, ଶବର ଓ ଭୂୟାଁମାନେ ଉତ୍ତରଭାରତ, ଉତ୍ତର ଓ ଦକ୍ଷିଣ ଭାରତରୁ ବ୍ରାହ୍ମଣ, କୁଲତାମାନେ ବୌଦ, ଅଗରିଆମାନେ ଆଗରା, ଗୌଡ଼ମାନେ ମଗଧ ଓ ଯୁକ୍ତ ପ୍ରଦେଶ, ଗଣ୍ଡା, ଘାସି ଓ ଚମାରମାନେ ପଶ୍ଚିମ ଭାରତରୁ ଆସି ଏଠାରେ ବସବାସ କରିଥିବାର ଜଣାଯାଏ । ତେଣୁ ଅତୀତରୁ ସମ୍ବଲପୁର ବହୁ ମିଶ୍ରିତ ସଭ୍ୟତାର ଲୀଳାଭୂମି ।

ଗଣ୍ଡମାନେ ସମ୍ବଲପୁରରେ ପରାକ୍ରାନ୍ତ ଥିଲେ । ଏମାନେ ଏଠାରେ କ୍ଷୁଦ୍ର ରାଜ୍ୟ ଓ ଜମିଦାରୀମାନ ପ୍ରତିଷ୍ଠା କରିଥିଲେ । ସେମାନଙ୍କ ମଧ୍ୟରେ ଦଳପତି ଓ ଗୋଷ୍ଠୀ ଶାସନ ପ୍ରଥା ରହିଥିଲା ।

ଧନ, ଧାନ୍ୟ, ଖଣିଜ, ବନ, ପ୍ରତ୍ନ ଓ ପଶୁସଂପଦ, ପରିପୂର୍ଣ୍ଣ ସମ୍ବଲପୁର ଆଦିମ କାଳରୁ ମୂଳତଃ କୃଷିପ୍ରଧାନ ମହାନଦୀ ଅବବାହିକା । ୫୦୦୦ ବର୍ଷ ତଳେ ଏ ଅଞ୍ଚଳରେ ଏକ ଉନ୍ନତ ଓ ସଭ୍ୟଜାତିର ଲୋକ ବସବାସ କରୁଥିଲେ । ସେମାନଙ୍କର ଏକ ଭିନ୍ନ ସଭ୍ୟତା ରହିଥିଲା । ଏଠାରେ ରହୁଥିବା ଅଧିବାସୀ ଦୁର୍ଗ ନିର୍ମାଣ, ଯୁଦ୍ଧ ବିଦ୍ୟା, ପ୍ରସ୍ତର ଖୋଦନ, କୃଷି ଆଦରେ ପ୍ରବୀଣ ଥିଲେ । ସେମାନଙ୍କ ଲିପି ଓ ଭାଷା ରହିଥିଲା ବୋଲି ବିକ୍ରମ ଖୋଲ ଶିଳାଲିପିରୁ ଜଣାପଡ଼େ । ପ୍ରାକ୍ ବ୍ରାହ୍ମୀଲିପିର ଏ ଶିଳାଲେଖ ଏଯାଏଁ ପଢ଼ାଯାଇ ପାରିନଥିଲେ ମଧ୍ୟ ସୈନ୍ଧବ ଅବବାହିକାର ସଭ୍ୟ ଜାତିର ବଂଶଧରମାନେ ବସବାସ କରୁଥିବା ଅନୁମିତ । ସେହିପରି ଗୁଞ୍ଜାପାହାଡ଼ ଓ ରାମଗଡ଼ ପାହାଡ଼ ଶିଳାଲିପିରୁ ଜଣାଯାଏ ଯେ, ବୌଦ୍ଧ ଯୁଗରେ ମଧ୍ୟ ସମ୍ବଲପୁର ଖଣ୍ଡରେ ବ୍ରାହ୍ମୀ ଲିପି ଓ ପ୍ରାକୃତ ଭାଷାର ପ୍ରଚଳନ ଥିଲା । ଏ ପ୍ରାଚୀନ ଭୂଖଣ୍ଡର ଲୋକକଳା, ଗୀତ, ନୃତ୍ୟ, ଭାଷା, ସଂସ୍କୃତି ମଧ୍ୟ ଅତି ସମ୍ପନ୍ନ ।

ସମ୍ବଲପୁର ଅତି ପ୍ରାଚୀନ କାଳରୁ ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । କଳିଙ୍ଗ ଅନ୍ତବର୍ତ୍ତୀ ଭାରତୀୟ ବାଣିଜ୍ୟର ଏହା ଏକ ଯୋଗସୂତ୍ର ରୂପେ ଅନ୍ୟ ଦେଶମାନଙ୍କ ସହ ବିଶେଷ ବାଣିଜ୍ୟ ସଂପର୍କ ରଖିଥିଲା । ଏହି ପଣ୍ୟଦ୍ରବ୍ୟ ମଧ୍ୟରେ ମୁଖ୍ୟତଃ ହୀରା ହିଁ ସମ୍ବଲପୁର ପ୍ରତି ବିଦେଶୀମାନଙ୍କ ଦୃଷ୍ଟି ଆର୍ଷଣ କରିଥିଲା । ତା'ଛଡ଼ା ନାଗପୁର, ରାଞ୍ଚି, କଟକ ଓ ମାନ୍ଦ୍ରାଜର ଏକ ସଂଯୋଜକ ଥିବାରୁ ଏକ ପ୍ରଧାନ ସାମରିକ ଘାଟି ରୂପେ ମଧ୍ୟ ଏହା ଅତ୍ୟନ୍ତ ଉପଯୋଗୀ ଥିଲା ।

❑

ସମ୍ବଲପୁରରେ ଚୌହାଣ ରାଜ୍ୟ ସ୍ଥାପନର ବହୁ ପୂର୍ବରୁ ସମ୍ବଲପୁର ଗ୍ରାମର ଅସ୍ତିତ୍ୱ ଓ ନାମ ଥିଲା । ପ୍ରଥମ ରାଜା ବଳରାମ ଦେବ (୧୫୪୦-୧୫୫୬) ଏହି ଗ୍ରାମକୁ ଏକ ନଗର ଓ ରାଜଧାନୀରେ ପରିଣତ କରିଥିଲେ ।

ଶ୍ରୀ ଗଙ୍ଗାଧର ମିଶ୍ର ତାଙ୍କ 'କୋଶଳାନନ୍ଦମ୍' କାବ୍ୟରେ ଲେଖିଛନ୍ତି :

-''ଉଦରଂ ତତ୍ପୁରଂ ଯତ୍ର ଭୀତିହା ସୋମଳେଶ୍ୱରୀ
ପରଂ ବ୍ରହ୍ମାତ୍ମିକା କିଞ୍ଚ କାମଦୁଗ୍ଧା ବିଚିନ୍ତିତା ।
ନୀଳନୀଳଜଟା ନୀଳୋତ୍ପଳ ଖଡ୍ଗୋର୍ଦ୍ଧ-ପାଣିକା
କପାଳକର୍ତ୍ତିକା ଯୁକ୍ତା ଯାଚ ବିଶ୍ୱେଶ୍ୱରୀ ଶିବା ।
ସୋମଳେଶାପୁରଂ ଯତ୍ତ ଦୂଦରଂ ପରିକୀର୍ତ୍ତିତଂ
ଅନାୟାସେନ ସୁଖଦଂ ନିର୍ଭୀତଂ ଧନିଭିର୍ବୃତମ୍ ।
-ପଞ୍ଚଦଶ ସର୍ଗଃ, ୫୨, ୫୩, ୫୪ ଶ୍ଳୋକ ।

ଅର୍ଥାତ୍

''ଏହି ନଗରୀ (ସମ୍ବଲପୁର) ରାଜ୍ୟ ହସ୍ତୀର ଉଦର ଅଟେ । ଭବଭୟ ହାରିଣୀ, ପରଂବ୍ରହ୍ମଙ୍କ ଆତ୍ମା ସ୍ୱରୂପିଣୀ ଏବଂ ଭକ୍ତମାନଙ୍କ ପାଇଁ ସହଜଲବ୍ଧ କାମଧେନୁ ସ୍ୱରୂପା ସମଲେଶ୍ୱରୀ ଏହାର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ।

ନୀଳ ଓ ଶୁଭ୍ର ଜଟାରେ ଶୋଭିତା ସେହି ଦେବୀ ଚାରିହସ୍ତରେ ନୀଳପଦ୍ମ, ଉତ୍ତୋଳିତ ଖଡ୍ଗ, କପାଳ ଓ କର୍ତ୍ତରିକା ଧାରଣ କରିଛନ୍ତି ।

ଉଦର ରୂପେ ପ୍ରଖ୍ୟାତ ସେହି ସୋମଳେଶୀପୁର (ସମ୍ବଲପୁର) ଧନ ସଂପତ୍ତିରେ ପରିପୂର୍ଣ୍ଣ ଅଟେ । ସେଠାରେ କୌଣସି ଭୟ ନାହିଁ ଏବଂ ସୁଖ ସହଜରେ ମିଳିଥାଏ ।'']

ସେତେବେଳେ ସମ୍ବଲପୁର ରାଜ୍ୟ ଅଧୀନରେ ପାଟଣା, ସୋନପୁର, ବୋଡ଼ାସମ୍ବର, ଫୁଲଝର, ସାରଙ୍ଗଗଡ଼, ରାୟଗଡ଼, ବରଗଡ଼, ଶକ୍ତି, ବସ୍ତର, ବିନ୍ଦ୍ରା ନୂଆଗଡ଼, ସୁରଗୁଜା, ବାମଣ୍ଡା, ବଣାଇ, ପାଲଲହଡ଼ା, ବୌଦ୍ଧ, ଆଠମଲ୍ଲିକ, ରେଢ଼ାଖୋଲ ଓ ଗାଙ୍ଗପୁର ଏହି ୧୮ଟି ଗଡ଼ ବା ଚଳିଆ ରାଜ୍ୟ ଓ ୧୩ଟି ଦଣ୍ଡପାଟ ଥିଲା । ଏଗୁଡ଼ିକ ମଧ୍ୟରେ କୋଲାବୀରା ବା ଜୟପୁର, ରାମପୁର, ରାଜପୁର, ଲଇଡ଼ା, କୋଡ଼ାବଗା, ଲୋଇସିଙ୍ଗା, ମଟିଦା (ଉତ୍ତରତୀର ବା ସଦର) ଓ ବରପାଲି, ପାଟକୁଲୁଣ୍ଡା, ବସେଇକେଲା, ପାହାଡ଼ ଶ୍ରୀଗିଡ଼ା, ଅନ୍ତର୍ଦୋଲା, ଖରସଲ, ମୁଣ୍ଡୋମହୁଲ, ଉତ୍ତାଳ ପଇସୀ (ଦକ୍ଷିଣତୀର ବା ବରଗଡ଼ ତହସିଲ) ଅନ୍ୟତମ ଥିଲା ।

ବିକ୍ରମଖୋଲ ଯୁଗ ପରେ ଖ୍ରୀଷ୍ଟପୂର୍ବ ଶତକମାନଙ୍କରେ 'ମହାବଳ ମେଘବଂଶ' (ବାୟୁପୁରାଣ, ଅଧ୍ୟାୟ ୯, ଶ୍ଳୋକ ୩୪୭), ସମୁଦ୍ରଗୁପ୍ତ ଯୁଗରେ, କୌଶଲ୍ୟକ ମହେନ୍ଦ୍ର (ପ୍ରୟାଗ ସ୍ତମ୍ଭ ଲେଖ-ସମୁଦ୍ରଗୁପ୍ତ) ଆଦି ସମ୍ବଲପୁର ଖଣ୍ଡରେ ରାଜତ୍ୱ କରିଥିଲେ । ମୋଗଲ ସମ୍ରାଟ ଆକବର ଓ ଆଉରଙ୍ଗଜେବଙ୍କ ମୋଗଲ ସାମ୍ରାଜ୍ୟ କାଳରେ ମଧ୍ୟ ସମ୍ବଲପୁରରେ ଚୌହାଣମାନଙ୍କ ଏକ କ୍ଷୁଦ୍ର ସ୍ୱାଧୀନ ଶକ୍ତି ମୁଣ୍ଡ ଟେକି ରହିଥିଲା । ମରହଟା ଶକ୍ତି ସମଗ୍ର ଭାରତରେ ହିନ୍ଦୁ ରାଜ୍ୟ ପ୍ରତିଷ୍ଠା ପାଇଁ ଚେଷ୍ଟା ଚଳାଇଥିଲା ବେଳେ ମଧ୍ୟ ଚୌହାଣ ରାଜା ସମ୍ବଲପୁରର ସ୍ୱାଧୀନତା ରକ୍ଷାକରି ପାରିଥିଲେ ଓ ଏହି ୧୮୦୦ ପର୍ଯ୍ୟନ୍ତ ପରାଜିତ ହୋଇନଥିଲା । ଇଂରେଜ ରାଜ୍ୟ ସୀମା ମଧ୍ୟରେ କେବଳ ସମ୍ବଲପୁର ହିଁ ସବୁଠୁ କମ୍ ସମୟ ପାଇଁ ପରାଧୀନ ହୋଇଥିଲା ।

ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ରତ୍ନପୁର ବଂଶର ରାଜା ଶ୍ରୀମଦ୍ ଜାଜ୍ୱଲଦେବ (୧୧୬୦-୧୧୮୦) କୋଶଳ-ସମ୍ବଲପୁର ଜୟ କରିଥିଲେ । ଓଡ଼ିଶା ଗଜପତି ସମ୍ବଲପୁର-କୋଶଳ ରଖି ନପାରି ବିଜୟନଗରକୁ ହସ୍ତାନ୍ତରିତ କରିଥିଲେ । ବଳରାମ ଦେବ ଶକ୍ତି ସଞ୍ଚୟ କରି ପାଟଣା ରାଜ୍ୟକୁ ସ୍ୱାଧୀନ କଲା ପରେ ସ୍ୱାଧୀନ ସମ୍ବଲପୁର ରାଜ୍ୟ ଗଠନ କରି ପାଟଣାକୁ ପୃଷ୍ଠଭୂମିରେ ଅବସ୍ଥାପିତ କଲେ ।

ସମ୍ବଲପୁରର ରାଜା ବଳରାମ ଦେବ, ହୃଦୟ ନାରାୟଣ ଦେବ, ବଳଭଦ୍ର ଦେବ, ମଧୁକର ଦେବ ଓ ବଳୀୟାର ଦେବଙ୍କ ଅମଳରେ ସମ୍ବଲପୁର ରାଜ୍ୟର ପ୍ରତାପ ବୃଦ୍ଧି ପାଇଥିଲା । ଛତ୍ରସାହ ଦେବଙ୍କ ଅମଳର ଶେଷ ଭାଗରୁ ଏହାର ଅପଚୟ ଘଟିଥିଲା ।

ଖ୍ରୀଷ୍ଟଜନ୍ମର ବହୁ ସହସ୍ର ବର୍ଷ ପୂର୍ବେ ଏଠି ଆର୍ଯ୍ୟମାନଙ୍କ ପ୍ରାଧାନ୍ୟ ଥିଲା, ଯାହାପରେ ଲୋପ ପାଇଥିଲା ।

ପ୍ରଜାମାନେ ଧାନ ସହ ପ୍ରଚୁର ରବି ଫସଲ ଆମଦାନି କରୁଥିଲେ । ରାଜା ନିର୍ଦ୍ଦିଷ୍ଟ ପରିମାଣ ରାଜସ୍ୱରେ ଗ୍ରାମମାନଙ୍କରେ ଅଧିପତି ବା ଗୌନ୍ତିଆ ନିଯୁକ୍ତ କରୁଥିଲେ । ଗୌନ୍ତିଆମାନେ ରୟତ ମୁକରିର କରୁଥିଲେ । ଜୀବନ ସଂଗ୍ରାମର ଘନଘଟା ନଥିଲା । ଲୋକସଂଖ୍ୟା ଅଳ୍ପ ଓ ସେ ତୁଳନାରେ ଜମିର ପରିମାଣ ଅଧିକ ଥିଲା । ରୟତ ନିଯୁକ୍ତିରେ ଜମିର ମୂଲ୍ୟ ଅଳ୍ପ ପଡୁଥିଲା । ଜମିର ମୂଲ୍ୟ କିଛି ନଥିଲା ପ୍ରାୟ । ରାଜସ୍ୱ ମଧ୍ୟ ନାମମାତ୍ର ଥିଲା ଓ ଶସ୍ୟ ଆକାରରେ ଦିଆଯାଉଥିଲା ।

ପ୍ରତ୍ୟେକ ବୟସ୍କ ବ୍ୟକ୍ତିକୁ ସୈନ୍ୟ ଶ୍ରେଣୀଭୁକ୍ତ ହେବାକୁ ପଡୁଥିଲା । ପ୍ରତି ସୈନିକଙ୍କ ଭରଣପୋଷଣ ଲାଗି ଜାଗିରି ଥିଲା । ବିକ୍ରୀତ ପଣ୍ୟ ଓ ରାଜ୍ୟବାଟେ ଯାଉଥିବା ପଣ୍ୟରୁ

ଆଦାୟ ଶୁଳ୍କ ନିଆଯାଉଥିଲା । ସମ୍ବଲପୁର ଶାସନ ଜାଗିର ପ୍ରଥାରେ ପରିଚାଳିତ ହେଉଥିଲା ।

ରାଜ୍ୟରେ ଶିଳ୍ପ ପାରଦର୍ଶିତା ଥିଲା । ମହାନଦୀ ଓ ଇବ୍ ନଦୀ ଗର୍ଭସ୍ଥ ହୀରା ଓ ସୁନା ଶଯ୍ୟା ରାଜ କର୍ତ୍ତୃତ୍ୱାଧିନ ଥିଲା । ଏହା ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । କଳିଙ୍ଗ ଓ ଅନ୍ତବର୍ତ୍ତୀ ଭାରତୀୟ ବାଣିଜ୍ୟର ଆବହମାନ କାଳରୁ ଏକ ଯୋଗସୂତ୍ର ଥିଲା । ହୀରା, ସୁନା ଆଦି ପାଇଁ ସମ୍ବଲପୁର ସହ ଅନ୍ୟାନ୍ୟ ଦେଶମାନଙ୍କ ବାଣିଜ୍ୟ ସଂପର୍କ ଥିଲା । ଏଠାରୁ ବହୁମୂଲ୍ୟ ରତ୍ନ, କୋଷା, କାର୍ପାସ ବସ୍ତ୍ର, ଚାଉଳ, ରବି ଶସ୍ୟ ରପ୍ତାନି ହେଉଥିଲା । ସିଂହଳ, ବ୍ରହ୍ମଦେଶ ଓ କଳିଙ୍ଗ କୋଶଳର ହସ୍ତି ଓ ଆରବ ଘୋଟକ ପଣ୍ୟ ବିନିମୟର ପ୍ରଧାନ ପେଣ୍ଠ ଥିଲା । ବୈଦେଶିକ ବଣିକମାନେ ସମ୍ବଲପୁର ସହ ପ୍ରତ୍ୟକ୍ଷ ଓ ପରୋକ୍ଷ ବାଣିଜ୍ୟ କରୁଥିଲେ । ସମ୍ବଲପୁରର ହୀରା ଏ ସୂତ୍ରରେ ରୋମ ପର୍ଯ୍ୟନ୍ତ ଯାଇଥିବାର ଐତିହାସିକ ତଥ୍ୟ ଗିବନ୍ ଓ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ମିଳେ । ହୀରା ହେତୁ ସମ୍ବଲପୁର ବିଶେଷ ଧନଶାଳୀ ଥିଲା ।

ସାଧାରଣ ଲୋକେ ମୁଦ୍ରାର ଅତି ଅଳ୍ପ ବ୍ୟବହାର କରୁଥିଲେ । କଉଡ଼ି, ତାମ୍ର ମୁଦ୍ରା ପ୍ରଚଳନ ଥିଲା । ସ୍ଥାନୀୟ କିଣାବିକା ବିନିମୟ ବା କଉଡ଼ି ବ୍ୟବହାର ଦ୍ୱାରା ହେଉଥିଲା । ତେବେ ଚୌହାଣ ଯୁଗରେ ସମ୍ବଲପୁରରେ ସ୍ୱର୍ଣ୍ଣ, ରୌପ୍ୟ ମୁଦ୍ରା ଆଦିର ପ୍ରଚଳନ ଥିଲା । ବଳରାମ ଦେବଙ୍କ ସମୟରୁ ଶେଷ ରାଜା ଜୟନ୍ତ ସିଂହଙ୍କ ପର୍ଯ୍ୟନ୍ତ ଏହି ସ୍ୱର୍ଣ୍ଣ (ଅସର୍ଫି), ରୌପ୍ୟ (ଜର୍ବୀ) ଓ ତାମ୍ର (ପଇସା) ମୁଦ୍ରା କେବଳ ରାଜ୍ୟ ମଧ୍ୟରେ ପ୍ରଚଳିତ ଥିଲା । ବାଣିଜ୍ୟ ବିନିମୟ ବା କଉଡ଼ି ଯୋଗେ ଚଳୁଥିଲା । ମହାନଦୀ ମୁଖ୍ୟ ଜଳପଥ ଥିଲା ।

ଚୌହାଣ କାଳରେ ସମ୍ବଲପୁର ଏକ ଲୋଭନୀୟ ସ୍ୱର୍ଗ ଥିବାର ଜଣାଯାଏ ।

□□□

# ମରହଟ୍ଟା ଶାସନରେ ସମ୍ବଲପୁର

୧୮୦୦ରୁ ୧୮୧୭ ପର୍ଯ୍ୟନ୍ତ ସମ୍ବଲପୁର ମରହଟା ଶାସନାଧୀନ ହୋଇ ରହିଥିଲା । ଚୌହାଣ ରାଜତ୍ୱ କାଳରେ ଜିଲ୍ଲାର ଯାହା ଉନ୍ନତି ହୋଇଥିଲା ମରହଟ୍ଟା ଶାସନରେ ତା'ର ଅବନତି ଘଟିଲା ।

ମରହଟ୍ଟା ଶାସନକର୍ତ୍ତା ଭୂପ ସିଂହ ଓ ତାନ୍ତିଆ ଫଡ଼ନବିଶଙ୍କ ଶାସନ କାଳରେ ସମ୍ବଲପୁର ପ୍ରଦେଶରେ ଶାନ୍ତି ଶୃଙ୍ଖଳା ନଥିଲା । ଉପଦ୍ରବ, ଅତ୍ୟାଚାର, ଲୁଣ୍ଠନ, ହତ୍ୟାକାଣ୍ଡ ଆଦି ଏକ ନିୟମିତ ଘଟଣାରେ ପରିଣତ ହୋଇଥିଲା ।

ଦଳ ଦଳ ମରହଟ୍ଟା ସୈନିକ ଟଟୁ ଘୋଡ଼ାରେ ବସି ଯେତେବେଳେ ଇଚ୍ଛା ସେତେବେଳେ ଗାଁଗୁଡ଼ିକରେ ଆକସ୍ମିକ ଭାବେ ପହଞ୍ଚୁଥିଲେ । ଗ୍ରାମବାସୀଙ୍କ ସର୍ବସ୍ୱ ଲୁଣ୍ଠନ କରି ଗାଁମାନ ପୋଡ଼ି ଦେଉଥିଲେ । ଧନ ଓ ପୋତା ଧନ ଦେଖାଇଦେବାକୁ ଲୋକଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରୁଥିଲେ । ଲୋକଙ୍କୁ ଗୃହରୁ ମାରପିଟ୍ ବିତାଡ଼ିତ କରିବା, ଅକାରଣରେ ବନ୍ଦୀ କରିନେବା, ଦେହରେ ତୈଳାକ୍ତ ବସ୍ତ୍ର ଗୁଡ଼ାଇ ନିଆଁ ଲଗାଇଦେବା, ହାଣକାଟ କରିବା, ସୁନ୍ଦରୀ ଝିଅ, ସ୍ତ୍ରୀମାନଙ୍କୁ ଧରିନେବା ଆଦି ସେମାନଙ୍କର ସାଧାରଣ ଅତ୍ୟାଚାର ଥିଲା । ଦୋଷର ଦଣ୍ଡ ଜୋରିମାନା ନହୋଇ ରାଜସ୍ୱ ଆକାରରେ ଆଦାୟ ହେଉଥିଲା ।

ଲୋକେ ସେମାନଙ୍କ ନାଁ ଶୁଣି ଆତଙ୍କିତ ହେଉଥିଲେ । ଦୁଇ ଚାରିଜଣ ମରହଟ୍ଟା ଦେଖିଲେ ଲୋକେ ଗାଁ, ଘର ଛାଡ଼ି ଜଙ୍ଗଲକୁ ଯାଇ ଲୁଚୁଥିଲେ । କୃଷି କ୍ଷେତ୍ରମାନ ସେମାନଙ୍କ ଭୟରେ ପଡ଼ିଆ ପଡ଼ି ରହୁଥିଲା । ଏମାନଙ୍କ ଆକ୍ରମଣକୁ ବର୍ଗୀ ଆକ୍ରମଣ କୁହାଯାଉଥିଲା ।

ଏଭଳି ଅବସ୍ଥାରେ ଜନସାଧାରଣଙ୍କ ସାଧାରଣ ଅର୍ଥନୀତି ବିପର୍ଯ୍ୟସ୍ତ ହେଲା । ଲୋକେ ଆହୁରି ଗରିବ ହେଲେ । ସବୁବେଳେ ମୁଣ୍ଡ ଉପରେ ଭୟ ଓ ଆତଙ୍କର ଏକ କଳା ଛାୟା ଘେରି ରହିଲା । ଫେରାଦି କରିବାକୁ କେହି ନଥିଲେ ।

ନାଗପୁର ଭୋନ୍‌ସଲାଙ୍କ ପ୍ରତିନିଧି ରୂପେ ଭୂପ ସିଂହ ଏପ୍ରିଲ୍ ୧୮୦୦ରୁ ସମ୍ବଲପୁର ଶାସନ କଲେ । ସେ ନାଗପୁର ପ୍ରତି ଦ୍ରୋହ ଆଚରଣ କରିବା ସହିତ ରାଜ୍ୟରେ ସୁଶାସନ ପ୍ରତି ଦୃଷ୍ଟିଦେଲେ ନାହିଁ । ରାଜସ୍ୱ ଆଦାୟ କରି ନିଜେ ଉପଭୋଗ କଲେ । ନାଗପୁର ପଠାଇଲେ ନାହିଁ । ସୈନ୍ୟମାନଙ୍କୁ ମଧ୍ୟ ନିୟମିତ ଦରମା ଦେଲେ ନାହିଁ । ଦରମା

ନପାଇ ପେଟ ବିକଳରେ ଓ ପରେ ଧନ ଲୋଭରେ ସୈନ୍ୟମାନେ ପ୍ରଜାମାନଙ୍କ ଉପରେ ଲୁଣ୍ଠନରାଜ ଚଳାଇଲେ । ରାଜା ମଧ୍ୟ ଦରମା ଦେଉନଥିବାରୁ ଏହାର ପ୍ରତିବାଦ କଲେ ନାହିଁ । ବର୍ଗୀ ଆକ୍ରମଣର ସୂତ୍ରପାତ ହେଲା ।

ଅନ୍ୟପକ୍ଷରେ ପ୍ରଜାମାନଙ୍କ ଜମା ମଧ୍ୟ ଧାର୍ଯ୍ୟ କରାଯାଇ ନଥିଲା । ଏହା ଫଳରେ ସାମନ୍ତ ରାଜା, ଜମିଦାର ବା ପ୍ରଜାମାନଙ୍କ ଠାରୁ ଅଧିକାରୁ ଅଧିକା ରାଜସ୍ୱ ଅସୁଲ କରାଯାଉଥିଲା । ପିଲା କବିଲା ସହ ସମସ୍ତଙ୍କୁ ମାଡ଼ ଦିଆଯାଉଥିଲା । ଉତ୍ତପ୍ତ ଲୁହାରେ ଦାଗି ଦିଆଯାଉଥିଲା । ଦେହ ଉପରେ ଗରମ ତେଲ, ପାଣି ଅଜାଡ଼ି ଦିଆଯାଉଥିଲା । ନାକ, କାନ କାଟି ଦିଆଯାଉଥିଲା ।

ଭୋନ୍‌ସଲା ଭୂପ ସିଂହଙ୍କ ବିରୋଧରେ ଯୁଦ୍ଧ କରି ତାଙ୍କୁ ତଡ଼ିଦେଲା ପରେ ତାଙ୍କ ସ୍ଥାନରେ ତାନ୍ତିଆ ଫଡ଼ନବିସଙ୍କୁ ନଯୁକ୍ତ କଲେ । ଭୂପ ସିଂହ ଓ ତାନ୍ତିଆ ଦୁଇବର୍ଷ ଲେଖାଏଁ ସମ୍ବଲପୁର ଶାସନ କରିଥିଲେ । ସେମାନେ ବିଭିନ୍ନ ଅଯଥା କାର୍ଯ୍ୟରେ ଲିପ୍ତ ଥିଲେ । ମରହଟା କର୍ମଚାରୀମାନଙ୍କ ଅଯୋଗ୍ୟତା ଓ ଅତ୍ୟାଚାରର ସମ୍ମୁଖୀନ ହୋଇ ଦେଶରେ ସୁଶାସନ, ଶାନ୍ତି, ଶୃଙ୍ଖଳା ପ୍ରତିଷ୍ଠା ପାଇଁ ଚେଷ୍ଟା କରିନଥିଲେ । ୧୮୦୦ର ସମୟ ଭୋନ୍‌ସଲାଙ୍କ ପତନର ସମୟ । ତେଣୁ ସମ୍ବଲପୁର ପ୍ରଦେଶ ବିଷୟରେ ସେ ମନୋନିବେଶ କରିପାରି ନଥିଲେ ।

ମରହଟ୍ଟାମାନଙ୍କ ଅତ୍ୟାଚାର ଓ ଶାସନ ବିଶୃଙ୍ଖଳା ଶ୍ରମକାତରମାନଙ୍କୁ ସହଜ ଧନ ଲାଭର ପ୍ରେରଣା ଦେଲା । ସେମାନଙ୍କ ମଧ୍ୟରେ ଗଣ୍ଡଶ୍ରେଣୀର ଆଧିକ୍ୟ ଥିଲା । ଏମାନେ ଧନୀ ଲୋକମାନଙ୍କୁ ଆକ୍ରମଣ କରି ସବୁ ଟଙ୍କା, ପଇସା, ସୁନା, ଅଳଙ୍କାର ଆଦି ଲୁଟି ନେଉଥିଲେ । ଏମାନଙ୍କ ଭୟରେ ଧନୀଲୋକମାନେ ଗାଁଯାକ ମିଶି ଗାଁ ବାହାରେ ଶୋଉଥିଲେ । ସବୁ ଧନ ପୋତି ଦେଉଥିଲେ । ମୂଲ୍ୟବାନ ଦ୍ରବ୍ୟମାନ ମଧ୍ୟ ପୋତି ଦିଆଯାଉଥିଲା । ଲୋକେ ଓ ସ୍ତ୍ରୀମାନେ ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର ପିନ୍ଧିବା ଛାଡ଼ି ଦେଇଥିଲେ ।

ସେତେବେଳେ ସମ୍ବଲପୁରରେ ଗଣ୍ଡ ଓ ବିଂଝାଲମାନଙ୍କ ଆଧିକ୍ୟ ଥିଲା । ଏମାନେ ମୁଖ୍ୟତଃ କୃଷିଜୀବୀ ଥିଲେ । ଅଣ-ଆଦିବାସୀମାନଙ୍କ ତାଙ୍କ ଅଞ୍ଚଳକୁ ଅନୁପ୍ରବେଶ ଓ ଜବରଦଖଲ ସେମାନଙ୍କ ପକ୍ଷେ ଅସହ୍ୟ ଥିଲା । ବ୍ରାହ୍ମଣ ସମେତ କୁଲିତାମାନେ ମଧ୍ୟ ବହିରାଗତ ଧନୀ ଚାଷୀ, ମହାଜନ ଭାବେ ଲୋକଙ୍କୁ ଶୋଷଣ କରୁଥିଲେ । ଏହି ଶୋଷଣର ପ୍ରତିଶୋଧ ନେବାକୁ ଯାଇ ଗଣ୍ଡମାନେ ଏମାନଙ୍କ ଉପରେ ବିଶେଷ ଭାବରେ ଆକ୍ରମଣ

କରୁଥିଲେ । ଅନେକ ସମୟରେ ଗଣ୍ଡମାନେ ସମଗ୍ର ପରିବାରର ଶିର ଛେଦନ କରୁଥିଲେ । ଏହା ''ଗଣ୍ଡମାରୁ'' ନାମରେ ଖ୍ୟାତ ।

ବରଗଡ଼ କଟାପାଳିର ଗୌନ୍ତିଆ ବାଲୁକେଶ୍ୱର ଦାଶଙ୍କ ପିତା ଶମ୍ଭୁ ଦାଶ ପୁରୀ ଜିଲ୍ଲାରୁ ଆସିଥିଲେ । ସେ ଗଣ୍ଡ ଉପଦ୍ରବ ଭୟରେ ଦନ୍ତା ନଦୀ ଓ କଟାପାଳି ଜୋର ମଧ୍ୟରେ ଏକ ଦୁର୍ଗ ନିର୍ମାଣ କରି କେତେକ ସୈନିକ ରଖି ଅସ୍ତ୍ରଶିକ୍ଷା ଦେଇଥିଲେ । ଗଣ୍ଡ ଦଳ ଦିନେ ରାତିରେ ଗଡ଼ ଆକ୍ରମଣ କରି ସବୁ ଘର ପୋଡ଼ିଦେଲେ ଓ ବାଳକି ଦାଶଙ୍କୁ ତୋରା ଗ୍ରାମରେ ହତ୍ୟା କରିଥିଲେ ।

ତୃତୀୟ ମରହଟ୍ଟା ସମର ଫଳରେ ସମ୍ବଲପୁର ୧୮୧୭ରେ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା ।

❑❑❑

# ବ୍ରିଟିଶ୍ ଶାସନରେ ସମ୍ବଲପୁର

ହୀରା ହିଁ ସମ୍ବଲପୁର ପ୍ରତି ଲର୍ଡ କ୍ଲାଇବ୍‌ଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେ ଥୋମାସ୍ ମୋଲଟେଙ୍କୁ ୧୭୬୬ରେ ଏଥିପାଇଁ ସମ୍ବଲପୁର ପଠାଇଥିଲେ ।

ଚୌହାଣ ରାଜା ଜୟନ୍ତ ସିଂହଙ୍କ ସମୟରେ ମରହଟ୍ଟାମାନେ ବାରମ୍ବାର ସମ୍ବଲପୁର ଆକ୍ରମଣ କରିଥିଲେ । ୧୭୯୮ରେ ରାଜା ତାଙ୍କ ସହ ଏକ ଶାନ୍ତିଚୁକ୍ତି କରି ମାସକୁ ୩୨,୦୦୦ ଟଙ୍କା ନଜରାନା ଦେବାକୁ ସ୍ୱୀକାର କରିଥିଲେ ।

ହେଲେ ୧୭୯୯ରେ ଜୟନ୍ତ ସିଂହ ପୁଣିଥରେ ମରହଟ୍ଟାମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇଥିଲେ । ଏଥରକ ତାଙ୍କୁ ଓ ତାଙ୍କ ପୁଅ ମହାରାଜ ସାଏଙ୍କୁ ବନ୍ଦୀ କରି ନିଆଯାଇଥିଲା ଏବଂ ସମ୍ବଲପୁର ମରହଟ୍ଟାମାନଙ୍କ ଶାସନାଧିନ ହେଲା । ଏତେବେଳକୁ ଓଡ଼ିଶା ମରହଟ୍ଟାମାନଙ୍କ ପ୍ରାୟ ଶାସନାଧିନ ହୋଇ ସାରିଥିଲା ।

ରାଜନୈତିକ ଓ ବ୍ୟବସାୟଗତ କାରଣରୁ ମେଜର ବ୍ରାଉଟନ୍ ଜାନୁୟାରୀ ୧୮୦୪ରେ ସମ୍ବଲପୁର ଦଖଲ କଲେ । ହେଲେ ଲର୍ଡ ୱେଲେସଲିଙ୍କ ପରେ ବଡ଼ଲାଟ ଜର୍ଜ ବାରଲୋ ୧୮୦୬ରେ ପାଟଣା ସହିତ ସମ୍ବଲପୁରକୁ ମରହଟ୍ଟମାନଙ୍କ ହାତରେ ଅର୍ପଣ କଲେ ।

ହେଲେ ପ୍ରବଳ ଜନବିରୋଧ ଓ ରାଣୀ ରତ୍ନକୁମାରୀଙ୍କ ବିରୋଧ ଫଳରେ ୧୮୦୮ରେ ସମ୍ବଲପୁର ପୁଣି ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା । ହେଲେ ସେମାନେ ଏହାକୁ ହାତରେ ରଖି ପାରିଲେ ନାହିଁ । ୧୮୧୭ରେ ତୃତୀୟ ମରହଟ୍ଟା ସମର ଫଳରେ ସମ୍ବଲପୁର ବ୍ରିଟିଶ ଅଧିନକୁ ଆସିଲା ।

୧୮୧୭ରୁ ୧୮୪୯ ପର୍ଯ୍ୟନ୍ତ ସମ୍ବଲପୁର ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀ ଶାସନରେ ରହିଲା । ଯଦିଓ ରାଜା ଜୟନ୍ତ ସିଂହଙ୍କ ଗାଦି ପ୍ରତ୍ୟର୍ପଣ କରିଦିଆ ଯାଇଥିଲା କିନ୍ତୁ କୌଣସି ଗଡ଼ଜାତ ଉପରେ ତାଙ୍କୁ କୌଣସି କ୍ଷମତା ଦିଆ ଯାଇ ନଥିଲା ।

ବିଭିନ୍ନ ସମୟରେ ସମ୍ବଲପୁରର ବିଭିନ୍ନ ଅଂଶ ଇଂରେଜ ଶାସନଧିନ ହେବା ଫଳରେ ସେଗୁଡ଼ିକ ଚାରୋଟି ପୃଥକ ଶାସନରେ ରହିଥିଲା । ସୁରଗୁଜା ସିଂହଭୂମ ସହିତ ବିହାର ପ୍ରଦେଶର ରାଞ୍ଚି ଡିଭିଜନ ଅନ୍ତର୍ଭୁକ୍ତ ଥିଲା ବେଳେ ବୌଦ ଓ ଆଠମଲ୍ଲିକ ୧୮୦୦ରେ କଟକ

ଡିଭିଜନ ଅନ୍ତର୍ଗତ ଥିଲା । ୧୮୧୭ରେ ଇଂରେଜମାନେ ବସ୍ତରକୁ ରାୟପୁର ଡିଭିଜନ ଅନ୍ତର୍ଗତ କଲେ । ରାୟଗଡ଼ ୧୮୦୬ରେ ବିହାର ଏବଂ ପରେ ନାଗପୁର ସହ ସଂଯୋଜିତ ହୋଇଥିଲା ।

ସମ୍ବଲପୁରର ଅବଶିଷ୍ଟ ଗଡ଼ଜାତମାନଙ୍କୁ ଇଂରେଜ ସରକାର ୧୮୨୧ରେ ପୃଥକ ସନନ୍ଦମାନ ଦେଇଥିଲେ ହେଁ ସେ ସମସ୍ତଙ୍କର ଶାସନର ମୁଖ୍ୟ କେନ୍ଦ୍ର ଥିଲା ସମ୍ବଲପୁର । ମହାରାଜ ସାଏ କେବଳ ୩୪ ଖଣ୍ଡ ଗାଁ ଏବଂ ହୀରାଖଣିର ଅଧିକାର ପାଇଥିଲେ ।

ସମ୍ବଲପୁରରେ ଜଣେ ବ୍ରିଟିଶ ଏଜେଣ୍ଟ ରହିଲେ । ଚତୁର୍ଦ୍ଦିଗର ଗଡ଼ଜାତମାନଙ୍କର ଶୃଙ୍ଖଳା ବିଧାନ ଏବଂ ନାଗପୁର, ରାଞ୍ଚି ଓ କଟକ ମଧ୍ୟରେ ସାମରିକ ସଂପର୍କ ରକ୍ଷା ନିମନ୍ତେ ସମ୍ବଲପୁରକୁ ଏକ ସାମରିକ ଛାଉଣୀରେ ପରିଣତ କରାଗଲା । ରାଜସ୍ୱ ଓ ସେନାବାହିନୀ ଇଂରେଜ ଏଜେଣ୍ଟଙ୍କ ହାତରେ ରହିଲା ।

ହେଲେ ମହାରାଜ ସାଏଙ୍କ ସମୟରେ ସମ୍ବଲପୁରକୁ ଲାଗିଥିବା ସ୍ୱାଧୀନ ଗଡ଼ଜାତମାନ ବ୍ରିଟିଶମାନେ ଅଧିକାର କରିନେଲେ । ୧୮୨୭ରେ ତାଙ୍କ ମୃତ୍ୟୁପରେ ବିଧବା ରାଣୀ ମୋହନ କୁମାରୀ ସିଂହାସନରେ ବସିଲେ ।

ଯଦିଓ ୧୮୨୭ରେ ମହାରାଜ ସାଏଙ୍କ ମୃତ୍ୟୁ ଘଟିଥିଲା; ହେଲେ ସେ ଅପୁତ୍ରିକ ଭାବେ ମରିଥିବାରୁ ବ୍ରିଟିଶ ଏଜେଣ୍ଟ ତାଙ୍କ ମୃତ୍ୟୁ ଖବର ଗୋପନ ରଖି ଏବଂ ସେ ପୀଡ଼ିତ ରହିଥିବା ଘୋଷଣା କରି ୧୮୩୩ ପର୍ଯ୍ୟନ୍ତ ଶାସନ ଚଳାଇଲେ । ରାଜାଙ୍କ ପକ୍ଷରୁ ରାଣୀ ମୋହନ କୁମାରୀ ରାଜ୍ୟର ଦାୟିତ୍ୱ ବୁଝୁଥିଲେ ।

ମୋହନ କୁମାରୀଙ୍କ ବିରୁଦ୍ଧରେ ଗୁରୁତର ଅଭିଯୋଗମାନ ହେବା ଫଳରେ ଏବଂ ତାଙ୍କ କୁଶାସନଜନିତ ଉପଦ୍ରବ ଯୋଗୁଁ ତାଙ୍କୁ ସିଂହାସନଚ୍ୟୁତ କରି ପେନସନ୍ ଦେଇ କଟକ ପଠାଇ ଦିଆଗଲା । ନାରାୟଣ ସିଂହଙ୍କୁ ଶାସନ ଗାଦି ଅର୍ପଣ କରାଗଲା । ସେ ମଧ୍ୟ ସୁଶାସକ କି ଲୋକପ୍ରିୟ ନ ଥିଲେ ।

ନାରାୟଣ ସିଂହ ଅପୁତ୍ରିକ ଭାବରେ ମୃତ୍ୟୁବରଣ କରିବା ଫଳରେ ଡିସେମ୍ବର ୧୮୪୯ରେ ଲର୍ଡ ଡେଲହାଉସି ରାଜ୍ୟସ୍ୱତ୍ତ୍ୱଲୋପ ନୀତି ଫଳରେ ସମ୍ବଲପୁରକୁ ବ୍ରିଟିଶ ସାମ୍ରାଜ୍ୟଭୁକ୍ତ କଲେ । ଏହା ରାଜାଙ୍କ ଇଚ୍ଛା ଅନୁସାରେ ହୋଇଥିଲା ବୋଲି କେତେକ ଐତିହାସିକଙ୍କ ମତ ।

ଏହା ପରେ ସରକାରଙ୍କ ପକ୍ଷରୁ ସମ୍ବଲପୁରରେ ମୁଖ୍ୟ ସହକାରୀ ଏଜେଣ୍ଟ ( cipal Asst. Agent) ଭାବେ ଡ.ଜେ.କେଡେନହେଡ୍‌କୁ ନିଯୁକ୍ତ କରାଯାଇ ତାଙ୍କୁ ସମସ୍ତ

ପ୍ରଶାସନିକ କ୍ଷମତା ଦିଆ ଯାଇଥିଲା । ପରେ ଏହି ପଦବୀ ସିନିଅର ଆସିଷ୍ଟାଣ୍ଡ କମିଶନର ଓ ପରେ ଡେପୁଟୀ କମିଶନରେ ପରିଣତ ହେଲା । ରାୟ ରୂପ ସିଂହ ତାଙ୍କର ଦେଶୀୟ ସହକାରୀ ଭାବରେ ନିଯୁକ୍ତି ପାଇଥିଲେ ।

୧୮୪୯ରେ ଅନୁଗୁଳ ରାଜା ବିଦ୍ରୋହ କରି ସ୍ୱାଧୀନ ହେବାର ଚେଷ୍ଟା କରିଥିଲେ । କଟକ ଓ ରାଞ୍ଚିରୁ ଇଂରେଜବାହିନୀ ଆସି ସେହି ବିଦ୍ରୋହକୁ କଠୋର ଭାବରେ ଦମନ କରିଥିଲେ । ଏହି ଯୁଦ୍ଧରେ ସମ୍ବଲପୁର, ବାମଣ୍ଡା ରାଜା ଓ ରୂପ ସିଂହ ବିଶେଷ ସାହାଯ୍ୟ କରିଥିଲେ । ଯୁଦ୍ଧରେ ପରାସ୍ତ ହୋଇ ବିଦ୍ରୋହୀ ରାଜା ଜଙ୍ଗଲକୁ ପଳାୟନ କରିଥିଲେ ।

ପରେ ବାମଣ୍ଡା ରାଜା ଓ ରୂପ ସିଂହଙ୍କ ବିଶେଷ ସହଯୋଗ ଫଳରେ ତାଙ୍କୁ ବନ୍ଦୀ କରା ଯାଇ ପାରିଥିଲା । ଏଥିରେ ପ୍ରୀତ ହୋଇ ଇଂରେଜ ସରକାର ସମ୍ବଲପୁର ଓ ବାମଣ୍ଡା ରାଜାଙ୍କୁ ଖିଲଅତ ଓ ରାଜା ବାହାଦୁର ଉପାଧୀ ଦେଇଥିଲେ । ରୂପ ସିଂହ ରାୟ ବାହାଦୁର ଉପାଧୀ, ଚନ୍ଦ୍ରପୁର ପ୍ରଗଣା ଓ ବରଗଡ଼ ସବଡିଭିଜନ୍‌ର କୁରୁଆଁ ଆଦି ପାଞ୍ଚ ଖଣ୍ଡ ଗ୍ରାମ ପୁରସ୍କାର ପାଇଲେ । କିରାଣୀରୁ ସ୍ୱତନ୍ତ୍ର ସହକାରୀ କମିଶନର [ Extra Asst. Commissioner] ପଦକୁ ଉନ୍ନିତ ହେଲେ ।

କେଡେନ ହେଡଙ୍କ ପରେ ୧୮୫୨ ରେ କମ୍ବର୍ଲିଜ, ୧୮୫୩ରେ ବର୍ଟ, ୧୮୫୭ରେ ଲି (Capt. Leigh) ସାହେବ ସମ୍ବଲପୁରରେ ଏଜେଣ୍ଟ ନିଯୁକ୍ତ ହୋଇଥିଲେ ।

ସେତେବେଳେ ସମ୍ବଲପୁର ଛୋଟ ନାଗପୁର କମିଶନରୀ ଅଧୀନରେ ଥିଲା । ୧୮୫୭ରେ ସୁରେନ୍ଦ୍ରଙ୍କ ବିଦ୍ରୋହ ଦମନ ପାଇଁ ଏହାକୁ କଟକ କମିଶନରୀ ଅନ୍ତର୍ଭୁକ୍ତ କରାଗଲା । ୧୮୬୦ରେ ସମ୍ବଲପୁର ବଙ୍ଗପ୍ରଦେଶର ଅନ୍ତର୍ଗତ ହେଲା । ୧୮୬୧ରେ ମେଜର ଇଂପେ ସମ୍ବଲପୁରର ଡେପୁଟି କମିଶନର ହେଲେ । ୧୮୬୨ରେ ସମ୍ବଲପୁରକୁ ପୁଣି ଓଡ଼ିଶାରୁ ବିଚ୍ଛିନ୍ନ କରି ମଧ୍ୟପ୍ରଦେଶ ସହ ମିଶାଗଲା । ଭାଷାଗତ ଅସୁବିଧା ଦୃଷ୍ଟିରୁ ୧୯୦୫ରେ ଏହା ପୁଣି ବଙ୍ଗରେ ମିଶାଯାଇ ଓଡ଼ିଶା ଡିଭିଜନ୍ ଅନ୍ତର୍ଗତ ହେଲା । ସମ୍ବଲପୁରର ସାରଙ୍ଗଗଡ଼, ଫୁଲଝର, ଖଡ଼ିଆଳ, ଚନ୍ଦ୍ରପୁର ଆଦି ମଧ୍ୟପ୍ରଦେଶରେ ରହିଗଲା । ୧୯୧୧ରେ ଏହା ବିହାର-ଓଡ଼ିଶା ପ୍ରଦେଶରେ ରହି ବଙ୍ଗରୁ ବିଚ୍ଛିନ୍ନ ହେଲା ଓ ୧୯୩୬ରେ ଓଡ଼ିଶାରେ ମିଶିଲା । ସେହି ବର୍ଷ ଖଡ଼ିଆଳ ଓ ପଦ୍ମପୁର ମଧ୍ୟପ୍ରଦେଶରୁ ଆସି ସମ୍ବଲପୁରରେ ମିଶିଲା ।

ସମ୍ବଲପୁରରେ ବ୍ରିଟିଶ ଶାସନ କାଳରେ କଥା ଓ କାର୍ଯ୍ୟରେ ଘୋର ବ୍ୟବଧାନ ରହିଥିଲା । ରାଜାଙ୍କୁ ଯେତେ ଖଜଣା ଦେଉଥିଲେ ନୀତିଗତ ଭାବେ ଇଂରେଜ ସରାକରଙ୍କୁ

ସେତିକି ପରିମାଣ ଖଜଣା ଦେବାକୁ ଲୋକଙ୍କୁ କୁହା ଯାଉଥିଲେ ମଧ୍ୟ ୧୮୫୦ର ତ୍ରୟବାର୍ଷିକ ବନ୍ଦୋବସ୍ତରେ ତାହା ଏକକାଳୀନ ତିନିଗୁଣକୁ ବୃଦ୍ଧି କରାଯାଇଥିଲା । ନିସ୍କର ଜମି ଉପରେ ମଧ୍ୟ ଅଧା ଖଜଣା ଧାର୍ଯ୍ୟ ହୋଇଥିଲା । ଖଜଣା ଧାର୍ଯ୍ୟ ବେଳେ ପ୍ରଜାର ଦେଇ ପାରିବା କ୍ଷମତା କଥା ବିଚାରକୁ ନିଆ ଯାଉ ନଥିଲା । ଖଜଣା ଆଦାୟରେ ଜୋର ଜୁଲମ ଏକ ସାଧାରଣ କଥା ଥିଲା ।

୧୮୫୩ର ବନ୍ଦୋବସ୍ତ ବେଳେ ଖଜଣା ପୁଣି ଏକ ଚତୁର୍ଥାଂଶ ବୃଦ୍ଧି ପାଇଲା । ଘନଘନ ବନ୍ଦୋବସ୍ତ ଓ ଖଜଣା ବୃଦ୍ଧି ପ୍ରଜାଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କଲା ।

ରାଜା ନିଜ ପାଣ୍ଠିରୁ ଦେଶୀ ସିପାହୀମାନଙ୍କୁ ଦରମା ଦେବାକୁ ବାଧ୍ୟ ଥିଲେ । ପରେ ରାଜାଙ୍କ ନିୟମିତ ବାହିନୀକୁ ଭଙ୍ଗ କରି ଦିଆଗଲା ଏବଂ ଅଳ୍ପ ସୈନ କେତେକଙ୍କୁ ଆବଶ୍ୟକତା ବେଳେ କାମ ଦିଆଗଲା ।

ଯଦିଓ ଏ ଭଳି ପଦକ୍ଷେପ ରାଜ୍ୟରେ କିଛିଟା ରାଜନୈତିକ ସ୍ଥିରତା ଆଣିଦେଲା । ତଥାପି ଲୋକଙ୍କ ମଧ୍ୟରେ ରୁଦ୍ଧ ଅସନ୍ତୋଷ କୁହୁଳୁ ଥିଲା । ସେତେବେଳେ ସମ୍ବଲପୁର ସିଂହାସନର ଦାବିଦାର ସୁରେନ୍ଦ୍ର ସାଏ ହଜାରୀବାଗ ଜେଲରେ ଥିଲେ । ତାଙ୍କ ସମର୍ଥକ ଜମିଦାର ଓ ଜନସାଧାରଣ ସମ୍ବଲପୁରରେ ଦେଶୀ ଶାସନ ଚାହୁଁଥିଲେ ।

❑❑❑

# ବ୍ରିଟିଶ୍ ଶାସନରେ ସମ୍ବଲପୁରର ଅର୍ଥନୀତି

ବ୍ରିଟିଶ ଶାସନ କାଳରେ ସମ୍ବଲପୁରର ସାଧାରଣ ଅର୍ଥନୀତି ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ସାଧାରଣ ଜନଜୀବନରେ ଏହାର ଗଭୀର ପ୍ରଭାବ ପଡ଼ିଥିଲା । ଏହି ଗୁରୁତର ସମାଜ-ଅର୍ଥନୈତିକ ଉତ୍ତେଜନା ପରବର୍ତ୍ତୀ ସମୟରେ ରାଜନୈତିକ ବିଦ୍ରୋହରେ ପର୍ଯ୍ୟବେସିତ ହୋଇଥିଲା ।

ସମ୍ବଲପୁର ପାଇଁ ଉଭୟ ମରହଟ୍ଟା ଓ ଇଂରେଜ ଥିଲେ ବିଦେଶୀ । ମରହଟ୍ଟାମାନେ ନିଜ ଧନାଗାର ପୂରଣ ନିମନ୍ତେ ସମ୍ବଲପୁରକୁ ଏକ ଲୁଣ୍ଠନ ଭୂମିରେ ପରିଣତ କରିଥିଲେ । ବ୍ରିଟିଶମାନଙ୍କ ପକ୍ଷରେ ଏ ହୀରକଭୂମିର ମୋହ ଓ ଲୋଭ ଏତେ ବେଶୀ ଥିଲା ଯେ ସେମାନେ ଏହାକୁ ତାଙ୍କର 'କେବେ ସୂର୍ଯ୍ୟାସ୍ତ ହେଉନଥିବା ସାମ୍ରାଜ୍ୟ'ର ଏକ ଉପନିବେଶରେ ପର୍ଯ୍ୟବେସିତ କରିଥିଲେ । ଦେଶବ୍ୟାପୀ ପ୍ରଜା, ଆଦିବାସୀ ସାଧାରଣଙ୍କ ଅର୍ଥନୈତିକ, ଅନ୍ତର୍ଗତ ଅସନ୍ତୋଷ ହିଁ ସାମଗ୍ରିକ ଭାବରେ ଭାରତୀୟ ଜାତୀୟ ମୁକ୍ତି ସଂଗ୍ରାମରେ ପରିଣତ ହୋଇଥିଲା ।

ଆଦିବାସୀ ଅଧ୍ୟୁସିତ ସମ୍ବଲପୁରରେ ଶବର, କନ୍ଧ, କୋଲ, ଗଣ୍ଡ, ଓରାମ, ବିଂଝାଲ, କୁର୍ମୀମାନଙ୍କ ସହ ଅଘରିଆ, କୁଲିତା ଓ ବହିରାଗତ ଓଡ଼ିଆ ଚାଷୀ, ବ୍ରାହ୍ମଣ, କରଣ, ସାହୁକାରମାନେ ବ୍ରିଟିଶକାଳୀନ ସମ୍ବଲପୁରର ମୁଖ୍ୟ ଅଂଶ ଥିଲେ । ଏମାନଙ୍କ ଜୀବିକା ମୂଳତଃ କୃଷି ଥିଲା । ନିମ୍ନବିତ୍ତ ସାଧାରଣ କୃଷି ମଜୁରିଆ ଥିଲେ ।

ବହିରାଗତମାନେ ଥିଲେ ମୂଳତଃ ଉପକୂଳବାସୀ । ବ୍ରିଟିଶ ଶାସନ ପ୍ରାକ୍‌କାଳରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପ୍ରଶ୍ନାତୀତ ହୋଇଥିଲେ ହେଁ ଏକରକମ ବାଧ୍ୟବାଧକତା ନେଇ ସେମାନେ ଚଳିବାକୁ ବାଧ୍ୟ ହୋଇଥିଲେ । ଉନ୍ନତ ଚାଷ, ବ୍ୟବସାୟିକ ପଣ୍ୟ ଦ୍ରବ୍ୟ, ଅର୍ଥସଙ୍କଟ, ଧାର୍ମିକ ଅନୁଷ୍ଠାନ ଆଦି ପାଇଁ ଏ ଅଞ୍ଚଳବାସୀଙ୍କୁ ବହିରାଗତମାନଙ୍କ ଉପରେ ମୂଳତଃ ନିର୍ଭରଶୀଳ ହେବାକୁ ପଡୁଥିଲା ।

ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳକୁ ଉପକୂଳ ଅଞ୍ଚଳରୁ ଆସିଥିବା ବହିରାଗତ ପ୍ରବାସୀ ଓଡ଼ିଆମାନେ ୧୬ଶ ଶତାବ୍ଦୀରୁ ନିଜର ଲାଭ ଦୃଷ୍ଟିରୁ ଆଦିବାସୀମାନଙ୍କୁ ହିନ୍ଦୁ ସଂପ୍ରଦାୟରେ ଗ୍ରହଣ ଉଦ୍ଦେଶ୍ୟରେ 'ସଂସ୍କୃତିକରଣ' ପଦ୍ଧତି ଗ୍ରହଣ କଲେ । ଏହି ବହିରାଗତମାନେ ଉନ୍ନତ

କୃଷିପ୍ରଣାଳୀ ଗ୍ରହଣ କଲେ । ଆଦିବାସୀମାନଙ୍କ ସାହାଯ୍ୟରେ ନୂଆ ଜଙ୍ଗଲ ଜମି ଉଦ୍ଧାର କରି ଚାଷୋପଯୋଗୀ କରି ଅଞ୍ଚଳର ଅର୍ଥନୀତିରେ ମଧ୍ୟ କିଛି ଉନ୍ନତି ଆଣିଲେ ।

ବ୍ରିଟିଶମାନେ ପ୍ରଥମ କରି ଏ ଅଞ୍ଚଳରେ ଟଙ୍କା ବା ମୁଦ୍ରା-ଅର୍ଥନୀତିର ପ୍ରଚଳନ କଲେ । ପୂର୍ବରୁ ଏ ଅଞ୍ଚଳରେ ଖଜଣାଠାରୁ ଆରମ୍ଭ କରି ସମସ୍ତ କ୍ଷେତ୍ରରେ ଦ୍ରବ୍ୟ ବିନିମୟ ବା କଉଡ଼ି ପ୍ରଚଳନ ରହିଥିଲା । ରୂପା ଟଙ୍କା ପ୍ରଚଳନ ଫଳରେ ସାହୁକାର ଓ ଧନୀ ଚାଷୀଙ୍କ ଶକ୍ତି ବୃଦ୍ଧି ପାଇଲା । ଏହି ନୂଆ ଅର୍ଥନୀତି ଚାପରେ ଚାଷଜମିର ଖସଡ଼ା ପ୍ରସ୍ତୁତି ଓ ଅଣକୃଷିକରଣ ଦ୍ୱାରା ଆଦିବାସୀମାନେ ଚ଼ରମ ଅସୁବିଧା ଭୋଗ କଲେ ।

ରାଜା ନାରାୟଣ ସିଂହଙ୍କ ସମୟରେ ଲେଫ୍ଟିନେଣ୍ଟ କିଟୋ ସମ୍ବଲପୁର ଆସିଥିଲେ । ତାଙ୍କ ଯାତ୍ରା ବିବରଣୀରେ ସେ ଯାହା ଉଲ୍ଲେଖ କରିଛନ୍ତି, ସେଥିରେ ତତକାଳୀନ ସମ୍ବଲପୁରର ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତି ଅତ୍ୟନ୍ତ ଗମ୍ଭୀର ଥିବାର ଜଣାଯାଏ ।

ସେ ଲେଖିଛନ୍ତି : ''ସମ୍ବଲପୁରର ରାଜା ମହାରାଜ ସାଏଙ୍କ ମୃତ୍ୟୁ ପରେ ଇଂରେଜମାନେ ଜଣେ ଅକର୍ମଣ୍ୟ, ବୃଦ୍ଧ ଜମିଦାର (ନାରାୟଣ ସିଂହ)ଙ୍କ ହାତରେ ଶାସନ ଭାର ଅର୍ପଣ କଲେ । ଏହି ନାମକୁ ମାତ୍ର ରାଜା ମନ୍ତ୍ରୀମାନଙ୍କ ହାତରେ କ୍ରୀଡ଼ନକ ଥିଲେ । ମନ୍ତ୍ରୀ ଓ ବ୍ରାହ୍ମଣମାନଙ୍କ ହାତରେ ରାଜ୍ୟର ଉତ୍କୃଷ୍ଟ ଜମିର ଅଧିକାର ରହିଛି । ପ୍ରଜାଙ୍କ ରକ୍ତ ଶୋଷଣ କରିବା ନିମନ୍ତେ ରାଜାଙ୍କ ଠାରୁ ଯେ କୌଣସି ପ୍ରତିବନ୍ଧତା ନାହିଁ । ଏମାନଙ୍କର ଦାବି, ସାଧ ମେଣ୍ଟାଇବାକୁ ଯାଇ ଗୌନ୍ତିଆମାନେ ପ୍ରଜମାନଙ୍କୁ ନାନା ପ୍ରକାର ଦଳିତ, ଅତ୍ୟାଚାରିତ କରୁଛନ୍ତି ।

ମନ୍ତ୍ରୀ ଓ ବ୍ରାହ୍ମଣମାନେ ରାଜ୍ୟର ସର୍ବେସର୍ବା ହୋଇ ପ୍ରଜାଙ୍କ ରକ୍ତ ଶୋଷଣ କରୁଥିଲେ । ସେମାନେ ଏପରି ଅତ୍ୟାଚାର ଆରମ୍ଭ କରିଥିଲେ ଯେ ଗୌନ୍ତିଆମାନେ ପ୍ରଜାମାନଙ୍କ ଶେଷ ରକ୍ତବିନ୍ଦୁ ପର୍ଯ୍ୟନ୍ତ ଶୋଷଣ କରି ନିଜର ଲୋଭ ଓ ଲାଭ ଚ଼ରିତାର୍ଥ କରୁଥିଲେ ।

XXX ମନ୍ତ୍ରୀ, କର୍ମଚାରୀ, ବ୍ରାହ୍ମଣମାନେ ରାଜ୍ୟର ଉତ୍କୃଷ୍ଟ ଜମିବାଡ଼ି ସବୁ ମାଡ଼ି ବସିଥିଲେ । ଏହି ସମୟରେ ଗୌନ୍ତିଆ ଓ ପ୍ରଜାମାନେ ଜମି ହାତରେ ରଖିବାକୁ ସାଧାରଣତଃ ଚାହୁଁ ନ ଥିଲେ । ସୁତରାଂ ଅତ୍ୟାଚାରୀମାନେ ଜମି ମାଡି ବସିଥିଲେ ।

ଅନେକ ଭଲ ଭଲ ଗାଁ, ଜମି ଇତ୍ୟାଦି ଜବରଦସ୍ତ ମାଡ଼ି ବସିଥିଲେ । କେତେକ ଜାଲ ତମ୍ବାପଟା ପ୍ରସ୍ତୁତ କରି ଗାଁମାନ ମାଫି ସଂପତ୍ତି ରୂପେ ଦଖଲ ଥିବା ଦାବି ଦର୍ଶାଇ ଥିଲେ । ଏ ପ୍ରକାର ତମ୍ବାପଟାରୁ କେତେକରେ ଗାଁର ନାମ ସୁଦ୍ଧା ନାହିଁ, କେତେକରେ ସା

ବା ବର୍ଷ ମଧ୍ୟ ନାହିଁ । ଆଉ କେତେକରେ ଭୁଲ ବର୍ଷ ଦରଜ ହୋଇଛି । ଏପରିକି ଆଉ କେତେକ ଖଣ୍ଡିଏ ଖଣ୍ଡିଏ ତାଳପତ୍ରରେ ଏ ପ୍ରକାର ମାଫି ଦାନ ଦରଜ କରାଇ ସେଗୁଡ଼ିକ ଇଂରେଜ ସରକାରଙ୍କ ବନ୍ଦୋବସ୍ତ ସମୟରେ ପେଶ୍ କରିଥିଲେ । ଏସବୁ ଠିକଣା କରିବା ସରକାରଙ୍କ ପକ୍ଷରେ ବିଶେଷ କଷ୍ଟକର ହୋଇଥିଲା ।''

ପ୍ରଜାମାନେ କାହାରି ପାଖରେ ଆପତ୍ତି ବା ଗୁହାରି କରିବାକୁ ପ୍ରବୃତ୍ତ ହେଉ ନଥିଲେ । ଅନେକ ଗୌନ୍ତିଆ ଗ୍ରାମର ରାଜସ୍ୱ ପଇଠ କରିବା ନିମନ୍ତେ ଏହି ଅତ୍ୟାଚାରୀ କର୍ମଚାରୀମାନଙ୍କ ସମୀପକୁ ନ ଆସି ଅପେକ୍ଷାକୃତ ସାହସୀ ଗୌନ୍ତିଆମାନଙ୍କ ହାତରେ ଚାରି, ପାଞ୍ଚ ବା ଅଧିକ ଗ୍ରାମର ରାଜସ୍ୱ ପଇଠ କରାଇ ଦେଉଥିଲେ । ଏହି ସାହସୀ ଗୌନ୍ତିଆମାନେ ରାଜସ୍ୱ ପଇଠ କଲା ସମୟରେ ଏଭଳି ସବୁ ଗାଁ ନିଜ ନାମରେ ନଥିପତ୍ରରେ ଲେଖାଇ ନେଉଥିଲେ । ଜମି ବନ୍ଦୋବସ୍ତ ବେଳେ ଏହି ସବୁ କଥା ନିରୂପଣ କରିବା ଏକ କଠିନ ସମସ୍ୟା ହୋଇଥିଲା । ଫଳରେ ସମ୍ବଲପୁର ଜିଲାରେ କେତେକ ଗ୍ରାମରେ ଏହି ପ୍ରକାର ସଦର ଲମ୍ବରଦାର ଓ ସିକିମି ଲମ୍ବରଦାର, ଦୁଇଟି ଶ୍ରେଣୀର ଗୌନ୍ତିଆ ସୃଷ୍ଟି ହୋଇଥିଲେ ।

୧୮୪୦ ସ୍ୱତ୍ୱମିଆଦୀ ଭୂବନ୍ଦୋବସ୍ତ ଫଳରେ ପ୍ରଜାମାନେ ପୂର୍ବରୁ ରାଜାଙ୍କୁ ଦେଉଥିବା ଖଜଣା ତିନିଗୁଣ ବୃଦ୍ଧି ପାଇଲା । ନିଷ୍କର ଜମି ଉପରେ ଅଧା ଖଜଣା ଧାର୍ଯ୍ୟ କରାଗଲା । ୧୮୫୩ରେ ପୁଣି ଖଜଣା ଏକଚତୁର୍ଥାଂଶ ବୃଦ୍ଧି ପାଇଲା । ପ୍ରଜାର ଦେବା କ୍ଷମତା ଉପରେ ବିଚାର କରାଗଲା ନାହିଁ । ରାଜସ୍ୱବିହୀନ ଗ୍ରାମମାନଙ୍କ ଉପରେ ଅର୍ଦ୍ଧେକ ଖଜଣା ନିର୍ଦ୍ଧାରିତ ହେଲା । ନିଷ୍କର ଭୋଗରାଗ, ଦେବୋତ୍ତର ଓ ଅନ୍ୟାନ୍ୟ ଜାଗିରୀ ଉପରେ କର ବସିଲା । ମାଫିଦାରମାନେ ମଧ୍ୟ ଛାଡ଼ ପାଇଲେ ନାହିଁ । ଖଜଣାରେ ପ୍ରଜାର ଆୟ କଥା ଚିନ୍ତା କରାଗଲା ନାହିଁ । ଖଜଣା ଆଦାୟ ପାଇଁ ଦମନମୂଳକ ବ୍ୟବସ୍ଥା ଓ ପନ୍ଥାମାନ ଗ୍ରହଣ କରାଗଲା । ଏହା ଉଭୟ ଗରୀବ ଓ ଧନୀମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷକୁ ଜନ୍ମ ଦେଲା ।

ସେତେବେଳେ ଜମିଦାରମାନଙ୍କ ପ୍ରିୟ ମନ୍ତ୍ରୀ, ପାର୍ଷଦ ଓ ସମାଜର ଶକ୍ତିଶାଳୀ ଅଙ୍ଗ ବୋଲାଉଥିବା ବ୍ରାହ୍ମଣମାନଙ୍କ ହାତରେ ଉନ୍ନତ ଜମି ରହିଥିଲା । ବ୍ରାହ୍ମଣମାନେ ବର୍ଦ୍ଧିତ ରାଜସ୍ୱ ଓ ଦେବୋତ୍ତର ମାଫି ଉଚ୍ଛେଦ ସଂକ୍ରାନ୍ତରେ ପଲିଟିକାଲ କମିଶନରଙ୍କ ପ୍ରତିବାଦ ପ୍ରାର୍ଥନା କରିବାକୁ ରାଞ୍ଚି ଯାତ୍ରା କଲେ । ହେଲେ ସେମାନଙ୍କୁ ନିରାଶରେ ଫେରିବାକୁ ପଡ଼ିଲା ।

ଏକ ସରକାରୀ ରିପୋର୍ଟରେ ଜଣାଯାଏ ଯେ ୧୮୪୯ରେ ସମ୍ବଲପୁର ଜିଲାର ଜମିଦାର ଓ ଗୌନ୍ତିଆମାନଙ୍କ ପଞ୍ଚବାର୍ଷିକ ଖଜଣା ଦେୟ ୮,୮୦୦ ଟଙ୍କା ରହିଥିଲା ବେଳେ

୧୮୫୪ ବେଳକୁ ଏହାକୁ ୭୪,୦୦୦ ଟଙ୍କାକୁ ବୃଦ୍ଧି କରି ଦିଆଯାଇଥିଲା । ପୂର୍ବରୁ ସେମାନେ ରାଜାଙ୍କୁ ଦିଆ ଯାଉଥିବା ଖଜଣାର ପରିମାଣ ବୃଦ୍ଧି ନ କରିବାର ନିଜ ଘୋଷଣାକୁ ସେମାନେ ନିଜେ ବାଏଁ ବାଏଁ ଉଡ଼ାଇ ଦେଇଥିଲେ ।

ତା' ସହିତ ଇଂରେଜମାନେ ଆଉ ଏକ ଘୋଷଣା ମଧ୍ୟ ଜାରି କଲେ ଯେ ଜିଲାର ସମସ୍ତ ରାଜା, ଜମିଦାର ଓ ଗୌନ୍ତିଆମାନେ ନିଜେ ନିଜର ରାଜସ୍ୱ ଧରି ସମ୍ବଲପୁର ଆସି ତାହା ଦାଖଲ କରିବେ । ଏହା ଥିଲା ପ୍ରଚଳିତ ନିୟମର ପ୍ରତିକୂଳ । ଏଥିରେ ରାଜା, ଜମିଦାର, ଗୌନ୍ତିଆମାନେ ନିଜର ଆତ୍ମସମ୍ମାନ ହାନୀ ହେଉଥିବା ଅନୁଭବ କଲେ ।

ଅଗଷ୍ଟ ୨୫, ୧୮୫୮ର ନିମ୍ନରେ ପ୍ରଦତ୍ତ ଏକ ରିପୋର୍ଟରୁ ଜଣାଯାଏ ଯେ ଅଞ୍ଚଳର ଗଣ୍ଡ ଓ ବିଂଝାଲ ଜମିଦାର, ଗୌନ୍ତିଆମାନେ ନିଜ ସ୍ୱାଭିମାନ ରକ୍ଷା କରି ଖଜଣା ପଇଠ କରି ନ ଥିଲେ କି ସମ୍ବଲପୁର ମଧ୍ୟ ଆସି ନଥିଲେ । କେଡେନହେଡଙ୍କ କଡ଼ା ନିର୍ଦ୍ଦେଶକୁ ମଧ୍ୟ ସେମାନେ ଖାତିର କରି ନଥିଲେ ।

ସମ୍ବଲପୁରଠାରେ ଶିବିର କରିଥିବା ଇଂରେଜ କମିଶନର ଜି.ଏଫ.କକ୍‌ବର୍ଣ୍ଣଙ୍କ ଆଦେଶରେ ରାଜସ୍ୱ ପଇଠ କରି ନଥିବା ଜମିଦାରୀ ବାଜ୍ୟାପ୍ତି ହେଲା ବୋଲି ଘୋଷଣା କରା ଯାଇଥିଲା । ଏଭଳି ଜମିଦାରୀର ବିବରଣୀ ନିମ୍ନରେ ପ୍ରଦାନ କରାଗଲା -

| ନାମ | ବାଜ୍ୟାପ୍ତି ଗ୍ରାମ | ବାକିଥିବା ଖଜଣା | ମନ୍ତବ୍ୟ |
|---|---|---|---|
| ୧. ମାଧୋ ବରିହା | ଘେଁଷ | ୩୫୬ଟଙ୍କା ପାହୁଲା ଦେବାକୁ ସମ୍ବଲପୁର ଆସିନାହାନ୍ତି | ଖଜଣା |
| ୨. ଦିଆଲ ସରଦାର | ଖରସଲ | ୨୭୮.୦୦ | - |
| ୩. ମନୋହର ସିଂହ | ବିଶେଇ କେଲା | ୫୫୩.୦୦ | - |
| ୪. ପୀତାମ୍ବର ସିଂହ | ପାଟ କୁଲୁଣ୍ଡା | ୨୧୮.୦୦ | - |
| ୫. ଜନାର୍ଦ୍ଦନ ସିଂହ | ପାହାଡ଼ ଶ୍ରୀଗିଡ଼ା | ୮୦.୦୦ | - |
| ୬. ଅନନ୍ତ ସିଂହ | ମୁଡ଼ୋ ମହୁଲ | ୩୫.୦୦ | - |
| ୭. ଚନ୍ଦନ ଗଡ଼ତିଆ | ଲୋଇସିଂହା | ୧୨୯.୦୦ | - |
| ୮. କର୍ଣ୍ଣା ଗଡ଼ତିଆ | କୋଲାବିରା | ୮୪୯.୦୦ | - |
| ୯. ଦରିଆର ସିଂହ | ରାମପୁର | ୨୫୬.୦୦ | - |

| | | | |
|---|---|---|---|
| ୧୦. ଅଂଜାରି ସିଂହ | କୁଡ଼ାବଗା | ୮୨.୦୦ | - |
| ୧୧. ଧନ ସିଂହ | ମଚିଦା | ୪୪.୦୦ | - |
| ୧୨. ଖଗେଶ୍ୱର ଦାଓ | ଚଣ୍ଡା | ୨୪୪.୦୦ | - |
| ୧୩. ଉଜଲ ସାଏ | ଖିଣ୍ଡା | ୫୨୧ ଟଙ୍କା ୫ ଅଣା ୯ ୩/୪ ପାହୁଲା | - |

୧୮୪୯ରେ ସମ୍ବଲପୁରର ବ୍ରିଟିଶ ରାଜରେ ସଂପୂର୍ଣ୍ଣ ମିଶ୍ରଣ ନ ହେଲା ପର୍ଯ୍ୟନ୍ତ ଇଂରେଜମାନେ ସମ୍ବଲପୁରର ପ୍ରଶାସନ କ୍ଷେତ୍ରରେ ଆଦୌ ଆଗ୍ରହ ପ୍ରକାଶ କରି ନ ଥିଲେ । ୧୮୪୯ ପରେ ମଧ୍ୟ ତ୍ରୁଟିପୂର୍ଣ୍ଣ ଜମିସ୍ୱତ୍ୱ ନୀତି ପରିସ୍ଥିତିକୁ ଆହୁରି ବିସ୍ଫୋରକ କଲା । ଚାଷରେ ଅଚଳାବସ୍ଥା ସୃଷ୍ଟି ହେଲା । ଆଦିବାସୀ, ଜମିଦାର, ବ୍ୟବସାୟୀ ଓ ସାଧାରଣ ପ୍ରଜାକୁଳ ବ୍ରିଟିଶ ରାଜସ୍ୱ ନୀତି ଓ ନଗଦ ଟଙ୍କା ଖଜଣା ବ୍ୟବସ୍ଥା ଦ୍ୱାରା ଭୟଙ୍କର ଭାବରେ ପ୍ରଭାବିତ ହୋଇଥିଲେ ।

ବ୍ରିଟିଶ ଶାସନରେ ସେମାନେ ଆଉ ଅଧିକ କ୍ଷତିଗ୍ରସ୍ତ ହେବାକୁ ନ ଚାହିଁ ବହୁ ଜମିଦାର, ଗୌନ୍ତିଆ, ପ୍ରଜା ସୁରେନ୍ଦ୍ର ସାଏଙ୍କ ବିଦ୍ରୋହକୁ ସମର୍ଥନ ଦେଇଥିଲେ । ୧୮୫୭ବେଳକୁ ଏ ଅସନ୍ତୋଷ ଚ଼ରମ ସୀମାନେ ପହଞ୍ଚିଥିଲା ।

୧୮୬୦ରେ ସମ୍ବଲପୁରରେ ବେଙ୍ଗଲ ରେଣ୍ଟ ଏକ୍ଟ - ୧୮୫୯ ଲାଗୁ ହେଲା । ଏହା ରୟତମାନଙ୍କୁ ଏକ ନିର୍ଦ୍ଦିଷ୍ଟ କିସମର ଭୂମିସ୍ୱତ୍ୱ ପ୍ରଦାନ କରି ଅବାରିତ ଖଜଣା ବୃଦ୍ଧିକୁ ଆଂଶିକ ଭାବରେ ନିୟନ୍ତ୍ରଣ କଲା ।

ହେଲେ ସେତେବେଳେ ପ୍ରଚଳିତ ପଦ୍ଧତି ସହ ଏହା ଅନୁକୂଳ ହୋଇନଥିବାରୁ ଏହାକୁ ସେଣ୍ଟ୍ରାଲ ପ୍ରଭିନସେସ (ସି.ପି.) ଶାସନାଧୀନ କରାଯାଇ ୧୮୮୬ରୁ ସମ୍ବଲପୁରରେ ସେଣ୍ଟ୍ରାଲ ପ୍ରଭିନସେସ୍ ଭୂରାଜସ୍ୱ ଆଇନ ଓ ରୟତ ଆଇନ ଲାଗୁ କରାଗଲା । ସି.ପି. ଭୂରାଜସ୍ୱ ଆଇନ-୧୮୮୧ ଓ ସି.ପି. ପ୍ରଜାସ୍ୱତ୍ୱ ଆଇନ-୧୯୯୮ ସେଣ୍ଟ୍ରାଲ ପ୍ରଭିନସେସ୍‌ରେ ଉଚ୍ଛେଦ ହେଲା ପରେ ମଧ୍ୟ ତାହା ସମ୍ବଲପୁରରେ ଦଳବତ୍ତର ରହିଥିଲା ।

ସେହିପରି ସି.ପି.ରୁ ଆସି ସମ୍ବଲପୁରରେ ମିଶିଥିବା ମହାଦେବପାଲି ଥାନା ଅଞ୍ଚଳରେ ସି.ପି. ଭୂରାଜସ୍ୱ ଆଇନ-୧୯୧୭ ଓ ସି.ପି. ପ୍ରଜାସ୍ୱତ୍ୱ ଆଇନ-୧୯୨୦ ଅନେକ ସମୟ ଧରି ବଳବତ୍ତର ରହିଥିଲା । ଏକା ସମୟରେ ଜିଲ୍ଲାରେ ଦୁଇ-ଦୁଇଟା ଭିନ୍ନ ଆଇନର ପ୍ରଚଳନ ଯୋଗୁଁ ପ୍ରଶାସନିକ କ୍ଷେତ୍ରରେ ଉଭୟ ଶାସକ ଓ ପ୍ରଜାଙ୍କ ନିମନ୍ତେ ବିଭ୍ରାନ୍ତିକର ସମସ୍ୟା ସୃଷ୍ଟି କଲା ।

ଏହି ଆଇନ ଅନୁସାରେ ସମ୍ବଲପୁରର ରାଜସ୍ୱ ପ୍ରଶାସନ ଖାଲସା ଓ ଜମିଦାରୀ ଦୁଇ ଭାଗରେ ବିଭକ୍ତ ଥିଲା । ପୁରାତନ ସରକାରୀ ରେକର୍ଡ ଓ ବନ୍ଦୋବସ୍ତ ରିପୋର୍ଟ ଅନୁସାରେ ଖାଲସାରେ ପାଞ୍ଚ ପ୍ରକାରର ଜମିସ୍ୱତ୍ୱ ଥିଲା -

୧. ଗୌନ୍ତି
୨. ମାଲଗୁଜାରୀ
୩. ଭୋଗରା
୪. ମାଲିକ ମକବୁଜା
୫. ବ୍ରହ୍ମୋତ୍ତର

ଗୌନ୍ତୀ ଗ୍ରାମର ମୁଖ୍ୟ ଥିଲେ ଗୌନ୍ତିଆ । ସେମାନେ ଏକାଦିକ୍ରମେ ସରକାରଙ୍କ ଖଜଣା ପଇଠ କରି ଗ୍ରାମ ଭୋଗ କରୁଥିଲେ । ସେ[illegible]ନେ ନିସ୍କର ଭୋଗରା ଜମି ଭୋଗ କରୁଥିଲେ । ଅଳ୍ପ ମିଆଦୀ ବନ୍ଦୋବସ୍ତ ଅନ୍ତର୍ଭୁକ୍ତ ଗୌନ୍ତିଆ[illegible] ୧୮୬୨ରେ ପୂର୍ବରୁ ନ ଥିବା ମାଲିକାନା ସ୍ୱତ୍ୱ, ଉତ୍ତରାଧିକାରୀ ସ୍ୱତ୍ୱ ଓ ହସ୍ତାନ୍ତରଣ କ୍ଷମତା ପ୍ରଦାନ କରାଗଲା ।

ପରବର୍ତ୍ତୀ ସମୟ[illegible] ଏହି ନୀତି ବଦଳିଲା ଓ ପ୍ରଥମ ନିୟମିତ ବନ୍ଦୋବସ୍ତ ପରେ ଗୌନ୍ତିଆମାନଙ୍କୁ ପୂର୍ଣ୍ଣ ମାଲିକାନା ସ୍ୱତ୍ୱ ପରିବର୍ତ୍ତେ କେବଳ ଭୋଗରା, ଘର ଓ କ୍ଷେତର ମାଲିକାନା ପ୍ରଦାନ କରାଗଲା ।

ପ୍ରଜାଙ୍କ ଆୟରୁ ଗୌନ୍ତି ସଂପତ୍ତିର ଆୟ ଶତକଡ଼ା ୨୫ ଭାଗରୁ ବେଶୀ ହେଲେ ସେମାନଙ୍କୁ 'ଜପ୍ତି ନଜରାନା' ଦେବାକୁ ପଡୁଥିବା । ଗୌନ୍ତିଆମାନଙ୍କର ପତିତ ଜମିର ଗଛବୃଛ ବିକିବାର ଅଧିକାର ନଥିଲା । ଜଙ୍ଗଲ ସୁରକ୍ଷା ଟ୍ରଷ୍ଟ ଭାବରେ ସେମାନେ କାମ କରୁଥିଲା ବେଳେ ଅଧିକାଂଶ ମାଲଗୁଜାରୀ ଗାଁ ଖଜଣାବିହୀନ ଥିଲା ।

ଏହି ସମୟରେ ପ୍ରଜାମାନେ ଜମିର ପ୍ରକୃତ ଅଧିକାରୀ ନଥିଲେ । ବ୍ରାହ୍ମଣମାନେ ବ୍ରହ୍ମୋତ୍ତର ମାଫିର ଅଧିକାରୀ ଥିଲେ । ଗାଁଗୁଡ଼ିକରେ ସେବାୟତ ଭାବରେ ଜମିଭୋଗୀ ହୋଇ ଗଣ୍ଡା (ଚୌକିଦାର), ଝାଙ୍କର, ନରିହା (ଗଉଡ଼), ନେଗି (କରଣ), କୁମ୍ଭାର, ଲୁହୁରା, ଭଣ୍ଡାରୀ, ଧୋବା ରହୁଥିଲେ । ମକଦ୍ଦମ, ସିକିମି ଗୌନ୍ତିଆ ତଳକୁ ରହୁଥିଲେ ।

୧୮୬୨ରେ ସମ୍ବଲପୁର ସି.ପି.ରେ ମଧ୍ୟପ୍ରଦେଶ ମିଶି ଯିବା ଫଳରେ ବ୍ୟାପକ ଗଣ ଅସନ୍ତୋଷ ସୃଷ୍ଟି ହେଲା । ଜମିଜମାର ଏହି ଉଚ୍ଚ ଓ ଅବୈଜ୍ଞାନିକ ନିର୍ଦ୍ଧାରଣ ଟ୍ରିବୁଟାରୀ ମହଲର ସୁପରିଣ୍ଟେଣ୍ଡେଣ୍ଟ କକବର୍ଣ୍ଣଙ୍କୁ ଲେଖିବାକୁ ବାଧ୍ୟ କଲା- ''-ସରକାର ଅଧିନସ୍ଥ ରାଜ୍ୟମାନଙ୍କୁ ଏକ ଦୁହାଁଳୀ ଗାଈ ଭାବରେ ଦେଖିବାର ଅଭ୍ୟାସ ସାଧାରଣତଃ ଏକ

ଆତିଶଯ୍ୟ ଭିନ୍ନ କିଛି ନୁହେଁ, ଯାହାର ଶେଷ ବିନ୍ଦୁ ପର୍ଯ୍ୟନ୍ତ ନିଗାଡ଼ି ନିଆଯାଏ; ଯାହାକୁ ଏକ ସୁନାଅଣ୍ଡାଦିଆ କୁକୁଡ଼ା ଭାବେ ବ୍ୟବହାର କରାଯାଏ ନାହିଁ । ଜମିଦାର ଓ ପ୍ରଜାମାନଙ୍କ ମିଳିତ ସ୍ୱାର୍ଥ ଉଦ୍ଦେଶ୍ୟରେ ଯାହାର ଯତ୍ନ ନିଆଯାଏ ନାହିଁ କି ବ୍ୟବସ୍ଥା ମଧ୍ୟ କରାଯାଏ ନାହିଁ ।''

ସେହିପରି କେତେନହେତ୍ ସ୍ଥାନୀୟ ଲୋକଙ୍କୁ ଉପେକ୍ଷା କରି କେତେକ ଗାଁ ଇଉରୋପୀୟମାନଙ୍କ ପାଇଁ ବନ୍ଦୋବସ୍ତ କରାଇଲେ, ଯାହା ଫଳରେ ସରକାର ଗାଁଗୁଡ଼ିକର ଦୁଇ ଗୁଣ ରାଜସ୍ୱ ଲାଭ କରି ପାରିଲେ । ଲେଫ୍ଟିନେଣ୍ଟ ୱେବିଙ୍ଗଟନଙ୍କୁ କପା ଓ ଆଖୁ ଚାଷ କରିବାକୁ ଚନ୍ଦନପୁର, ପଦ୍ମପୁର, ସରସରା, ଲଖନପୁର ପ୍ରଗଣାମାନ ପ୍ରଦାନ କରା ଯାଇଥିଲା । ଏହା ମଧ୍ୟ ଲୋକଙ୍କ ମଧ୍ୟରେ ବ୍ରିଟିଶ୍ ବିରୋଧୀ ଭାବନା ଜାତ କଲା ।

ବାରମ୍ବାର ବନ୍ଦୋବସ୍ତ, ରାଜସ୍ୱ ସଂଶୋଧନ କରୁଥିବା ସରକାରଙ୍କ ତ୍ରୁଟିପୂର୍ଣ୍ଣ ରାଜସ୍ୱ ନୀତି, ଦ୍ରୁତ ଗତିରେ ଦାରିଦ୍ର୍ୟ ବୃଦ୍ଧି ଘଟାଇଲା । ଏହା ଫଳରେ ସାଧାରଣ ପ୍ରଜା ଓ ଆଦିବାସୀ ଓ ଅଣ ଆଦିବାସୀ, ରାଜା ଓ ଆଦିବାସୀ ଗୌନ୍ତିଆ, ଜମିଦାରଙ୍କ ମଧ୍ୟରେ ନାନାରକମ ବିବାଦକୁ ଜନ୍ମ ଦେଲା ।

ଉନବିଂଶ ଶତାବ୍ଦୀରେ ସମଗ୍ର ପଶ୍ଚିମ ଓଡ଼ିଶା ଏକ ଫୁଟନ୍ତା କଡ଼େଇରେ ପରିଣତ ହେଲା । ଅଣଆଦିବାସୀମାନଙ୍କ ନାମରେ ଆଦିବାସୀମାନଙ୍କ ଜମି ପଟ୍ଟା ବିରୁଦ୍ଧରେ ସୁରେନ୍ଦ୍ରଙ୍କ ନେତୃତରେ ବିଦ୍ରୋହ ହୋଇଥିଲା ।

ସାହୁକାରଙ୍କ ମାତ୍ରାଧିକ ସୁଧହାର ବୃଦ୍ଧି, ଅତ୍ୟାଚାର, ଅନାଚାର, ନିର୍ମମ ଶୋଷଣ, ଅସୁରକ୍ଷା ଆଦି ମଧ୍ୟ ପ୍ରତିରୋଧ, ବିଦ୍ରୋହର ଅନ୍ୟତମ କାରଣ ହୋଇଥିଲା । ବାମଣ୍ଡା ରାଜପରିବାରର ସିଂହାସନ କନ୍ଦଳ ମଧ୍ୟ ଆଦିବାସୀ ବିଦ୍ରୋହର ରୂପ ନେଇଥିଲା ।

ସେହିପରି ଧନୀ, ସମୃଦ୍ଧ, ପ୍ରଭାବ ପ୍ରତିପତ୍ତିଶାଳୀ ଚାଷୀମାନଙ୍କ ଦ୍ୱାରା ଦମନମୂଳକ ଅସୁଲ ଓ ଶୋଷଣ ଦ୍ୱାରା ସଂଭୂତ ଅର୍ଥନୈତିକ ସଙ୍କଟ ମଧ୍ୟ ଏହାର କାରଣ ରହିଥିଲା । ଜମିଦାରମାନଙ୍କ ଦ୍ୱାରା ବିଭିନ୍ନ ରକମ ବେଆଇନ ଲେଭି, ଖଜଣା, କର, ବେଠି, ବେଗାରୀ, ରସଦ, ଆଦିବାସୀ ମୁଖିଆମାନଙ୍କ ପ୍ରତି ଦୁର୍ବ୍ୟବହାର , ନିସ୍କର ଜାଗିରୀ ପ୍ରଥା ପ୍ରଚଳନ ଦାବି, ସାମାଜିକ ଅଶାନ୍ତି, ତ୍ରୁଟିପୂର୍ଣ୍ଣ ଜମି ମାଲିକାନା ସ୍ୱତ୍ତ୍ୱ, ଅମଲା, ଅମୀନମାନଙ୍କ ଶୋଷଣ ଓ ଧନୀଚାଷୀ ତୋଷଣ, ଚାଷୀଙ୍କ ନଗଦ ସମସ୍ୟା ପ୍ରତି ପ୍ରଶାସନର ଉପେକ୍ଷା, ରାଜାମାନଙ୍କ ବ୍ରିଟିଶ୍ ଭୀତି ଓ ପ୍ରୀତି ଦେଶୀ ରାଜାଙ୍କୁ ଇଂରେଜମାନଙ୍କ ସାମରିକ ସହଯୋଗ, ପ୍ରଜାଙ୍କ ନ୍ୟାୟୋଚିତ ବିଦ୍ରୋହର ଦେଶ, ରାଜ ଓ ବ୍ରିଟିଶ ଦ୍ରୋହ ଭାବରେ ଅବତାରଣା, ବିଦ୍ରୋହୀ

ଚାଷୀ, ଜମିଦାରମାନଙ୍କୁ ଜମିରୁ ବେଦଖଲୀ, ଜୋରିମାନା, ଗିରଫଦାରୀ, ଦଣ୍ଡ, ଜଳସେଚନ ବ୍ୟବସ୍ଥାର ଅଭାବ, କୃଷିର ଉନ୍ନତି ପ୍ରତି ଉପେକ୍ଷା, ଶିକ୍ଷାର ଅଭାବ, ଜମିହରା ଆଦିବାସୀ, ପ୍ରଜାର ପାରଂପରିକ ଅର୍ଥନୀତିର ବିପର୍ଯ୍ୟୟ, କଳଦାର ଟଙ୍କାର ଅଭାବ, ଅଣଆଦିବାସୀ ବହିରାଗତମାନଙ୍କ ଅନୁପ୍ରବେଶ, ଯୋଗାଯୋଗ, ରାସ୍ତାଘାଟ ଅସୁବିଧା ସ୍ଥିତିକୁ ଆହୁରି ବିସ୍ଫୋରକ କରି ଗଢ଼ି ତୋଳିଥିଲା ।

ଆଦିବାସୀ ବିଦ୍ରୋହ ଦମନ କରିବାକୁ ଇଂରେଜମାନେ କଠୋର ପଦକ୍ଷେପ ନେଲେ ।

୧୯୩୫ରେ ସମ୍ବଲପୁର ଜିଲ୍ଲା ଭାରତ ସରକାରଙ୍କ ଦ୍ୱାରା ଆଂଶିକ ବାହ୍ୟ ଅଞ୍ଚଳ ବୋଲି ଘୋଷିତ ହେବା ଫଳରେ ଜମିଜମା ଓ ରାଜସ୍ୱ କ୍ଷେତ୍ରରେ ସାଧାରଣ ପ୍ରଶାସନିକ ନିୟମ ଲାଗୁ ହୋଇପାରି ନଥିଲା । ପ୍ରଜାସ୍ୱତ୍ୱ ଉପରେ ବିକ୍ରୟ ନିମନ୍ତେ ନିଷେଧାଜ୍ଞା ରହିଥିଲା । ଏହା ଫଳରେ ସାମାଜିକ ଜୀବନ, ଜମି ଓ କୃଷି ଅର୍ଥନୀତି ପ୍ରଭାବିତ ହୋଇଥିଲା ।

ସମ୍ବଲପୁର ଜମି ଆଇନ କମିଟି-୧୯୩୯ ଏହି ପ୍ରଥା ବିରୁଦ୍ଧରେ ରିପୋର୍ଟ ଦେଲା । ହେଲେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋଗୁଁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

❑❑❑

# ସମ୍ବଲପୁରରେ ଆଦିବାସୀ ପ୍ରତିରୋଧ ସଂଗ୍ରାମ

ଊନବିଂଶ ଶତାବ୍ଦୀରେ ସାଧାରଣତଃ ପଶ୍ଚିମ ଓଡ଼ିଶା ଓ ମୁଖ୍ୟତଃ ସମ୍ବଲପୁର ଜିଲାର ଆଦିବାସୀ ପ୍ରତିରୋଧ ସଂଗ୍ରାମ ମୂଳରେ ଥିଲା ଅର୍ଥନୈତିକ ବିପନ୍ନ ସାଧାରଣ ପ୍ରଜାର ରୁଦ୍ଧ ଆକ୍ରୋଶ ତଥା ବ୍ରିଟିଶ ଶାସନର ଦାଦାଗିରି ଓ ତାର କ୍ରୀଡ଼ନକ ରାଜତନ୍ତ୍ର ବିରୁଦ୍ଧରେ ପ୍ରବଳ ପ୍ରତିବାଦ ।

ଆଧୁନିକ ଅସ୍ତ୍ରଶସ୍ତ୍ର ସଜ୍ଜିତ ବ୍ରିଟିଶ ଓ ରାଜ ବାହିନୀ ଏହି ନିରକ୍ଷର, ଅସଙ୍ଗଠିତ ଆଦିବାସୀ, ପ୍ରଜାଙ୍କ ହାତରେ ଆତ୍ମରକ୍ଷା ଓ ଆକ୍ରମଣ ପାଇଁ ପାରମ୍ପରିକ ଦେଶୀୟ ଅସ୍ତ୍ରଶସ୍ତ୍ର ଧରାଇ ଦେଇ ପ୍ରଶିକ୍ଷିତ ବିରାଟ ଗୋରାବାହିନୀ ଆଗରେ ବଣ ପାହାଡ଼ରେ ଗରିଲା ଯୁଦ୍ଧ ନୀତି ଗ୍ରହଣ କରିବାକୁ ମୁଷ୍ଟିମେୟ ପ୍ରତିରୋଧ  ଏମାନଙ୍କୁ ବାଧ୍ୟ କଲା ।

ଏହା ଭିତରୁ ଗର୍ଜ୍ଜିରି ଉଠିଲା ସଶସ୍ତ୍ର ଜାତୀୟତାବାଦ । ସେମାନଙ୍କ ମୁଖିଆ, ଜମିଦାରମାନଙ୍କ ମାଧ୍ୟମରେ ସେମାନେ ନିଜର ପାରମ୍ପରିକ ରାଜ୍ୟ, କ୍ଷମତା, ସ୍ୱାଭିମାନ ଫେରି ପାଇବାର ଆପ୍ରାଣ ଉଦ୍ୟମ ଚଲାଇଲେ ।

ବ୍ରିଟିଶ ସରକାରଙ୍କ କେନ୍ଦ୍ରିଭୂତ ପ୍ରଶାସନିକ ବ୍ୟବସ୍ଥା ଆଦିବାସୀ ସଂପ୍ରଦାୟର ଏକାଧିକାର ପ୍ରତି ବିପଦ ସୃଷ୍ଟି କଲା । ଗଡ଼ଜାତ ଶାସନରେ ଏ ଅଧିକାର ସେମାନଙ୍କର ରହିଥିଲା । ଯଦିଓ ବ୍ରିଟିଶ ପ୍ରଶାସନ ଆଦିବାସୀମାନଙ୍କ ଅଧିକାର, ପାରମ୍ପରିକ ଜୀବନ ଧାରା ଉପରେ ପ୍ରଥମେ ହସ୍ତକ୍ଷେପ କରିବାକୁ ଚାହୁଁ ନଥିଲା, ହେଲେ ପରବର୍ତ୍ତୀ ପର୍ଯ୍ୟାୟରେ ଏ ଭଳି ଅବସ୍ଥା ଆଉ ରହି ନଥିଲା ।

ଏ ଅବସ୍ଥାରେ ପରିବର୍ତ୍ତନ ଘଟିଲା । ସେମାନଙ୍କ ଉପରେ ବାହାରର ନୀତି ନିୟମ ଓ ଉନ୍ନତ ଜନଚାପ ପଡ଼ିଲା । ଆଦିବାସୀ ଅଞ୍ଚଳ ଆଉ ନିରୁତା ଆଦିବାସୀ ଅଞ୍ଚଳ ହୋଇ ରହିଲା ନାହିଁ । ସେମାନଙ୍କ ଭଳି ଅଶାସିତ ଅଞ୍ଚଳ ଉପରେ ବ୍ୟବସାୟୀ ଓ ସାହୁକାରମାନେ ନିଜକୁ ନାନା ପ୍ରକାର ପ୍ରତିଷ୍ଠିତ କରିବାକୁ ଲାଗିଲେ ।

ଆଗ ସେ ଅଞ୍ଚଳ ବହିରାଗତମାନଙ୍କ ପାଇଁ ସଂପୂର୍ଣ୍ଣ ଅସୁରକ୍ଷିତ ଥିଲା । ଆଦିବାସୀମାନେ ସେମାନଙ୍କୁ ଆଦୌ ବିଶ୍ୱାସ କରୁ ନଥିଲେ । ଏବେ କିନ୍ତୁ ବହିରାଗତମାନେ ବ୍ରିଟିଶ ସରକାରଙ୍କ ସୁରକ୍ଷାରେ ଆଦିବାସୀ ଅଞ୍ଚଳକୁ ପ୍ରବେଶ କଲେ । କେବଳ ସେତିକି

ନୁହେଁ ସେଠାରେ ବହିରାଗତମାନେ ବସବାସ କରିବାକୁ ମଧ୍ୟ ଲାଗିଲେ । ସେମାନଙ୍କ ଜମିଜମା ମଧ୍ୟ ବିଭିନ୍ନ ସୂତ୍ରରେ ହଡ଼ପ କରିବାକୁ ଲାଗିଲେ ।

ସେହିପରି ଆଦିବାସୀମାନଙ୍କ ଜୀବନଯାପନ ପ୍ରଣାଳୀ ଜାଣି ନଥିବା ପ୍ରଶାସନିକ ଅଧିକାରୀମାନେ ସେମାନଙ୍କ ଉପରେ ଅନ୍ୟ ପ୍ରଜାଙ୍କ ସହ ସମାନ ରାଜସ୍ୱ ଲାଗୁ କଲେ । ସେମାନଙ୍କୁ ନିଜ ନିଜର ପୈତୃକ ଜମିବାଡ଼ିରେ ମୂଲିଆ ସାଜିବାକୁ ପଡ଼ିଲା ।

ଏ ସବୁ ଅବ୍ୟବସ୍ଥା ଫଳରେ ଅଷ୍ଟାଦଶ ଶତାବ୍ଦୀର ଶେଷ ବେଳକୁ ବିଭିନ୍ନ ସ୍ଥାନରେ ଆଦିବାସୀ ବିଦ୍ରୋହମାନ ଦେଖାଯିବାକୁ ଲାଗିଲା । ଏ ସବୁ ଦମନ କରିବାକୁ ଇଂରେଜମାନେ ସାମରିକ ପଦକ୍ଷେପ ନେଲେ । ଭାରତର ଚାରିଆଡ଼େ ଏ ଭଳି ଅବସ୍ଥା ସୃଷ୍ଟି ହେଲା । ୧୮୫୫ରେ ବିହାରରେ ଏଭଳି ବିଦ୍ରୋହରେ ପ୍ରାୟ ୧୦ହଜାର ସାନ୍ତାଳ ପ୍ରାଣ ହରାଇଥିଲେ ।

ହେଲେ ଏ ବିଦ୍ରୋହମାନ ପ୍ରତ୍ୟକ୍ଷତଃ ବ୍ରିଟିଶ ବିରୋଧରେ ନ ହୋଇ ହିନ୍ଦୁ ଜମିଦାର, ସାହୁକାରମାନଙ୍କ ଦ୍ୱାରା ଆଦିବାସୀ, ପ୍ରଜା ଶୋଷଣ; ଏମାନଙ୍କୁ ପ୍ରଶୟ ଦେଇଥିବା ରାଜାରାଜୁଡ଼ା, ସେମାନଙ୍କୁ ପ୍ରଶୟ ଦେଉଥିବା ବ୍ରିଟିଶ ସରକାର ବିରୁଦ୍ଧରେ ଆଭିପ୍ରେତ ଥିଲା ।

ପୁନଶ୍ଚ ବ୍ରିଟିଶ ସରକାର ଯେଉଁ ବନ୍ଦୋବସ୍ତ ଓ ନ୍ୟାୟ ପ୍ରଶାସନ ପ୍ରବର୍ତ୍ତନ କରିଥିଲେ, ତାହା ସରଳ, ଅଶିକ୍ଷିତ ଆଦିବାସୀ, ପ୍ରଜାଙ୍କ ଅପେକ୍ଷା ସମାଜର ଅଗ୍ରଣୀ ଶ୍ରେଣୀର ଏହି ଜମିଦାର, ସାହୁକାର, ଗୌନ୍ତିଆ ଆଦିଙ୍କ ପାଇଁ ଥିଲା ବେଶୀ ଅନୁକୂଳ ।

ସଂପୂର୍ଣ୍ଣ ଆଦିବାସୀ ପ୍ରଣାଳୀରେ ସେମାନଙ୍କ ପରମ୍ପରା ଥିଲା ଏକ ଅପ୍ରବେଶ୍ୟ ଓ ଦୁର୍ଗ ପ୍ରତିବନ୍ଧକ । କିନ୍ତୁ ସାମନ୍ତବାଦ ପ୍ରଣାଳୀ ସେମାନଙ୍କ ଲାଗି ଥିଲା କିଛିଟା ସହନୀୟ । ଜମିଦାର, ସୌଦାଗର, ସୁଧଖୋର, ଶୋଷଣ ବିରୁଦ୍ଧରେ ଆଦିବାସୀମାନଙ୍କ ପ୍ରତିରୋଧ ଥିଲା ଅସଙ୍ଗଠିତ ।

ସେମାନେ ନିଜର ପ୍ରକୃତ ଦାବିଦାବା ମଧ୍ୟ ଯଥାଯଥ ଭାବରେ ଉପସ୍ଥାପନ କରି ପାରୁନଥିଲେ । କୋଡେନ୍ ରାମସେଙ୍କ ଭାଷାରେ କହିଲେ -''ଏଭଳି ପ୍ରତିରୋଧ, ବିଦ୍ରୋହର ଖବର ଗାଁକୁ ଗାଁ ଅବିଳମ୍ବେ ଏକ ଗଣ୍ଠି ପକାଇ ପ୍ରଚାର କରା ଯାଉଥିଲା ।''

୧୮୦୩ ପର୍ଯ୍ୟନ୍ତ ଓଡ଼ିଶାର ତ୍ରିବୁଟାରୀ ମହଲଗୁଡ଼ିକ ନାଗପୁରର ଭୋଁଷଲା ମହାରାଜାଙ୍କ କରଦ ରାଜ୍ୟ ଥିଲା । ପାହାଡ଼ିଆ ମୁଖିଆମାନେ ମରହଟ୍ଟାଙ୍କଠାରେ ସାମରିକ ସେବା କରୁଥିଲେ ଓ ସେମାନଙ୍କୁ ନଜରାନା ମଧ୍ୟ ଦେଉଥିଲେ । ସେମାନେ ଆଭ୍ୟନ୍ତରୀଣ ଶାସନ ଅଧୀନରେ ଥିଲେ ସ୍ୱାଧୀନ । ମୋଗଲ କି ମରହଟ୍ଟା କେହି ସେମାନଙ୍କୁ ସଂପୂର୍ଣ୍ଣ ପରାଜିତ କରି ପାରିନଥିଲେ ।

୧୮୦୩ରେ ବ୍ରିଟିଶ ମରହଟ୍ଟା ଠାରୁ ଏହି ଗଡ଼ଜାତ ପାଇଲା । ବ୍ରିଟିଶ ସାମରିକ ଶକ୍ତି ମଧ୍ୟରେ ଗଡ଼ଜାତ ରାଜାମାନେ ନିଜର ସୁରକ୍ଷା ଦେଖିଲେ । ଏ ସୁରକ୍ଷା ଥିଲା ମରହଟ୍ଟା ଆକ୍ରମଣ ଓ ଅତ୍ୟାଚାରରୁ ସୁରକ୍ଷା । ସେତେବେଳେ ମରହଟ୍ଟା ଶାସନ ଏମାନଙ୍କ ଲାଗି ଆତଙ୍କ ଥିଲା । ତେଣୁ ସେମାନେ ବ୍ରିଟିଶ ଆଗମନର ବିରୋଧ କରିନଥିଲେ । ସ୍ୱତଃପ୍ରବୃତ୍ତ ଭାବେ ବରଂ ବ୍ରିଟିଶ ସରକାରକୁ ବାର୍ଷିକ ପେଶ୍‌କସ୍ ଦେବାକୁ ରାଜୀ ହୋଇ ନିଜକୁ ସେମାନଙ୍କ ଅଧୀନ କରି ଗୌରବ ଅନୁଭବ କରିଥିଲେ । ସେମାନେ ଖାଲି ପ୍ରଜାମାନଙ୍କ ସ୍ୱାର୍ଥର ସୁରକ୍ଷା ଚାହିଁଲେ ।

ଇଂରେଜ ସରକାର ମଧ୍ୟ ଦେଶୀୟ ରାଜ୍ୟ ଶାସନରେ ହସ୍ତକ୍ଷେପ ନ କରିବାକୁ ନୀତି ଗ୍ରହଣ କରିଥିଲେ । ହେଲେ ଏ ନୀତି ସେମାନେ ତ୍ୟାଗ କରିଥିଲେ ।

୧୮୦୩ରୁ ୧୮୧୩ ଦଶକ ମଧ୍ୟରେ ଇଷ୍ଟ ଇଣ୍ଡିଆ କଂପାନୀର ସ୍ଥିତି ବଦଳି ଗଲା । ତାହା ଦେଶର ଏକ ବଳିଷ୍ଠ ଶକ୍ତିରୁ ସର୍ବୋଚ୍ଚ ଶକ୍ତିରେ ପରିଣତ ହେଲା । ନିଜ ସାମ୍ରାଜ୍ୟର ସୁରକ୍ଷା ପାଇଁ ତାଙ୍କ ଲାଗି ଆଉ ଗଡ଼ଜାତ ରାଜ୍ୟ କି ଦେଶୀୟ ବାହିନୀର ଆବଶ୍ୟକତା ରହିଲା ନାହିଁ । ଏଥରକ ରାଜ୍ୟଗୁଡ଼ିକ ସହ ସଦିଚ୍ଛାମୂଳକ ସହଯୋଗ, ସୁସଂପର୍କ ଅପେକ୍ଷା ରାଜାରାଜୁଡ଼ାଙ୍କୁ ଅନୁରକ୍ତ, ବଶ୍ୟ କରି ରଖିବା ସୁନିଶ୍ଚିତ କରିବା ଆବଶ୍ୟକ ହେଲା ।

ଓଡ଼ିଶାର ଉତ୍ତର ଟ୍ରିବ୍ୟୁଟାରୀ ମହଲରେ ସମ୍ବଲପୁର ଏକ ପ୍ରଧାନ ରାଜ୍ୟ ଥିଲା । ତେଣୁ ଏହାର ପ୍ରଶାସନିକ ନିୟନ୍ତ୍ରଣ ବ୍ରିଟିଶ ସରକାର ପକ୍ଷେ ଅପରିହାର୍ଯ୍ୟ ଥିଲା ।

ତୃତୀୟ ମରହଟ୍ଟା ସମର ପରେ ସମ୍ବଲପୁର ବ୍ରିଟିଶ ଅଧୀନକୁ ଆସିଲା । ରାଜା ଜୟନ୍ତ ସିଂହ ଓ ତାଙ୍କ ପୁଅ ମହାରାଜା ସାଏ ଚାନ୍ଦା ଦୁର୍ଗରୁ ମୁକ୍ତି ପାଇଲେ । ଜୟନ୍ତ ସିଂହ ସିଂହାସନରେ ବସିଲେ । ଅଳ୍ପ ଦିନ ପରେ ୧୮୧୮ରେ ତାଙ୍କର ମୃତ୍ୟୁ ହେଲା । ବିଧବା ରାଣୀ ମୁଚ୍ଛା ଦେଇ ତାଙ୍କ ପୋଷ୍ୟପୁତ୍ର ମହାରାଜା ସାଏଙ୍କୁ ରାଜଗାଦି ଦେବା ପାଇଁ ଆବେଦନ କଲେ ।

୧୮୨୦ରେ ମହାରାଜା ସାଏ ସମ୍ବଲପୁର ଗାଦିରେ ବସିଲେ । ହେଲେ ତାଙ୍କ ସମସ୍ତ ଜମିଦାରମାନଙ୍କ ସମର୍ଥନ ମିଳିପାରିଲା ନାହିଁ । ୧୮୨୭ରେ ତାଙ୍କର ମୃତ୍ୟୁପରେ ତାଙ୍କ ରାଣୀ ମୋହନକୁମାରୀଙ୍କୁ ବ୍ରିଟିଶମାନେ ଗାଦି ଦେଲେ ।

ଏହା ଥିଲା ପ୍ରଚଳିତ ପରମ୍ପରାର ବିରୋଧୀ । ଚୌହାଣ ବଂଶର କେବେ କେହି ନାରୀ ସିଂହାସନ ଆରୋହଣ କରି ନଥିଲେ । ଫଳରେ ଗଣ୍ଡଗୋଳ ଆରମ୍ଭ ହୋଇ ଗଲା । ଏ ଗଣ୍ଡଗୋଳ ଅନେକ ବର୍ଷ ଧରି ଲାଗି ରହିଥିଲା ।

ମୋହନକୁମାରୀଙ୍କ ଶାସନ ସୁବିଧାବାଦୀ ଶାସନଥିଲା । ସେ ଦୁର୍ବଳ ଓ ଅତ୍ୟାଚାରୀ ଥିଲେ । ସେ ଧନୀ, କ୍ଷମତାଶାଳୀ ଗଣ୍ଡ ଓ ବିଂଝାଲ ଜମିଦାରମାନଙ୍କ ଅଧିକାର ଚ୍ୟୁତ କଲେ । ସେମାନେ ପୂର୍ବରୁ ଭୋଗ କରି ଆସୁଥିବା ସୁବିଧା ସୁଯୋଗମାନ ପ୍ରତ୍ୟାହାର କରି ନିଆଗଲା । ରାଣୀଙ୍କ ପ୍ରିୟ, ସୁବିଧାଭୋଗୀମାନଙ୍କ ଦ୍ୱାରା ସେମାନଙ୍କ ଜମି ଦଖଲ କରି ନିଆଗଲା ।

ପ୍ରଜାମାନଙ୍କ ଅର୍ଥନୈତିକ ବିପର୍ଯ୍ୟୟ ଶୋଚନୀୟ ସ୍ତରରେ ପହଞ୍ଚିଲା । ଫଳରେ ବିଦ୍ରୋହର ନିଆଁ ଜଳି ଉଠିଲା । ଏ ବିଦ୍ରୋହ ମୂଳତଃ ଗଣ୍ଡ ଓ ବିଂଝାଲ ଜମିଦାରଙ୍କ ମଧ୍ୟରେ କେନ୍ଦ୍ରୀତ ଥିଲା । ସେମାନଙ୍କ କ୍ଷମତା ଲୋପ କରିବାର ଆଶଙ୍କା ଦେଖାଦେଲା । ମରହଟ୍ଟାମାନଙ୍କୁ ପ୍ରତିରୋଧ କରିବାରେ ସାହାଯ୍ୟ ସହଯୋଗ କରିଥିବାରୁ ରାଣୀ ରତ୍ନ କୁମାରୀ ଏହି ଜମିଦାରମାନଙ୍କୁ ଅନେକ ପୁରସ୍କାର ଦେଇଥିଲେ । ଏ ସବୁ ଜମି ମଧ୍ୟ ମୋହନ କୁମାରୀ ପ୍ରତ୍ୟାହାର କରିନେଲେ । ଏମାନଙ୍କ ଜମିଦାରୀ ଖାଲସା ବ୍ୟବସ୍ଥା ଭିତରକୁ ଆସିଗଲା ।

କେତେକ ଜମିଦାର ବିଦ୍ରୋହ କରି ହଜାରୀବାଗରେ ଥିବା ରାଣୀ ରତ୍ନ କୁମାରୀଙ୍କ ସହ ଯୋଗ ଦେଇଥିଲା ବେଳେ ଅନ୍ୟମାନେ ନିରପେକ୍ଷତା ଅବଲମ୍ବନ କରିଥିଲେ ।

ସମ୍ବଲପୁର ବ୍ରିଟିଶ ଅଧୀନକୁ ଗଲାପରେ ଗଣ୍ଡ ଜମିଦାର, ମୁଖିଆମାନେ ସେମାନଙ୍କ ଯାଇଥିବା ଜମି ଫେରାଇ ଦେବା ଲାଗି ବ୍ରିଟିଶ ସରକାରଙ୍କୁ ଦରଖାସ୍ତ କଲେ । ହେଲେ ତାହା ଆଗ୍ରାହ୍ୟ କରି ଦିଆଗଲା । ନିରାଶ ଜମିଦାରମାନେ ଏହାର ପ୍ରତିରୋଧ କରିବାକୁ ସଜବାଜ ହେଲେ ।

ଏମାନଙ୍କ ବିଦ୍ରୋହ ବର୍ଷ-ବର୍ଷ ଧରି ଚାଲିଲା । କେଇ ବର୍ଷ ଧରି ମୋହନ କୁମାରୀଙ୍କ ଶାସନ ଓ ବହୁ ଆଦିବାସୀ ଜମିଦାରଙ୍କ ମଧ୍ୟରେ ସାଂଘାତିକ ଗଣ୍ଡଗୋଳ ହେଲା । ଏଥିପାଇଁ ରାମଗଡ଼ ବାହିନୀ ସହ ଲେଫ୍ଟିନେଣ୍ଟ ହିଗିନଙ୍କୁ ସମ୍ବଲପୁର ଆସିବାକୁ ପଡ଼ିଲା । ହେଲେ ପରବର୍ତ୍ତୀ ସମୟରେ ହଜାରୀବାଗରୁ ଏକ ସ୍ୱତନ୍ତ୍ର ବାହିନୀ ବିଦ୍ରୋହ ଦମନ କରିବାକୁ ଆଣିବାକୁ ପଡ଼ିଥିଲା ।

## ବିଶେଇକେଲା ବିଦ୍ରୋହ

ବିଶେଇକେଲା, ଭେଡ଼େନର ଆଦିବାସୀ ଜମିଦାର ଅବଧୂତ ସିଂହ ୧୮୩୦ ଡିସେମ୍ବର ୧୬ରେ ପ୍ରଥମ ରାଣୀ ମୋହନ କୁମାରୀକ ସାମ୍ନା କରିଥିଲେ । ତାଙ୍କ ପ୍ରବଳ ବିରୋଧ ଫଳରେ ରାଣୀଙ୍କ ଦ୍ୱାରା ତାଙ୍କ ଜମିଦାରୀ ଉଚ୍ଛେଦ କରି ନିଆଯାଇଥିଲା । ଜମିଦାରୀ

ଥିଲା ଗଣ୍ଡ ବହୁଳ । ଅଧିକାଂଶ ଗଣ୍ଡ ପ୍ରଜା ସେମାନଙ୍କ ସମସ୍ତ ଅଧିକାର ହରାଇ ଅବଧୂତ ସିଂହଙ୍କ ବିଦ୍ରୋହରେ ଯୋଗ ଦେଇଥିଲେ । ଏମାନେ ରାଜସ୍ୱ ଦେବାକୁ ପ୍ରତ୍ୟାଖାନ କରି ଦେଇଥିଲେ । ଅନେକ ଆଦିବାସୀ ଜମିଦାର, ଗୌନ୍ତିଆ ତାଙ୍କୁ ସମର୍ଥନ କରି ବିଦ୍ରୋହରେ ଯୋଗ ଦେଇଥିଲେ ।

ଅବଧୂତ ସିଂହ ଜୁଲାଇ ୨୩, ୧୮୩୦ରେ ପଦ୍ମପୁରଠାରେ ରାଜ୍ୟ ଗୋଦାମ ଲୁଣ୍ଠନ କରି ରାଣୀଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ । ଏହା ପରେ ଅନେକ ଛୋଟ ବଡ଼ କାଣ୍ଡ ଘଟାଇ ସେ ରାଣୀ ଶାସନକୁ ବିପର୍ଯ୍ୟସ୍ତ କରିଦେଲେ ।

ତାଙ୍କୁ ଦମନ କରିବା ପାଇଁ ରାଣୀ ମୋହନକୁମାରୀ ବନମାଳୀ ରାୟଙ୍କ ନେତୃତ୍ୱରେ ଏକ ବିଶାଳ ବାହିନୀ ପଠାଇଥିଲେ । ଠିକ୍ ସେହି ଡିସେମ୍ବର ୧୬, ୧୮୩୦ଦିନ କେପଟେନ୍ ଉଇଲକିନସନଙ୍କ ନିର୍ଦ୍ଦେଶରେ ଏକ ଗୋରାବାହିନୀ ପହଞ୍ଚି ରାଣୀବାହିନୀକୁ ସହଯୋଗ କରିଥିଲେ । ବରଗଡ଼ରେ ପପଙ୍ଗା ପାହାଡ଼ ନିକଟରେ ଏମାନଙ୍କର ଅବଧୂତ ସିଂହଙ୍କ ସହ ପ୍ରତ୍ୟକ୍ଷ ସମର ହୋଇଥିଲା ।

ଘମାଘୋଟ ଖଣ୍ଡ ଯୁଦ୍ଧ ପରେ ଅବଧୂତଙ୍କ ସମର୍ଥକମାନେ ବନମାଳୀ ରାଏଙ୍କ ଆଗରେ ଆତ୍ମସମର୍ପଣ କଲେ । ପାରମ୍ପରିକ ଧନୁଶର, ଫାର୍ସା ଆଦି ନେଇ ବନ୍ଧୁକଧାରୀ ବ୍ରିଟିଶ ଓ ରାଣୀବାହିନୀର ସମ୍ମୁଖୀନ ହେବା କାଠିକର ପାଠ ଥିଲା । ତଥାପି ଆତ୍ମ ସମର୍ପଣ ପୂର୍ବରୁ ଅବଧୂତ ସିଂହ ବାହିନୀ ଧନୁଶର, ତରବାରୀ, ବର୍ଚ୍ଛା, ଫାର୍ସା ଆଦି ଦ୍ୱାରା ମିଳିତ ବାହିନୀକୁ ବ୍ୟତିବ୍ୟସ୍ତ କରି ପକାଇଥିଲେ ।

ସାଥୀମାନଙ୍କ ଆତ୍ମସମର୍ପଣ ପରେ ଅବଧୂତ ଡେବ୍ରିଗଡ଼କୁ ପଳାୟନ କଲେ । ବାରପାହାଡ଼ର ଉଚ୍ଚତମ ଶିଖର ଦୁର୍ଗ ଡେବ୍ରିଗଡ଼ ସେତେବେଳେ ଲଖନପୁରର ଗଣ୍ଡ ଜମିଦାର ବିଦ୍ରୋହୀ ବଳଭଦ୍ର ସିଂହ ଦାଓଙ୍କ ସାମରିକ ଘାଟିଥିଲା ।

ରାମଗଡ଼ ବଟାଲିୟାନର ସୁବେଦାର ଗୁରଦୟାଲ ତିୱାରୀ, ୨ଜଣ ହାବିଲଦାର, ୩ଜଣ ନାଏକ, ୫୫ଜଣ ସିପାହୀ ଓ ଦେବାନ ଜୟ ବହିଦାରଙ୍କ ସହ ତାଙ୍କର ଅନୁଧାବନ କଲେ । ବାରପାହାଡ଼ ଅଞ୍ଚଳରେ ବଳଭଦ୍ର ଦାଓଙ୍କ ବିଦ୍ରୋହୀ ବାହିନୀ ଏହି ଦଳ ଉପରେ ବାରମ୍ବାର ଗୁଳି ଚାଳନା କରି ଆଗେଇବାକୁ ଦେଲେ ନାହିଁ । ଏଥିରେ ଜଣେ ସିପାହୀ ଓ ଜଣେ ବରକନ୍ଦାଜ ଦେଶୀ ସିପାହୀ ଆହତ ହୋଇଥିବା ଜଣାଯାଏ ।

ସୂଚନାଯୋଗ୍ୟ ଯେ ଅବଧୂତ ପଦ୍ମପୁର ଗୋଦାମ ଲୁଣ୍ଠନ କଲା ବେଳେ ଖଡ଼ିଆଳ ରାଜା କୃଷ୍ଣ ରାଏ ତାଙ୍କୁ ସାହାଯ୍ୟ କରିଥିଲେ । ରାଣୀଙ୍କ ଦେଶୀ ବରକନ୍ଦାଜ ଓ ଇଂରେଜ

ବାହିନୀର ସମ୍ମୁଖୀନ ହୋଇ ନପାରି ଉଭୟେ ବରଗଡ଼ର ଠାକୁର ଅଜିତ ସିଂହଙ୍କ ଶରଣାପନ୍ନ ହୋଇଥିଲେ । ଅଜିତ ସିଂହ ନିଜର ସମସ୍ତ ଶକ୍ତି ଖଟାଇ ଝାରସୁଗୁଡ଼ାର ବିଦ୍ରୋହୀ ଜମିଦାର ଗୋବିନ୍ଦ ସିଂହଙ୍କ ସହ ରାଣୀବାହିନୀର ସମ୍ମୁଖୀନ ହୋଇ ଅସାଧାରଣ ବୀରତ୍ୱ ପ୍ରଦର୍ଶନ କରିଥିଲେ ।

ଅନନ୍ୟୋପାୟ ହୋଇ ରାଣୀ ମୋହନକୁମାରୀ ଅବଧୂତ ସିଂହଙ୍କୁ ପ୍ରବର୍ତ୍ତାଇ ତାଙ୍କ ସାମରିକ ବାହିନୀ ପ୍ରତ୍ୟାହାର କରି ତା' ବଦଳରେ ଅନେକ ସୁବିଧା ସୁଯୋଗର ଲୋଭ ଦେଖାଇ କଥାବାର୍ତ୍ତା ପାଇଁ ଜମିଦାର ଗଙ୍ଗା ମିଶ୍ରଙ୍କୁ ବିଶେଇକେଲା ପଠାଇଥିଲେ ।

ଏ କଥା ଜାଣି ଅବଧୂତ ସିଂହ ଡିସେମ୍ବର ୨୭, ୧୮୩୦ ଦିନ ସେମାନଙ୍କ ଉପରେ ପ୍ରବଳ ଆକ୍ରମଣ କରିଥିଲେ । ଏଥିରେ ତିନି ଜଣ ସିପେଇ ଆହତ ହୋଇଥିଲେ ।

ଇତି ମଧ୍ୟରେ ଠାକୁର ଅଜିତ ସିଂହ ଇଂରେଜ ବାହିନୀକୁ ବାରମ୍ବାର ବିପର୍ଯ୍ୟସ୍ତ କରି ଚାଲିଥିଲେ । ହେଲେ ସେହି ବର୍ଷ ଡିସେମ୍ବର ୧୨ରେ ରାଣୀବାହିନୀ ରାୟଗଡ଼ ରାଜାଙ୍କ ସାହାଯ୍ୟରେ ତାଙ୍କୁ ପ୍ରତିହତ କଲେ । ତାଙ୍କ ସାଥୀ ଗୋବିନ୍ଦ ସିଂହ ଓ ରାଜା କୃଷ୍ଣ ରାଏ ପଳାୟନ କଲେ । କେପଟେନ୍ ଉଇଲକିନ୍ସନ୍ ବରଗଡ଼ ବାଜ୍ୟାପ୍ତି କରି ରାୟଗଡ଼ ରାଜାଙ୍କୁ ପ୍ରଦାନ କରିଥିଲେ ।

ଜାନୁଆରୀ ୮, ୧୮୩୧ରେ ଅବଧୂତ ପୁଣି ବଳଭଦ୍ର ଦାଓଙ୍କ ସହ ଯୋଗ ଦେଲେ । ଏତିକି ବେଳେ ରାଣୀବାହିନୀର ଜମିଦାର ଗଙ୍ଗା ମିଶ୍ର ରାମଗଡ଼ ବଟାଲିଆନର ସୁବେଦାର ଗୁରଦୟାଲ ତିୱାରୀଙ୍କ ସହ ମିଶିଗଲେ । ଉଭୟ ବାହିନୀ ମଧ୍ୟରେ ପ୍ରବଳ ସଂଘର୍ଷ ହେଲା । ବ୍ରିଟିଶ ବାହିନୀ ଶିବିର ପକାଇଥିବା ସ୍ଥାନ ନିକଟସ୍ଥ ଏକ ଗାଁର ଏକ ଅଂଶକୁ ପୋଡ଼ି ଦେବାରେ ଅବଧୂତ ସଫଳ ହୋଇଥିଲେ ।

ସେତେବେଳେ ଝାରସୁଗୁଡ଼ାର ବିଦ୍ରୋହୀ ଜମିଦାର, ଗୋବିନ୍ଦ ସିଂହଙ୍କ ଆହ୍ୱାନରେ ଅବଧୂତ ସିଂହଙ୍କ ସହ ଖରମୁଣ୍ଡାର ମେଦିନୀ ବରିହା, ପାହାଡ଼ ଶ୍ରୀଗିଡ଼ାର ତ୍ରିଲୋଚନ ରାଏ ପ୍ରମୁଖ ଆନ୍ଦୋଳନରେ ଝାସ ଦେବା ଫଳରେ ଏ ବିଦ୍ରୋହ ଚାରିଆଡେ ବ୍ୟାପି ସାରିଥାଏ । ବିଦ୍ରୋହ ବାରପାହାଡ଼, ପପଙ୍ଗା ଓ ଧମା ଅରଣ୍ୟାଞ୍ଚଳରେ ସଘନ ହୋଇ ଉଠିଥିଲା ।

କେପଟେନ୍ ଉଇଲକିନସନ ଜାନୁୟାରୀ ୨୭, ୧୮୩୧ରେ ସମ୍ବଲପୁର ପହଞ୍ଚିଥିଲେ । ତାଙ୍କ ଆସିଲା ପରେ ରାଣୀ ମୋହନକୁମାରୀ ଓ ବ୍ରିଟିଶ ବାହିନୀର କ୍ଷେତ୍ର ପ୍ରଶସ୍ତ ହୋଇଥିଲା ।

ରାଣୀଙ୍କ ବିରୁଦ୍ଧରେ ପ୍ରଜାମାନଙ୍କ ସାର୍ବଜନୀନ ଅସନ୍ତୋଷ ରହିଥିଲା । ଲୋକେ ଅତ୍ୟନ୍ତ ଅତ୍ୟାଚାରୀ ଓ ଦୁର୍ନୀତିଗ୍ରସ୍ତ ରାଣୀଙ୍କ ଅଧିକାରୀମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କଲେ । ବାରପାହାଡ଼, ପପଙ୍ଗା ଓ ଧମା ପାର୍ବତ୍ୟ ଅଞ୍ଚଳରେ ବିଦ୍ରୋହୀମାନେ ଶକ୍ତିଶାଳୀ ଦୁର୍ଗମାନ ରଚନା କରିଥିଲେ । ସେମାନଙ୍କର ହାତରେ ଚକମକ, ଧନୁ, ତୀର, କୁରାଢ଼ୀ, ଦେଶୀ ବନ୍ଧୁକ ଆଦି ଅସ୍ତ୍ରଶସ୍ତ୍ର ଥିଲା ।

ଜୁଲାଇ ୮, ୧୮୩୨ ଦିନ ରଣଜିତ ସିଂହ, ଭୋପାଳ ସିଂହ ଓ ରଣଜିତଙ୍କ ପୁଅ ଗୋବିନ୍ଦ ସିଂହ ୬/୭ ଜଣ ସଶସ୍ତ୍ର ସମର୍ଥକଙ୍କୁ ନେଇ ଚତୁରତାର ସହ ରାଣୀଙ୍କ ପାଖକୁ ଯାଇ ସଲାମୀ ପଠାଇଲେ । ରାଣୀ ଏମାନଙ୍କ ଚତୁରତା ବୁଝିପାରି ସତର୍କ ହୋଇଗଲେ । ସଲାମୀ ଗ୍ରହଣ କରିବାକୁ ଏମାନଙ୍କ ପାଖକୁ ଆସିଲେ ନାହିଁ । ସେମାନେ ବିଫଳ ହୋଇ ଫେରି ଆସିଲେ ।

ଜୁଲାଇ ୧୨ ତାରିଖ ରାତି ୧୦ଟା ବେଳେ ଏମାନଙ୍କୁ ଗିରଫ କରି ନିଆଗଲା । ସାହେବ ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରି ସମ୍ବଲପୁର ଦୁର୍ଗରେ ବନ୍ଦୀ କରି ରଖିଲେ ।

ରଣଜିତ ସିଂହ ବନ୍ଦୀ ହେବା ପରେ ଭୋପାଳ ସିଂହ ଓ ତାଙ୍କ ଭାଇ ଭଗବାନ ସିଂହ ବିଦ୍ରୋହ ଘୋଷଣା କଲେ । ତାଙ୍କୁ ଖଡ଼ିଆଳ ରାଜା କୃଷ୍ଣ ରାୟ ସମର୍ଥନ କରି ଚନ୍ଦ୍ରପୁର ଓ ବରଗଡ଼ ସୀମାନ୍ତରେ ଜଗି ରହିଲେ ।

ଜୁଲାଇ ୨୩, ୧୮୩୨ରେ ପୁଣି ରାଣୀଙ୍କ ପଦ୍ମପୁର ଖମାର ଲୁଟ୍ ହେଲା । ଇଂରେଜ ଅଧିକାରୀମାନଙ୍କ ପ୍ରତିଆକ୍ରମଣରେ କୃଷ୍ଣ ରାୟ କୋଡ଼ାବଗା ଜମିଦାରୀ ନିକଟ ଜଙ୍ଗଲକୁ ପଳାୟନ କଲେ । ଭୋପାଳ ଓ ଭଗବାନ ବରଗଡ଼ ଆସି ଆଶ୍ରୟ ନେଲେ ।

ବାମଣ୍ଡା ଅଧୀନରେ ଥିବା ଏକ ଛୋଟ ଜମିଦାର ଚନ୍ଦ୍ର ବେହେରା ଖୋଲାଖୋଲି ଭାବରେ ବିଦ୍ରୋହ ଘୋଷଣା କରି ଗୋବିନ୍ଦ ସିଂହଙ୍କ ସମର୍ଥନ କଲେ । କେପଟେନ୍ ଉଇଲକିନସନଙ୍କ ତାଗିଦ ସତ୍ତ୍ୱେ ବାମଣ୍ଡା ରାଜା ଗୋବିନ୍ଦ ସିଂହ ବା ଚନ୍ଦ୍ର ବେହେରାଙ୍କୁ ଅବରୋଧ କରି ପାରିନଥିଲେ ।

ବାମଣ୍ଡାର ଚନ୍ଦ୍ର ବେହେରା ଥିଲେ ଜଣେ କନ୍ଧ । ଝାରସୁଗୁଡ଼ା ଜମିଦାର ଗୋବିନ୍ଦ ସିଂହ ତାଙ୍କର ସମ୍ବଲପୁର ସିଂହାସନ ଦାବି ପ୍ରତି ସମର୍ଥନ କରିବାକୁ ତାଙ୍କୁ ପ୍ରବର୍ତ୍ତାଇଲେ । ଚନ୍ଦ୍ର ବେହେରାଙ୍କ ବାହିନୀ ସହ ବ୍ରିଟିଶ ବାହିନୀର ସଂଘର୍ଷରେ ବହୁ ଲୋକ ମୃତାହତ ହେଲେ ।

ଜାନୁୟାରୀ ୩୦, ୧୮୩୩ରେ ବିଦ୍ରୋହୀମାନେ ପଦ୍ମପୁରରେ ଆକ୍ରମଣକାରୀ ରାଣୀଙ୍କ ଜଣେ ଯୋଦ୍ଧାକୁ ହତ୍ୟା କରି ପାଖର ଗାଁମାନ ଲୁଟ୍ କଲେ ।

ରାଣୀ ମୋହନକୁମାରୀ ଖରମୁଣ୍ଡା ଜମିଦାର ମେଦିନୀ ରାଏ, ପାହାଡ଼ ଶ୍ରୀଗିଡ଼ାର ତ୍ରିଲୋଚନ ରାଏ ଆଦିଙ୍କୁ ଚିଠି ଲେଖି ସାହାଯ୍ୟ ମାଗିଲେ । ହେଲେ ସେମାନେ ସାହାଯ୍ୟ କରିବାକୁ ମନା କରିଦେଲେ । ଏହି ପ୍ରତିରୋଧ ଅଭିଯାନ ବ୍ୟାପକ ଜନସମର୍ଥନ ଲାଭ କରିଥିଲା ।

ଫେବୃଆରୀ ୨୪,୧୮୩୩ରେ ହିଗିନ୍ସ ସେନାବାହିନୀ ଧରି ସମ୍ବଲପୁରରୁ ବିଦ୍ରୋହୀମାନଙ୍କ ମୁଖ୍ୟଘାଟୀ ସାଓରାନ୍ ଗ୍ରାମକୁ ଯାତ୍ରା କଲେ । ବିଦ୍ରୋହୀମାନେ ଏମାନଙ୍କୁ ଧନୁଶର ସାହାଯ୍ୟରେ ପ୍ରତିରୋଧ କରି ନପାରି ପଳାୟନ କଲେ । ଏଥିରେ ବିଦ୍ରୋହୀମାନଙ୍କ ବ୍ୟାପକ କ୍ଷୟକ୍ଷତି ହେଲା ।

ମେ ୧୯,୧୮୩୩ରେ ଦଳେ ବିଦ୍ରୋହୀ ସମ୍ବଲପୁର ଆକ୍ରମଣ କରିବା ଉଦ୍ଦେଶ୍ୟ ନେଇ ସହରର ପ୍ରାୟ ୬ ମାଇଲ ପାଖକୁ ଚାଲି ଆସିଥିଲେ । ହିଗିନ୍ସ ଏମାନଙ୍କ ବିରୁଦ୍ଧରେ ଏକ ବାହିନୀ ସୈନ୍ୟ ପଠାଇଲେ । ଏହି ବାହିନୀ ଟାଲବଠାରେ ବିଦ୍ରୋହୀମାନଙ୍କୁ ପଳାୟନ କରିବା ପାଇଁ ବାଧ୍ୟ କରି ଦେଇଥିଲେ ।

ଏ ବିଦ୍ରୋହର ନେତା ଥିଲେ ସୁରେନ୍ଦ୍ର ସାଏଙ୍କ ପିତୃବ୍ୟ ବଲରାମ ସାଏ, ବଳଭଦ୍ର ସିଂହ ଦାଓ ଓ ଅବଧୂତ ସିଂହ । ବଲରାମ ସୁରେନ୍ଦ୍ରଙ୍କ ସହ ଝାରଘାଟିଠାରେ ଜଗି ରହିଲେ । ବିଦ୍ରୋହୀମାନଙ୍କୁ ବିଭିନ୍ନ ଗାଁରୁ ରଶଦ ଯୋଗାଇ ଦିଆ ଯାଉଥିଲା ।

ପ୍ରଥମ ପର୍ଯ୍ୟାୟରେ କେପଟେନ୍ ଉଇଲକିନସନ ବିଦ୍ରୋହୀମାନଙ୍କ ସହ ଶତ୍ରୁତା କରିବାକୁ ଚାହିଁ ନଥିଲେ । ସେ ଆପୋଷ ଆଲୋଚନା ମାଧ୍ୟମରେ ବିଦ୍ରୋହ ଶାନ୍ତ କରିବାକୁ ଇଚ୍ଛା ପ୍ରକାଶ କରି ଲପଙ୍ଗାଠାରେ ବଲରାମ ସାଏଙ୍କୁ ତାଙ୍କର କିଛି ସହଯୋଗୀମାନଙ୍କ ସହ ଆସିବାକୁ ନିମନ୍ତ୍ରଣ କରିଥିଲେ । ସେ ସେମାନଙ୍କ ଯାବତୀୟ ଅସୁବିଧା ଦୂର କରିବାର ପ୍ରତିଶ୍ରୁତି ଦେଇ ବିଦ୍ରୋହ ଭଙ୍ଗ କରିଦେବାକୁ ବଲରାମଙ୍କୁ ଅନୁରୋଧ କରିଥିଲେ । ହେଲେ ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସାକ୍ଷାତ୍କାର ସମ୍ଭବ ନଥିଲା । ଉଇଲକିଲସନ ଗଣ୍ଡମାନଙ୍କ ସହ ବ୍ୟକ୍ତିଗତ କଥାବାର୍ତ୍ତା କରି ମରହଟ୍ଟା ଦ୍ୱାରା ପ୍ରତ୍ୟାହୃତ ଜମିଦାରୀ ଫେରାଇବାର ପ୍ରତିଶ୍ରୁତି ଦେଇଥିଲେ । ଏହି ସମୟରେ ଚାରିଆଡୁ ସାମରିକ ବାହିନୀମାନ ଆସି ସମ୍ବଲପୁରରେ ପହଞ୍ଚିବାରେ ଲାଗିଥିଲେ ।

ମାର୍ଚ୍ଚ ୫,୧୮୩୧ ଦିନ ବିଶେଇକେଲାର ଅବଧୂତ ସିଂହ, ଗଡ଼ଲୋଇ ସିଂହର ଅର୍ଜୁନ ସିଂହ, ପାହାଡ଼ଶ୍ରୀଗିଡ଼ାର ତ୍ରିଲୋଚନ ରାଏ, ବାମଣ୍ଡାର ବଳଭଦ୍ର ରାଏ, କୁଡ଼ାବଗା-ବରେଇପାଲିର ଶିବନାଥ ରାଏ ଆଦି ଜମିଦାରମାନଙ୍କୁ ରାଣୀଙ୍କ ତରଫରୁ ସେମାନଙ୍କ ଉଚ୍ଛେଦ କରି ନିଆ ଯାଇଥିବା ଜମିଦାରୀମାନ ଫେରାଇ ଦେଇ ପଟା ପ୍ରଦାନ କରାଯାଇଥିଲା ।

ଉଇଲକିନସନଙ୍କ ଏହି ଶାନ୍ତି ନୀତି ସତ୍ତ୍ୱେ କେତେକ ବିଦ୍ରୋହୀଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ଲାଗିରହିଲା । ରାଣୀଙ୍କ ଭାଇ ନାରାୟଣ ଶେଖର ତାଙ୍କ ଜମି ଫେରାଇ ଦେବାକୁ ପ୍ରଲୋଭନ ଦେଖାଇ ଅବଧୂତ ସିଂହଙ୍କୁ ବିଦ୍ରୋହୀମାନଙ୍କ ବିରୁଦ୍ଧରେ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଇଲେ ।

ଏହାର ଉତ୍ତର ଦେବାକୁ ଯାଇ ଅବଧୂତ ସିଂହ ତାଙ୍କ ନିଜ ଜାତିର କେତେକ ଲୋକଙ୍କୁ ନେଇ ରାଣୀଙ୍କ ଏକ ଖମାର ଗୋଦାମ ଘର ଲୁଟ୍ କରି ଲୁଣ୍ଠିତ ସାମଗ୍ରୀ ପଦ୍ମପୁର ଓ ଗାଙ୍ଗପୁର ସୀମାନ୍ତ ପର୍ବତକୁ ନେଇ ଯାଇଥିଲେ ।

ଜାଗିରଦାରମାନଙ୍କ ଉପରେ ରାଣୀଙ୍କ ବିଶେଷ ପ୍ରଭାବ ନଥିଲା । ତେଣୁ ସେମାନେ ଷଡ଼ଯନ୍ତ୍ର ମାଧ୍ୟମରେ ସରକାରୀ ଅଧିକାରୀମାନଙ୍କ ପ୍ରତିରୋଧ କରୁଥିଲେ ।

ଝାରସୁଗୁଡ଼ାର ରଣଜିତ ସିଂହ, ଭୋପାଳ ସିଂହ, ରାଣୀଙ୍କ ପୂର୍ବତନ ଦେୱାନ ଜୟ ବହିଦାରଙ୍କ କକେଇ ଡମରୁ ବହିଦାରଙ୍କ ସହ ମିଶି ଏକ ଯୋଜନା କଲେ । ରାଣୀଙ୍କ ୩/୪ଟି ମତସୁଦ୍ଦୀଙ୍କ ହତ୍ୟା, ପଦ୍ମପୁର ଓ ଚନ୍ଦ୍ରପୁର ଲୁଟ୍ କରିବାକୁ ଅବଧୂତ ସିଂହଙ୍କୁ ପ୍ରବର୍ତ୍ତାଇଲେ, ଯାହା ଫଳରେ ରଣଜିତ ସିଂହ ବା ଭୋପାଳ ସିଂହଙ୍କୁ ସମ୍ବଲପୁର ରାଜଗାଦିରେ ଅଧିଷ୍ଠିତ କରାଯାଇ ପାରିବ ।

୧୮୩୩ ଫେବୃୟାରୀରେ ଗୋବିନ୍ଦ ସିଂହ ତାଙ୍କ ସହଯୋଗୀ ଚନ୍ଦ୍ର ବେହେରା, ଶିକୁ ଜମିଦାରଙ୍କ ସାହାଯ୍ୟରେ ରାଣୀଙ୍କ ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସମ୍ବଲପୁର ଉପକଣ୍ଠରେ ପହଞ୍ଚିଲେ । ଲେଫ୍ଟିନେଣ୍ଟ ହିଗିନ୍ ନିଜର ଗୋଲାବାରୁଦ ସତ୍ତ୍ୱେ ବିଦ୍ରୋହୀମାନଙ୍କ ଧନୁତୀରର ସମ୍ମୁଖୀନ ହୋଇ ନପାରି ଫେବୃଆରୀ ୫ରେ ସମ୍ବଲପୁର ଫେରିଆସିଲେ ।

ଜୁନ୍ ୨, ୧୮୩୩ ଦିନ ବିଦ୍ରୋହୀ ମେଘ ରାଏ ଓ ଚନ୍ଦ୍ର ବେହେରାଙ୍କ ଭାଇ ମେଦିନୀ ରାଏ ୫୦୦/୬୦୦ ଲୋକଙ୍କୁ ନେଇ ମାନେଶ୍ୱରରୁ ଧନୁପାଲିଠାରେ ପହଞ୍ଚିଲେ । ସେମାନେ ଅତର୍କିତ ଭାବରେ ଗୋରାବାହିନୀ ଶିବିର ପଛପଟୁ ଆକ୍ରମଣ କରିଦେଲେ । ସେମାନେ ରାଣୀଙ୍କ ଅଶ୍ୱବାହିନୀ ଉପରକୁ ଗୁଳି ଚାଳନା କଲେ । ଏକ ଗାଁରେ ଅଗ୍ନି ସଂଯୋଗ କରି ଗାଁର ଗାଈଗୋରୁ ଆଡ଼େଇ ପଳେଇ ଗଲେ ।

ଏଭଳି ଆକ୍ରମଣରେ ହତବମ୍ଭ ହୋଇ ସେନାପତି ଲେଫ୍ଟିନାଣ୍ଟ ଡ୍ରିଂଇ୍ ଗୋଟିଏ ବନ୍ଧୁକଧରି ନଳା ପର୍ଯ୍ୟନ୍ତ ଆଗେଇ ଗଲେ । ତା'ପରେ ଗୁଳି ଚାଳନା ଆରମ୍ଭ ହେଲା । ବିଦ୍ରୋହୀମାନେ ମାନେଶ୍ୱର ଦିଗରେ ପଳାଇ ଗଲେ ।

ରାଣୀଙ୍କ ଦ୍ୱାରା ବିତାଡ଼ିତ ଅମଲା ଜଗବନ୍ଧୁ ବାବୁ ଓ ବିଜୁ ଦଫାଦାର ଗୋବିନ୍ଦ ସିଂହଙ୍କୁ ସମର୍ଥନ କରି ରାଣୀ ଓ ଇଂରେଜବାହିନୀକୁ ବ୍ୟତିବ୍ୟସ୍ତ କରି ପକାଇଥିଲେ ।

ଲେଫ୍ଟିନେଣ୍ଟ ହିଗିନ୍ସ ନିରୂପାୟ ହୋଇ ଅଧିକ ସାମରୀକ ବାହିନୀ ନ ପହଞ୍ଚିଲା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ । ଶେଷରେ ବିଦ୍ରୋହୀମାନେ ବର୍ଦ୍ଧିତ ଇଂରେଜ ବାହିନୀ ସହ ପ୍ରଚଣ୍ଡ ଯୁଦ୍ଧ କରି ଆତ୍ମସମର୍ପଣ କରିବାକୁ ବାଧ୍ୟ ହେବା ଅପେକ୍ଷା ବାମଣ୍ଡା ଜଙ୍ଗଲରେ ଲୁଚି ଗରିଲା ଯୁଦ୍ଧରେ ନିଜକୁ ନିୟୋଜିତ କରିବାକୁ ଶ୍ରେୟସ୍କର ବୋଲି ଜୁନ ୧୯ରେ ବର୍ଷାଋତୁ ସମୟରେ ନିଷ୍ପତ୍ତି ନେଲେ ।

ଜୁନ ୬, ୧୮୩୩ ଦିନ ଲେଫ୍ଟିନେଣ୍ଟ ହିଗିନ୍ସ ସ୍ୱାସ୍ଥ୍ୟବସ୍ଥା ନେଇ ହଜାରୀବାଗ ଯିବାକୁ ସମ୍ବଲପୁର ଛାଡ଼ିଲେ । ସେ ଗଲାବାଟରେ ମାନେଶ୍ୱରଠାରେ ବିଦ୍ରୋହୀମାନେ ପ୍ରବଳ ଆକ୍ରମଣ କରି ଦେବା ଫଳରେ ସେ ସଦଳବଳ ସମ୍ବଲପୁର ଫେରି ଆସିବାକୁ ବାଧ୍ୟ ହେଲେ । ମାନେଶ୍ୱରଠାରୁ ସମ୍ବଲପୁର ପ୍ରତ୍ୟାବର୍ତ୍ତନ କରିବାକୁ ତାଙ୍କୁ ଦୁଇ ଦିନ ଲାଗି ଯାଇଥିଲା । ବିଦ୍ରୋହୀମାନେ ତାଙ୍କ ଓ ତାଙ୍କ ଦଳର ସମସ୍ତ ଜିନିଷପତ୍ର ଲୁଟି ନେଇଥିଲେ ।

ବିଦ୍ରୋହୀମାନଙ୍କ ଆକ୍ରମଣ ଭୟରେ ସେ ସମ୍ବଲପୁରର ଜଙ୍ଗଲରେ ପ୍ରସ୍ତୁତ ହୋଇ ରହିଥିଲାବେଳେ ସେହି ଦିନ ସୂର୍ଯ୍ୟାସ୍ତ ପରେ ବିଦ୍ରୋହୀମାନେ ନିର୍ବିରୋଧରେ ସମ୍ବଲପୁର ଉପକଣ୍ଠସ୍ଥିତ ଭତ୍ରା ଗାଁ ଲୁଣ୍ଠନ କରି ଫେରି ଯାଇଥିଲେ ।

ଜୁନ୍ ୧୨ ତାରିଖ ଦିନ ଶିବୁ ଜମିଦାର ୫୦୦ରୁ ୬୦୦ ସମର୍ଥକଙ୍କ ସହ ସମ୍ବଲପୁରର ସାକ୍ଷୀ ଗୋପୀନାଥ ମନ୍ଦିର ଦଖଲ କରିବାକୁ ଭତ୍ରାରୁ ବାହାରିଲେ । ଲେଫ୍ଟିନେଣ୍ଟ ହିଗିନ୍ସ ଅବିଳମ୍ବେ ତାଙ୍କୁ ପ୍ରତିରୋଧ କରିବାକୁ ବାହାରି ପଡ଼ିଲେ । ଗୁଳିଗୋଳା ଆରମ୍ଭ ହୋଇଗଲା । ବିଦ୍ରୋହୀମାନେ କ୍ରମଶଃ ପଛକୁ ହଟିବାକୁ ଆରମ୍ଭ କଲେ । ରାଣୀଙ୍କ ବରକନ୍ଦାଜ ଓ ଅଶ୍ୱାରୋହୀଗଣ ଅନୁଧାବନ କଲେ ।

ଇଂରେଜ ବାହିନୀର ଦଳେ ଧୁବଟି ଆଡ଼କୁ ଅଗ୍ରସର ହୋଇ ବିଦ୍ରୋହୀମାନେ ମାନେଶ୍ୱର ଦିଗରେ ପଳାଇଥିବାର ଜାଣିବାକୁ ପାଇଲେ ।

ଶିବୁ ଜମିଦାର ଗୋବିନ୍ଦ ସିଂହଙ୍କ ପାଇଁ ଅଗ୍ରଣୀ ବାହିନୀ ଗଠନ କରିଥିଲେ । ଗୋବିନ୍ଦ ସିଂହ ଭତ୍ରା ପର୍ଯ୍ୟନ୍ତ ଯିବାକୁ ମନସ୍ଥ କରିଥିଲେ । ହେଲେ ମାନେଶ୍ୱରଠାରେ ପ୍ରବଳ ଆକ୍ରମଣରେ ବିଦ୍ରୋହୀମାନେ ଛତ୍ରଭଙ୍ଗ ଦେବାକୁ ବାଧ୍ୟ ହେଲେ ।

ଗୋବିନ୍ଦ ସିଂହ, ଚନ୍ଦ୍ର ବେହେରା, ଶିବୁ ଜମିଦାର ନିଜ ନିଜ ବାହିନୀ ସହ ପାହାଡ଼କୁ ଫେରିଗଲେ ।

ଏ ଅବସରରେ ଜଗବନ୍ଧୁ ବାବୁ ମହାନଦୀ ଅତିକ୍ରମ କରି ପପଙ୍ଗା ପାହାଡ଼ରେ ନିଜ ବାହିନୀକୁ ପ୍ରସ୍ତୁତ କରି ରଖିଲେ ।

କେପଟେନ୍ ଉଇଲକିନସନ୍ ଜୁଲାଇ ୨୭, ୧୮୩୩ରେ ସମ୍ବଲପୁର ପହଞ୍ଚି ବାମଣ୍ଡା ରାଜାଙ୍କୁ ତାଙ୍କ ସେନାବାହିନୀ ସହ ତାଙ୍କ ବାହିନୀରେ ଯୋଗ ଦେବାକୁ ନିର୍ଦ୍ଦେଶ ଦେଲେ । ଚନ୍ଦ୍ର ବେହେରା ଓ ଅନ୍ୟମାନଙ୍କୁ ଅପରାଧୀ ଘୋଷଣା କରି ରାଣୀଙ୍କୁ ୧୫୦ଜଣ ସଶସ୍ତ୍ର ସୈନିକ ଦେବାକୁ କହିଲେ ।

ଜୁନ ୨୨ରେ ଗୋବିନ୍ଦ ସିଂହ, ଚନ୍ଦ୍ରବେହେରା ଓ ଶିକ୍ରୁ ଜମାଦାର ତଥା ଅନ୍ୟାନ୍ୟ ନେତୃବର୍ଗ ଜୁଲାଇ ୨୨ରେ ଧରାପଡ଼ିଲେ । ଉଇଲକିନସନ ରାଣୀଙ୍କ ଏକ ବାହିନୀକୁ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ପପଙ୍ଗା ପାହାଡ଼କୁ ପଠାଇ ବିଦ୍ରୋହୀମାନେ ତାଙ୍କ ଜମିଦାରୀ ଭିତରେ ପ୍ରବେଶ କଲା ମାତ୍ରକେ ସେମାନଙ୍କୁ ଧରି ତାଙ୍କ ପାଖକୁ ପଠାଇବା ଲାଗି ସମସ୍ତ ଜମିଦାରମାନଙ୍କୁ ପରୁଆନା ଜାରିକଲେ ।

ଇଂରେଜ ଓ ରାଣୀ ବାହିନୀ ପପଙ୍ଗାଠାରେ ପହଞ୍ଚିଲା ବେଳକୁ ବିଦ୍ରୋହୀମାନେ ସ୍ଥାନ ପରିତ୍ୟାଗ କରି ସାରିଥିଲେ । ଏହି ବାହିନୀର ନେତା ଜଗବନ୍ଧୁ ବାବୁ ସୋନପୁର ରାଜାଙ୍କ ଦ୍ୱାରା ଧରା ପଡ଼ି ଉଇଲକିନସନଙ୍କ ପାଖକୁ ପଠା ଯାଇଥିଲା । ଜୁନ ୨୫ର ଏ ଘଟଣାରେ ତାଙ୍କ ସହଯୋଗୀ ଜମିଦାରମାନେ ଭୟରେ ପାଟଣା ପଳାୟନ କଲେ । ସେମାନଙ୍କୁ ଧରିବା ଲାଗି ପୂର୍ବରୁ ପାଟଣା ରାଜାଙ୍କୁ ଆଦେଶ ପଠାଯାଇ ସାରିଥିଲା ।

ବିଦ୍ରୋହରେ ଯୋଗ ଦେବାକୁ ବାଧ୍ୟ କରା ଯାଇଥିଲେ ବୋଲି ସ୍ୱୀକାର କରି ଅର୍ଜୁନ ଗୌନ୍ତିଆ କ୍ଷମା ପାଇଥିଲେ । ହେଲେ ତାଙ୍କ ଗ୍ରାମ ପାଖରେ ରହୁଥିବା ବିଦ୍ରୋହୀ ଡମରୁ କଣ୍ଡା, ରହୁ ବିଶ୍ୱାଳ, ବଡ଼ କନ୍ଧ, ଶୋଭାନାଥ ଗଣ୍ଡ ସମେତ ଆଉ ଚାରିଜଣଙ୍କୁ ଧରି ପଲିଟିକାଲ ଏଜେଣ୍ଟଙ୍କ ପାଖକୁ ପଠାଇବାକୁ ତାଙ୍କୁ ନିର୍ଦ୍ଦେଶ ଦିଆ ଯାଇଥିଲା ।

ଡମରୁ କଣ୍ଡା ଓ ରହୁ ବିଶ୍ୱାଳ ଅବିଳମ୍ବେ ଧରା ପଡ଼ିଲେ । ଚାରିଆଡ଼େ ବିଦ୍ରୋହୀମାନଙ୍କୁ ଟନାଘନା ଖୋଜା ଚାଲିଲା ।

ରାଣୀଙ୍କ ଦରବାରରେ ବିଦ୍ରୋହୀମାନଙ୍କର ବିଚାର ହେଲା । ଶିକ୍ରୁ ଜମିଦାର, ଜଗବନ୍ଧୁ ବାବୁ, ବିଜୁ ଦଫାଦାର, ଡମରୁ ପାଣ, ରାହୁ ବିଶ୍ୱାଳ ଓ ନରସିଂହ ଘଟୁଆ କନ୍ଧ ଅଗଷ୍ଟ ୧୮୩୩ରେ ଫାଶୀ ପାଇଲେ । ଗୋବିନ୍ଦ ସିଂହଙ୍କୁ ବନ୍ଦୀ କରି ରଖାଗଲା ।

ୱିଲକିନସନ ଅନୁଭବ କଲେ ଯେ ପ୍ରଜା ବିଦ୍ୱେଷୀ ଅଯୋଗ୍ୟା ରାଣୀ ମୋହନ କୁମାରୀଙ୍କୁ ଅପସାରଣ କରି ଜଣେ ପୁରୁଷ ରାଜା ବିନା ସମ୍ବଲପୁରରେ ବିଦ୍ରୋହର ଅବସାନ ହେବ ନାହିଁ ।

❑❑❑

# ବୀର ସୁରେନ୍ଦ୍ର ସାଏ

୧୮୫୭ର ପ୍ରଥମ ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମରେ ଓଡ଼ିଶାର ଅବଦାନ ଥିଲା ଗୁରୁତ୍ୱପୂର୍ଣ୍ଣ । ସେହି ଯୁଦ୍ଧରେ ସମ୍ବଲପୁରର ଭୂମିକା ସର୍ବାଧିକ ଗୌରବୋଜ୍ଜ୍ୱଳ ରହିଥିଲା ।

ସୁରେନ୍ଦ୍ର ଦୁଇଟି ପର୍ଯ୍ୟାୟରେ ଏହି ସଂଗ୍ରାମକୁ ୧୮୫୭ର ତିନି ଦଶକ ପୂର୍ବରୁ ୧୮୨୭ ମସିହାରୁ ଓ ପରେ ୧୮୬୪ ପର୍ଯ୍ୟନ୍ତ ପଶ୍ଚିମ ଓଡ଼ିଶାର ଗାଁ ବଣ ପାହାଡ଼ ପ୍ରାନ୍ତରରେ ଆଦିବାସୀ, ପ୍ରଜାଙ୍କ ମଧ୍ୟରେ ପ୍ରଜ୍ୱଳିତ କରି ରଖିଥିଲେ । ତାଙ୍କର ଗରିଲା ଯୁଦ୍ଧ ପ୍ରଣାଳୀ ବହୁ ଇଂରେଜ ସୈନ୍ୟ, ସେନାପତିଙ୍କ କାଳ ହୋଇଥିଲା ।

ଚୌହାଣ ରାଜବଂଶର ଏହି କ୍ଷତ୍ରୀୟ ବୀରଙ୍କ ସହଯୋଗୀ ଥିଲେ ତାଙ୍କର ପିତୃବ୍ୟ ବଳରାମ ସାଏ, ଭାଇ ଛବିଳ, ଉଜ୍ଜ୍ୱଳ, ଉଦନ୍ତ, ଧ୍ରୁବ, ମେଦିନୀ, ଗର୍ଜନ ଓ ପୁଅ ମିତ୍ରଭାନୁ ସାଏଙ୍କ ସମେତ ଘେଁଷର ଜମିଦାର ମାଧୋ ସିଂହ, ହଟେ ସିଂହ, କୁଞ୍ଜଳ ସିଂହ, ବୈରୀ ସିଂହ, ଐରୀ ସିଂହ, ସୋନଖାନ ଜମିଦାର ନାରାୟଣ ସିଂହ, ଝରସୁଗୁଡ଼ା ଜମିଦାର ଗୋବିନ୍ଦ ସିଂହ, ଲଖନପୁର ଜମିଦାର କମଳ ସିଂହ ଦାଓ, ରମ୍ପେଲା ଗୌନ୍ତିଆ ଲୋକନାଥ ଗଡ଼ତିଆ, କୋଲାବିରା ଜମିଦାର କରୁଣାକର ନାଏକ, ଲୋଇସିଂହା ଜମିଦାର ଚନ୍ଦନ ଗଡ଼ତିଆ, କୁଡ଼ାବଗା ଜମିଦାର ଅଞ୍ଜାରୀ ସିଂହ, ମୁଣ୍ଡୋମହୁଲର ଅନନ୍ତ ସିଂହ, ପାହାଡ଼ ଶ୍ରୀଗିଡ଼ାର ଜନାର୍ଦ୍ଦନ ସିଂହ, ପାଟକୁଲୁଣ୍ଡାର ପୀତାମ୍ବର ସିଂହ, ଲଖନପୁରର ବଳଭଦ୍ର ସିଂହ ଦାଓ, ଖରସଲର ଦିଆଲ ସରଦାର, ସିଂହାବଗାର ଗଣେଶ ଉପାଧ୍ୟାୟ ପ୍ରମୁଖ । ଖଡ଼ିଆଳ ରାଜା କୃଷ୍ଣଚନ୍ଦ୍ର ଦେବ ଓ ନୂଆଗଡ଼ର ଉମରାଓ ସାଏ ଏମାନଙ୍କୁ ପରୋକ୍ଷରେ ସାହାଯ୍ୟ କରିଥିଲେ ।

ପାହାଡ଼ୀ ଦୁର୍ଗ ଡେବ୍ରୀଗଡ଼, ସିଂଗୋଡ଼ା, ଗଡ଼ପାଟି ଘାଟି, ଝାରଘାଟି, ପାହାଡ଼ ଶ୍ରୀଗିଡ଼ା, ନିଶାଘାଟି, ସୋରତୋଲା ଘାଟି, ଲୁନାଗଡ଼, ମାଣିକ ଗଡ଼, ଶିଶୁପାଳ ଗଡ଼, ଗୁନାପାହାଡ଼, ନିଶତଘାଟି, କୋଲାବିରା, ପପଙ୍ଗା, କୁଦୋପାଲି ଆଦି ଏହି ଖଣ୍ଡ ବିଦ୍ରୋହର ରକ୍ତରେ ରଂଜିତ ହୋଇ ଇଂରେଜ ରକ୍ତରେ ବେଣୀ ସଂହାର କରିଥିଲା ।

ସମ୍ବଲପୁରରୁ ରାୟପୁର ଦେଇ ବିଳାସପୁର, ନାଗପୁର ପର୍ଯ୍ୟନ୍ତ ଥିଲା ଏ ବିଦ୍ରୋହର ବିସ୍ତାର ।

ଏହି ବିଦ୍ରୋହରେ ଘେଁସ ଜମିଦାର ପରିବାରର ମାଧୋ ସିଂହଙ୍କ ସହ ତାଙ୍କ ତିନି ପୁତ୍ର ଓ ଏକମାତ୍ର କନ୍ୟା ପୂନିମା ଶହୀଦ ହୋଇଥିଲେ । ସୁରେନ୍ଦ୍ର ପରିବାରର ବଳରାମ,

ଛବିଳ, ଉଦନ୍ତ, ଉଜ୍ଜ୍ୱଳ ଓ ଧ୍ରୁବ ସାଏଙ୍କ ସମେତ କରୁଣାକର ନାଏକ, ଗଜରାଜ ସିଂହ, ଲୋକନାଥ ଗଡ଼ତିଆ, କୃପାସିନ୍ଧୁ ବେହେରା, ମୋହନ ସିଂହ ରାଓ, ଜଗବନ୍ଧୁ ହୋତା, ଶ୍ରଦ୍ଧାକର ମଲ୍ଲିକ, ବଳଭଦ୍ର ସିଂହ ଦାଓ, ମଧୁସୂଦନ ସିଂହ, ଜନାର୍ଦ୍ଦନ ଗଡ଼ତିଆ, ଖଗେଶ୍ୱର ସିଂହ ଦାଓ, କମଳ ସିଂହ, ନୀଳାମ୍ବର ସିଂହ, ମୃତ୍ୟୁଞ୍ଜୟ ପାଣିଗ୍ରାହୀ, ପଦ୍ମନାଭ ଗୁରୁ, ମେଦିନୀ ସାଏ, ନନ୍ହେଁ ଦିୱାନ୍, ଦିଆଳ ସରଦାର, ଧରଣୀଧର ମିଶ୍ର, ଶାଳେଗ୍ରାମ ବେରିହା, ମିତ୍ରଭାନୁ ସାଏ ପ୍ରମୁଖ ଶହୀଦ୍ ହୋଇଥିଲେ । ଆଣ୍ଡାମାନର କଳାପାଣିର ସେଲୁଲାର୍ ଜେଲ୍‌ରେ ପ୍ରାଣ ହରାଇଥିବା ଘେଁଷ ଜମିଦାର ହଟେ ସିଂହ ହେଉଛନ୍ତି ପ୍ରଥମ ଓଡ଼ିଆ ।

୧୮୦୩ରେ ଇଂରେଜ ସେନାପତି ହାରକୋଟ କଟକ ପ୍ରଦେଶ ଜୟ କଲା ପରେ ତାଙ୍କର ଲୋଲୁପ ଦୃଷ୍ଟି ପଶ୍ଚିମ ଓଡ଼ିଶା ଏବଂ ବିଶେଷତଃ ସମ୍ବଲପୁର ଉପରେ ପଡ଼ିଥିଲା । ଇଂରେଜ ସେନାପତି ମେଜର୍ ବ୍ରାଉଟନ୍ ରାଣୀ ରତନ କୁମାରୀ ଓ ଭୂପ ସିଂହଙ୍କ ସହଯୋଗରେ ମରହଟା ଅଧୀନରେ ରହିଥିବା ସମ୍ବଲପୁରକୁ ଜାନୁଆରୀ ୨, ୧୮୦୪ରେ ଅଧିକାର କରିନେଲେ । ପରାଜିତ ତାନ୍ତିଆ ଫଡ଼ନବୀସ ନାଗପୁର ପଳାୟନ କଲେ ।

୧୮୦୬ ଅଗଷ୍ଟ ୨୪ରେ ପୁଣି ଏକ ଚୁକ୍ତି ହେଲା । ମରହଟ୍ଟାମାନେ ଏହି ଚୁକ୍ତି ବଳରେ ସୁବେଦାର କେଶବ ଗୋବିନ୍ଦଙ୍କୁ ସମ୍ବଲପୁର ଶାସନ ଭାର ଗ୍ରହଣ କରିବାକୁ ପଠାଇଲେ । ସେ ରାଣୀ ରତନକୁମାରୀଙ୍କ ତୀବ୍ର ପ୍ରତିରୋଧର ସମ୍ମୁଖୀନ ହେଲେ । କୂଟନୀତି କରି ମରହଟ୍ଟାମାନେ ସମ୍ବଲପୁର ଦଖଲ କରି ମଧ ଶାନ୍ତି ସ୍ଥାପନ କରିପାରିଲେ ନାହିଁ ।

ଏହି ସୁଯୋଗ ନେଇ ଇଂରେଜମାନଙ୍କ ତରଫରୁ ତୃତୀୟ ମରହଟ୍ଟା ସମର ହେଲା । ନଭେମ୍ବର ୨୭, ୧୮୧୭ରେ ମରହଟ୍ଟାମାନେ ଇଂରେଜମାନଙ୍କ ଦ୍ୱାରା ପରାସ୍ତ ହେଲେ । ସମ୍ବଲପୁର ରାଜ୍ୟ ଇଂରେଜମାନଙ୍କ ଅଧୀନସ୍ଥ ହେଲା । ରାଜା ଜୟନ୍ତ ସିଂହ ଓ ଯୁବରାଜ ମହାରାଜ ସାଏ ନାଗପୁରରୁ ମୁକ୍ତ ହୋଇଆସିଲେ ।

୧୮୧୮ରେ ଜୟନ୍ତ ସିଂହ, ୧୮୨୦ରେ ମହାରାଜ ସାଏ ସମ୍ବଲପୁର ସିଂହାସନ ଆରୋହଣ କଲେ । ୧୮୨୭ରେ ମହାରାଜ ସାଏଙ୍କ ମୃତ୍ୟୁ ହେଲା । ସେ ଅପୁତ୍ରିକ ଥିବାରୁ ଇଂରେଜମାନେ ବିଧବା ରାଣୀ ମୋହନକୁମାରୀଙ୍କୁ ସମ୍ବଲପୁରରେ ବସାଇଲା ପରେ ହିଁ ସୁରେନ୍ଦ୍ର ବିଦ୍ରୋହ ଆରମ୍ଭ କରିଦେଲେ । ଏ ବିପ୍ଳବର ମୂଳ ପୁରୋଧା ଥିଲେ ତାଙ୍କ ପିତୃବ୍ୟ ବଳରାମ ସାଏ ।

ସମ୍ବଲପୁରର ରାଜା ଜୟନ୍ତ ସିଂହଙ୍କ ଜଣେ ରାଣୀଙ୍କ ସହ ତାଙ୍କ ଦେୱାନ ବଳରାମ ସାଏଙ୍କ ଭାଇ ମନୋହର ସାଏଙ୍କ ଅବୈଧ ସଂପର୍କ ଥିଲା । ଏଥିରେ କ୍ରୁଦ୍ଧ

ହୋଇ ଜୟନ୍ତ ସିଂହ ମନୋହର ସାଏଙ୍କୁ ହତ୍ୟା କରାଇଥିଲେ ଏବଂ ଏହି ହତ୍ୟାକାରୀ ସୋନପୁରର ଗୋବିନ୍ଦ ସିଂହଙ୍କୁ ଦେଓ୍ୱାନୀ ପ୍ରଦାନ କରିଥିଲେ । ଫଳରେ ବଳରାମ ମଧ ଭ୍ରାତୃ ହତ୍ୟାର ସୁଯୋଗ ଖୋଜୁଥାନ୍ତି ରାଜବଂଶ ବିରୋଧରେ ।

ମୋହନ କୁମାରୀଙ୍କ ସମୟରେ ସମ୍ବଲପୁରରେ ଅରାଜକତା ଦେଖାଦେଲା । ମୋହନ କୁମାରୀ ଇଂରେଜ ସରକାରଙ୍କ କ୍ରୀଡ଼ନକ ହୋଇ ଜମିଦାର ଓ ପ୍ରଜାମାନଙ୍କ ସ୍ୱାର୍ଥକୁ ଜଳାଞ୍ଜଳି ଦେଲେ । ଖଜଣା ବୃଦ୍ଧି କଲେ । ରାଜ୍ୟରେ ଅସନ୍ତୋଷ ବୃଦ୍ଧି ପାଇଲା । ବିଦ୍ରୋହ ଦେଖାଗଲା ।

ଝାରସୁଗୁଡ଼ା ଜମିଦାରଙ୍କ ପୁତ୍ର ଗୋବିନ୍ଦ ସିଂହ ଏହାର ନେତୃତ୍ୱ ନେଲେ । ଅବଧୂତ ସିଂହ, ସୁରେନ୍ଦ୍ର ସାଏ, ବଳଭଦ୍ର ଦାଓ ପ୍ରମୁଖ ତାଙ୍କୁ ସହଯୋଗ କଲେ । ଲେଫ୍‌ଟିନେଣ୍ଟ ହିଗିନ୍‌ସ୍ ଓ କେପ୍‌ଟେନ୍ ଉଇଲକିନ୍‌ସନ୍ ସମ୍ବଲପୁର ପହଞ୍ଚି ବହୁ ବିଦ୍ରୋହୀଙ୍କୁ ବନ୍ଦୀ କଲେ । କେତେକ ଫାଶି ପାଇଲେ । ବହୁ ଗ୍ରାମ ଜାଳିପୋଡ଼ି ଧ୍ୱଂସ କଲେ ।

ତଥାପି ବିଦ୍ରୋହ ପ୍ରଶମିତ ନହେବାରୁ ମୋହନ କୁମାରୀଙ୍କୁ ଗାଦିଚ୍ୟୁତ କରି ବରପାଲିର ଚୌହାଣ ଜମିଦାର ଭବାନୀ ସିଂହଙ୍କ ବୃଦ୍ଧ ପିତୃବ୍ୟ ନାରାୟଣ ସିଂହଙ୍କୁ ଅକ୍ଟୋବର ୧୧, ୧୮୩୩ରେ ସମ୍ବଲପୁର ସିଂହାସନରେ ଇଂରେଜମାନେ ଅଭିଷିକ୍ତ କଲେ ।

ହେଲେ ଏଥିରେ ମଧ ସମ୍ବଲପୁରର ଅବସ୍ଥାରେ ପରିବର୍ତ୍ତନ ହେଲା ନାହିଁ । ତାଙ୍କ ଦୁର୍ବଳ ଓ ମନମୁଖୀ ଶାସନରେ ଅତିଷ୍ଠ ଜନସାଧାରଣ ବିଦ୍ରୋହକୁ ଆଗେଇନେଲେ । ଏଥିରେ ଖିଣ୍ଡାର ଚୌହାଣ ଜମିଦାର ବଳରାମ ସାଏ ଓ ତାଙ୍କର ଭ୍ରାତୃପୁତ୍ର ସୁରେନ୍ଦ୍ର ମୁଖ୍ୟ ଭୂମିକା ନେଲେ ।

ସେତେବେଳେ ସମ୍ବଲପୁର ରାଜ୍ୟ କେତେକ ଜମିଦାରୀରେ ବିଭକ୍ତ ରହିଥିଲା । ଏହି ଜମିଦାରମାନେ ମୁଖ୍ୟତଃ ଗଣ୍ଡ ସଂପ୍ରଦାୟର ଥିଲେ । କୋଲାବିରା, ପାହାଡ଼ ଶ୍ରୀଗିଡ଼ା, ମଚିଦା, କୁଡ଼ାବଗା, ଲଇଡ଼ା, ଲୋଇସିଂହା, ଭେଡେନ୍, ପାଟକୁଲୁଣ୍ଡା, ମୁଣ୍ଡୋମହୁଲ, ଲଖନପୁର, ଖୀଣ୍ଡା ଆଦିର ଗଣ୍ଡ ଜମିଦାରମାନେ ଶକ୍ତିଶାଳୀ ଥିଲେ ।

ଚୌହାଣ ରାଜ୍ୟ ସ୍ଥାପନ ହେଲା ସମୟରୁ ସେମାନେ ସମ୍ବଲପୁର ରାଜାଙ୍କୁ ନିଜର ରାଜା ଭାବେ ଗ୍ରହଣ କରି ତାଙ୍କର ଆଧିପତ୍ୟ ସ୍ୱୀକାର କରି ଆସିଥିଲେ । ଆଦିବାସୀମାନଙ୍କ ସାହାଯ୍ୟରେ ହିଁ ଚୌହାଣମାନେ ଅଠରଗଡ଼ ରାଜ୍ୟ ପ୍ରତିଷ୍ଠା କରିପାରିଥିଲେ । ଏହି ଅଠରଗଡ଼ ରାଜ୍ୟ ହେଲା - ପାଟଣାଗଡ଼, ସୋନପୁର, ବୋଡ଼ାସମ୍ବର, ଫୁଲଝର, ସାରଙ୍ଗଗଡ଼,

ରାୟଗଡ଼, ବରଗଡ଼, ଶକ୍ତି, ବସ୍ତର, ବିନ୍ଦ୍ରା, ନୂଆଗଡ଼, ସୁରଗୁଜା, ବାମଣ୍ଡା, ବଣାଇ, ପାଲଲହଡ଼ା, ବୌଦ୍ଧ, ଆଠମଲ୍ଲିକ, ରେଢ଼ାଖୋଲ, ଓ ଗାଙ୍ଗପୁର ।

ସମ୍ବଲପୁରରେ ନୂତନ ରାଜାମାନଙ୍କର ଅଭିଷେକ ସମୟରେ ଆଦିବାସୀ ଜମିଦାରମାନେ ସାମନ୍ତ ରାଜାମାନଙ୍କ ସହ ଏକ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ସେମାନଙ୍କ ସମର୍ଥନ ଉପରେ ସମ୍ବଲପୁର ରାଜାଙ୍କ ସଫଳତା, ଶକ୍ତି, ସାମର୍ଥ୍ୟ ନିର୍ଭର କରୁଥିଲା । ହେଲେ ଇଂରେଜ ଶାସନରେ ସେମାନଙ୍କ ଉପରେ ଗୁରୁତ୍ୱ ଦିଆଯାଇ ନଥିଲା । ନାରାୟଣ ସିଂହଙ୍କ ଅଭିଷେକ ସମୟରେ ସେମାନେ ସଂପୂର୍ଣ୍ଣ ଉପେକ୍ଷିତ ହେଲେ ।

ଏହା ଯେ ସେମାନଙ୍କ ଆତ୍ମସମ୍ମାନକୁ କେବଳ ଆହତ କଲା ସେତିକି ନୁହେଁ, ଆଦିବାସୀମାନେ ନୂଆ ଶାସନରେ ନାନା ପ୍ରକାରେ ଶୋଷିତ ଓ ଅତ୍ୟାଚାରିତ ମଧ୍ୟ ହେଲେ ।

ପୁନଶ୍ଚ ନାରାୟଣ ସିଂହ ପ୍ରକୃତରେ ବରପାଲି ବଂଶଜ ନଥିବା ସଂକ୍ରାନ୍ତରେ ମଧ୍ୟ ଏକ ଜନଶ୍ରୁତି ଐତିହାସିକ ଶିବପ୍ରସାଦ ଦାଶ ଉଲ୍ଲେଖ କରିଛନ୍ତି । ଏହି ଜନଶ୍ରୁତି ଅନୁସାରେ ଇଂରେଜମାନେ ଯେଉଁ ନାରାୟଣ ସିଂହଙ୍କୁ ରାଣୀ ମୋହନ କୁମାରୀଙ୍କ ଇଚ୍ଛା ଅନୁସାରେ ବରପାଲି ଜମିଦାର ଭାବରେ ସମ୍ବଲପୁର ସିଂହାସନରେ ଅଭିଷିକ୍ତ କରିଥିଲେ, ସେ ପ୍ରକୃତରେ ରାଜବଂଶୀୟ ନହୋଇ ଜଣେ ବହିରାଗତ ଥିଲେ ।

ଇଷ୍ଟଇଣ୍ଡିଆ କମ୍ପାନୀର ରେକର୍ଡ଼ପତ୍ରରୁ ଜଣାଯାଏ ଯେ, ନାରାୟଣ ସିଂହ ସମ୍ବଲପୁର ରାଜା ବଳିୟାର ସିଂହ ଦେବଙ୍କ ପୁତ୍ର ବରପାଲିର ପ୍ରଥମ ରାଜା ବିକ୍ରମ ସିଂହଙ୍କ ପ୍ରପୌତ୍ର ଥିଲେ । ସେ ମାତୃକୁଳରେ ବଣାଇର ରାଜବଂଶୀୟ ହୋଇଥିବାରୁ ବଣାଇରେ କିଛିଦିନ ରହିଥିଲେ ଏବଂ ମୋହନ କୁମାରୀ ତାଙ୍କୁ ଡାକିଆଣି ମହାରାଜ ସାଏଙ୍କ ମୃତ୍ୟୁ ପରେ ସମ୍ବଲପୁରର ଏକ ଉଚ୍ଚ ପଦରେ ନିଯୁକ୍ତି ଦେଇଥିଲେ ।

ତେବେ ସେ ରାଜା ହୋଇଥିଲେ ଝାରସୁଗୁଡ଼ା ବଂଶରେ ବହୁସଂଖ୍ୟକ ଉତ୍ତରାଧିକାରୀ ବାହାରିଥାନ୍ତେ ଏବଂ ସମ୍ବଲପୁର ସିଂହାସନ କୌଣସି କ୍ରମେ ରାଜ୍ୟଲୋପ ନୀତି ଦ୍ୱାରା କମ୍ପାନୀର ଖାସ୍ ଶାସନକୁ ଯାଇପାରି ନଥାନ୍ତା । ସେଥିପାଇଁ କମ୍ପାନୀ କର୍ତ୍ତୃପକ୍ଷ ସମ୍ବଲପୁର ଦରବାରରେ ଯୋଡ଼ିଏ ଦଳ ଗଠନ କରି ଗୋଳମାଳ ସୃଷ୍ଟି କରାଇଦେଲେ ।

ନାରାୟଣ ସିଂହଙ୍କୁ ହତ୍ୟା କରି ଦେବୀଙ୍କୁ ବଳିଦେବାର ଭୟ ଦେଖାଇ ବକ୍ସିଙ୍କ ଦଳ ତାଙ୍କୁ ଓ ତାଙ୍କର ଅନ୍ୟ ଦୁଇ ଭାଇଙ୍କୁ ଅନ୍ତଃପୁର ମଧ୍ୟରୁ ତଡ଼ିଦେଲେ । ଏହି ତିନି ଭାଇ ଏପରି ଭୟଭୀତ ହୋଇଥିଲେ ଯେ, ସେମାନେ ପ୍ରାଣ ଭୟରେ ସମ୍ବଲପୁର ରାଜ୍ୟ ଛାଡ଼ି

ଛୋଟନାଗପୁରର ଆକାଶୀ ନାମକ ସ୍ଥାନକୁ ପ୍ରସ୍ଥାନ କରି ସେଠାରେ ଘରଦ୍ୱାର କରି ରହିଲେ । ଏ ପର୍ଯ୍ୟନ୍ତ ସେମାନଙ୍କ ବଂଶଧରମାନେ ସେଠାରେ ରହିଛନ୍ତି । ଅନ୍ୟ ତିନି ଭାଇ ରାଜପ୍ରାସାଦ ଛାଡ଼ି ଭୟରେ ଝାରସୁଗୁଡ଼ାକୁ ପ୍ରସ୍ଥାନ କରିଥିଲେ ।

ଝାରସୁଗୁଡ଼ା ବଂଶର ନାରାୟଣ ସିଂହଙ୍କ ପତ୍ତା ଏ ପ୍ରକାରେ ଲୋପ ବା ଲୁକ୍‌କାୟିତ କରି କମ୍ପାନୀ କର୍ତ୍ତୃପକ୍ଷ ଜଣେ ନାରାୟଣ ସିଂହଙ୍କୁ ଖୋଜିଲେ । ଉତ୍ତର ଭାରତର ଜଣେ ଆଗନ୍ତୁକ କ୍ଷତ୍ରୀୟ ନାରାୟଣ ସିଂହ ବଣାଇରେ ମଘୀ ଧୂଆଁପତ୍ରର କାରବାର କରି ରହୁଥିଲେ । ତାଙ୍କୁ ବରପାଲି ରାଜବଂଶୀୟ ରୂପେ ଅଣାଯାଇ ସମ୍ବଲପୁର ସିଂହାସନରେ ବଳାତ୍କାର ପ୍ରତିଷ୍ଠା କରାଗଲା । ସେ ଅପୁତ୍ରିକ ଥିଲେ ଏବଂ ସେତେବେଳକୁ ତାଙ୍କ ବୟସ ୮୦ ବର୍ଷ ଥିଲା । ସେ ଅନ୍ତଃପୁରର ଷଡ଼ଯନ୍ତ୍ର ଓ ରାଜବଂଶୀୟମାନଙ୍କୁ ସର୍ବଦା ଭୟ କରୁଥିଲେ ଓ ବାହାରେ 'ରାଜା ବାଖରୀ'ରେ ରହୁଥିଲେ ।

ଏ ଜନଶ୍ରୁତିର ଐତିହାସିକ ଆଧାର ତଦନ୍ତ ସାପେକ୍ଷ । ଯଦି ଏହା ସତ ହୋଇଥାଏ ତେବେ ଦେଶୀୟ ଜମିଦାରମାନଙ୍କୁ ଓ ସୁରେନ୍ଦ୍ର ପରି ସିଂହାସନର ଉତ୍ତରାଧିକାରୀମାନଙ୍କୁ ଉଦ୍‌କ୍ଷିପ୍ତ କରିବା ଲାଗି ଯଥେଷ୍ଟ ଥିଲା । ଏହାକୁ ସଂପୂର୍ଣ୍ଣ ମିଥ୍ୟା ବୋଲି ମଧ ଉଡ଼ାଇ ଦିଆଯାଇ ନପାରେ କାରଣ ଇଂରେଜମାନେ ପୂର୍ବରୁ ମଧ ଏଭଳି ଷଡ଼ଯନ୍ତ୍ର କରିଥିବାର ନଜିର ରହିଛି । ୧୮୨୭ରେ ମହାରାଜ ସାଏଙ୍କ ମୃତ୍ୟୁକୁ ଇଂରେଜମାନେ ୧୮୩୩ ପର୍ଯ୍ୟନ୍ତ ଗୋପନ ରଖି ରାଣୀ ମୋହନ କୁମାରୀଙ୍କ ନାମରେ ଶାସନ ଚଳାଇଥିଲେ ।

ବଳରାମ ସାଏ ଗଣ୍ଡ ଜମିଦାରମାନଙ୍କ ମଧ୍ୟରେ ଚେତନା ଓ ଜାଗରଣ ସୃଷ୍ଟି ପାଇଁ ଉଦ୍ୟମ କରି ଇଂରେଜଙ୍କ ଦ୍ୱାରା ମନୋନୀତ ରାଜାଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ଆହ୍ୱାନ ଦେଇ ସୁରେନ୍ଦ୍ର ସାଏଙ୍କୁ ସମ୍ବଲପୁର ସିଂହାସନ ପାଇଁ ସମର୍ଥନ କରିବାକୁ ନିବେଦନ କଲେ ।

ଏ ଘଟଣା ନାରାୟଣ ସିଂହଙ୍କୁ ବିଚଳିତ କଲା । ସେ ହଠାତ୍ ପଦକ୍ଷେପ ନେବାକୁ ସ୍ଥିର କଲେ । ସୁରେନ୍ଦ୍ର ସାଏଙ୍କ ପ୍ରତି ରୂପ ସିଂହଙ୍କର ପ୍ରାଣେ ଭୟ ଥିଲା । ସେ ସୁରେନ୍ଦ୍ର ବାହିନୀକୁ ଦଣ୍ଡିତ କରାଇବାରେ ସବୁ ପ୍ରକାର ସାହାଯ୍ୟ କରୁଥିଲେ । ଏପରିକି ନିଜେ ଆଦେଶନାମା ଲେଖି ନାରାୟଣଙ୍କୁ କେବଳ ସ୍ୱାକ୍ଷର କରିବାକୁ କହୁଥିଲେ । ବସ୍ତୁତଃ କହିବାକୁ ଗଲେ ସେହିଁ ପ୍ରକୃତରେ ରାଜ୍ୟ ଶାସନ ଚଳାଉଥିଲେ । ଫଳରେ ଜନସାଧାରଣ ଆହୁରି ଅସନ୍ତୁଷ୍ଟ ହୋଇ ଉଠିଥିଲେ ।

ଏତିକିବେଳେ ସୁରେନ୍ଦ୍ର ଇଂରେଜ ସମର୍ଥକ ଜମିଦାର, ଗୌନ୍ତିଆମାନଙ୍କ ଉପରେ ପ୍ରବଳ ଆକ୍ରମଣ ଚଳାଇଲେ । ଗାଏଁ ଗାଏଁ ଆତଙ୍କ ଖେଳିଗଲା ।

ସୁରେନ୍ଦ୍ର ସାଏ ଥିଲେ ସମ୍ବଲପୁର ରାଜଗାଦିର ପ୍ରକୃତ ଉତ୍ତରାଧିକାରୀ । ସେ ରାଜଗାଦି ସଂପର୍କରେ ଲଖନପୁର ଜମିଦାର ବଳଭଦ୍ର ସିଂହ ଦାଓଙ୍କ ସହ ପରାମର୍ଶ କରିବାକୁ ଡେବ୍ରୀଗଡ଼ ଦୁର୍ଗକୁ ଯାତ୍ରା କରିଥିଲା ବେଳେ ତାଙ୍କୁ ଗିରଫ କରିବା ପାଇଁ ନାରାୟଣ ସିଂହ ଦଳେ ସୈନ୍ୟ ପଠାଇଲେ ।

ସୁରେନ୍ଦ୍ର ଓ ବଳଭଦ୍ର ମଧ୍ୟାହ୍ନ ଭୋଜନ ସାରି ବିଶ୍ରାମ ନେଉଥିଲା ବେଳେ ସେମାନଙ୍କ ଉପରେ ଅତର୍କିତ ଆକ୍ରମଣ କରାଯାଇଥିଲା । ଏଥିରେ ବଳଭଦ୍ର ଦାଓ ନିହତ ହେଲେ କିନ୍ତୁ ସୁରେନ୍ଦ୍ର କୌଶଳକ୍ରମେ ଖସିଗଲେ ।

ଏ ଘଟଣା ଆଦିବାସୀମାନଙ୍କୁ ଶୋକାଭିଭୂତ ଓ ସୁରେନ୍ଦ୍ରଙ୍କୁ ଆହୁରି ହିଂସ୍ର କରିଦେଲା । ଏହା ମଧ୍ୟ ଆଦିବାସୀମାନଙ୍କୁ ନାରାୟଣଙ୍କ ବିରୋଧୀ ଓ ସୁରେନ୍ଦ୍ରଙ୍କ ପ୍ରତି ଆନୁଗତ୍ୟ ଓ ସମର୍ଥନ ଭାବରେ ପ୍ରକଟିତ ହେଲା ।

ଏତିକିବେଳେ ଆଉ ଏକ ଘଟଣା ଘଟିଲା । ସୁରେନ୍ଦ୍ର ଓ ତାଙ୍କର ସମର୍ଥକଗଣ ରାମପୁର ଆକ୍ରମଣ କରି ରାଜାନୁଗତ ଜମିଦାରଙ୍କ ଘରେ ଅଗ୍ନିସଂଯୋଗ କରି ପରିବାରର କେତେକଙ୍କୁ ହତ୍ୟା କଲେ । ବଳଭଦ୍ର ଦାଓଙ୍କ ହତ୍ୟାର ପ୍ରତିଶୋଧରେ ଘଟିଥିବା ଏ ହତ୍ୟାକାଣ୍ଡ ତାଙ୍କୁ ଗଣ୍ଡ ଜମିଦାରମାନଙ୍କ ଆହୁରି ନିକଟତର କରିଦେଲା । ସୁରେନ୍ଦ୍ର ସେମାନଙ୍କ ସମର୍ଥନରେ ସମ୍ବଲପୁର ଗାଦି ପାଇଁ ଆନ୍ଦୋଳନ ଆରମ୍ଭ କରିଦେଲେ ।

ସୂଚନାଯୋଗ୍ୟ ଯେ, ୧୬୮୯ରେ ରାଜା ବଳିଆର ଦେବଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ରତନ ସିଂହ ମାତ୍ର ଚାରି ମାସ ରାଜତ୍ୱ କରି ଏକ ସାମରିକ ବିଦ୍ରୋହରେ ନିହତ ହୋଇଥିଲେ । ଘଟଣା ସମୟରେ ରତନ ସିଂହଙ୍କ ଜ୍ୟେଷ୍ଠପୁତ୍ର ଛତ୍ରସାଏ, ପତ୍ନୀ ରାଧା ଦେବୀ ଓ ପୁତ୍ର ଅଜିତ୍‌ଙ୍କ ସହ ଚନ୍ଦ୍ରପୁରରେ ଅବସ୍ଥାନ କରୁଥିଲେ । ଏ ଘଟଣା ପରେ ସେ ସିଧାସଳଖ ସମ୍ବଲପୁର ଆସିବାକୁ ସାହସ ନକରି ସାରଙ୍ଗଗଡ଼ର ସାମନ୍ତ ରାଜା ଦେଓ୍ୱାନ ଉଦ୍ୟୋତ ସିଂହଙ୍କ ସାହାଯ୍ୟ ମାଗିଥିଲେ । ଏଥିରେ ରାୟଗଡ଼ର ସାମନ୍ତ ଜମିଦାର ଦୁର୍ଜୟ ସିଂହ ମଧ୍ୟ ସାହାଯ୍ୟ କରିଥିଲେ । ଛତ୍ର ସାଏ ଏମାନଙ୍କ ସାହାଯ୍ୟରେ ସମ୍ବଲପୁରର ତତ୍‌କାଳୀନ ବିଦ୍ରୋହ ଦମନ କରି ୧୬୯୧ରେ ସିଂହାସନ ଆରୋହଣ କଲେ । ବାରାଣସୀର ପ୍ରାଣନାଥ ରାଜପୁତ ନାମକ ଜନୈକ ସୈନିକ ଏହି ସମୟରେ ଛତ୍ର ସାଏଙ୍କୁ ସାହାଯ୍ୟ କରିଥିବାରୁ ସେ ପ୍ରୀତ ହୋଇ ରାମପୁରର ଗଣ୍ଡ ଜମିଦାରଙ୍କୁ ଅପସାରଣ କରି ଦୁର୍ଜୟ ସିଂହଙ୍କୁ ଏହି ଜମିଦାରୀ ପ୍ରଦାନ କରିଥିଲେ । ଅନ୍ୟ ଆଦିବାସୀ ଜମିଦାରମାନେ ଏଥିରେ କ୍ଷୁବ୍ଧ ଥିଲେ ।

୧୮୪୦ରେ ସୁରେନ୍ଦ୍ରଙ୍କ ରାମପୁର ଆକ୍ରମଣରେ ଦୁର୍ଜ୍ଜୟ ସିଂହ ଓ ତାଙ୍କ ପୁତ୍ରଙ୍କ ହତ୍ୟା କରାଯାଇଥିଲା । ଏ ଆକ୍ରମଣରେ ବଳରାମ, ଉଦନ୍ତ, ଉଜ୍ଜ୍ୱଳ ପ୍ରମୁଖ ତାଙ୍କ ମୁଖ୍ୟ ସହଯୋଗୀ ଥିଲେ । ଏ ଘଟଣାରେ ସୁରେନ୍ଦ୍ରଙ୍କ ପ୍ରତାପ ବୃଦ୍ଧି ପାଇଲା । ଇଂରେଜମାନେ ସୁରେନ୍ଦ୍ରଙ୍କୁ ଧରାଇ ଦେବାରେ ସାହାଯ୍ୟ ପାଇଁ ଘୋଷଣା କରିଥିବା ପୁରସ୍କାର, ଆଦେଶନାମା ସବୁ ବେକାର ହୋଇଗଲା ।

ଏହା ପରେ ପରେ ସୁରେନ୍ଦ୍ର ବିଜୟୋନ୍ମତ୍ତ ହୋଇ ଉଦନ୍ତ, ଛବିଲ ଓ ବଳରାମଙ୍କ ସହ ସଦଳବଳ ସୈନ୍ୟସାମନ୍ତ ସାହାଯ୍ୟ ମାଗିବା ପାଇଁ ପାଟଣା ଅଭିମୁଖେ ବାହାରିଲେ । ନିର୍ଭୟରେ ସମ୍ବଲପୁର ରାଜଧାନୀ ବାଟେ ବାହାରିଲେ । ତଦାନୀନ୍ତନ ଏସିଷ୍ଟେଣ୍ଟ୍ କମିଶନର ମେଜର ଓସଲେ ସୈନ୍ୟବାହିନୀ ନେଇ ବୁଢ଼ାରଜା-ଦେହେରିପାଲିରେ ସେମାନଙ୍କୁ ଆକ୍ରମଣ କଲେ । ସୁରେନ୍ଦ୍ର ବାହିନୀ ତୋପ ବନ୍ଧୁକ, ଗୋଳାବାରୁଦ ଆଗରେ ତିଷ୍ଠି ନପାରି ଖାନ୍‌ଭାନ୍ ହୋଇ ପଳାୟନ କଲେ । ସୁରେନ୍ଦ୍ର, ଉଦନ୍ତ, ଉଜ୍ଜ୍ୱଳ, ଛବିଳ, ବଳରାମ ଆଦି ଧରାପଡ଼ି ସମ୍ବଲପୁର ଜେଲ୍‌ରେ ରହିଲେ ।

ବିଚାରରେ ରାଜଦ୍ରୋହ ପ୍ରମାଣିତ ନହୋଇଥିଲେ ହେଁ ରାମପୁର ଜମିଦାରଙ୍କ ହତ୍ୟା ଅପରାଧରେ ସମସ୍ତଙ୍କୁ ଆଜୀବନ କାରାଦଣ୍ଡ ଦେଇ ହଜାରିବାଗ୍ ଜେଲ୍ ପଠାଇ ଦିଆଗଲା ।

୧୮୪୯ରେ ସମ୍ବଲପୁରର ଶେଷ ଚୌହାଣ ରାଜା ନାରାୟଣ ସିଂହ ନିଃସନ୍ତାନ ହୋଇ ପ୍ରାଣତ୍ୟାଗ କଲେ । ରାଣୀ ମୁଖ୍ୟପାନ ଦେବୀଙ୍କ ନାମରେ କିଛିଦିନ ଶାସନ କାର୍ଯ୍ୟ ଚାଲିଲା । ତା'ପରେ ରାଜ୍ୟସ୍ୱତ୍ୱ ଲୋପ ନୀତି ଫଳରେ ସମ୍ବଲପୁର ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହେଲା ।

ଇଂରେଜ ଶାସନ ପ୍ରବର୍ତ୍ତନ ହେଲା ମାତ୍ରକେ ୧୮୪୯ରୁ ୧୮୫୪ ମଧ୍ୟରେ ଦୁଇଥର ରାଜସ୍ୱ ବନ୍ଦୋବସ୍ତ ହୋଇ ରାଜସ୍ୱ ବୃଦ୍ଧି ପାଇଲା । ଅନେକ ମାଫିବୃତ୍ତି ଉଚ୍ଛେଦ ହେଲା । ଆଦିବାସୀ, ପ୍ରଜାମାନଙ୍କର ଅସନ୍ତୋଷ ଆକାଶ ଛୁଆଁ ହେବା ଫଳରେ ସେମାନେ ଏଥିରୁ ନିସ୍କୃତି ପାଇବାର ଉପାୟ ଚିନ୍ତା କରିବାରେ ଲାଗିଲେ ।

ସମ୍ବଲପୁର ଝାଡ଼ଖଣ୍ଡ ରାଜ୍ୟ ଆବହମାନ କାଳରୁ ଆଦିବାସୀ ଜମିଦାରଗଣଙ୍କ ଆଧିପତ୍ୟାଧୀନ ହୋଇ ରହିଥିଲା । ଚୌହାଣ ରାଜପୁତ୍ ଜାତି ଏହି ଜମିଦାର ବା ଦଳପତିମାନଙ୍କ ସହଯୋଗ ଓ ସଦିଚ୍ଛା ଲାଭ କରି ସମ୍ବଲପୁରରେ ରାଜଧାନୀ ପ୍ରତିଷ୍ଠା କରି ପଶ୍ଚିମ ଓଡ଼ିଶା ଓ ମଧ୍ୟପ୍ରଦେଶର ଏକ ବ୍ୟାପକ ଅଞ୍ଚଳରେ ଏକ ବିରାଟ ରାଜ୍ୟ ସ୍ଥାପନ କରିଥିଲେ ।

ରାଜା ମଧ୍ୟ ଜମିଦାରମାନଙ୍କ ଧର୍ମ, ସଂସ୍କୃତି ଓ ପ୍ରଶାସନରେ କୌଣସି ରକମ ହସ୍ତକ୍ଷେପ କରୁନଥିଲେ । ସେହିପରି ଏହି ଦଳପତି, ମୁଖିଆମାନଙ୍କର ରାଜାଙ୍କ ପ୍ରତି ଅଗାଧ ଶ୍ରଦ୍ଧା, ସମ୍ମାନ ଓ ଆନୁଗତ୍ୟ ରହୁଥିଲା ।

କିନ୍ତୁ ଚୌହାଣ ବଂଶର ପତନର ଶେଷ ପର୍ଯ୍ୟାୟରେ ଇଂରେଜମାନେ ଏମାନଙ୍କୁ ରାଜ୍ୟର ମୁଖ୍ୟ ଧାରାରୁ କାଟିବାର ଯେଉଁ କ୍ରମାଗତ ଉଦ୍ୟମ ଚଳାଇଥିଲେ ତାହା ନାରାୟଣ ସିଂହଙ୍କ ମୃତ୍ୟୁରେ ଏ ବଂଶର ପତନ ପରେ ଚୂଡ଼ାନ୍ତ ରୂପ ପରିଗ୍ରହଣ କଲା । ଇଂରେଜମାନେ ସେହି ସଂପର୍କକୁ ସଂପୂର୍ଣ୍ଣ ଓଲଟାଇ ଦେଲେ । ଯେତେ ଅଧିକ ସମ୍ଭବ ସେତେ ଖଜଣା ଆଦାୟ ଲକ୍ଷ୍ୟ ଧାର୍ଯ୍ୟ କରିବା ଫଳରେ ଜମିଦାର ଗୌନ୍ତିଆ ପ୍ରଜାମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ପ୍ରକାଶ ପାଇଥିଲା ।

୧୮୪୯ରେ ସମ୍ବଲପୁର ଜମିଦାରମାନେ ରାଜକୋଷକୁ ବାର୍ଷିକ ୮,୮୦୦ ଟଙ୍କା ଖଜଣା ଦେଉଥିଲା ବେଳେ ୧୮୫୪ରେ ଇଂରେଜମାନେ ତାକୁ ୭୪,୦୦୦କୁ ବୃଦ୍ଧି କଲେ । ତା'ଛଡ଼ା ଶାସନ ପରିଚାଳନା ପାଇଁ ଅଞ୍ଚଳର କୁଳୀନ ଲୋକଙ୍କ ଉପରେ ନିର୍ଭର କଲେ । ଏମାନଙ୍କର ସରଳ ଆଦିବାସୀ ସଂସ୍କୃତି ପ୍ରତି କୌଣସି ସହାନୁଭୂତି ନଥିଲା । ନେତୃତ୍ୱ ଓ ସଙ୍ଗଠନ ଅଭାବରୁ ଜମିଦାରମାନେ ରକ୍ତ ଚାଉଳ ଚୋବେଇ ବିବଶ ରହି ଯାଉଥିଲେ । ୧୮୫୭ ପର୍ଯ୍ୟନ୍ତ ସେମାନଙ୍କର ଏ ଅବସ୍ଥା ବଳବତ୍ତର ରହିଥିଲା ।

ହୀରାଖଣ୍ଡ ଛତ୍ରପତି ମହାରାଜ ଅଠରଗଡ଼ ମଉଡ଼ମଣି ମହାରାଜ ବଳିଆର ସିଂହଙ୍କ ସାନ ଭାଇ ଅନିରୁଦ୍ଧ ସାଏଙ୍କ ବଂଶଧର ରୂପେ ସୁରେନ୍ଦ୍ର ସାଏ ମହାରାଜା ସାଏଙ୍କ ବିଧବା ମହାରାଣୀ ମୋହନ କୁମାରୀ ବା ମହାରାଜା ବଳିଆର ସିଂହଙ୍କ ଜ୍ୟେଷ୍ଠ ପୁତ୍ର ବିକ୍ରମ ସିଂହଙ୍କ ବଂଶଧର ନାରାୟଣ ସିଂହଙ୍କ ଓ ଅନ୍ୟମାନଙ୍କ ଅପେକ୍ଷା ସିଂହାସନର ପ୍ରକୃତ ଉତ୍ତରାଧିକାରୀ ଥିଲେ ।

ଏକ ଦିଗରେ ନ୍ୟାୟତଃ ସିଂହାସନ ପ୍ରାପ୍ତିରୁ ବଞ୍ଚିତ ଓ ଅନ୍ୟ ଦିଗରେ ଗଣ୍ଡ ଓ ବିଂଝାଲ ଜମିଦାରମାନଙ୍କୁ ମହାରାଣୀ ଜମିରୁ ଅନ୍ତର କରିବା ଜନିତ ଅନ୍ୟାୟ ଯୋଗୁଁ ଏହି କ୍ଷମତାଚ୍ୟୁତ ଦଳପତିଙ୍କ ନେତୃତ୍ୱରେ ସୁରେନ୍ଦ୍ର ଏ ଅଞ୍ଚଳରେ ବାଡ଼ବାଗ୍ନି ଜାଳି ତାଙ୍କ ଅନ୍ୟତମ ସହଯୋଗୀ ଲଖନପୁର ଗଣ୍ଡ ଜମିଦାର ବଳଭଦ୍ର ଦାଓ ପ୍ରମୁଖଙ୍କ ସାହାଯ୍ୟରେ ରାଜ୍ୟର ଚାରିଆଡ଼େ ବ୍ରିଟିଶ୍ ବିରୋଧୀ ଆତଙ୍କରାଜ ଖେଳାଇଦେଲେ । ଦୁର୍ଗମ ବାରପାହାଡ଼ ଅଞ୍ଚଳରେ ରହି, ନଳିବନ୍ଧୁକ, ଧନୁଶର, ଖଣ୍ଡା, ବର୍ଛା, ପଥର ଆଦି ନେଇ ଏମାନଙ୍କ ଗରିଲା ଯୁଦ୍ଧ ପ୍ରଣାଳୀରେ ଅତ୍ୟାଧୁନିକ ଗୁଳିଗୁଳା ସଜ୍ଜିତ ଇଂରେଜବାହିନୀ ମଧ୍ୟ ବ୍ୟତିବ୍ୟସ୍ତ ହୋଇପଡୁଥିଲା ।

୧୮୫୭ରେ ଇଂରେଜ ପ୍ରଶାସନ ବିରୋଧରେ ଦେଶବ୍ୟାପୀ ବିରାଟ ଗଣଆନ୍ଦୋଳନ ଦେଖାଗଲା । ସିପାହୀମାନେ ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଜୁଲାଇ ୩୧, ୧୮୫୭ରେ ବିଦ୍ରୋହୀ ସିପାହୀମାନେ ହଜାରୀବାଗ ଜେଲ୍ ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କଲେ । ଜେଲ୍ ଭିତରେ ବଳରାମ ସାଏଙ୍କ ମୃତ୍ୟୁ ହୋଇ ସାରିଥିଲା । ସୁରେନ୍ଦ୍ର, ଉଦନ୍ତ ମୁକ୍ତି ପାଇ କିଛିଦିନ ପାଇଁ ସିପାହୀ ବିଦ୍ରୋହରେ ସାମିଲ ହେଲେ । କିନ୍ତୁ ବିଦ୍ରୋହର ରୂପରେଖ ତାଙ୍କୁ ସନ୍ତୋଷ କରିପାରିଲା ନାହିଁ । ସେ ସମ୍ବଲପୁରରେ ଆଦିବାସୀମାନଙ୍କୁ ସଂଗଠିତ କରିବାକୁ ପୋଲିସ୍ ଆଖିରେ ଧୂଳିଦେଇ ସମ୍ବଲପୁର ଫେରିଆସିଲେ । ବହୁ ଜମିଦାର, ଗୌନ୍ତିଆ ଓ ଜନସାଧାରଣ ଶାସନ ଠାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ ।

ସୁରେନ୍ଦ୍ର ସାଏ ଫେରିଆସିଲା ବେଳକୁ ଘେଁଷ ଅଞ୍ଚଳରେ ବିଦ୍ରୋହର ଅଗ୍ନି କୁହୁଳୁଥିଲା । ପ୍ରବଳ ସ୍ୱାଧୀନଚେତା, ପ୍ରଜାବତ୍ସଳ ଘେଁଷ ଜମିଦାର ମାଧୋସିଂହ ପ୍ରବଳ ମରହଟ୍ଟା, ଇଂରେଜ ବିରୋଧୀ ଥିଲେ । ବ୍ରିଟିଶମାନଙ୍କ ଷଡ଼ଯନ୍ତ୍ର ଓ ସଂପତ୍ତି ଲିପ୍ସା ପ୍ରତି ତାଙ୍କର ଚରମ ଘୃଣା ଥିଲା । ବ୍ରିଟିଶ୍ ବିରୋଧରେ ଏକାକୀ ଯୁଦ୍ଧ କରି ବିଜୟ ଲାଭର ଆଶା ସମ୍ଭବ ନଥିବାରୁ ସେ ଉପଯୁକ୍ତ ସୁଯୋଗ ଅପେକ୍ଷାରେ ରହିଥିଲେ ।

ସୁରେନ୍ଦ୍ରଙ୍କ ସମ୍ବଲପୁର ସିଂହାସନ ଦାବି ତାଙ୍କ ମତରେ ଯୁକ୍ତିଯୁକ୍ତ ଥିଲା । ରାମପୁର ଜମିଦାର ଦରିଆର ସିଂହଙ୍କ ଦେଶଦ୍ରୋହ ତାଙ୍କ ମନରେ ଆଘାତ ଦେଇଥିଲା । ସୁରେନ୍ଦ୍ର ସାଏଙ୍କୁ ଜଣେ ଦସ୍ୟୁ, ଡକାୟତ, ଲୁଟେରା, ହତ୍ୟାକାରୀ ଭାବରେ ଆଜୀବନ କାରାଦଣ୍ଡାଦେଶ ତାଙ୍କୁ ଅସନ୍ତୁଷ୍ଟ କରିଥିଲା । ସୋନାଖାନ ଜମିଦାର ନାରାୟର ସିଂହ ନିଜର ଭୋକିଲା ପ୍ରଜାମାନଙ୍କୁ ଦୁର୍ଭିକ୍ଷ ଦାଉରୁ ରକ୍ଷା କରିବା ପାଇଁ କରୋଦର ସେଠ୍ ମାଖନଲାଲ୍‌ଙ୍କୁ କରଜ ମାଗି ବିଫଳ ହୋଇ ଶସ୍ୟାଗାର ଲୁଣ୍ଠନ ଯୋଗୁଁ ତାଙ୍କୁ ଜେଲ୍ ଦେବା ଘଟଣା ଘେଁଷ ଜମିଦାର ପରିବାରକୁ କ୍ରୋଧାନ୍ୱିତ କରିଥିଲା । ନାରାୟଣ ଥିଲେ ତାଙ୍କ ସମୁଦି ।

ତା' ସାଙ୍ଗକୁ ଅବାରିତ ରାଜସ୍ୱ ବୃଦ୍ଧି, ଇଂରେଜ ସମର୍ଥନରେ ବିଜେପୁର ଜମିଦାର ଗୋପୀନାଥ ଗଡ଼ତିଆଙ୍କ ଦ୍ୱାରା ଘେଁଷର ଉର୍ବର ଅଞ୍ଚଳ, ସୀମାନ୍ତ ସ୍ଥିତ 'ଭାଟୀ ବାହାଲ' (ଏବର ବାଦିବାହାଲ) ଜବରଦଖଲ ଆଦି କାରଣରୁ ସେ ଇଂରେଜ ବିରୋଧୀ ହୋଇ ଖାଲସା ଅଞ୍ଚଳର କନ୍ଧ, ବିଂଝାଲ, ଗଣ୍ଡ, ଚୌହାନ ଆଦି ଯୁବକମାନଙ୍କୁ ସାମରିକ ତାଲିମ ଦେଇ ଯେକୌଣସି ସମ୍ଭାବିତ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଥିଲେ ।

ସୁରେନ୍ଦ୍ରଙ୍କ ଆସିବା ଖବର ପାଇ ସେ ୧୮୫୭ ଆଶ୍ୱୀନ ଦଶମୀ, ବିଜୟା ଦଶମୀ ଦିନ ନିଜ ପୁଅ ହାତୀ ସିଂହ, କୁଂଜଲ ସିଂହ ଓ ବୈରୀ ସିଂହଙ୍କ ସଙ୍ଗେ ଦଳେ ଯୋଦ୍ଧା ଯୁବକଙ୍କୁ ତାଙ୍କ ସମ୍ବର୍ଦ୍ଧନା ନିମନ୍ତେ ପଠାଇଲେ ।

ଅକ୍ଟୋବର ୭, ୧୮୫୭ ଦିନ ସମ୍ବଲପୁର ର ବ୍ରହ୍ମପୁରା ମନ୍ଦିରରେ ସମସ୍ତ ମୁଖ୍ୟ ବିଦ୍ରୋହୀ ପ୍ରଦୀପ ଜାଳି ଦେଶରୁ ଇଂରେଜମାନଙ୍କୁ ତଡ଼ିବା ପାଇଁ ଓ ସୁରେନ୍ଦ୍ର ସାଏଙ୍କୁ ସମ୍ବଲପୁର ରାଜଗାଦି ଦିଆଇବା ପାଇଁ ଅଗ୍ନି ଶପଥ ନେଇଥିଲେ । ତା'ପରେ ସେମାନେ ସୁରେନ୍ଦ୍ରଙ୍କ ଦଳ ସହ ମିଶିଥିଲେ ।

ସୁରେନ୍ଦ୍ର ସାଏ ଫେରି ଆସିଥିବା ଓ ସମଗ୍ର ଦେଶରୁ ଇଂରେଜ ଶାସନ ଲୋପ ପାଇଁ ପ୍ରବଳ ଜାତୀୟ ଆନ୍ଦୋଳନ ଓ ଯୁଦ୍ଧର ଖବର ଜାଣି ସମ୍ବଲପୁରର ଜନତା ତାଙ୍କୁ ନେତା ରୂପେ ଗ୍ରହଣ କରି ହଜାର-ହଜାର ସଂଖ୍ୟାରେ ତାଙ୍କ ସହ ଯୋଗ ଦେଲେ । ଉଦନ୍ତ ସାଏ ଖିଣ୍ଡା ଯାଇ ପୂର୍ବ ଅନୁଚର ଦଳ ସଂଗ୍ରହ କଲେ । ଏମାନଙ୍କ ସଂଖ୍ୟା ପାଞ୍ଚ ହଜାର ଥିଲା । ପ୍ରାୟ ପନ୍ଦର ହଜାର ସୈନ୍ୟ ଧରି ସୁରେନ୍ଦ୍ର ସାଏ ରାଜଧାନୀ ସମ୍ବଲପୁର ଆକ୍ରମଣ କରି ଧ୍ୱଂସପ୍ରାୟ ପୁରୁଣା କିଲ୍ଲା ଅଧିକାର କରି ସେଠାରେ ଶିବିର ସ୍ଥାପନ କଲେ ।

ସମ୍ବଲପୁରରେ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥିବା ଜାଣି ଇଂରେଜ ସରକାରଙ୍କ ଅଧିନସ୍ଥ ସିପାହୀମାନେ ସୁରେନ୍ଦ୍ରଙ୍କ ଦଳରେ ଯୋଗ ଦେଲେ । ଏତେବେଳକୁ ସୁରେନ୍ଦ୍ର ଆଧୁନିକ ବନ୍ଧୁକ ଆଦି ଅସ୍ତ୍ରଶସ୍ତ୍ରରେ ମଧ୍ୟ ସଜ୍ଜିତ ରହିଲେ ।

ବିଦେଶୀ ରାମଗଡ଼ ବାହିନୀ ନେଇ ସୁରେନ୍ଦ୍ର ବାହିନୀର ସମ୍ମୁଖୀନ ହେବାର ସାହସ ନ କରି ସିନିୟର ଏସିଷ୍ଟେଣ୍ଟ କମିଶନର କେପଟେନ୍ ଲି ଧଳାପତକା ନେଇ ସୁବେଦାର ଛକଡ଼ି ମହାପାତ୍ରଙ୍କୁ ଶାନ୍ତି ପ୍ରସ୍ତାବ ଦେଇ ପଠାଇଲେ । ସୁରେନ୍ଦ୍ର ବାହିନୀ ଇଂରେଜଙ୍କ କୂଟନୀତି ବୁଝି ନ ପାରି ଇଂରେଜ ହାତରେ ବନ୍ଦୀ ହେଲେ । ଏହି ଦିନ ଥିଲା ଅକ୍ଟୋବର ୭, ୧୮୫୭ ।

ଜେଲ ଭିତରେ ସୁରେନ୍ଦ୍ର ପ୍ରହରୀମାନଙ୍କ ହାତ କରି ଅନୁତପ୍ତ ଛକଡ଼ି ମହାପାତ୍ରଙ୍କ ସାହାଯ୍ୟରେ ଜେଲରୁ ପଳାୟନ କଲେ । ସୁରେନ୍ଦ୍ର ସମର୍ଥକଙ୍କ ଶୋଭାଯାତ୍ରାରେ ସମ୍ବଲପୁର କମ୍ପି ଉଠିଲା ।

ଇତିମଧ୍ୟରେ କେପଟେନ୍ ଲି କଟକ, ନାଗପୁର ଆଦି ଅଞ୍ଚଳରୁ ବହୁ ସୈନ୍ୟ, ତୋପ, ବନ୍ଧୁକ ସମ୍ବଲପୁରରେ ଜମା କରିବାକୁ ଲାଗିଲେ । ବିପଦ ଘନେଇ ଆସୁଥିବା ଜାଣି ଅକ୍ଟୋବର ୩୧, ୧୮୫୭ ଦିନ ସୁରେନ୍ଦ୍ରଙ୍କୁ ନେଇ ସମର୍ଥନକାରୀମାନେ ସମ୍ବଲପୁର ପରିତ୍ୟାଗ କଲେ ।

ଉପରୋକ୍ତ ଗିରଫଦାରୀ ସମୟରେ କେପଟେନ୍ ଲି ସୁରେନ୍ଦ୍ର ଆତ୍ମସମର୍ପଣ କଲେ ରାଜକ୍ଷମା ଓ ବୃତ୍ତିର ଲୋଭ ଦେଖାଇଥିଲେ । ତାହା ପ୍ରତ୍ୟାଖ୍ୟାନ କରି ସୁରେନ୍ଦ୍ର ସମ୍ବଲପୁର ସିଂହାସନର ପୁନରୁଦ୍ଧାର ଓ ସ୍ୱାଧୀନତା, ଜନ୍ମଭୂମିର ଉଦ୍ଧାର ତାଙ୍କ ଜୀବନର ଲକ୍ଷ୍ୟଥିବା ପ୍ରକାଶ କରିଥିଲେ ।

ଗଣ୍ଡ, ବିଂଝାଲ, କନ୍ଧ ସମେତ କେତେକ ଅସନ୍ତୋଷ ବ୍ରାହ୍ମଣ ମଧ୍ୟ ସୁରେନ୍ଦ୍ରଙ୍କ ସମର୍ଥନ କଲେ ।

୧୮୫୩ର ଦ୍ୱିତୀୟ ଭୂ-ବନ୍ଦୋବସ୍ତ ପରେ ବ୍ରାହ୍ମଣମାନେ ଭୋଗ କରୁଥିବା ନିଷ୍କର, ବ୍ରହ୍ମୋତ୍ତର, ଦେବୋତ୍ତର ଜମି ଉପରେ ଅର୍ଦ୍ଧେକ ପରିମାଣରେ ଖଜଣା ଧାର୍ଯ୍ୟ କରା ଯାଇଥିଲା । ସମାଜର ସବୁଠୁ ବେଶୀ ସମ୍ମାନୀୟ ଓ ପ୍ରଭାବଶାଳୀ ସଂପ୍ରଦାୟ ଭାବରେ ସେମାନଙ୍କ ପ୍ରତି ବ୍ରିଟିଶ ସରକାରର ଏଭଳି ପଦକ୍ଷେପକୁ ଚରମ ଅପମାନ ମନେକରି ସେମାନେ ବ୍ୟତିବ୍ୟସ୍ତ ହୋଇ ଉଠିଥିଲେ । ଏଭଳି ପଦକ୍ଷେପ ବିରୁଦ୍ଧରେ ସେମାନେ ପୁନର୍ବିଚାର ପାଇଁ ରାଞ୍ଚି ଯାଇ ନିରାଶ ହୋଇ ଫେରି ଆସିଥିଲେ । ପୁନଃ ଚୌହାଣ ରାଜ ଶାସନରେ ସେମାନଙ୍କ ହୃତ ଅଧିକାର ଫେରି ପାଇବା ଆଶାରେ ସେମାନେ ସୁରେନ୍ଦ୍ରଙ୍କୁ ସହଯୋଗ କରିଥିଲେ ।

ଉଲ୍ଲେଖଯୋଗ୍ୟ ଯେ ବ୍ରହ୍ମୋତ୍ତର ଓ ଦେବୋତ୍ତର ଜମି ସବୁଠୁ ଅଓଲ କିସମର ଜମିଥିଲା । ଏହା ଫେରି ପାଇବାକୁ ସେମାନେ ନିଜ ଜାତି ଓ ଉପବୀତ ତ୍ୟାଗ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ ବୋଲି ଜନଶ୍ରୁତି ରହିଛି । ସେହିପରି ଏକ ପ୍ରବାଦ ଅନୁସାରେ ବହୁ ସଂଖ୍ୟକ ବ୍ରାହ୍ମଣ କୁଦୋପାଲିଠାରେ କନ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ।

ସୁରେନ୍ଦ୍ରଙ୍କ ବିଦ୍ରୋହରେ ତତ୍କାଳୀନ ଅଗ୍ରଣୀ ଚାଷୀ କୁଲିତାମାନେ ଅଂଶଗ୍ରହଣ କରି ନଥିଲେ । ସେହିପରି ଆଦିବାସୀମାନଙ୍କ ଯୋଗଦାନ ଥିଲା ସ୍ୱତଃସ୍ଫୁର୍ତ୍ତ ଓ ସ୍ୱେଚ୍ଛାକୃତ ।

କେତେକ ଶିକାରୀ ଶବର ଓ ଅନ୍ୟାନ୍ୟ ଭାବରେ ଖାଦ୍ୟ ସଂଗ୍ରହକାରୀ ସଂପ୍ରଦାୟକୁ ଛାଡ଼ି ଦେଲେ ଅଧିକାଂଶ ଆଦିବାସୀ କୃଷିଜୀବୀ ଥିଲେ । ସେମାନେ ନିଜ ହାତରେ ଜଙ୍ଗଲ ସଫା କରି ଚାଷ କରୁଥିଲେ । ଏଥିପାଇଁ ସେମାନଙ୍କୁ କୌଣସି ଖଜଣା ପଇଠ କରିବାକୁ ପଡୁ ନଥିଲା । କୁଲିତାମାନଙ୍କ ପରି ଜମି ଉପରେ ସେମାନଙ୍କର ମାଲିକାନା ସ୍ୱତ୍ତ୍ୱ ମଧ୍ୟ ରହି ନଥିଲା । କୃଷି ଥିଲା ସେମାନଙ୍କର ଏକ ଉପଜୀବିକା । ପଶୁପାଳନ, ଶିକାର, ବନଜାତ ଦ୍ରବ୍ୟ ଓ ଖାଦ୍ୟ ସଂଗ୍ରହ ସେମାନଙ୍କ ମୁଖ୍ୟ ସାଧନ ଥିଲା । କେତେକ କୃଷି ଶ୍ରମିକ ମଧ୍ୟ ଥିଲେ ।

ସମ୍ରାଟ ଆକବରଙ୍କ ସମୟରୁ ପ୍ରଚଳିତ ଗଡ଼ଜାତ ରାଜ୍ୟମାନଙ୍କରେ ମଧ୍ୟ ଆଦିବାସୀମାନଙ୍କୁ ପ୍ରତ୍ୟକ୍ଷ ଶାସନ, ଭୂବନ୍ଦୋବସ୍ତ, ରାଜସ୍ୱ ଆଦିରୁ ଦୂରରେ ରଖା ଯାଇଥିଲା । ଚୌହାଣ ଶାସନ ମଧ୍ୟ ସେମାନଙ୍କ ପାରମ୍ପରିକ ଜୀବନ ପଦ୍ଧତି, ସୁବିଧା ସୁଯୋଗ ଉପରେ କୌଣସି ରକମ ହସ୍ତକ୍ଷେପ କରି ନଥିଲେ । ସେମାନେ ନିଜ ପରମ୍ପରା, ନୀତିନିୟମ ଅନୁସାରେ ଚଳୁଥିଲେ । ସେମାନଙ୍କ ନିଜସ୍ୱ ଜମିଦାର ଅଧୀନରେ ସେମାନେ ସ୍ୱାଧୀନ ଥିଲେ ।

ଏହି ଜମିଦାରମାନେ ରାଜାଙ୍କୁ ଏକ ନିର୍ଦ୍ଧାରିତ ପେଶ୍‌କସ, ନଜରାନା ଦେଉଥିଲେ । ରାଜାଙ୍କ ସହ ସେମାନଙ୍କର ସଂପର୍କ ମଧ୍ୟ ସାଧାରଣ ଧରଣର ଥିଲା । ସେମାନେ ରାଜ୍ୟ ଭିତରେ ନିଜର ଏକ ଏକ ସ୍ୱାଧୀନ ରାଜ୍ୟରେ ରାଜତ୍ୱ କରୁଥିଲେ ।

ହେଲେ ବ୍ରିଟିଶ ଶାସନାଧୀନ ହେଲା ପରେ ସେମାନେ ଏସବୁ ସୁବିଧା ହରାଇଥିଲେ । ସୁରେନ୍ଦ୍ରଙ୍କ ଭିତରେ ସେମାନେ ଏକ ଆଶାର ସୂର୍ଯ୍ୟ ଦେଖିଥିଲେ । ସେମାନଙ୍କ ଆଦିବାସୀ ରାଜ୍ୟର ସ୍ୱପ୍ନ ସାକାର ହେବାର ଦିଶୁଥିଲା ।

ଏଥିରେ ଗାଁ ପୂଜକ ଝାଙ୍କର, ଦେହୁରୀମାନଙ୍କ ମଧ୍ୟ ବିଶେଷ ଅବଦାନ ରହିଥିଲା ।

ସମ୍ବଲପୁରରେ ବିଦ୍ରୋହର ବହ୍ନି ଜଳି ଉଠିଲା । କରଣ୍ଡୋଳାର ଗୌନ୍ତିଆ ଅରକ୍ଷିତ, ଖରମୁଣ୍ଡାର ମାର୍କଣ୍ଡ ବରିହା, ବାମଣ୍ଡାର ଶ୍ରୀକୃଷ୍ଣ ବେହେରା, ପାଟକୁଲୁଣ୍ଡାର ପୀତାମ୍ବର ସିଂହ, ଖରସଲ ଜମିଦାର ଦିଆଲ ସରଦାର, କୁସେଇକେଲାର ମନୋହର ସିଂହ, ଲୋଇସିଂହର ଚନ୍ଦନ ଗଡ଼ତିଆ, ପାହାଡ଼ଶ୍ରୀଗୀଡ଼ାର ଜନାର୍ଦ୍ଦନ ସିଂହ, ମୁଡ଼ୋମହୁଲର ଅନନ୍ତ ସିଂହ, କୋଡ଼ାବଗାର ଅଂଜାରୀ ସିଂହ, ମଚିଦାର ଧନ ସିଂହ, ଲଖନପୁରର କମଳ ସିଂହ ଦାଓ, ନୀଳାମ୍ବର ସିଂହ, ଖଗେଶ୍ୱର ସିଂହ, କୋଲାବିରାର ଗଣ୍ଡ ଜମିଦାର କର୍ଣ୍ଣ ଗଡ଼ତିଆ, ଚନ୍ଦ୍ରପୁର-ପଦ୍ମପୁରର ବଳଭଦ୍ର ରାଓ, ରାମପୁର ପଡ୍ରାପାଲିର ରାମଚନ୍ଦ୍ର ଗୌନ୍ତିଆ, ରମ୍ପେଲା, ଅଢ଼ାପରା, କୁମ୍ଭାରବନ୍ଧର ଗୌନ୍ତିଆ ଲୋକନାଥ ଗଡ଼ତିଆ, ବରଗାଁର ଗୌନ୍ତିଆ ମୃତ୍ୟୁଞ୍ଜୟ ପାଣିଗ୍ରାହୀ, ସୋନାଖାନ ଜମିଦାର ଗୋବିନ୍ଦ ସିଂହ, ଟାନୁଟ୍ ଜମିଦାର ଲାଲ ସାଏ, ଲଇଡ଼ାର ଜୟ ସିଂହ, ସିଂହାବଗାର ଗଣେଷ ଉପାଧ୍ୟାୟ ଆଦି ବିପ୍ଳବ ଆରମ୍ଭ କଲେ । ବେନ୍ଦ୍ରା-ନୂଆଗଡ଼ର ଉମରାଓ ସାଏ, ଖଡ଼ିଆଳ ରାଜା କୃଷ୍ଣଚନ୍ଦ୍ର ଦେବ ପ୍ରମୁଖ ପରୋକ୍ଷରେ ସାହାଯ୍ୟ ସହଯୋଗ ଯୋଗାଇଲେ ।

ସୁରେନ୍ଦ୍ର ସାଏଙ୍କ ସମ୍ବଲପୁର ଜେଲରୁ ପଳାୟନ ସମୟରେ ତାଙ୍କ ଭାଇ ଉଦନ୍ତ ସାଏ ଖୀଣ୍ଡାକୁ ଯାଇ ସେଠାରେ ସାମରିକ ସଙ୍ଗଠନରେ ଲାଗିଥିଲେ । ସୁରେନ୍ଦ୍ର ରାତାରାତି

ଖୀଣ୍ଡା ପହଞ୍ଚି ତାଙ୍କ ସହ ଯୋଗ ଦେଲେ । ଖୀଣ୍ଡାର ଗୌନ୍ତିଆ ନିଜ ଘରକୁ ଏକ ଦୁର୍ଗ ଭାବରେ ସଜ୍ଜିତ କରିଥିଲେ ।

ସୁରେନ୍ଦ୍ର ଅବିଳମ୍ବେ ଖିଣ୍ଡା ଛାଡ଼ି ବଣପର୍ବତରେ ଆଶ୍ରୟ ନେଲେ । ତାଙ୍କ ସୈନ୍ୟମାନଙ୍କୁ ତିନି ଭାଗରେ  ବିଭକ୍ତ କରି ବଡ଼ପାଟି, ଝରଘାଟି, ଓ ମଉଳାଭଣଜ୍ଞା ପାହାଡ଼ର ତିନୋଟି ଶୃଙ୍ଗ ଦେଶରେ ଅବସ୍ଥାପିତ କଲେ । ନିଜେ ଗୋଟିଏ ଜାଗାରେ ନ ରହି ଏ ସବୁ ସ୍ଥାନକୁ ଯାଇ ଯୁଦ୍ଧ ପାଇଁ ପ୍ରଶିକ୍ଷଣ ଓ ସଙ୍ଗଠନ କାର୍ଯ୍ୟ କରୁଥିଲେ ।

ଲଖନପୁର ଜମିଦାର ବଳଭଦ୍ର ନିହତ ହେଲା ପରେ ତାଙ୍କ ପୁତ୍ର କମଳ ସିଂହ, ନୀଳମ୍ବର ସିଂହ ଓ ଖଗେଶ୍ୱର ଡେବ୍ରୀଗଡ଼ ଓ ବାରବଖରା ଗୁମ୍ଫାରେ ଆଶ୍ରୟ ନେଇ ସୁରେନ୍ଦ୍ରଙ୍କ ସମର୍ଥନ କରୁଥିଲେ ।

ସୁରେନ୍ଦ୍ରଙ୍କ ବିପ୍ଲବରେ ବାରପାହାଡ଼ ପର୍ବତଶ୍ରେଣୀର ଡେବ୍ରୀଗଡ଼ ଏକ ଦୁର୍ଭେଦ୍ୟ ଓ ଅପ୍ରବେଶ୍ୟ ଗିରିଦୁର୍ଗ ଥିଲା । ଏଠାରେ ରହି ସୁରେନ୍ଦ୍ର ରାତିକ ମଧ୍ୟରେ ପଶ୍ଚିମରେ ସିଂଘୋଡ଼ା ଘାଟି, ଉତ୍ତରରେ ଝରଘାଟି, ଦକ୍ଷିଣପୂର୍ବରେ ବଡ଼ପାଟି ଘାଟିକୁ ଯାଇ ଡେବ୍ରୀଗଡ଼କୁ ଫେରି ଆସି ପାରୁଥିଲେ ।

ଉଦନ୍ତ ଝରଘାଟିରେ ରହି ଇଂରେଜ ସୈନ୍ୟଙ୍କୁ ପ୍ରତିରୋଧ କରିବାକୁ ଘାଟିର ଚତୁର୍ଦ୍ଦିଗରେ ଛାତିଏ ଉଚ୍ଚ ମାଟିକାନ୍ଥ ନିର୍ମାଣ କରିଥିଲେ । ଏହି ଘାଟି ସମ୍ବଲପୁର ରାଞ୍ଚି ମଧ୍ୟରେ ଯୋଗସୂତ୍ର ଥିଲା । ବଡ଼ପାଟି ଘାଟୀ ଦାୟିତ୍ୱ ସୁରେନ୍ଦ୍ର ନେଇଥିଲେ ।

ଲଖନପୁର ସୈନିକ ଦଳ ଡେବ୍ରୀଗଡ଼, ଲୋଇସିଂହା ଦଳ ବଡ଼ପାଟିରେ ରହି କଟକରୁ ସମ୍ବଲପୁର ରାସ୍ତା ଜଗିଥିଲା ବେଳେ ଘେଁଷ ଜମିଦାର କୁଂଜଲ ସିଂହ, ହଟେ ସିଂ ସିଂଘୋଡ଼ା ଘାଟି ଜଗି ସମ୍ବଲପୁର-ନାଗପୁର ରାସ୍ତା ଅଚଳ କରି ଦେଇଥିଲେ । ସୁରେନ୍ଦ୍ର ସାଏ ଏହିପର ଭାବରେ ଇଂରେଜବାହିନୀ ପାଇଁ ସମ୍ବଲପୁରର ସମସ୍ତ ସଂଯୋଗ ପଥ କାଟି ଦେଇଥିଲେ । ସେ ବଡ଼ପାଟି, ଝରଘାଟି ଓ ସିଂଘୋଡ଼ା ତିନୋଟି ଯାକ ଘାଟୀରେ ମାଟି ବା ପଥର କାନ୍ଥ ନିର୍ମାଣ କରି ସେ ସବୁକୁ ଏକ ଦୁର୍ଗରେ ପରିଣତ କରିଥିଲେ ।

କେପଟେନ୍ ଲି ଏ ଭିତରେ ନିଜର ସେନାବାହିନୀ ବୃଦ୍ଧି କରିବା ସହ ଜିଲ୍ଲାରେ ଗୁପ୍ତଚର଼ମାନଙ୍କ ଜାଲ ଚାରିଆଡ଼େ ବିଛାଇ ଦେଇଥିଲେ । କଟକ କମିଶନର କକ୍‌ବର୍ଣ୍ଣ ଦୁଇଦଳ ମାନ୍ଦ୍ରାଜୀ ବେଟେଲିଅନ ପଠାଇଲେ । କେପଟେନ୍ ନକ୍ସ ଦୁଇ ଦଳ ସୈନ୍ୟ ନେଇ ଆସିଲେ । ଲେଫ୍ଟିନେଣ୍ଟ ହେଡୋ ମାନ୍ଦ୍ରାଜରୁ କେତେକ ହାଲୁକା  ପାର୍ବତ୍ୟ ତୋପ ନେଇ ପହଞ୍ଚିଲେ ।

କେପଟେନ୍ ଉଡ୍, ଉଡ୍‌ବ୍ରିଜ୍, ସେକ୍‌ସପିଅର, ନକର୍, ହେଡୋ, ସୁରନୀ, ଲେଫ୍ଟିନେଣ୍ଟ ଭାଲେନ୍‌ସ ପ୍ରମୁଖ ଅଭିଜ୍ଞ ସେନାପତି ଗଣ ସୁରେନ୍ଦ୍ର-ବିପ୍ଲବ ଦମନ ପାଇଁ ଦିନରାତି ଅକ୍ଲାନ୍ତ ପରିଶ୍ରମ କରୁଥିଲେ । କଟକର ପ୍ରଧାନ ସେନାପତି ମେଜର ବେଟ୍ସ ବିପୁଳ ଅସ୍ତ୍ରଶସ୍ତ୍ର ସହ ସମ୍ବଲପୁରରେ ପହଞ୍ଚିଲେ ।

ଇତିମଧ୍ୟରେ ସମ୍ବଲପୁର ଛୋଟନାଗପୁରରୁ କଟକ କମିଶନରୀକୁ ସ୍ଥାନାନ୍ତରିତ ହେଲାପରେ କଟକ କମିଶନର କକ୍‌ବର୍ଣ ସମ୍ବଲପୁରର ପ୍ରତ୍ୟକ୍ଷ ଦାୟିତ୍ୱ ନେଲେ । ମେଜର ବେଟ୍‌ସଙ୍କ ମାନ୍ଦ୍ରାଜୀ ବାହିନୀ, କେପଟନ୍ ବାର୍ଡଙ୍କ ଦେଶୀୟ କଳା ବାହିନୀ ସହ କକ୍‌ବର୍ଣ ସମ୍ବଲପୁରରେ ପହଞ୍ଚିଲେ । ମେଜର ବେଟ୍‌ସ ସମଗ୍ର ବାହିନୀର ମୁଖ୍ୟ ସେନାପତି ହେଲେ । କକବର୍ଣଙ୍କ ସହ ସାମରିକ କାର୍ଯ୍ୟ ତନଖ୍ କରିବା ପାଇଁ ମେଜର ଉଇଣ୍ଡହାମ ଆସିଥିଲେ ।

କେପଟେନ୍ ଲି ସେନାପତି ନକର ଓ ହେଡୋଙ୍କୁ କୋଲାବିରା ଓ ଖିଣ୍ଡା ଆକ୍ରମଣ ପାଇଁ ପଠାଇଲେ । ନଭେମ୍ବର ୫, ୧୮୫୭ରେ କୋଲବିରା ଆକ୍ରମଣ ହେଲା । ଏହି ଦୁଇ ଗ୍ରାମ ବିଦ୍ରୋହୀମାନଙ୍କ ମୁଖ୍ୟ କେନ୍ଦ୍ର ଥିଲା । ସେମାନେ କୋଲାବିରା ଅଭିମୁଖେ ଗଲାବେଳେ ଝାରଘାଟିଠାରେ ବିଦ୍ରୋହୀମାନଙ୍କ ସମ୍ମୁଖୀନ ହେଲେ । ଯୁଦ୍ଧରେ ବିଦ୍ରୋହୀମାନେ ଛତ୍ରଭଙ୍ଗ ଦେଲେ । ହେଲେ ଝାରଘାଟି ଯୁଦ୍ଧରେ ବ୍ରିଟିଶ ବାହିନୀ ଅଟକି ରହିବା ଫଳରେ କୋଲାବିରା ଓ ଖୀଣ୍ଡାର ଜନସାଧାରଣ ନିଜ ନିଜ ଜିନିଷପତ୍ର ନେଇ ଜଙ୍ଗଲକୁ ପଳାଇ ଯିବାର ସୁଯୋଗ ପାଇଲେ । ଇଂରେଜମାନେ ପହଞ୍ଚିଲା ବେଳକୁ ଗ୍ରାମଦ୍ୱୟ ଜନଶୂନ୍ୟ ହୋଇ ସାରିଥିଲା ।

କୋଲାବିରା ଗ୍ରାମ ପୋଡ଼ାଇ ଦିଆଗଲା । ବୃଦ୍ଧ ଜମିଦାର ବନ୍ଦୀ ହେଲେ । ସେମାନେ ଖୀଣ୍ଡା ଗ୍ରାମ ମଧ୍ୟ ପୋଡ଼ି ଦେଲେ ।

ପରେ ବନ୍ଦୀ ବୃଦ୍ଧ ଜମିଦାରଙ୍କୁ ଫାଶୀ ଦିଆଗଲା । ନୂତନ ଜମିଦାର ଓ ପ୍ରଜା ଏ ଘଟଣାରେ ଉଦ୍‌କ୍ଷିପ୍ତ ହୋଇ ପ୍ରତିହିଂସା ପରାୟଣ ହେଲାବେଳେ ଅନ୍ୟ ଦିଗରେ ଲଖନପୁର ଜମିଦାର ଭ୍ରାତାତ୍ରୟ ପିତୃହତ୍ୟାର ପ୍ରତିଶୋଧ ନେବାକୁ ଗର୍ଜନ ଛାଡ଼ିଥାନ୍ତି । ଘେଁଷର ହଟେ ସିଂହ, କୁଂଜଲ ସିଂହ, ବୈରୀ ସିଂହ ସିଂଘୋଡ଼ା ଘାଟିରେ ନିଜର ପରାକ୍ରମ ଦେଖାଉଥାନ୍ତି ।

ଭେଡ଼େନ ଜମିଦାର ଯୁଦ୍ଧରେ ନିହତ ହେଲେ । ଖରସଲ ଜମିଦାର ଫାଶୀ ପାଇଲା ବେଳକୁ କୋଡ଼ାବଗା ଜମିଦାର ଆଜୀବନ କାରାଦଣ୍ଡାଦେଶ ପାଇଲେ ।

ବିପ୍ଲବୀମାନେ ସରକାରୀ ଅନୁଷ୍ଠାନ, ଥାନା, ଡାକଘରମାନ ପୋଡ଼ିଦେଲେ । ଇଂରେଜ ବାହିନୀ ଦେଖିଲା ମାତ୍ରକେ ଗରିଲା ପ୍ରଣାଳୀରେ ଆକ୍ରମଣ କଲେ । ଇଂରେଜମାନେ

ଘୋଷଣା କଲେ ଯେ ଗୌନ୍ତିଆ, ମାଫିଦାର, ବୃତ୍ତିଦାର, ଇନାମଦାର, ଜମିଦାର କେହି ବିପ୍ଲବୀମାନଙ୍କୁ ସାହାଯ୍ୟ କରିବେ ନାହିଁ ଏବଂ ବିଦ୍ରୋହ ଦମନରେ ସରକାରଙ୍କୁ ସାହାଯ୍ୟ କରିବେ ।

ଯେଉଁମାନେ କୌଣସି ପ୍ରକାର ବି ଇଂରେଜମାନଙ୍କୁ ସାହାଯ୍ୟ କଲେ; ସୁରେନ୍ଦ୍ର ସେମାନଙ୍କ ଉପରେ ଆକ୍ରମଣ କଲେ । ଫଳରେ କେହି ସାହାଯ୍ୟ କରିବାର ସ୍ୱପ୍ନ ସୁଦ୍ଧା ଦେଖିପାରିଲେ ନାହିଁ ।

ରାଜଧାନୀ ସମ୍ବଲପୁରଠାରେ ମାତ୍ର ପାଞ୍ଚ ମାଇଲ ଦୂରରେ ରହି ରାତିରେ ରାଜଧାନୀ ଆକ୍ରମଣ କରିବାକୁ ଗୋଳାବାରୁଦ ବୃଷ୍ଟି କରିବାକୁ ଲାଗିଲେ ।

ସେତେବେଳେ ରେଢ଼ାଖୋଲ, ବାମଣ୍ଡା, ଅନୁଗୁଳ, ପାଟଣା, ଖଡ଼ିଆଳ, ବୌଦ, କନ୍ଧମାଳରେ ମଧ୍ୟ ଏହି ବିଦ୍ରୋହର ଧ୍ୱନି ଶୁଣା ଯାଉଥିଲା । ବାମଣ୍ଡାର ଶ୍ରୀକୃଷ୍ଣ ବେହେରାଙ୍କ ପ୍ରକାଶ୍ୟ ବିଦ୍ରୋହକୁ ବାମଣ୍ଡା ରାଜା ଦମନ କରି ନପାରି ଇଂରେଜଙ୍କ କୋପଦୃଷ୍ଟିରେ ପଡ଼ିଥିଲେ । କନ୍ଧମାଳର ତହସିଲଦାର ଦଳେ ସୀବନ୍ଦୀ ପାଇକଙ୍କ ସାହାଯ୍ୟରେ ବିଦ୍ରୋହ ଦମନ କରି ନ ପାରି ଇଂରେଜ ସାହାଯ୍ୟ ଲୋଡ଼ିଥିଲେ । ହେଲେ ସମ୍ବଲପୁର ଅବରୋଧ ଯୋଗୁଁ ସେ କୌଣସି ସାହାଯ୍ୟ ପାଇ ପାରି ନଥିଲେ । ସିଂହଭୂମର ପୋଡ଼ାହାଟରେ ଅର୍ଜୁନ ସିଂହ ବିପ୍ଲବ ତେଜାଇଥିଲେ । ହଜାରୀବାଗରୁ ଫେରିଲା ବେଳେ ଗାଙ୍ଗପୁରର ତେଲିଆଠାରେ ସୁରେନ୍ଦ୍ରଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ଚାରିଆଡ଼େ ସୁରେନ୍ଦ୍ର ସମର୍ଥନର ଲହର ଉଠିଥିଲା । ଇଂରେଜମାନେ କାହାକୁ ବିଶ୍ୱାସ କରିବା ଅବସ୍ଥାରେ ନଥିଲେ ।

ପ୍ରତିକୂଳ ଜଳବାୟୁ ଓ ଅକ୍ଲାନ୍ତ ପରିଶ୍ରମ ଫଳରେ ରୋଗଗ୍ରସ୍ତ ସୈନିକମାନଙ୍କ ଚିକିତ୍ସା ନିମନ୍ତେ କମିଶନର କକବର୍ଣ ଦୁଇ ଜଣ ଡାକ୍ତର ମୁର ଓ ଡା. ହାନସନଙ୍କୁ ଦଳେ ସୈନ୍ୟ ସହ ସମ୍ବଲପୁର ପଠାଇଲେ । ସେମାନେ ରେଢ଼ାଖୋଲର ରାମପୁର ପହଞ୍ଚିଲା ପରେ ସେଠୁ ବିଦ୍ରୋହୀଙ୍କ ଭୟରେ ସମ୍ବଲପୁର ଆସିବାର ସାହସ କଲେ ନାହିଁ । ସେମାନେ ଅଧିକା ସୈନ୍ୟ ପଠାଇବାକୁ କେପଟେନ୍ ଲିଙ୍କୁ ଖବର ପଠାଇ ଉତ୍ତର ପାଇଲେ ନାହିଁ ।

ରେଢ଼ାଖୋଲ ରାଜାଙ୍କ ଅନୁରୋଧରେ ସୈନ୍ୟ ସାହାଯ୍ୟ ଆସିବା ଯାଏଁ ଅପେକ୍ଷା ନ କରି ସେମାନେ ନଭେମ୍ବର ୨୫, ୧୮୫୭ ଦିନ ବାହାରି ପଡ଼ିଲେ । ଯୁଯୁମୁରା ନିକଟରେ ଲୋଇସିଂହା ଜମିଦାର ମଧୁ ଗଡ଼ତିଆଙ୍କ ନେତୃତ୍ୱରେ ବିଦ୍ରୋହୀମାନେ ଅତର୍କିତ ଆକ୍ରମଣ କଲେ । ଡା. ମୁର ପ୍ରାଣ ହରାଇଲେ । ଡା. ହାନସନ୍ ଅରଣ୍ୟରେ ଲୁଚି ପ୍ରାଣରକ୍ଷା କଲେ ।

ତହିଁ ଆରଦିନ ସମ୍ବଲପୁରରୁ ଯାଇଥିବା ଦଳେ ଦେଶୀୟ ସୈନ୍ୟ ଡା. ହାନସନଙ୍କୁ ଉଦ୍ଧାର କରି ରାମପୁର ଫେରିଲେ ।

କ୍ୟାପଟେନ୍ ଲି ଖବର ପାଇ ଦଳେ ମାନ୍ଦ୍ରାଜୀ ସୈନ୍ୟ ନେଇ ତାଙ୍କୁ ନେବାକୁ ରାମପୁର ଗଲା ବେଳେ ବିଦ୍ରୋହୀଙ୍କ ଆକ୍ରମଣର ଶିକାର ହୋଇ ତାଙ୍କର ବହୁ ସୈନ୍ୟ ପ୍ରାଣ ହରାଇଲେ ।

ଇଂରେଜଙ୍କ କଡ଼ା ତାଗିଦାରେ ଭୟଭୀତ ହୋଇ ରେଢ଼ାଖୋଲ ରାଜା ମଧୁ ଗଡ଼ତିଆ ଓ ତାଙ୍କର ତିନି ଜଣ ପ୍ରଧାନ ସହଯୋଗୀଙ୍କୁ ଇଂରେଜ ହାତରେ ସମର୍ପଣ କଲେ । ଲୋକଙ୍କ ଭିତରେ ରାଜାଙ୍କ ବିରୋଧରେ ତୀବ୍ର ଉତ୍ତେଜନା ପ୍ରକାଶ ପାଇଲା ।

୧୮୫୭ ଡିସେମ୍ବର ମାସ ସାରା ସମ୍ବଲପୁରରେ ଇଂରେଜ ଓ ବିଦ୍ରୋହୀଙ୍କ ମଧ୍ୟରେ ସଂଘର୍ଷ ଓ ଖଣ୍ଡଯୁଦ୍ଧ ଲାଗି ରହିଲା । ଏଥିରେ ଶହଶହ ବ୍ୟକ୍ତି ନିହତ ହେଲେ । ବହୁ ଗ୍ରାମ ଧ୍ୱଂସ ପାଇଲା ।

ନଭେମ୍ବର ମାସରେ ଦ୍ଦଳେ ବିପ୍ଳବୀ ରାତିରେ ସମ୍ବଲପୁର ସହର ଭିତରେ ପଶି ଦୁଇଜଣ ଇଂରେଜ ସୈନିକଙ୍କୁ ନିହତ ଓ ୮ଜଣକୁ ଆହତ କରି ନିର୍ବିଘ୍ନରେ ଫେରାର ହେବା ଘଟଣା ଇଂରେଜମାନଙ୍କୁ ବିଚଳିତ କରି ଦେଇଥିଲା । ବେଟ୍‌ସ ସୁରେନ୍ଦ୍ରଙ୍କ ଓ ଉଡ୍ ଉଦନ୍ତଙ୍କ ଅନୁସରଣରେ ଲାଗି ପଡ଼ିଲେ ।

ନାଗପୁରରୁ ଆସି ସୁରେନ୍ଦ୍ରଙ୍କ ତଲାସରେ ଥିବା କେପଟେନ୍ ଉଡ୍ ଡିସେମ୍ବର ୩୦ ତାରିଖ ଦିନ ସୁରେନ୍ଦ୍ର ଓ ଛବିଳଙ୍କୁ କୁଦୋପାଲି ନିକଟସ୍ଥ ଏକ ଆମ୍ବ ତୋଟାରେ ଦେଖି ପ୍ରାୟ ତିନି ଶହ ସୈନିକ ନେଇ ଆକ୍ରମଣ କରିଦେଲେ । ଉଡ୍ ଶରାହତ ହେଲେ ଓ ସୁରେନ୍ଦ୍ରଙ୍କ ତୀର ସରିଯିବାରୁ ସେଠାରୁ ସେ ଅପସରି ଗଲେ । ଛବିଳ ସାଏ ଘୋଡ଼ାରେ ଚଢ଼ି ପଳାୟନ କଲା ବେଳେ କୁଦୋପାଲି ଗାଁ ମଝିରେ ତାଙ୍କ ପିଠିରେ ଗୁଳି ବାଜିଲା । ସେ ଶହୀଦ ହେଲେ । ସେଦିନ କୁଦୋପାଲି ଯୁଦ୍ଧରେ ୫୦ଜଣ ବିଦ୍ରୋହୀ ନିହତ, ୧୯ଜଣ ଗିରଫ ଓ ବହୁ କ୍ଷତାହତ ହୋଇଥିଲେ ।

ଏ ବିଜୟରେ ଉନ୍ମତ୍ତ ଇଂରେଜ ମେଜର ବେଟ୍‌ସ ଉଦନ୍ତ ସାଏଙ୍କ ଝରଘାଟୀ ଅବରୋଧ କରି ଚତୁର୍ଦ୍ଦିଗର ମାଟିକାନ୍ଥ ତୋପରେ ଉଡ଼ାଇ ଦେଲେ । ସେତେବେଳେ ପାହାଡ଼ରେ ୧୪୦୦ ବିଦ୍ରୋହୀ ରହିଥିଲେ । ଘମାଘୋଟ ଯୁଦ୍ଧରେ ଅଗଣିତ ବିଦ୍ରୋହୀ ନିହତ ହେବା କଥା ଐତିହାସିକ ଶିବପ୍ରସାଦ ଦାଶ ଉଲ୍ଲେଖ କରିଛନ୍ତି । ବେଟସ୍ ସେମାନଙ୍କ ଅସ୍ତ୍ରଶସ୍ତ୍ର, ବନ୍ଧୁକ, ଗୋଲାବାରୁଦ ଆଦି ହସ୍ତଗତ କରି ଶବ ଗୁଡ଼ିକ ବୃକ୍ଷ ଶାଖାରେ ଝୁଲାଇ ଦେଲେ ।

୧୮୫୮ ଫେବୃଆରୀ ୧୨ ତାରିଖ ଦିନ କେପଟେନ୍ ଉଡ୍ ଓ ଉଡ୍‌ବ୍ରିଜ୍ ଏକ ଶକ୍ତିଶାଳୀ ବାହିନୀ ନେଇ ସିଂଘୋଡ଼ା ଘାଟୀ ଅଧିକାର କରିବାକୁ ଯାଉଥିଲା ବେଳେ ପାହାଡ଼ ଶ୍ରୀଗିଡ଼ାଠାରେ ବିଦ୍ରୋହୀଙ୍କ ଆକ୍ରମଣର ଶିକାର ହୋଇଥିଲେ । ଜମିଦାର ଜନାର୍ଦନ ସିଂହଙ୍କ ନେତୃତ୍ୱରେ ହୋଇଥିବା ଆକ୍ରମଣରେ ଇଂରେଜ ବାହିନୀ ଛିନ୍ନଛତ୍ର ହୋଇଥିଲା । ବଡ଼ବଡ଼ ପଥରଖଣ୍ଡ ଆଘାତରେ ଇଂରେଜମାନଙ୍କ ତୋପମାନ ଭାଙ୍ଗିଗଲା । ବହୁ ସୈନ୍ୟ ମଲେ । କେପଟେନ୍ ଉଡ୍ ପଳାଇ ଆତ୍ମରକ୍ଷା କଲାବେଳେ କେପଟେନ୍ ଉଡ୍‌ବ୍ରିଜ ନିହତ ହେଲେ । ତାଙ୍କ କଟାମୁଣ୍ଡ ଗଛ ଶାଖାରେ ଝୁଲାଇ ଦିଆଗଲା । ଏ ଯୁଦ୍ଧରେ ରାମଗଡ଼ ପଦାତିକ ବାହିନୀର ମାତ୍ର ଦୁଇଜଣ ସୈନିକ ରକ୍ଷା ପାଇଥିଲେ ।

ଫେବୃୟାରୀ ୧୪ରେ ସେନାପତି ଓ୍ୱାର୍ଲୋ କେପେଟେନ୍ ଉଡ୍‌ବ୍ରିଜଙ୍କ ଶବ ଉଦ୍ଧାର କରିବାକୁ ପାହାଡ଼ ଶ୍ରୀଗୀଡ଼ା ଆକ୍ରମଣ କଲାବେଳକୁ ସେଠି ଜଣେ ହେଲେ ବିଦ୍ରୋହୀ ନଥିଲେ ।

ସୁରେନ୍ଦ୍ର ସାଏ ପାହାଡ଼ଶ୍ରୀଗିଡ଼ା ଘାଟି ଛାଡ଼ି ସମସ୍ତ ବିଦ୍ରୋହୀ ସୈନିକଙ୍କ ସହ ଡେବ୍ରୀଗଡ଼ ଦୁର୍ଗରେ ଅବସ୍ଥାନ କଲେ । ଏହି ଦୁର୍ଗ ବିପଦବେଳେ ସମ୍ବଲପୁର ରାଜାମାନଙ୍କର ଆଶ୍ରୟ ସ୍ଥଳ ଥିଲା । ଦୁର୍ଗ ନିକଟସ୍ଥ ଖଣ୍ଡଜୋର ପରିଖା ପରି କାମ କରୁଥିଲା । ଦୁର୍ଗ ଭିତରୁ ପଳାୟନ ପାଇଁ ଗୁପ୍ତପଥ ମଧ୍ୟ ଥିଲା । ନିବିଡ଼ ଅରଣ୍ୟର ଏ ଦୁର୍ଗ ଥିଲା ଅପ୍ରବେଶ୍ୟ ।

କେପଟେନ୍ ସେକ୍ସପିୟର ସେହି ମାସ ବ୍ୟାପକ ଗୋଳାବାରୁଦ ବାହିନୀ ନେଇ ସିଂଘୋଡ଼ା ଘାଟୀ ଆକ୍ରମଣ କଲେ । ହଟେ ସିଂହଙ୍କ ନେତୃତ୍ୱରେ ବିଦ୍ରୋହୀମାନେ ଗୋଳା ବୃଷ୍ଟି ବେଳେ ପଥର ତଳେ ଲୁଚି ରହିଲେ । ଏଥିରେ ମାତ୍ର ୧୧ଜଣ ବିଦ୍ରୋହୀ ନିହତ ହୋଇଥିଲେ । ହଟେ ସିଂହଙ୍କ ଛାତିରେ ଏକ ପଥର ଖଣ୍ଡ ବାଜି ସେ ମୂର୍ଚ୍ଛିତ ହେଲେ । ସୁରେନ୍ଦ୍ର ପୁଣି ସିଂଘୋଡ଼ା ଓ ନିଶାଘାଟି ଉଦ୍ଧାର କରି କୁଂଜଲ ସିଂହ ଓ ବୈରୀ ସିଂହଙ୍କୁ ଘାଟୀରେ ଅବସ୍ଥାପିତ କଲେ ।

ଇଂରେଜମାନେ ଏଥରକ କିଲ୍ଲାର ଚାରିଆଡ଼େ ଓ ଆଖପାଖ ଗଡ଼ଜାତରେ କଠୋର ବ୍ୟବସ୍ଥା ଲାଗୁ କରି ବିଦ୍ରୋହ ଦମନର ଚେଷ୍ଟା କଲେ । ମଧ୍ୟପ୍ରଦେଶ ନିକଟସ୍ଥ ଗଡ଼ଜାତ, ପାଟଣା, ଖଡ଼ିଆ, ବାମଣ୍ଡା ଆଦିରେ ବିଦ୍ରୋହ ବ୍ୟାପିଥିଲା ।

ଜେନେରାଲ ଉଇଣ୍ଡହାମ ବାମଣ୍ଡା ବିପ୍ଲବର ଘାଟୀମାନ ଘେରାଉ କଲେ । ଅନେକ ଗାଁଗଣ୍ଡା ପୋଡ଼ି ବହୁ ଲୋକଙ୍କୁ ହତ୍ୟା କରାଗଲା । କଲିକତା-ବମ୍ବେ ଡାକ ରାସ୍ତା ଉଦ୍ଧାର କରାଗଲା । ବିପ୍ଲବୀ ନେତାମାନେ ପ୍ରାଣଦଣ୍ଡ ପାଇଲେ ।

ଘୁମୁସର, ବୌଦ ଆଦି ଅଞ୍ଚଳରୁ ପାଇକ ଅଣାଯାଇ ସମ୍ବଲପୁରରେ ବିଦ୍ରୋହ ଦମନ କାର୍ଯ୍ୟରେ ଲଗା ଯାଇଥିଲା ।

କେପଟେନ୍ ଲିଙ୍କୁ ସମ୍ବଲପୁରରୁ ପ୍ରତ୍ୟାହାର କରି ନିଆଯିବା ପରେ ସେନାପତି କର୍ଣ୍ଣଲ ଫର୍ଷ୍ଟରଙ୍କୁ କମିଶନର କ୍ଷମତା ଦେଇ ସମ୍ବଲପୁର ଶାସନ ଦାୟିତ୍ୱ ଦିଆ ଯାଇଥିଲା । ମାର୍ଚ୍ଚ ୨୯, ୧୮୫୮ ଦିନ ସେ ସମ୍ବଲପୁରରେ ଆତଙ୍କରାଜ ଚଳାଇଲେ । ଏତେବେଳକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅବସାନ ହୋଇଥିବାରୁ ଇଂରେଜମାନେ ସମ୍ବଲପୁର ଆନ୍ଦୋଳନ ସଂପୂର୍ଣ୍ଣ ଦମନ କରିବାର ସୁଯୋଗ ପାଇଥିଲେ । ଭାରତର ବିଭିନ୍ନ ସ୍ଥାନରୁ ସମ୍ବଲପୁରରେ ସୈନ୍ୟ ସମାବେଶ ହେଲା । କଟକ, କଲିକତା, ନାଗପୁର ଯାଇଥିବା ପ୍ରଧାନ ରାସ୍ତାରେ ତିନୋଟି ବିଶାଳ ବାହିନୀ ରଖିଲେ । ଏଗାରଟି ଘାଟୀରେ ରାମଗଡ଼ ପଦାତିକ ଓ ସିବନ୍ଦୀ ଛାଉଣୀ ରହିଥିଲା ।

କର୍କବର୍ଣ୍ଣ ବିଦ୍ରୋହରେ ଯୋଗ ଦେଉଥିବା ଲୋକଙ୍କୁ କଠୋର ଦଣ୍ଡ, ସଂପତ୍ତି ବାଜ୍ୟାପ୍ତି କରିବାର ଧମକ ଦେଲା ବେଳେ ଆତ୍ମସମର୍ପଣକାରୀଙ୍କୁ କ୍ଷମା ଘୋଷଣା କଲେ । ତାଙ୍କର ଏ ଘୋଷଣା ନିଷ୍ଫଳ ହେଲା ।

ଇଂରେଜମାନେ ଏହା ଫଳରେ ଆହୁରି ଉଗ୍ର ହୋଇଉଠିଲେ । ଫର୍ଷ୍ଟର ଘେଁଷ ଜମିଦାର ମାଧୋ ସିଂହଙ୍କୁ ଫାଶୀ ଦେଲେ । ଖରସଲ ଦୁର୍ଗ ଆକ୍ରମଣକରି ଜମିଦାରଙ୍କୁ ଫାଶୀ ଦେଲେ । ଭେଡ଼େନ ଜମିଦାରଙ୍କୁ ଯୁଦ୍ଧରେ ହତ୍ୟା କଲେ । କୋଲାବିରା ଆକ୍ରମଣ ହେଲା । ବିଦ୍ରୋହୀ ଜମିଦାର ଓ ଗୌନ୍ତିଆମାନଙ୍କ ରାଜ୍ୟ ବାଜ୍ୟାପ୍ତ ହେଲା । ଉଜ୍ଜ୍ୱଳ ସାଏଙ୍କୁ ଆଶ୍ରୟ ଦେବା ଅପରାଧରେ ପାଟଣା ରାଜାଙ୍କୁ ଜୋରିମାନା ହେଲା । ସେ ଉଜ୍ଜଳଙ୍କୁ ସମର୍ପଣ କରିବାରୁ ବିନା ବିଚାରରେ ତାଙ୍କୁ ଫାଶି ଦିଆଗଲା । ଘେଁଷ ଜମିଦାରଙ୍କ ଭାଇ ବୈରୀ ସିଂହ ଧରାପଡ଼ି ଫାସି ପାଇଲେ । ବରଗଡ଼ ଜମିଦାରୀ ରାୟଗଡ଼ ହାତରେ ପ୍ରତ୍ୟର୍ପଣ କଲେ ।

ବିଦ୍ରୋହୀମାନେ ସମ୍ବଲପୁରର ସ୍ୱାଧୀନତା, ସୁରେନ୍ଦ୍ର ସାଏଙ୍କୁ ରାଜଗାଦୀ, ଖଜଣା ବନ୍ଦ, ଇଂରେଜମାନଙ୍କୁ ସମ୍ବଲପୁରରୁ ବିତାଡ଼ନ ପାଇଁ ପ୍ରଚାର ଚ଼ଲାଇଲେ ।

୧୮୬୧ ଏପ୍ରିଲ ମାସରେ ମେଜର ଇଂପେ ସମ୍ବଲପୁର ଡେପୁଟି କମିଶନର ଭାବେ ଯୋଗ ଦେଇ କ୍ଷମାନୀତି ଗ୍ରହଣ କଲେ । ବିଦ୍ରୋହୀମାନେ ଆତ୍ମସମର୍ପଣ କଲେ ସେମାନଙ୍କୁ କ୍ଷମା ଦିଆଯିବ ବୋଲି ସେହି ବର୍ଷ ସେପ୍ଟେମ୍ବର ୨୪ ଓ ଅକ୍ଟୋବର ୧୧ରେ ଘୋଷଣା ନାମା ପ୍ରଚାର କଲେ ।

ସେ ଘୋଷଣା କଲେ ଯେ ସୁରେନ୍ଦ୍ର ଆତ୍ମସମର୍ପଣ କଲେ ତାଙ୍କର ସମସ୍ତ ଅପରାଧ କ୍ଷମା କରାଯିବ । ଆତ୍ମ ସମର୍ପଣକାରୀ, ବିପ୍ଳବୀମାନଙ୍କୁ କୌଣସି ପ୍ରକାର ଦଣ୍ଡ ଦିଆଯିବ ନାହିଁ । ବାଜ୍ୟାପ୍ତ ସଂପତ୍ତି ଫେରାଇ ଦିଆଯିବ ।

ଏ ଘୋଷଣାରେ ସ୍ୱଳ୍ପ ସଂଖ୍ୟକ ଧନୀ ଜମିଦାର, ଗୌନ୍ତିଆ, ପ୍ରଜା ସୁରେନ୍ଦ୍ରଙ୍କ ପକ୍ଷ ଛାଡ଼ି ଆତ୍ମ ସମର୍ପଣ କଲେ । ସେମାନଙ୍କ ବାଜ୍ୟାପ୍ତ ସଂପତ୍ତି ଫେରସ୍ତ କରାଗଲା । ଆର୍ଥିକ ପୁରସ୍କାର ମଧ୍ୟ ମିଳିଲା । ହେଲେ କୌଣସି ବିଦ୍ରୋହୀ ନେତା ଆତ୍ମସମର୍ପଣ କଲେ ନାହିଁ ।

ଘେଁଷର ହଟେ ସିଂହ, କୁଂଜଲ ସିଂହ, ଲଖନପୁରର କମଳ ସିଂହ, ଖଗେଶ୍ୱର ସିଂହ ଓ ନୀଳାମ୍ବର ସିଂହଙ୍କ ବ୍ୟତୀତ ଅନ୍ୟାନ୍ୟ ଜମିଦାରମାନେ ଆତ୍ମସମର୍ପଣ କରି ଥିଲେ ।

ସୁରେନ୍ଦ୍ର ଏହାର ସମାନ୍ତରାଳ ଘୋଷଣା କରି କହିଲେ ଯେ ସେ ବ୍ରିଟିଶ ସରକାରଙ୍କ କ୍ଷମା ପ୍ରାର୍ଥୀ ନୁହନ୍ତି । ନିଜ ଜମିଦାରୀ ଯାଉ କି ରହୁ ସେଥିପାଇଁ ଚିନ୍ତା ନାହିଁ । ସମ୍ବଲପୁର ଭୂମି ଓ ସିଂହାସନର ସ୍ୱାଧୀନତା ପାଇଁ ସେ ପ୍ରାଣପାତ କରିବାକୁ ମଧ୍ୟ ପ୍ରସ୍ତୁତ ।

ମେଜର ଇଂପେଙ୍କ ବାରମ୍ବାର ଅନୁରୋଧ ବ୍ୟର୍ଥ ହେଲା । ଇଂପେ ସୁରେନ୍ଦ୍ରଙ୍କୁ ବହୁ ଲୋକଙ୍କୁ ଟଙ୍କା ଲାଞ୍ଚ ଦେଇ ବିଦ୍ରୋହରୁ ନିବୃତ୍ତ କଲେ । ଏମାନଙ୍କ ମଧ୍ୟରେ ରଂପେଲାର ଲୋକନାଥ ଗଡ଼ତିଆ ଓ ଅର୍ଡାର ମୃତ୍ୟୁଂଜୟ ପାଣିଗ୍ରାହୀ ଗୌନ୍ତିଆ ଦ୍ୱୟ ଅନ୍ୟତମ । ଲୋକନାଥଙ୍କ ୧୮୫୭ର ପ୍ରାଣଦଣ୍ଡାଦେଶ ପ୍ରତ୍ୟାହୃତ ହେବା ସହ ୧୯ଖଣ୍ଡ ଗ୍ରାମ ୪୦ବର୍ଷ ନିମନ୍ତେ ଅଧା ଜମା ଧାର୍ଯ୍ୟରେ ଦିଆଯାଇଥିଲା । ସେମାନଙ୍କୁ କରମୁକ୍ତ ମଧ୍ୟ କରା ଯାଇଥିଲା ।

ଜାନୁୟାରୀ ୭, ୧୮୬୨ରେ ସୁରେନ୍ଦ୍ରଙ୍କ ପୁତ୍ର ମିତ୍ରଭାନୁ ଓ ଏହା ପରେ ଭାଇ ଉଦନ୍ତ ସାଏ ଓ ଧ୍ରୁବ ସାଏ ଆତ୍ମସମର୍ପଣ କଲେ ।

ସେନାପତି ଉଦନ୍ତଙ୍କ ଆତ୍ମସମର୍ପଣ ସୁରେନ୍ଦ୍ରଙ୍କ ମନରେ ବିଶେଷ ଆଘାତ ଦେଲା । ନିରୀହ ପ୍ରଜାମାନଙ୍କ ଉପରେ ହେଉଥିବା ପାଶବିକ ଅତ୍ୟାଚାର ବିଦ୍ରୋହୀଙ୍କ ମନରେ ଅଶେଷ ଯନ୍ତ୍ରଣା ଦେଉଥିଲା । ଜନସାଧାରଣ ମଧ୍ୟ ନିରାଶ ହୋଇ ବିଦ୍ରୋହୀମାନଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ ସହଯୋଗ କରିବାରୁ ବିରତ ହେବାକୁ ଲାଗିଲେ । ଭାରତର ବିଭିନ୍ନ ସ୍ଥାନରୁ ସୈନିକମାନେ ଆସି ସମ୍ବଲପୁରରେ ଏକତ୍ରିତ ହେବାକୁ ଲାଗିଲେ ।

ତଥାପି ସୁରେନ୍ଦ୍ର ଓ ଲଖନପୁର ଜମିଦାର କମଳ ସିଂହ ଆତ୍ମସମର୍ପଣ କଲେ ନାହିଁ । ସେଥିରେ ବିଚଳିତ ହୋଇ ଇଂପେ ଉଦନ୍ତ ସାଏଙ୍କୁ ଦୂତରୂପେ ଡେବ୍ରୀଗଡ଼କୁ ପଠାଇ

ସେମାନଙ୍କୁ ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇବାର ଚେଷ୍ଟା କଲେ । ସୁରେନ୍ଦ୍ର ନିରୀହ ସ୍ତ୍ରୀବାଳକବୃଦ୍ଧଙ୍କ ଉପରେ ହେଉଥିବା ପାଶବିକ ଅତ୍ୟାଚାର ବନ୍ଦ କରି ତାଙ୍କ ନ୍ୟାଯ୍ୟ ସିଂହାସନ ପ୍ରଦାନର ପ୍ରତିଶ୍ରୁତି ଏବଂ ତାଙ୍କ ଦଳର ବିଦ୍ରୋହୀଙ୍କ ଖାଦ୍ୟ ଖର୍ଚ୍ଚ ପାଇଁ କିଛି ଟଙ୍କା ଦେଲେ ଆତ୍ମସମର୍ପଣର ଆଗ୍ରହ ପ୍ରକାଶ କଲେ ।

୧୮୬୨ ମେ ୪ରେ ଏ ଖବର ପାଇ ଇଂପେ ପ୍ରଥମେ ପାଞ୍ଚ ଶହ ଟଙ୍କା ପଠାଇ ଦେଇଥିଲେ । ସୁରେନ୍ଦ୍ର ଭୋକିଲା ବିଦ୍ରୋହୀଙ୍କ ମଧ୍ୟରେ ତାହା ବାଣ୍ଟି ଦେଇଥିଲେ ।

ସୁରେନ୍ଦ୍ର ଇଂପେଙ୍କ ପତ୍ର ପାଇ ବୁଝିପାରିଲେ ଯେ ଶକ୍ତି ବଳରେ ସିଂହାସନ ଆଉ ତାଙ୍କ ପକ୍ଷେ ସମ୍ଭବନୁହେଁ । ପାରିପାର୍ଶ୍ୱିକ ପରିସ୍ଥିତି ମଧ୍ୟ ତାଙ୍କର ପ୍ରତିକୂଳ ହୋଇ ସାରିଥିଲା । ସରକାର ନିଜର ସାମରିକ ଶକ୍ତି ଦୃଢ଼ୀଭୂତ କରି ସାରିଥିଲେ ।

ସେ ୧୮୬୨ ମେ ୧୬ତାରିଖ ଦିନ ସମ୍ବଲପୁର ବାହାରେ ଅରଣ୍ୟ ମଧ୍ୟରେ ଇଂପେଙ୍କ ସହ ଗୁପ୍ତ ଆଲୋଚ଼ନା କରି ଆତ୍ମସମର୍ପଣ ପାଇଁ ରାଜି ହେଲେ । ଇଂପେ ତାହା ସମ୍ମାନର ସହ ଗ୍ରହଣ କରି ଖୀଣ୍ଡା ଗ୍ରାମରେ ବାସ କରିବାକୁ ତାଙ୍କୁ, ଉଦନ୍ତ ଓ ଧ୍ରୁବ ସାଏଙ୍କୁ ଅନୁମତି ଦେଲେ । ତାଙ୍କୁ ବାର୍ଷିକ ୧୨୦୦ ଟଙ୍କା ପେନସନ ଓ ତାଙ୍କ ଉପରେ କୌଣସି ନିୟନ୍ତ୍ରଣ ନ ରଖିବାକୁ, ପରିବାର ଅନ୍ୟମାନଙ୍କୁ ପେନସନ୍ ଦେବାକୁ ସ୍ଥିର କରାଗଲା ।

ସୁରେନ୍ଦ୍ର ମେ ୧୬, ୧୮୬୨ ଦିନ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଲେ । ତଥାପି ବିପ୍ଳବର ଅବସାନ ଘଟିଲା ନାହିଁ ।

କଟକ ଅଧୀନରେ ରହିବା ଅପେକ୍ଷା ନାଗପୁର ଡିଭିଜନ ଅଧୀନରେ ରହିଲେ ବିପ୍ଳବ ଦମନ ସହଜତର ହେବା କଥା ଚିନ୍ତା କରି ୧୮୬୨ରେ ସମ୍ବଲପୁରକୁ ମଧ୍ୟପ୍ରଦେଶ ଅନ୍ତର୍ଗତ କରାଗଲା ।

ଏହି ସମୟରେ ବିଦ୍ରୋହ ଚ଼ରମ ଅବସ୍ଥାରେ ପହଞ୍ଚିଥିଲା । ନାଗପୁର ଚିଫ୍ କମିଶନର ନିଜେ ପରସ୍ଥିତି ପର୍ଯ୍ୟବେକ୍ଷଣ କରିବାକୁ ସମ୍ବଲପୁର ଆସିଲେ । ସେତେବେଳେ ସମ୍ବଲପୁରର ବହୁ ଜମିଦାର, ଗୌନ୍ତିଆ ଓ ଜନ୍‌ସାଧାରଣ ସୁରେନ୍ଦ୍ରଙ୍କୁ ସିଂହାସନ ଦେବାପାଇଁ ତାଙ୍କୁ ଦରଖାସ୍ତ ଦେଲେ । ଏହି ଦରଖାସ୍ତରେ ଇଂରେଜ ଶାସନରେ ଦେଶରେ ସୁଖଶାନ୍ତି ନଥିବା, ରାଜସ୍ୱ ବୃଦ୍ଧି, ବିଭିନ୍ନ ରକମ ଟିକସ, ଶୁଳ୍କ, ଷ୍ଟାମ୍ପ ଡ୍ୟୁଟି ଜନସାଧାରଣଙ୍କୁ କଷ୍ଟ ଦେଉଥିବାରୁ ସୁରେନ୍ଦ୍ର ରାଜା ନ ହେଲେ ବିପ୍ଳବ ବନ୍ଦ ହେବ ନାହିଁ ବୋଲି ଉଲ୍ଲେଖ ଥିଲା । ହେଲେ ସେ କିଛି ଶୁଣିଲେ ନାହିଁ ।

ଟେଂପଲଙ୍କ ନିର୍ଦ୍ଦେଶରେ ନାରକୀୟ ଦମନଲୀଳା ଚାଲିଲା । ଇଂରେଜମାନେ ସ୍ଥାନୀୟ ରାଜ କର୍ମଚାରୀ, ଜନସାଧାରଣ କାହାକୁ ହେଲେ ବିଶ୍ୱାସ ନ କରି ସୁରେନ୍ଦ୍ରଙ୍କ ସମର୍ଥକ ମନେ କଲେ । ସେତେବେଳେ ଜେ.ଏନ୍.ବେରିଲ୍ ପୁଲିସ ମୁଖ୍ୟ ଥିଲେ ।

ଜନସାଧାରଣ ପୁଣି ଡେପୁଟି କମିଶନରଙ୍କୁ ଏକ ଦାବିପତ୍ର ଦେଇ ପୂର୍ବ ଦାବିପତ୍ର ଦୋହରାଇଲେ । ଏହା ଇଂରେଜମାନଙ୍କୁ ଆହୁରି ଉତ୍ୟକ୍ତ କରି ସେମାନଙ୍କ ହିତାହିତ ଜ୍ଞାନ ଲୋପ କରିଦେଲା । ଲୋକଙ୍କ ଉପରେ ନାରକୀୟ ନିର୍ଯ୍ୟାତନା ଚାଲିଲା । ଯାହାକୁ ସନ୍ଦେହ ହେଲା ତାକୁ ଗୁଳି କରାଗଲା ବା ଫାଶୀ ଖୁଣ୍ଟରେ ଝୁଲା ହେଲା । ସାମାନ୍ୟତମ ସନ୍ଦେହରେ ଗାଁ ଲୁଟପାଟ କରି ପୋଡ଼ି ଛାରଖାର କରାଗଲା । ଏ ଗଣସଂହାରରୁ ଆବାଳବୃଦ୍ଧବନୀତା କେହି ରକ୍ଷା ପାଇଲେ ନାହିଁ । ଗ୍ରାମକୁ ଗ୍ରାମ ଜନଶୂନ୍ୟ ହେଲା । ଲୋକେ ଘରଦ୍ୱାର ରକ୍ଷା ପାରିଲେ ନାହିଁ । ଗ୍ରାମକୁ ଗ୍ରାମ ଜନଶୂନ୍ୟ ହେଲା । ଲୋକେ ଘରଦ୍ୱାର ଗାଁଗଣ୍ଡା ଛାଡ଼ି ପଳାୟନ କଲେ । ବିଦ୍ରୋହୀମାନଙ୍କ ଘର, ପରିବାର, ସନ୍ତାନସନ୍ତତି, ସ୍ତ୍ରୀ, ଝିଅମାନଙ୍କ ଉପରେ ମଧ୍ୟ ଅକଥନୀୟ ଅତ୍ୟାଚାର ଚାଲିଲା । ସର୍ ରିଚାର୍ଡ ଟେଂପୁଲଙ୍କ ଏକ ପତ୍ରରୁ ତତ୍‌କାଳୀନ ବିଦ୍ରୋହର ଭୟାବହତା ଜଣାପଡ଼େ । ''ଦଳ ଦଳ ହୋଇ ବିପ୍ଳବୀମାନେ ଦେଶକୁ ବ୍ୟତିବ୍ୟସ୍ତ କରି ଦେଉଛନ୍ତି । ଇଂରେଜ ସରକାର ସେମାନଙ୍କ ଗଣ୍ଡଗୋଳ ଦମନ କରିବାକୁ ସଂପୂର୍ଣ୍ଣ ଅସମର୍ଥ । ପ୍ରକୃତରେ ଏହା ଜଣା ପଡ଼ିଲାଣି ଯେ ଆଇନଗତ ଉତ୍ତରାଧୀକାରୀ (ସୁରେନ୍ଦ୍ର ସାଏ)ଙ୍କୁ ଗାଦିରେ ନ ବସାଇଲେ ଲୋକମାନେ ଶାନ୍ତି, ଶୃଙ୍ଖଳା ଆଶା କରି ନପାରନ୍ତି । ସେ (ସୁରେନ୍ଦ୍ର) ହେଉଛନ୍ତି ଏକମାତ୍ର ବ୍ୟକ୍ତି, ଯିଏ ବିଦ୍ରୋହ ଦମନ କରିପାରିବେ ।'' -ନାଗପୁର ସେକ୍ରେଟେରୀଏଟ୍‌ର ବି.ସି.ପଲିଟିକାଲ ୧୬-୧୮୬୫

୧୮୬୩ରେ ମେଜର ଇଂପେଙ୍କ ମୃତ୍ୟୁପରେ ମେଜର କମ୍ବର୍ଲିଜ୍ ଡେପୁଟି କମିଶନର ହେଲେ । ବେରିଲଙ୍କ ସହ ମିଶି ସେ ବିଦ୍ରୋହୀମାନଙ୍କ ବିରୁଦ୍ଧରେ କଠୋର ପଦକ୍ଷେପ ନେଲେ ।

ବିଦ୍ରୋହୀମାନଙ୍କ ପ୍ରତି ଇଂପେଙ୍କ ଉଦାରନୀତି ଏହି ଅଧିକାରୀମାନଙ୍କୁ ସୁହାଇଲା ନାହିଁ । ସୁରେନ୍ଦ୍ର ସାଏଙ୍କୁ ବନ୍ଦୀ ନ କରି ପେନସନ ଦେବା ନୀତି ଇଂରେଜ ସରକାର ଆଖିରେ ଦୁର୍ବଳତା ଥିଲା । ଜନସାଧାରଣଙ୍କ ମନରେ ମଧ୍ୟ ଧାରଣା ହେଲା ଯେ ସରକାର ତାଙ୍କୁ ଓ ଅନ୍ୟମାନଙ୍କୁ ଦଣ୍ଡ ଦେବାକୁ ଭୟ କରୁଛନ୍ତି । ନେତାମାନଙ୍କୁ ଦଣ୍ଡିତ ନ କଲାଯାଏଁ ନିଜ ଭାବମୂର୍ତ୍ତି ପ୍ରତିଷ୍ଠା ନ ହେବାର ଭୟ ସେମାନଙ୍କୁ ଉଦ୍‌ପ୍ରେରିତ କଲା । ଏହା ସେମାନଙ୍କୁ ଆହୁରି ହିଂସ୍ର କଲା । ସମାନ୍ତର ଭାବରେ ବିଦ୍ରୋହୀମାନେ ମଧ୍ୟ ଅଧିକ ଉଗ୍ର ହୋଇ ଉଠିଲେ । ଏତିକି ବେଳେ ରାୟପୁର କମିଶନର କର୍ଣ୍ଣଲ ବାଲଶେନଙ୍କୁ ଚିଫ କମିଶନର ସମ୍ବଲପୁର ପଠାଇଲେ । ସେପଟେ ଘେଁଷ, ଲଖନପୁର ଜମିଦାରମାନଙ୍କ ବିଦ୍ରେହ ଉଗ୍ର ହୋଇ ଚାଲିଥିଲା । ବିଭିନ୍ନ ଗଡ଼ଜାତର ରାଜା, ଜମିଦାର ଓ ଜନତା ସମ୍ବଲପୁରର ମଧ୍ୟପ୍ରଦେଶ ସହ ମିଶ୍ରଣକୁ ବିରୋଧ

କଲେ । ସୁରେନ୍ଦ୍ରଙ୍କ୍ ରାଜଗାଦି ଦେବାର ଦାବିର ଲହର ଉଠିଲା । ଆବେଦନ କରାଗଲା । ଦାବି ହେଲା ।

ସରକାର ବିଦ୍ରୋହ ଦମନରେ ବିଫଳ ହୋଇ ଚିନ୍ତା କଲେ ଯେ ଏ ସବୁ ପଛରେ ସୁରେନ୍ଦ୍ରଙ୍କ ହାତ ରହିଛି । ସୁରେନ୍ଦ୍ର ଲୋକଙ୍କ ସାମ୍ନାରେ ଥିବା ପର୍ଯ୍ୟନ୍ତ ବିପ୍ଳବ ବନ୍ଦ ହେବ ନାହିଁ କି ଲୋକେ ଶାନ୍ତ ହେବେ ନାହିଁ । ତେଣୁ ସରକାର ସୁରେନ୍ଦ୍ରଙ୍କୁ ବନ୍ଦୀ କରିବା ପାଇଁ ଗୁପ୍ତ ନିଷ୍ପତ୍ତି ନେଲେ । ଏ କଥା କେବଳ ଚିଫ୍ କମିଶନର, କମିଶନର ଓ ଡେପୁଟି କମିଶନରଙ୍କ ମଧ୍ୟରେ ସୀମିତ ରହିଲା ।

କମ୍ବର୍ଲିଜ୍ ଓ ପୋଲିସ ଡେପୁଟି ଇନସପେକ୍ଟର ଜେନେରାଲ ମେଜର ଷ୍ଟୁଆର୍ଟ ସୁରେନ୍ଦ୍ର ଓ ତାଙ୍କ ପରିବାର ବର୍ଗଙ୍କୁ ଗିରଫ କରିବାର ଯୋଜନା କଲେ । ଏଥିରେ ବେରିଲଙ୍କ ମଧ୍ୟ ସହଯୋଗୀ କରା ଯାଇଥିଲା । ଆତ୍ମସମର୍ପଣ କରିଥିବା ସମସ୍ତ ବିଦ୍ରୋହୀମାନଙ୍କୁ ଏକ ସମୟରେ ଗିରଫ କରିବାର ଗୁପ୍ତ ଯୋଜନା ମୂଳରେ ଥିଲା । ସେମାନେ ସୁରେନ୍ଦ୍ର ଓ ତାଙ୍କ ସହଯୋଗୀମାନଙ୍କ ଠାରୁ ଏକ ବଡ଼ ଧରଣର ବିଦ୍ରୋହର ଆଶଙ୍କା କରୁଥିଲେ ।

ଚିଫ୍ କମିଶନର କର୍ଣ୍ଣଲ ଏଲିଏଟଙ୍କ ଦ୍ୱାରା ୧୮୬୪ ଜାନୁୟାରୀ ୨୩ରେ ଯୋଜନାଟି ଅନୁମୋଦିନ ହେଲା । ଷ୍ଟୁଆର୍ଟ ଏଥିପାଇଁ ରୂପ ସିଂହଙ୍କ ବଂଶଧର ପୋଲିସ ସବ୍‌ଇନ୍‌ସପେକ୍ଟର ମୋହନ ସିଂହଙ୍କୁ ବିଶ୍ୱାସରେ ନେଲେ । ମୋହନ ସିଂହ ଏଥିପାଇଁ ସୁରେନ୍ଦ୍ରଙ୍କ ପରିଚିତ ସମ୍ବଲପୁରର ନିଶାଦ୍ରବ୍ୟ ବିକ୍ରେତା ଦୟାନିଧି ମେହେରଙ୍କୁ ଗୁପ୍ତଚର ନିଯୁକ୍ତ କରିଥିଲେ ।

ଜାନୁଆରୀ ୨୩ ଥିଲା ପୌଷପୂର୍ଣ୍ଣିମା । ଦେବୀଙ୍କ ପ୍ରସାଦ ନାମରେ ଅତିବିଶ୍ୱସ୍ତ ସହଯୋଗୀ ଦୟାନିଧି ସେ ରାତିରେ ସୁରେନ୍ଦ୍ର ଓ ତାଙ୍କ ଆତ୍ମୀୟମାନଙ୍କୁ ମାତ୍ରାଧିକ ନିଶାଦ୍ରବ୍ୟପୂର୍ଣ୍ଣ ଖାଦ୍ୟ ଖୁଆଇବା ଫଳରେ ସେମାନଙ୍କୁ ଅଚେତନ ଅବସ୍ଥାରେ ଗିରଫ କରାଗଲା । ଦୟାନିଧିଙ୍କୁ ଇଂରେଜ ସରକାର ପକ୍ଷରୁ 'ନିମକହରାମ ଜାଗିରି' ପୁରସ୍କାର ମିଳିଲା ।

ଖବର ପାଇ ମେଜର କମ୍ବର୍ଲିଜ, ବାଲମେନ୍, ଷ୍ଟୁଆର୍ଟ, ମୋହନ ସିଂହ ସଦଳବଳ ଯାଇ ସୁରେନ୍ଦ୍ର, ଉଦନ୍ତ, ଧ୍ରୁବ, ମେଦିନୀ, ମିତ୍ରଭାନୁ ଓ ଧ୍ରୁବ ସାଏଙ୍କ ଚାରି ପୁଅଙ୍କୁ ଗିରଫ କରି ରାତାରାତି ସମ୍ବଲପୁର ଜେଲକୁ ନେଇ ଆସିଲେ ।

ମେଜର କମ୍ବର୍ଲିଜ ମାର୍ଚ୍ଚ ୧୨, ୧୮୬୪ରେ ଛତିଶଗଡ଼ କମିଶନର ବାଲଶେନଙ୍କୁ ଏକ ଚିଠି ଲେଖି ଜଣାଇଲେ ଯେ ଜମିଦାର ହଟ୍ଟେ ସିଂହଙ୍କ ଠାରୁ ଗୁପ୍ତ ସାହାଯ୍ୟ ପାଇ

କୁଂଜଳ ସିଂହ ସମ୍ବଲପୁର ବିଦ୍ରୋହକୁ ଉଜ୍ଜୀବିକ କରି ରଖିଛନ୍ତି । ଫଳରେ ହଟେ ସିଂହ ଓ ପରେ ପରେ କମଳ ସିଂହ, ଖଗେଶ୍ୱର ସିଂହ, ନୀଳାମ୍ବର ସିଂହଙ୍କୁ ଗିରଫ କରାଗଲା । ଲୋକନାଥ ଗଡ଼ତିଆ, ମୃତ୍ୟୁଂଜୟ ପାଣିଗ୍ରାହୀ, ପଦ୍ମନାଭ ଗୁରୁ, ଜଗବନ୍ଧୁ ହୋତା, ପ୍ରଭାକର ମିଶ୍ର ଆଦି ମଧ୍ୟ ବନ୍ଦୀ ହେଲେ ।

ସୁରେନ୍ଦ୍ରଙ୍କ ଗିରଫଦାରୀ ପରେ ସମସ୍ତଙ୍କୁ ରାୟପୁରକୁ ପଠାଇ ଦିଆଗଲା । ଛତିଶଗଡ଼ କମିଶନର ରାଜଦ୍ରୋହ ଅପରାଧର ପ୍ରାଥମିକ ତଦନ୍ତ ପରେ ଧ୍ରୁବ ସାଏଙ୍କ ଚାରିପୁତ୍ରଙ୍କୁ ଖଳାସ କରି ଦିଆଗଲା । ଅନ୍ୟମାନଙ୍କୁ ସେସନ୍‌ସ କୋର୍ଟକୁ ପଠାଗଲା ।

ସେସନ୍‌ସ କୋର୍ଟରେ ରାଜଦ୍ରୋହ ବା ଯୁଦ୍ଧ ଉଦ୍ୟମ ପ୍ରମାଣିତ ହୋଇ ପାରିଲାନାହିଁ । ତେଣୁ ଭାରତ ସରକାରଙ୍କୁ ଅନୁମତି କ୍ରମେ ଭାରତ ରକ୍ଷା ଆଇନ-୧୮୧୮ର ତୃତୀୟ ରେଗୁଲେସନ୍ ଅନୁସାରେ ନାଗପୁର ଚିଫ୍ କମିଶନର ସୁରେନ୍ଦ୍ର, ଉଦନ୍ତ, ଧ୍ରୁବ, ମେଦିନୀ, ଲୋକନାଥ ଗଡ଼ତିଆ ଆଦି ୧୦ ଜଣଙ୍କୁ ଭୀଷଣ ରାଜନୈତିକ ଚକ୍ରାନ୍ତକାରୀ ରୂପେ ଯାବଜ୍ଜୀବନ ଓ ୪ଜଣଙ୍କୁ ସାତ ବର୍ଷ ଲେଖାଏଁ କାରା ଦଣ୍ଡାଦେଶ ଦେଲେ ।

ଜୁନ୍ ୨୩, ୧୮୬୪ର ଏ ଦଣ୍ଡାଦେଶ ବିରୁଦ୍ଧରେ ବିଦ୍ରୋହୀମାନେ ଗର୍ଭର୍ଣ୍ଣର ଜେନେରାଲଙ୍କ ନିକଟରେ ଅପିଲ କଲେ । ଜୁଡ଼ିସିଏଲ କମିଶନର ଜନ୍ ସ୍କାରଲେଟ୍ କେଂପବେଲ ଶୁଣାଣୀ କରି ଇଂରେଜ ସରକାର ପକ୍ଷରୁ ସଂଗୃହୀତ ଅଧିକାଂଶ ପ୍ରମାଣ ମିଥ୍ୟା ଓ ତଥ୍ୟାବଳି ଜାଲ ବୋଲି ଦର୍ଶାଇ ସରକାର ନିଜ ବିଫଳତା ଢାଙ୍କିବାକୁ ଏଭଳି କାରବାର କରିଥିବାର ପ୍ରକାଶ କଲେ । ହେଲେ ତାହା ଭାରତ ସରକାର ଗ୍ରହଣ କଲେ ନାହିଁ । ପୂର୍ବ ଫଇସଲା ବଳବତ୍ତର ରହିଲା ।

ସମସ୍ତଙ୍କୁ ପ୍ରଥମେ ନାଗପୁର ଜେଲରେ ରଖାଗଲା ପରେ ୧୮୬୫ରେ ମଧ୍ୟପ୍ରଦେଶର ଅସିରଗଡ଼କୁ ସ୍ଥାନାନ୍ତରିତ କରାଗଲା ।

ଅସିରଗଡ଼ ଜେଲରେ ଉଦନ୍ତ ସାଏ, ଲୋକନାଥ ଗଡ଼ତିଆ, ମୃତ୍ୟୁଂଜୟ ପାଣିଗ୍ରାହୀଙ୍କ ମୃତ୍ୟୁହେଲା । ଜେଲରେ ନାରକୀୟ ନିର୍ଯ୍ୟାତନା ମଧ୍ୟରେ ସୁରେନ୍ଦ୍ର ଦୃଷ୍ଟିଶକ୍ତି ହରାଇ ଅନ୍ଧ ହୋଇଗଲେ । ଫେବୃଆରୀ ୨୮, ୧୮୮୪ରେ ସେ ଜେଲରେ ହିଁ ଶେଷ ନିଶ୍ୱାସ ତ୍ୟାଗ କଲେ ।

୧୮୭୬ରେ ସୁରେନ୍ଦ୍ରଙ୍କ ମୃତ୍ୟୁ ପରେ ମିତ୍ରଭାନୁ ସାଏ ବଣାଇ ରାଜାଙ୍କ ସଦାଚାର ଜାମିନରେ ମୁକ୍ତ ହୋଇ ବଣାଇ ଆସିଲେ । ସେ ୧୯୦୭ରେ ଖିଣ୍ଡାରେ ବସବାସ କରିବାକୁ ଅନୁମତି ପାଇଲେ । ଧ୍ରୁବ ସାଏ ଗାଙ୍ଗପୁର ରାଜାଙ୍କ ସଦାଚାର ଜାମିନରେ ଖଳାସ ପାଇଲେ ।

ସମ୍ବଲପୁରରେ କମଳ ସିଂହଙ୍କ ପରେ ଆଉ ବିଦ୍ରୋହର ସମ୍ଭାବନା ନ ଥିବାରୁ ପଦ୍ମନାଭ ଗୁରୁ ଓ ଅନ୍ୟ ରାଜନୈତିକ ବନ୍ଦୀମାନଙ୍କୁ ଛାଡ଼ି ଦିଆ ଯାଇଥିଲା ।



ସୁରେନ୍ଦ୍ର ଥିଲେ ଅତିମାତ୍ରାରେ ଜଣେ ସ୍ୱାଧୀନ ଓ ସ୍ୱାଧୀକାରଚେତା । ସମ୍ବଲପୁର ସିଂହାସନ ତାଙ୍କ ଅଭୀଷ୍ଟ ନ ଥିଲା । ସେ ସମ୍ବଲପୁର ମହାରାଣୀ କି ମହାରାଜାଙ୍କୁ ଆକ୍ରମଣ କରିଥିବାର ନଜିର ଇତିହାସରେ ମିଳେ ନାହିଁ । ଇଂରେଜମାନଙ୍କ କ୍ରୀଡ଼ା ପୁତ୍ତଳିକା ହୋଇ ସମ୍ବଲପୁରର ରାଜା, ରାଣୀ ଅନ୍ୟାୟ ଭାବରେ ଜମିଦାର, ଗୌନ୍ତିଆ, ପ୍ରଜାମାନଙ୍କୁ ଜମିରୁ ଅନ୍ତର କରି ଖଜଣା, କର ଆଦି ବୃଦ୍ଧି କରିଥିଲେ । ସୁରେନ୍ଦ୍ର ସେମାନଙ୍କ ମଧ୍ୟରୁ ଜଣେ ହୋଇ ସଂଗ୍ରାମ କରିଥିଲେ । ସମ୍ବଲପୁର ଜନସାଧାରଣ ତାଙ୍କୁ ରାଜା କରିବାକୁ ଚାହୁଁଥିଲେ । ସେତେବେଳ ଯାହା ରାଜନୈତିକ ପରସ୍ଥିତି ଥିଲା, ସମ୍ବଲପୁର ସିଂହାସନ ଅଧିକାର କରିବା ହିଁ ଥିଲା ଲକ୍ଷ୍ୟସିଦ୍ଧିର ଏକମାତ୍ର ଉପାୟ ।

ପରବର୍ତ୍ତୀ ସମୟରେ ଯେତେବେଳେ ଜନସାଧାରଣ ତାଙ୍କୁ ରାଜଗଦୀ ପାଇଁ ଦାବି କରିବାକୁ ବାଧ୍ୟ କରିଥିଲେ ସେତେବେଳେ ସୁରେନ୍ଦ୍ର ରାଜପଦରେ ରହି ପ୍ରଜାମାନଙ୍କୁ ଇଂରେଜ ଅତ୍ୟାଚାରରୁ ରକ୍ଷା କରିବା, ସେମାନଙ୍କୁ ସଙ୍ଗଠିତ କରି ଇଂରେଜଙ୍କ ପ୍ରତିରୋଧ କରିବା ଓ ଦେଶକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ହିଁ ସେ ଏହି ପଦ ପାଇଁ ସ୍ୱୀକୃତି ଦେଇଥିଲେ । ଥରେ ସେ ସିଂହାସନର ଅନ୍ୟଜଣେ ଦାବିଦାର ଗୋବିନ୍ଦ ସିଂହଙ୍କୁ କହିଥିଲେ - ''ଗୋବିନ୍ଦ, ମୁଁ ଇଂରେଜମାନଙ୍କ ଅଧୀନରେ ନାମକୁ ମାତ୍ର ରାଜା ହେବା ପାଇଁ ଲାଳାୟିତ ନୁହେଁ । ଜନନୀ, ଜନ୍ମଭୂମିର ସ୍ୱାଧୀନତା ଫେରାଇ ଆଣିବା, ଇଂରେଜମାନଙ୍କୁ ଦେଶରୁ ତଡ଼ିବା ମୋ' ଜୀବନର ଅଭିଳାଷ । ତୁ ଯଦି ଏ ଗୁରୁ ଦାୟିତ୍ୱ ବହନ କରି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଯୁଦ୍ଧ କରିବାକୁ ପ୍ରସ୍ତୁତ, ତା'ହେଲେ ମୁଁ ତୋର ଅନୁଚର ହୋଇରହିବି ।''

ସୁରେନ୍ଦ୍ର ଓ ତାଙ୍କ ସହଯୋଗୀ ବାହିନୀ କେବଳ ଇଂରେଜ ସରକାରଙ୍କୁ ସାହାଯ୍ୟ, ସମର୍ଥନ କରୁଥିବା ଗୌନ୍ତିଆ, ଜମିଦାରମାନଙ୍କ ରାଜକୋଷ, ଗ୍ରାମ ଲୁଣ୍ଠନ କରୁଥିଲେ । ସେହି ଅର୍ଥରୁ କାଣିଚାଏ ହେଲେ କାହାରି କୌଣସି ରକମର ବ୍ୟକ୍ତିଗତ ବିଳାସ, ବ୍ୟସନରେ ବ୍ୟୟ ହେଉ ନଥିଲା । ଦେଶୀ ନଳୀବନ୍ଧୁକ, ଖଣ୍ଡା, ଧନୁଶର କିଣିବା, ସୈନ୍ୟମାନଙ୍କ ଖାଇବା ଓ ଅଧିକ ଲୋକ ସଂଗ୍ରହ ଓ ସଙ୍ଗଠନ କାର୍ଯ୍ୟରେ ବ୍ୟୟ କରାଯାଉଥିଲା । ସେମାନେ କେବଳ ଧନଲୋଭରେ କାହାକୁ ଆକ୍ରମଣ କରି ନଥିଲେ । ଝିଅ, ବୋହୂମାନଙ୍କ ପ୍ରତି କୌଣସି ରକମ

ଅତ୍ୟାଚାର କେବେହେଲେ ତାଙ୍କ ବାହିନୀ କରିଥିବାର ନଜିର ନାହିଁ । ସେ ବିଶ୍ୱାସଘାତକ ଦେଶଦ୍ରୋହୀମାନଙ୍କୁ ଦୃଷ୍ଟାନ୍ତମୂଳକ ଦଣ୍ଡ ଦେଇଥିଲେ ।

ଯେଉଁ କମାରମାନେ ଆସି ଗ୍ରାମ ଆଖପାଖ ଅଞ୍ଚଳର ଲୁହାପଥର ସଂଗ୍ରହ କରି, ତରଳାଇ, ଲୁହା ବାହାର କରି ବିଭିନ୍ନ ଚାଷ ଉପଯୋଗୀ ଉପକରଣ, ଅସ୍ତ୍ରଶସ୍ତ୍ର ତିଆରି କରୁଥିଲେ, ସେମାନଙ୍କୁ ସେ ସବୁ ସୁବିଧା ସୁଯୋଗ ଯୋଗାଇ ଦେଉଥିଲେ ।

ସୁରେନ୍ଦ୍ର ଜଣେ ଧାର୍ମିକ ଓ ଦେବୀ ଉପାସକ ଥିଲେ । ତାଙ୍କ ଦଳବଳ ଯେଉଁ ଗାଁରେ ଅବସ୍ଥାନ କରୁଥିଲେ, ସେହି ଗାଁର ମା ଭଉଣୀମାନେ ସାର୍ବଜନୀନ ଭାବରେ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କ ଲାଗି ରୋଷେଇ ପ୍ରସ୍ତୁତ କରୁଥିଲେ । ସୁରେନ୍ଦ୍ରଙ୍କ ଅବସାନରେ ପ୍ରଥମ ସ୍ୱତନ୍ତ୍ରତା ସଂଗ୍ରାମର ଶେଷ ବହ୍ନି ସ୍ଫୁଲିଙ୍ଗ ନିର୍ବାପିତ ହୋଇଥିଲା ।

❑❑❑

# ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ

ସେ ସୁରେନ୍ଦ୍ର ସାଏଙ୍କ 'ଉଲଗୁଲାନ୍' ହେଉ କି ବିଶେଇକେଲା,ଘେଁସ ଜମିଦାରୀ ଆଦିର ବିଦ୍ରୋହ ହେଉ, ଅତ୍ୟାଚାରୀ ବିଦେଶୀ ଇଂରେଜ ସରକାର ଓ ଗଡ଼ଜାତ ଶାସନ ବିରୁଦ୍ଧରେ ଆଦିବାସୀ, ପ୍ରଜାମାନଙ୍କର 'ରାଜଦ୍ରୋହ' ହିଁ ଅବିଭକ୍ତ ସମ୍ବଲପୁର ଜିଲାରେ ଜାତିୟତାବାଦୀ ଉନ୍ମେଷର ମୁଖ୍ୟ କାରଣ ଭାବରେ ପ୍ରତିଭାତ ହୋଇଛି । ଏହି ଜାତିୟତାବାଦ ଜନସାଧାରଣଙ୍କୁ ନିଜ ମାଟିର ଭାଷା, ସଂସ୍କୃତି, ସାହିତ୍ୟ, ଶିଳ୍ପ, କଳା, କାରିଗରୀ ସହ ଯୋଡ଼ିଛି ।

ଅବଧୂତ ସିଂହ, ଗୋବିନ୍ଦ ସିଂହ, ସୁରେନ୍ଦ୍ର ସାଏଙ୍କ ପୂର୍ବରୁ ଯେ ତଥାକଥିତ 'ରାଜଦ୍ରୋହ' ହୋଇ ନଥିଲା ସେମିତି ନୁହେଁ, ତେବେ ସେ ସଂକ୍ରାନ୍ତରେ ଆମ ଇତିହାସରେ ବିଶେଷ ଉଲ୍ଲେଖ ମିଳେ ନାହିଁ ।

ତେବେ ଏ କଥା ସ୍ୱତଃସିଦ୍ଧ ଯେ ସାଧାରଣ ଜନମାନସ ସବୁବେଳେ ସ୍ୱଚ୍ଛନ୍ଦ ବିକାଶର ପକ୍ଷପାତୀ । ଏହାର ବିରୁଦ୍ଧାଚରଣ ହେଲେ ଅନ୍ତର୍ଗତ ଅସନ୍ତୋଷର ଯେଉଁ ବହ୍ନି ପ୍ରଜ୍ୱଳିତ ହୁଏ, ତାହାର ସାମୁହିକ ଅଭିବ୍ୟକ୍ତିର ଅନ୍ୟତମ ଚରଣ ସୁରେନ୍ଦ୍ର ବିପ୍ଲବ ।

ଏହାର ଅନେକ ବର୍ଷ ପରେ ସେହି ସଙ୍ଗଠିତ ଜାତୀୟତାବାଦ ୧୮୯୫ରେ ସମ୍ବଲପୁର ଅଞ୍ଚଳରେ ଭାଷା ଆନ୍ଦୋଳନ ଦେଇ ମହାତ୍ମାଗାନ୍ଧୀଙ୍କ ସ୍ୱାଧୀନତା ସଂଗ୍ରାମ ମାଧ୍ୟମରେ ଦେଶର ସ୍ୱାଧୀନତା ଯାଏଁ ପରିବ୍ୟାପ୍ତ ହୋଇଛି ।

ସମ୍ବଲପୁରର ଭାଷା-ଆନ୍ଦୋଳନ ଏ ଅଞ୍ଚଳକୁ ଏକ ନବଚେତନା ଦେବା ସହ ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଆଭାଷାଭାଷୀ ଓଡ଼ିଶା ରାଜ୍ୟଗଠନର ମୂଳପ୍ରେରଣା ହୋଇଥିଲା । ଓଡ଼ିଆ ଭାଷାର ସତ୍ତା ଲୋପ କରି ବଣାଇରୁ ବସ୍ତର ପର୍ଯ୍ୟନ୍ତ ସରକାରୀ ଭାଷା ରୂପେ ହିନ୍ଦୀ ଭାଷାକୁ ଲଦି ଦିଆଯିବାର ଯେଉଁ ଅପଚେଷ୍ଟା ବ୍ରିଟିଶ ସରକାର କରିଥିଲେ ତାହା ଫଳରେ ପଶ୍ଚିମ ଓଡ଼ିଶା ବା ବିସ୍ତୃତ ସମ୍ବଲପୁର ଅଞ୍ଚଳ ଅଥବା ତତ୍‌କାଳୀନ ସମ୍ବଲପୁର ଡିଭିଜନ୍ ସେଣ୍ଟ୍ରାଲ ପ୍ରଭିନସେସ୍ (ସି.ପି.)ରୁ ବାହାରି ଓଡ଼ିଶା ଡିଭିଜନ୍ ସହ ମିଶିଥିଲା ଏବଂ ଏହାକୁ ଏକ ବିସ୍ତୃତ ରୂପ ମଧ୍ୟ ପ୍ରଦାନ କରିଥିଲା ।

ଓଡ଼ିଶା ଡିଭିଜନ୍‌ରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା, ସମ୍ବଲପୁର ଡିଭିଜନ୍‌ରେ ହିନ୍ଦୀ ଓ ଗଞ୍ଜାମ-ବିଶାଖପାଟଣା ଅଞ୍ଚଳରେ ତେଲୁଗୁ ଭାଷା ପ୍ରଚଳନର ପ୍ରଭୁସତ୍ତା ବିରୁଦ୍ଧରେ

ହୋଇଥିବା ଆନ୍ଦୋଳନ ଜନସାଧାରଣଙ୍କୁ ଏକ ସଂସ୍କୃତି ସୂତ୍ରରେ ଐକ୍ୟବଦ୍ଧ କଲା । କେବଳ ଏତିକି ନୁହେଁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ଦେଇ ଭାରତୀୟ ଜାତୀୟତାବାଦୀ ସ୍ୱାଧୀନତା ସଂଗ୍ରାମର ମୁଖ୍ୟଧାରାରେ ମିଶି ଗଲା । ଏ କ୍ଷେତ୍ରରେ ସମ୍ବଲପୁରର ଅଗ୍ରଣୀ ଭୂମିକା ରହିଥିଲା । ସ୍ୱଭାବ କବି ଗଙ୍ଗାଧର ମେହେର ଓଡ଼ିଆ ସାହିତ୍ୟକୁ ସମ୍ବଲପୁର ଭାଷା ଆନ୍ଦୋଳନର ଏକ ଶ୍ରେଷ୍ଠ ଅବଦାନ ।

ସମ୍ବଲପୁର ଭାଷା ଆନ୍ଦୋଳନ ସୁରେନ୍ଦ୍ର-ବିପ୍ଳବ ଓ ଭାରତୀୟ ଜାତୀୟ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନର ଏକ ମଧ୍ୟବର୍ତ୍ତୀ ଶୃଙ୍ଖଳା । ସ୍ୱତନ୍ତ୍ର ଭାଷାଭାଷିକ ଓଡ଼ିଶା ପ୍ରଦେଶ ଗଠନ ଦିଗରେ ଏହା ପ୍ରଥମ ପଦକ୍ଷେପ ଭାବେ ସ୍ୱୀକୃତ । ସମ୍ବଲପୁର ସ୍ୱାଧୀନତା ସଂଗ୍ରାମର ଏହା ଏକ ଐତିହାସିକ ଅଭିନ୍ନ ଅଙ୍ଗ ।

୧୭୬୬ ନଭେମ୍ବର ୧୨ରେ ହାଇଦ୍ରାବାଦ ନିଜାମଙ୍କଠାରୁ ବ୍ରିଟିଶ ସେନାପତି ଏଡ୍‌ୱାର୍ଡ କଟ୍‌ସଫୋର୍ଡ ଉତ୍ତର ସରକାର (ପୁରାତନ ଗଞ୍ଜାମ ଓ କୋରାପୁଟ ଜିଲା) ଲାଭ କଲା ପରେ ଉକ୍ତ ଅଞ୍ଚଳ ମାନ୍ଦ୍ରାଜ ଶାସନାଧୀନ ହେଲା ଓ ତେଲୁଗୁମାନଙ୍କୁ ପ୍ରଶାସନିକ କ୍ଷମତା ମିଳିଲା । ସେ ଅଞ୍ଚଳରେ ବିଦ୍ୟାଳୟ, ସରକାରୀ କାର୍ଯ୍ୟାଳୟ ଓ ଅଦାଲତ ଗୁଡ଼ିକରେ ତେଲୁଗୁ ଭାଷାର ବ୍ୟାପକ ପ୍ରଚଳନ ହେଲା ।

୧୮୭୦ ମେ ୪ରେ କଲିକତାର ଜନୈକ ପ୍ରତ୍ନତତ୍ତ୍ୱବିଦ୍ ରାଜେନ୍ଦ୍ରଲାଲ ମିତ୍ର ଘୋଷଣା କଲେ ଯେ ଓଡ଼ିଆ ହେଉଛି ବଙ୍ଗଳାର ଏକ ଉପଭାଷା । ବାଲେଶ୍ୱର ଜିଲା ସ୍କୁଲର ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଏକ ପୁସ୍ତିକା ପ୍ରକାଶ କଲେ ''ଉଡ଼ିୟା ସ୍ୱତନ୍ତ୍ର ଭାଷାନୟ'' । ସେମାନେ କଟକ, ପୁରୀ, ବାଲେଶ୍ୱର ଜିଲା ଓ ଗଡ଼ଜାତମାନଙ୍କର ବିଦ୍ୟାଳୟ ଓ ପ୍ରଶାସନର ଭାଷା ବଙ୍ଗଳା କରିବାକୁ ଦାବି କଲେ ।

୧୮୯୫ ଜାନୁଆରୀ ୧୫ରେ ସି.ପିର ମୁଖ୍ୟ କମିଶନର ଜନ୍ ଉଡ୍‌ବର୍ଣ୍ଣ ସମ୍ବଲପୁର ସହ ବଲାଙ୍ଗୀର, କଳାହାଣ୍ଡି, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା ରାଜ୍ୟରେ ଶିକ୍ଷା ଓ ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନର ନିଷ୍ପତ୍ତି ନେଲେ ।

ଏହାର ପଶ୍ଚିମାଞ୍ଚଳରେ ପ୍ରଥମେ ବିରୋଧ ହେଲା । ବାମଣ୍ଡା ରାଜା ସାର ବାସୁଦେବ ସୁଜାତଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ'' ସାପ୍ତାହିକରେ ସଂପାଦକ ନୀଳମଣି ବିଦ୍ୟାରତ୍ନ ଲେଖିଲେ -

''ସମ୍ବଲପୁର ଜନନୀ ଆଜି ନିର୍ବାସିନୀ
ଭୂଲୁଣ୍ଠିତ ହୁଏ ମାତୃଭାଷା ସ୍ୱାଭିମାନୀ ।

ଜନନୀ ରସନା ହାଣେ ହିନ୍ଦୀ ପ୍ରତିଦିନ
ଉପରେ ଉତ୍କଳ ଭାଇ ଘେନ ନିବେଦନ ।''

ଖଡ଼ିଆଳ ରାଜା ବୀର ବିକ୍ରମ ସିଂହ 'ଉତ୍କଳ ଦୁର୍ଦ୍ଦଶା' ନାଟକ, ପଣ୍ଡିତ ଗୋବିନ୍ଦ ରଥ 'ଲୁଟ ଦର୍ଶନ' କବିତାରେ ଏ ଦୁର୍ଦ୍ଦଶାର ନିଖୁଣ ଚିତ୍ର ପ୍ରକାଶ କଲେ ।

୧୮୯୫ରେ ହିନ୍ଦୀ ଭାଷାଭାଷୀ ସରକାରୀ ଅଧିକାରୀମାନଙ୍କ ସୁବିଧା ନିମନ୍ତେ,ଲୋକଙ୍କ ମାତୃଭାଷା ଓଡ଼ିଆ ବଦଳରେ ହିନ୍ଦୀକୁ ସମ୍ବଲପୁର ଅଞ୍ଚଳରେ ସରକାରୀ ଭାଷାରେ ପରିଣତ କରାଗଲା, ସେତେବେଳେ ଅଞ୍ଚଳରେ ତୀବ୍ର ପ୍ରତିବାଦର ଜୁଆର ଉଠିଲା । ଏହି ଭାଷା ଆନ୍ଦୋଳନ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ବ୍ୟାପି ଗଲା । ସମ୍ବଲପୁର ସମେତ ବାଲେଶ୍ୱର, ପୁରୀ, କଟକ,ପାରଳାଖେମୁଣ୍ଡି ଆଦି ଅଞ୍ଚଳରେ ଜନସଭାମାନ ହୋଇ ହିନ୍ଦୀ, ବଙ୍ଗଳା, ତେଲୁଗୁ ଭାଷାର ବିରୋଧ କରାଗଲା ।

ସମ୍ବଲପୁର ଭାଷା ଆନ୍ଦୋଳନକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ପ୍ରଥମ ପର୍ଯ୍ୟାୟ ଆନ୍ଦୋଳନ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ୧୮୯୫ରେ ହୋଇଥିଲା । ଦ୍ୱିତୀୟ ପର୍ଯ୍ୟାୟ ଆନ୍ଦୋଳନ ୧୯୦୧ରୁ ଆରମ୍ଭ ହେଲା । ଏହାର ନେତୃତ୍ୱ ନେଇଥିଲେ ମଦନମୋହନ ମିଶ୍ର, ବଳଭଦ୍ର ସୂପକାର । ପରେ ବ୍ରଜମୋହନ ପଟ୍ଟନାୟକ ଏହାର ନେତୃତ୍ୱ ନେଇଥିଲେ ।

୧୮୬୨ରେ ସମ୍ବଲପୁର ସି.ପି.ର ଅନ୍ତର୍ଭୁକ୍ତ ହେଲା । ସି.ପି. ବା କେନ୍ଦ୍ରୀୟ ପ୍ରଦେଶ ସମୂହ ଥିଲା ହିନ୍ଦୀ ଭାଷାଭାଷୀ । ସମ୍ବଲପୁର ଏହି ପ୍ରଦେଶର ଏକମାତ୍ର ଓଡ଼ିଆ ଅଧ୍ୟୁଷିତ ଜିଲା ଥିଲା । ଏହାର ସରକାରୀ ଭାଷା ମଧ୍ୟ ଓଡ଼ିଆ ଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୮୮୪ରେ ସମ୍ବଲପୁର ଜିଲା ସ୍କୁଲକୁ ହାଇସ୍କୁଲରେ ଉନ୍ନୀତ କରାଯାଇଥିଲା । ତତ୍‌କାଳୀନ ପଶ୍ଚିମ ଓଡ଼ିଶାର ଏହାହିଁ ଥିଲା ଏକମାତ୍ର ଉଚ୍ଚ ବିଦ୍ୟାଳୟ । ହେଲେ ଏହାର ପାଠ୍ୟକ୍ରମରେ ଓଡ଼ିଆ ଭାଷା ରଖାଯାଇ ନଥିଲା । ବିଦ୍ୟାଳୟର ସମସ୍ତ ଯାକ ଶିକ୍ଷକ ଥିଲେ ଅଣଓଡ଼ିଆ । ଏପରିକି ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଥିବା ସ୍କୁଲ ଡି.ଆଇ. ମଧ୍ୟ ଓଡ଼ିଆ ଜାଣି ନଥିଲେ । ସେହିପରି ହିନ୍ଦୀଛାତ୍ରଙ୍କ ପରି ମୁଣ୍ଡରେ ଟୋପି ପିନ୍ଧିବା ମଧ୍ୟ ବାଧ୍ୟତାମୂଳକ ଥିଲା । ସମ୍ବଲପୁର ଓ ସମଗ୍ର ପଶ୍ଚିମ ଓଡ଼ିଶା ସେତେବେଳେ କେତେ ଉପେକ୍ଷିତ ଥିଲା ଏହା ତାହାର ଏକ ଜୀବନ୍ତ ନମୂନା ।

ପ୍ରଶାସନିକ ଅସୁବିଧା ଯୋଗୁଁ ସରକାରୀ ଭାଷା ଭାବରେ ହିନ୍ଦୀର ପ୍ରଚଳନ ପାଇଁ ୧୮୯୫ ମସିହା ଜାନୁୟାରୀ ମାସରେ ସରକାରୀ ଇସ୍ତାହାର ପ୍ରକାଶ ପାଇଲା । ଏହା ଥିଲା

ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ବିରୋଧୀ । ଓଡ଼ିଆ ଜାତି ପ୍ରତି ଏକ ଚରମ ଅନ୍ୟାୟ ଓ ଅବମାନନା । ଓଡ଼ିଆ ଭାଷା ଓ ଜାତୀୟତାର ସୁରକ୍ଷା ଦିଗରେ ଜନମତ ସଙ୍ଗଠିତ କରି ସରକାରଙ୍କୁ ପ୍ରତିବାଦ ଜଣାଇବା ଲାଗି ପ୍ରଥମେ ଧରଣୀଧର ମିଶ୍ର ନେତୃତ୍ୱ ନେଲେ ।

୧୮୯୫ ଜୁନ୍ ୧୩ତାରିଖ ଦିନ ସେ ସମ୍ବଲପୁରର ସୋମେଶ୍ୱର ମନ୍ଦିର ନିକଟରେ ଏକ ସାଧାରଣ ସଭା ଡାକିଲେ । ଏଥିରେ ସୋମନାଥ ବାବୁ ଅଧ୍ୟକ୍ଷତା କରିଥିଲେ । ହିନ୍ଦୀ ଭାଷାକୁ ନେଇ ଉପୁଜିଥିବା ବିରାଟ ଅସୁବିଧା ଓ ସମସ୍ୟାବଳି ଦର୍ଶାଇ ବଡ଼ଲାଟ ଏଲଗିନଙ୍କ ଉଦ୍ଦେଶ୍ୟରେ ଧରଣୀଧରଙ୍କ ଦ୍ୱାରା ଲିଖିତ ଏକ ବିରାଟ ସ୍ମାରକପତ୍ର ସଭାରେ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ଏଠାରେ ସୂଚନାଯୋଗ୍ୟ ଯେ ଧରଣୀଧର ମିଶ୍ର ସମଗ୍ର ପଶ୍ଚିମ ଓଡ଼ିଶାର ପ୍ରଥମ ମେଟ୍ରିକୁଲେଟ୍ ଥିଲେ ।

ବାମଣ୍ଡାରୁ କଳାହାଣ୍ଡି ପର୍ଯ୍ୟନ୍ତ ଜିଲାର ପ୍ରତ୍ୟେକ ଅଧିବାସୀମାନଙ୍କୁ ଏହି ଆନ୍ଦୋଳନରେ ସଂପୃକ୍ତ କରିବା ଉଦ୍ଦେଶ୍ୟରେ ସେ ସ୍ମାରକ ପତ୍ରର କପି ପ୍ରତ୍ୟେକ ଗ୍ରାମକୁ ପଠାଇଥିଲେ । ଗ୍ରାମ ଓ ସହରମାନଙ୍କରେ ପତ୍ରର ବିଷୟ ବସ୍ତୁ ଉପରେ ଆଲୋଚନା ସଭା କରି ସ୍ୱାକ୍ଷର ଅଭିଯାନ ପାଇଁ ସ୍ଥାନୀୟ କମିଟିମାନ ଗଠନ କରାଯାଇଥିଲା । ସମ୍ବଲପୁରର କେନ୍ଦ୍ର କମିଟିର ସେ ନିଜେ ସଂପାଦକ ଓ ପରଶୁରାମ ସୁଆର କୋଷାଧ୍ୟକ୍ଷ ଥିଲେ ।

୧୮୯୫ ଜୁଲାଇ ମାସ ୫ ତାରିଖ ଦିନ ସି.ପି. ଚିଫ୍ କମିଶନରଙ୍କ ମାଧ୍ୟମରେ ବଡ଼ଲାଟଙ୍କୁ ସ୍ମାରକପତ୍ରଟି ପଠାଗଲା । ଆଠ ପୃଷ୍ଠାର ସ୍ମାରକପତ୍ରରେ ଏକାବନ ପୃଷ୍ଠାର ସ୍ୱାକ୍ଷର ରହିଥିଲା । ଏଥିରେ ୨୩୬୨ଜଣ ସମ୍ବଲପୁରବାସୀ ଦସ୍ତଖତ କରିଥିଲେ । ମାତ୍ର ସାତ ଜଣ ଇଂରାଜୀରେ ଦସ୍ତଖତ କରିଥିଲା ବେଳେ ଅନ୍ୟ ସମସ୍ତେ ଓଡ଼ିଆରେ ଦସ୍ତଖତ କରିଥିଲେ । ହିନ୍ଦୀରେ ଜଣେ ହେଲେ ସ୍ୱାକ୍ଷର କରି ନଥିଲେ ।

ହିନ୍ଦୀ ଭାଷାର ପ୍ରଚଳନ ପାଇଁ ସରକାରୀ ଘୋଷଣାନାମାରେ ଦିଆ ଯାଇଥିବା ପ୍ରତ୍ୟେକ ଯୁକ୍ତିର ସ୍ମାରକପତ୍ରରେ ଖଣ୍ଡନ କରାଯାଇଥିଲା । ତା'ସହିତ ଇଂରେଜ ସରକାରଙ୍କ ଭାଷାନୀତିର ତୀବ୍ର ସମାଲୋଚନା କରାଯାଇଥିଲା । ଏହି ନୀତି ବ୍ରିଟିଶ ପ୍ରଶାସନିକ ବ୍ୟବସ୍ଥା ପାଇଁ ଘୋର କ୍ଷତିକାରକ ହେବ ବୋଲି ଚେତାବନୀ ମଧ୍ୟ ଦିଆଯାଇଥିଲା । କେବଳ ସେତିକି ନୁହେଁ ଭୌଗୋଳିକ,ଐତିହାସିକ ଓ ସାମାଜିକ ସଂପୃକ୍ତି ଦୃଷ୍ଟିରୁ ଓଡ଼ିଶା ଡିଭିଜନର ଏକ ଅଂଶ ଭାବରେ ସମ୍ବଲପୁର ଓ ଏହାର ଗଡ଼ଜାତ ମହଲକୁ ବଙ୍ଗପ୍ରଦେଶ ସହ ମିଶ୍ରଣ ପାଇଁ ମଧ୍ୟ ପ୍ରସ୍ତାବ ଦିଆଯାଇଥିଲା ।

ଏହାକୁ ସମର୍ଥନ କରି କଟକରେ ଉତ୍କଳ ଗୌରବ ମଧୁସୂଦନ ଦାସ ଓ 'ଉତ୍କଳଦୀପିକା'ର ସଂପାଦକ ଗୌରୀଶଙ୍କରଙ୍କ ନେତୃତ୍ୱରେ ବ୍ୟାପକ ଆନ୍ଦୋଳନ ସଭାମାନ

ହେଲା । ସମସ୍ତେ ଏହି ଭାଷାନୀତିର ତୀବ୍ର ସମାଲୋଚନା କଲେ । ସରକାରଙ୍କୁ ଜଣାଇ ଦିଆଗଲା ଯେ ସମ୍ବଲପୁର ଭାଷା ଆନ୍ଦୋଳନ ହେଉଛି ସମଗ୍ର ଓଡ଼ିଆ ଜାତିର ଆନ୍ଦୋଳନ ।

ହେଲେ କିଛି ଲାଭ ହେଲା ନାହିଁ । ସି.ପି. ସରକାରଙ୍କ ନିଷ୍ପତିକୁ ଭାରତ ସରକାର ଗ୍ରହଣ କରିନେଲେ । ଜନସାଧାରଣଙ୍କ ବ୍ୟାପକ ବିରୋଧ ସତ୍ୱେ ହିନ୍ଦୀ ଭାଷା କୋର୍ଟକଚେ଼ରୀରେ ୧୮୯୬ ଜାନୁଆରୀ ପହିଲାରୁ ପ୍ରଚଳିତ ହେଲା ।

ଏହା ଫଳରେ ସମ୍ବଲପୁରବାସୀଙ୍କ ଶିକ୍ଷାଦୀକ୍ଷା, ଚାକିରୀ, କୋର୍ଟକଚେ଼ରୀ ଆଦି କାମରେ ବ୍ୟାପକ ଅସୁବିଧା ସୃଷ୍ଟି ହେଲା । ଓଡ଼ିଆଙ୍କ ଜାଗାରେ ହିନ୍ଦୀଭାଷୀମାନେ ନିଯୁକ୍ତି ପାଇଲେ । ଧୀରେ ଧୀରେ ଅବସ୍ଥା ଅସହ୍ୟ ହୋଇଉଠିଲା । ଫଳରେ ଜାନୁଆରୀ ୧୯୦୧ରେ ଦ୍ୱିତୀୟ ପର୍ଯ୍ୟାୟ ଭାଷା ଆନ୍ଦୋଳନ ମଦନମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସଙ୍କ ନେତୃତ୍ୱରେ ଆରମ୍ଭ ହେଲା ।

ସେହି ମାସରେ ସମ୍ବଲପୁରବାସୀଙ୍କ ନ୍ୟାଯ୍ୟ ଦାବି ଗ୍ରହଣ କରିବାକୁ ମଦନମୋହନ ମିଶ୍ର ସି.ପି. ଚିଫ୍ କମିଶନରଙ୍କୁ ଆବେଦନ ଜଣାଇଲେ । ହେଲେ ଏହା ଅଗ୍ରାହ୍ୟ କରି ଦିଆଗଲା ।

ଏହା ପରେ ତତ୍‌କାଳୀନ ଜିଲା ପରିଷଦ ସଭ୍ୟ ବ୍ରଜମୋହନ ପଟ୍ଟନାୟକ ଲୋକ ପ୍ରତିନିଧି ଭାବରେ ନାଗପୁର ଯାଇ ଚିଫ୍ କମିଶନରଙ୍କୁ ଜିଲାର ଦୁଃଖ ଦୁର୍ଦ୍ଦଶା ଜଣାଇବା ପାଇଁ ସ୍ଥିର ହେଲା । ତାଙ୍କ ସହ ମଦନମୋହନ ମିଶ୍ର, ବଳଭଦ୍ର ସୂପକାର ଓ ମହନ୍ତ ବିହାରୀ ଦାସ ମଧ୍ୟ ଗଲେ ।

୧୯୦୧ ଜୁଲାଇ ୨୯ ତାରିଖ ଦିନ ଚିଫ୍ କମିଶନର ଏଣ୍ଡ୍ରୁ ଫ୍ରେଜର ପ୍ରତିନିଧି ମଣ୍ଡଳୀଙ୍କୁ ବ୍ୟକ୍ତିଗତ ଭାବରେ ଦେଖା କରିଥିଲେ ମଧ୍ୟ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ନିମନ୍ତେ କୌଣସି ନିଷ୍ପତି ନେଇ ନ ପାରି ପରେ ଜଣାଇବାକୁ ପ୍ରତିଶ୍ରୁତି ଦେଇଥିଲେ ।

ଏହାପରେ ସେମାନେ ବଡ଼ଲାଟ୍ କର୍ଜନଙ୍କୁ ଭେଟିବାକୁ ସ୍ଥିର କଲେ । ଏକ ଶିକ୍ଷା ସମ୍ମିଳନୀରେ ଯୋଗ ଦେବାପାଇଁ କର୍ଜନ ସିମଲା ଆସିଥାନ୍ତି । ଛୋଟ ଲାଟ୍, ସି.ପି. ଚିଫ୍ କମିଶନର ଫ୍ରେଜର ଆଦି ମଧ୍ୟ ସେଠାରେ ଥାନ୍ତି ।

ଅଗଷ୍ଟ ୧୯୦୧ ଶେଷ ସପ୍ତାହରେ ବ୍ରଜମୋହନ, ମଦନମୋହନ, ବଳଭଦ୍ର, ବିହାରୀ ଦାସ ଓ ଶ୍ରୀପତି ମିଶ୍ର ସିମଲା ଯାତ୍ରା କଲେ ।

ସେଠାରେ ଆଗରୁ କାର୍ଯ୍ୟକ୍ରମ ସ୍ଥିର କରାଯାଇ ନଥିବାରୁ ଲର୍ଡ କର୍ଜନଙ୍କ ସହ ସାକ୍ଷାତ୍ କରିବା ସମ୍ଭବ ହୋଇ ପାରିଲା ନାହିଁ । ପ୍ରତିନିଧିମଣ୍ଡଳୀ ମଧ୍ୟପଦେଶର ଚିଫ୍ ସେକ୍ରେଟେରୀ

ଏଚ.ଏ.କ୍ରଂପ୍ ସାହେବଙ୍କୁ ଭେଟି ତାଙ୍କ ପରାମର୍ଶରେ ସମ୍ବଲପୁର ଫେରି ଚିଫ୍ କମିଶନରଙ୍କ ଆଗମନକୁ ଅପେକ୍ଷା କଲେ ।

ହିନ୍ଦୀ ଭାଷା ପ୍ରବର୍ତ୍ତନର ସମସ୍ୟା ଅନୁଧ୍ୟାନ କରିବାକୁ ସେହି ବର୍ଷ ସେପ୍ଟେମ୍ବର ମାସରେ ଫ୍ରେଜର ସିମଲାରୁ ସମ୍ବଲପୁରକୁ ଆସିଲେ । ସେ ସହର, ମଫସଲ ଗସ୍ତ କରି ସବୁ ଶ୍ରେଣୀର ଲୋକଙ୍କ ସହ ଆଲୋଚନା କରି ସରକାରୀ ଭାଷାନୀତିର ଅସାରତା ଉପଲବ୍ଧୀ କଲେ । ତା'ପରେ ସେ ଏକ ସଭା ଆହ୍ୱାନ କରି ଓଡ଼ିଆ ଭାଷାର ପୁନଃ ପ୍ରଚଳନ କରିବାକୁ ସେ ସୁପାରିଶ କରିବେ ବୋଲି ପ୍ରକାଶ କଲେ ।

ଭାଷା ଆନ୍ଦୋଳନରେ ଚନ୍ଦ୍ରଶେଖର ବେହେରାଙ୍କ ଅବଦାନ ମଧ୍ୟ ଥିଲା । ଅବିସ୍ମରଣୀୟ । ସେ ୧୮୯୫ ଜୁନ୍ ୨୦ରେ ମଧୁବାବୁଙ୍କ ସହଯୋଗ କ୍ରମେ ଉତ୍କଳ ସମ୍ମିଳନୀ (ସଭା) ଡକାଇ ପଣ୍ଡିତ ଧରଣୀଧର ମିଶ୍ରଙ୍କ ସ୍ମାରକପତ୍ରର ପ୍ରସ୍ତାବକୁ ଅନୁମୋଦନ କରାଇ ଇଂରେଜ ସରକାରଙ୍କୁ ପାଖକୁ ପଠାଇଥିଲେ ।

ଓଡ଼ିଆ ଭାଷା ସହିତ ଦେଶ ମିଶ୍ରଣ ଆନ୍ଦୋଳନ ମଧ୍ୟ ଜୋରରେ ଚାଲିଥାଏ । ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ଆଣି ଓଡ଼ିଶା ସହ ମିଶାଇବା ପାଇଁ ସମ୍ବଲପୁରବାସୀଙ୍କ ପକ୍ଷରୁ ଜୋରସୋର ଉଦ୍ୟମ ଚାଲିଥାଏ ।

ଫ୍ରେଜର ନିଜ କଥା ଶେଷରେ ରକ୍ଷା କଲେ । ସେହି ବର୍ଷ ଅକ୍ଟୋବର ୫ରେ ଲର୍ଡ କର୍ଜନଙ୍କୁ ତାଙ୍କ ସୁପାରିଶ ପଠାଇଲେ । ଫଳରେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ କରିବାକୁ ଜୁନ୍ ୧୮, ୧୯୦୨ରେ ସରକାରୀ ଇସ୍ତାହାର ପ୍ରକାଶ ପାଇଲା ।

ଏ ବିଜୟ ଫଳରେ ସମଗ୍ର ଓଡ଼ିଶାରେ ବିପୁଳ ଉତ୍ସାହ ଉଦ୍ଦୀପନା ଦେଖାଗଲା । କଟକଠାରେ ଏକ ବିରାଟ ସଭା ହୋଇ ସମ୍ବଲପୁରରେ ଓଡ଼ିଆ ସରକାରୀ ଭାଷା ହେବା ଘୋଷଣାକୁ ସ୍ୱାଗତ କରାଗଲା ।

ଏହି ଘଟଣାରେ ଗଞ୍ଜାମର ଓଡ଼ିଆମାନେ ଲର୍ଡ କର୍ଜନଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଆବେଦନ ପଠାଇଲେ । 'ଖଣ୍ଡିତ ଶରୀରର ଏକ ଖଣ୍ଡିତ ଅଙ୍ଗ' ବୋଲି ଗଞ୍ଜାମବାସୀ ନିଜକୁ ବର୍ଣ୍ଣନା କରି ଗଞ୍ଜାମ ଓ ବିଶାଖପାଟଣା ମାଳଅଞ୍ଚଳ (କୋରାପୁଟ), ସମ୍ବଲପୁରକୁ ଓଡ଼ିଆ ଡିଭିଜନ ସହ ସାମିଲ କରିବାକୁ ଓ ସମଗ୍ର ମାଳଅଞ୍ଚଳ ଲାଗି ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଆବେଦନ କରିଥିଲେ ।

ସମ୍ବଲପୁର ଭାଷା ଆନ୍ଦୋଳନ ଥିଲା ସୁଦୂର ପ୍ରସାରୀ । ଏହାର ପ୍ରଭାବରେ ଡିସେମ୍ବର ୩, ୧୯୦୩ରେ ଭାରତ ସରକାରଙ୍କ ଗୃହ ସଚୀବ ରିସଲେଙ୍କ ସର୍କୁଲାରରେ ମଧ୍ୟପ୍ରଦେଶର

ଛତିଶଗଡ଼ ଡିଭିଜନରୁ ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା; ଛୋଟ ନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣାଇ ଗଡ଼ଜାତ ଓଡ଼ିଶା ଡିଭିଜନକୁ ହସ୍ତାନ୍ତରିତ କରିବାକୁ ପ୍ରସ୍ତାବ ହେଲା । ଏହା ଜୁଲାଇ ୧୯, ୧୯୦୫ରେ କାର୍ଯ୍ୟକାରୀ ହେଲା ।

ଏହା ସହିତ ଓଡ଼ିଶା ଏକତ୍ରିକରଣର ପ୍ରଥମ ପର୍ଯ୍ୟାୟ ରଚିତ ହେଲା ।

ସମ୍ବଲପୁର ଭାଷା ଆନ୍ଦୋଳନର ବିଜୟ ଏକ ଐତିହାସିକ ବିଜୟ ଥିଲା । ଓଡ଼ିଆ ଜାତିର ଏହି ପ୍ରଥମ ବିଜୟରେ ଉଲ୍ଲସିତ ହୋଇ ଗଙ୍ଗାଧର ମେହେର ଲେଖିଥିଲେ :

'ହେବାରୁ ସମ୍ବଲପୁର ପ୍ରାଣ ଉନ୍ମୀଳିତ
ଅପୂର୍ବ ବିଜୟ ଆଜି ଉତ୍କଳେ ବିଦିତ ।
ହିନ୍ଦୀ ଗ୍ରାସରୁ ହେଲା ଜନନୀ ଉଦ୍ଧାର
ରାହୁ କବଳୁ ସୁଧାଂଶୁ ପରକାର ।'

❑❑❑

# ସମ୍ବଲପୁର ଓ ଉତ୍କଳ ସମ୍ମିଳନୀ

ଉତ୍କଳ ସମ୍ମିଳନୀରେ ମଧ୍ୟ ସମ୍ବଲପୁର ଜିଲ୍ଲାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ମଧୁସୂଦନ ଦାସ ୧୮୮୧ରେ କଲିକତାରୁ ଫେରି ଓଡ଼ିଶାରେ ଜାତୀୟତାବାଦର ବିକାଶ ପାଇଁ ବ୍ୟାପକ ଉଦ୍ୟମ ଚଳାଇଲେ । ଓଡ଼ିଆଙ୍କ ଦୁଃଖ ଦାରିଦ୍ର୍ୟ, ଶିକ୍ଷାକ୍ଷେତ୍ରରେ ଅନଗ୍ରସରତା, ଅର୍ଥନୈତିକ ସୁବିଧା ସୁଯୋଗର ଅଭାବ, ବିଭିନ୍ନ ରାଜ୍ୟ ସରକାରଙ୍କ ଲାଞ୍ଛନାର ପ୍ରତିକାର ନିମନ୍ତେ ଓଡ଼ିଆବାସୀଙ୍କୁ ସଂଘବଦ୍ଧ କରିବାର ପ୍ରୟାସ କଲେ । ୧୮୮୨ ଅଗଷ୍ଟ ୧୬ରେ କଟକଠାରେ ଏକ ବିରାଟ ସଭାର ଆୟୋଜନ କରାଯାଇ ସେଥିରୁ ଓଡ଼ିଶା ଏସୋସିଏସନ (ଉତ୍କଳସଭା) ଜନ୍ମ ନେଲା ।

ଏଥିରେ ଡମପଡ଼ା ରାଜା ଚୌଧୁରୀ କାଶୀନାଥ, ସଭାପତି, ମଧୁବାବୁ, ଉପସଭାପତି, ଗୌରୀଶଙ୍କର ରାୟ, ସଂପାଦକ ରହିଥିଲେ । ୧୮୮୬ରୁ ଏହି ସଭା ତରଫରୁ ଜାତୀୟ କଂଗ୍ରେସ ଅଧିବେଶନକୁ ପ୍ରତି ବର୍ଷ ପ୍ରତିନିଧି ଦଳ ପଠା ଯାଉଥିଲା ।

୧୮୯୫ରେ ମଧୁବାବୁ ଉତ୍କଳସଭା ତରଫରୁ ସମ୍ବଲପୁର ଭାଷା ଆନ୍ଦୋଳନକୁ ସକ୍ରିୟ ସମର୍ଥନ କରିଥିଲେ । ୧୮୯୫ରେ ଏହି ସଭା ପଣ୍ଡିତ ଧରଣୀଧର ମିଶ୍ର ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ପାଇଁ ବଡ଼ଲାଟଙ୍କୁ ଲେଖିଥିବା ସ୍ମାରକପତ୍ରକୁ ଅନୁମୋଦନ କରିଥିଲେ ଓ ସରକାରଙ୍କ ପାଖକୁ ପଠାଇଥିଲେ ।

ଉତ୍କଳସଭାର ଅଗ୍ରଗତି ମଧୁବାବୁଙ୍କୁ ସନ୍ତୁଷ୍ଟ କରି ନ ପାରିବାରୁ ସେ ଗଞ୍ଜାମ ଜାତୀୟ ସମ୍ମିଳନୀ ଦ୍ୱାରା ପ୍ରଭାବିତ ହୋଇ ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ୧୯୦୩ରେ କନିକା ରାଜା ରାଜେନ୍ଦ୍ର ନାରାୟଣଙ୍କ ଅଧ୍ୟକ୍ଷତାରେ ଏକ ଅଭ୍ୟର୍ଥନା ସମିତି ଗଠନ ହେଲା । ମଧୁବାବୁ ଏହାର ସଂପାଦକ ରହିଲେ । ରାଜା, ଜମିଦାର ଓ ପ୍ରଭାବଶାଳୀ ସରକାରୀ କର୍ମଚାରୀମାନେ ଏଥିରେ ସହଯୋଗ କରି ପାରିବାର ସୁବିଧା ଦୃଷ୍ଟିରୁ ଏହାକୁ ରାଜନୀତି ମୁକ୍ତ କରାଗଲା ।

ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଡିସେମ୍ବର ୩୦ଓ ୩୧, ୧୯୦୩ରେ କଟକଠାରେ ଅନୁଷ୍ଠିତ ହେଲା । ଏହାର ପ୍ରଥମ ଅଧ୍ୟକ୍ଷ ପଦ ବାମଣ୍ଡା ରାଜା ସାର ବାସୁଦେବ ସୁଢ଼ଳଦେବଙ୍କୁ ଅର୍ପଣ କରାଯାଇଥିଲା । ହେଲେ ସମ୍ମିଳନୀ ଆଗରୁ ତାଙ୍କ ମୃତ୍ୟୁ ହେବାରୁ ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଏହାର ସଭାପତି ହେଲେ ।

ସମ୍ବଲପୁରର ବ୍ରଜମୋହନ ପଟ୍ଟନାୟକ, ଚନ୍ଦ୍ରଶେଖର ବେହେରା, ରାମନାରାୟଣ ମିଶ୍ର, କବି ଗଙ୍ଗାଧର ମେହେର, ଶ୍ରୀପତି ମିଶ୍ର ପ୍ରମୁଖ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନ ପାଇଁ ପ୍ରସ୍ତାବ ପ୍ରସ୍ତୁତ କରୁଥିଲେ । ସମ୍ବଲପୁରର ପ୍ରତିନିଧିମାନେ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଯୋଗ ଦେଉଥିଲେ ।

୧୯୧୫ରେ ସମ୍ବଲପୁରରେ ଏହାର ଅଧିବେଶନ ବସିଥିଲା । ସିଂହଭୂମ, ଖଡ଼ିଆଳ, ଫୁଲଝର ଆଦିରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଉପରେ ଅଧିବେଶନରେ ବିଶେ ଗୁରୁତ୍ୱାରୋପ କରାଯାଇଥିଲା ।

୧୯୦୬ର ବାଲେଶ୍ୱର ଅଧିବେଶନରେ ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ ଯୋଗୁଁ ସମ୍ମିଳନୀରେ ଆନନ୍ଦ ପ୍ରକାଶ ପାଇଥିଲା ।

ବିଚ୍ଛିନାଞ୍ଚଳର ମିଶ୍ରଣ, ଭାଷା, ସାହିତ୍ୟର ସୁରକ୍ଷା, ପ୍ରସାର, ବୟନ ଶିଳ୍ପ, ତାରକସୀ, କୁଟୀର ଶିଳ୍ପ, କୃଷିର ଉନ୍ନତି ସହ ସମ୍ବଲପୁର ସହିତ ଖୋର୍ଦ୍ଧାକୁ ସଂଯୋଗ କରି ରେଳପଥ ନିର୍ମାଣ ଆଦି ପାଇଁ ପ୍ରସ୍ତାବମାନ ସମ୍ମିଳନୀରେ ଗ୍ରହଣ କରାଯାଇଥିଲା ।

୧୯୧୯ର ପୁରୀ ଅଧିବେଶନରେ ସମ୍ବଲପୁରର ଜନନେତା ଚନ୍ଦ୍ରଶେଖର ବେହେରା ଅଧ୍ୟକ୍ଷତା କରିଥିଲେ । ଚନ୍ଦ୍ରଶେଖର ତାଙ୍କ ଅଭିଭାଷଣରେ ଜାତୀୟ କଂଗ୍ରେସକୁ ଦୃଢ଼ ସମର୍ଥନ କରି କହିଥିଲେ - 'ଉତ୍କଳ ସମ୍ମିଳନୀ ନିୟମିତ କାର୍ଯ୍ୟ କରୁକରୁ ଦିନେ ଏହି ଓଡ଼ିଆ ଜାତିକୁ ଭାରତୀୟ ଜାତିସଂଘରେ ଯେ ମିଳାଇ ନଦେବ ଏହା କିଏ କହିପାରେ ?' ତାଙ୍କ ଏ ଭବିଷ୍ୟତବାଣୀ ପରେ ସତ୍ୟ ବୋଲି ପ୍ରମାଣିତ ହୋଇଥିଲା ।

୧୯୨୦ରେ ଚକ୍ରଧରପୁର ଅଧିବେଶନ ପରେ ଗୋପବନ୍ଧୁ ଦାସ, ଚନ୍ଦ୍ରଶେଖର ବେହେରା ଆଦିଙ୍କ ଉଦ୍ୟମରେ ଉତ୍କଳ ସମ୍ମିଳନୀର ଜାତୀୟ କଂଗ୍ରେସ ସହ ମିଶ୍ରଣ ଘଟି ଜାତୀୟ ଆନ୍ଦୋଳର ମୁଖ୍ୟ ସ୍ରୋତରେ ସାମିଲ ହେଲା । ନାଗପୁର ଅଧିବେଶନରେ ଭାଷାଭିତ୍ତିରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ସ୍ୱୀକୃତ ହେଲା ।

❑❑❑

# ଅସହଯୋଗ ଆନ୍ଦୋଳନ

ଜାଲିଆନାୱାଲା ନରସଂହାର ପରେ ବ୍ରିଟିଶ ଶାସନ ବିରୁଦ୍ଧରେ ସମଗ୍ରଦେଶରେ ବ୍ୟାପକ ଅସନ୍ତୋଷ ଜଳିଉଠିଲା । ଲୋକେ ଉତକ୍ଷିପ୍ତ ହୋଇ ଉଠିଲେ । ଦେଶବ୍ୟାପୀ ଗଣ ଅସନ୍ତୋଷକୁ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନର ରୂପ ଦେଲେ । ସମଗ୍ର ଦେଶବାସୀଙ୍କ ସହଯୋଗରେ ବ୍ରିଟିଶ ଶାସନ ସହିତ ଅସହଯୋଗ, ସରକାରୀ ଚାକିରୀବର୍ଜନ, ଶିକ୍ଷାନୁଷ୍ଠାନ ବର୍ଜନ, ବିଲାତୀ ଲୁଗା ଓ ବିଦେଶୀ ପଦାର୍ଥ ବର୍ଜନ ଆଦିଥିଲା ଅସହଯୋଗ ଆନ୍ଦୋଳନର ମୁଖ୍ୟ କାର୍ଯ୍ୟକ୍ରମ । ଅହିଂସା ପନ୍ଥାରେ ଏହି ଆନ୍ଦୋଳନ ଚାଲିଥିଲା ।

ଏପ୍ରିଲ ୧୩, ୧୯୧୯ର ନରସଂହାର ପରେ ଡିସେମ୍ବର ୧୯୨୦ରେ ଭାରତୀୟ ଜାତୀୟ କଂଗ୍ରେସର ଐତିହାସିକ ନାଗପୁର ଅଧିବେଶନରେ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନର ବିଧିବଦ୍ଧ ଘୋଷଣା କଲେ ।

ଗାନ୍ଧିଜୀଙ୍କ ଡାକରାରେ ଯୋଗଦେଇ ଦେଶବାସୀ ଇଂରେଜ ସରକାରଙ୍କ ସହ ସଂପର୍କ ଛିନ୍ନ କଲେ । ସରକାରୀ କର୍ମଚାରୀ ଚାକିରି ଛାଡ଼ିଲେ । ଛାତ୍ରମାନେ ଶିକ୍ଷାନୁଷ୍ଠାନ ବର୍ଜନ କଲେ । ଦେଶୀ ଜିନିସ ବ୍ୟବହାର କରି ବିଦେଶୀ ଜିନିସ ପରିହାର କଲେ । ଚାରିଆଡ଼େ ଆନ୍ଦୋଳନର ଲହର ଉଠିଲା । ସ୍ୱାଧୀନତା ସଂଗ୍ରାମର ପ୍ରଥମ ପାଦ ଅସହଯୋଗ ଆନ୍ଦୋଳନରେ ସମ୍ବଲପୁର ଜିଲା ସମଗ୍ର ଦେଶରେ ଅଗ୍ରଣୀ ଭୂମିକା ନେଇଥିଲା ।

୧୯୨୦-୨୧ ପୂର୍ବରୁ ଓଡ଼ିଶାରେ ପ୍ରତ୍ୟକ୍ଷତଃ ଜାତୀୟ କଂଗ୍ରେସ ନ ଥିଲା । ହେଲେ ସମ୍ବଲପୁରର ଚନ୍ଦ୍ରଶେଖର ବେହେରା ୧୯୧୯ରୁ ଭାରତର ଜାତୀୟ ଆନ୍ଦୋଳନରେ ସକ୍ରିୟ ରହିଥିଲେ । ସମ୍ବଲପୁର ଜିଲାରେ ଏହି ଆନ୍ଦୋଳନକୁ ସେ ନେତୃତ୍ୱ ଦେଇଥିଲେ । ସେ ୧୯୧୯ରେ 'ଉତ୍କଳ ସମ୍ମିଳନୀ'ର ପୁରୀ ଅଧିବେଶନରେ ଅଧ୍ୟକ୍ଷତା କରି ସଭ୍ୟମାନଙ୍କୁ ସେମାନଙ୍କ ସଂକୀର୍ଣ୍ଣ ଆଦର୍ଶ ପରିହାର କରି ଜାତୀୟତାବାଦର ସର୍ବଭାରତୀୟ ମୁଖ୍ୟଧାରାରେ ସାମିଲ ହେବାକୁ ଓ ଏଥିପାଇଁ ଉତ୍କଳ ସମ୍ମିଳନୀକୁ ଭାରତୀୟ ଜାତୀୟ କଂଗ୍ରେସରେ ବିଲୟ କରିବାକୁ ଆହ୍ୱାନ ଦେଇଥିଲେ ।

ସେହିପରି ସମ୍ମିଳନୀର ଚକ୍ରଧରପୁର ଅଧିବେଶନରେ ଚନ୍ଦ୍ରଶେଖର ଭାରତୀୟ ଜାତୀୟ କଂଗ୍ରେସର ଆଦର୍ଶ ଓ ଭାବଧାରାକୁ ଗ୍ରହଣ କରିବାକୁ ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବ ସମ୍ମିଳନୀ ଦ୍ୱାରା ଗୃହୀତ ହୋଇଥିଲା । ସମ୍ବଲପୁରର ଜନୈକ ଛାତ୍ର ଏହି ଅଧିବେଶନରୁ

ସେଠି ଜିଲ୍ଲାର ଅଭୂତପୂର୍ବ ଜାତୀୟ ଉନ୍ମାଦନା ଖେଳାଇ ଦେଇଥିଲେ । ସେ ଥିଲେ ଜଗନ୍ନାଥ ମିଶ୍ର ।

୧୯୨୦ରେ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ଚନ୍ଦ୍ରଶେଖର ଓଡ଼ିଶାକୁ ଭାଷା ଭିତ୍ତିରେ ଏକ ପ୍ରଦେଶ ରୂପରେ ଗ୍ରହଣ କରିବାର ପ୍ରସ୍ତାବ ଦେଇଥିଲେ । କଂଗ୍ରେସ ଏହାକୁ ଗ୍ରହଣ କରିଥିଲା । ଏହା ଫଳରେ ଉତ୍କଳ ସମ୍ମିଳନୀ କଂଗ୍ରେସର ଏକ ଶାଖାରେ ପରିଣତ ହେଲା ଭଳି କାର୍ଯ୍ୟକଲା । ଚନ୍ଦ୍ରଶେଖରଙ୍କ ସମେତ ଏହି ଅଧିବେଶନରେ ସମ୍ବଲପୁରର ଦାଶରଥି ମିଶ୍ର, ଧରଣୀଧର ମିଶ୍ର ଯୋଗ ଦେଇଥିଲେ ।

ଓଡ଼ିଶା ପ୍ରଦେଶ ଗଠନ ବିଷୟରେ କଂଗ୍ରେସ ନେତାମାନଙ୍କ ସମର୍ଥନ ନ ପାଇ ୧୯୨୦-୨୧ ପୂର୍ବରୁ ମଧୁସୂଦନ ଦାସ କଂଗ୍ରେସରେ ଯୋଗ ଦେଇଥିଲେ ମଧ୍ୟ ନିଜକୁ ଏକରକମ ଦୂରେଇ ରଖିଥିଲେ ।

ନାଗପୁର ଅଧିବେଶନରେ ଭାଷାଭିତ୍ତିକ ଓଡ଼ିଶା ରାଜ୍ୟ ଗଠନ ପ୍ରସ୍ତାବ ଗୃହୀତ ହେବା ଫଳରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥିଲେ ମଧ୍ୟ ମାର୍ଚ୍ଚ ୨୦,୧୯୨୦ରେ ଓଡ଼ିଶାରେ ଜାତୀୟ କଂଗ୍ରେସର ଏକ ପ୍ରାଦେଶିକ ଶାଖା ଗଠିତ ହେଲା । ପଣ୍ଡିତ ଗୋପବନ୍ଧୁ ଦାସ ଏହାର ଅଧ୍ୟକ୍ଷ ଓ ଭାଗୀରଥି ମହାପାତ୍ର ସଂପାଦକ ଦାୟିତ୍ୱ ଗ୍ରହଣ କଲେ ।

ଅଖିଳ ଭାରତୀୟ କଂଗ୍ରେସ କମିଟି ପାଇଁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଯେଉଁ ୧୨ଜଣ ପ୍ରତିନିଧିଙ୍କୁ ମନୋନୀତ କଲା, ସେଥିରେ ସମ୍ବଲପୁରର ବ୍ରଜମୋହନ ପଣ୍ଡା ଥିଲେ ଅନ୍ୟତମ । ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ କଂଗ୍ରେସ ପକ୍ଷରୁ ସମ୍ବଲପୁର ଜିଲାର ସଙ୍ଗଠନ ଦାୟିତ୍ୱ ଦିଆଯାଇଥିଲା ।

ଅସହଯୋଗ ଆନ୍ଦୋଳନ ଆଗରୁ ଆରମ୍ଭ ହୋଇସାରିଥିଲା । ଗାନ୍ଧିଜୀଙ୍କ ଡାକରାରେ ଅନ୍ୟମାନଙ୍କ ସହ ସମ୍ବଲପୁରର ଦୁଇଜଣ ଓକିଲ ମହେନ୍ଦ୍ରନାଥ ବର୍ମା ଓ ଅଚ୍ୟୁତାନନ୍ଦ ପୁରୋହିତ ଆଇନ ବ୍ୟବସାୟ ପରିତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ।

ସେତେବେଳେ ସମ୍ବଲପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟ ଜନୈକ ଶିକ୍ଷକ ଫକୀର ମିଶ୍ର ଛାତ୍ରମାନଙ୍କ ମଧ୍ୟରେ ସ୍ୱଦେଶୀ ଭାବନା ସଂଚାର କରାଇବା ସହ ଗୋପନରେ ବିଦେଶୀ ବସ୍ତ୍ର ପୋଡ଼ିଥିଲେ । ଏହା ପୂର୍ବରୁ ୧୯୦୮ରେ ଗୋକୁଳଚନ୍ଦ୍ର ବାବୁ, ଜନାର୍ଦନ ପୂଜାରୀ, ଜନାର୍ଦନ ସୂପକାର, ଶଙ୍କର ପ୍ରସାଦ ମିଶ୍ର, ବାଲୁଙ୍କେଶ୍ୱର ପଣ୍ଡା, ହରିଶଙ୍କର ପୃଷେଠ,

ପର୍ଶୁରାମ ସାହାଣୀ, କୃପାସିନ୍ଧୁ ଦର୍ଜୀ ପ୍ରମୁଖ ଲୋକମାନଙ୍କ ପାଖରୁ ବିଦେଶୀ ବସ୍ତ୍ର ସଂଗ୍ରହ କରି ପୂଜାରୀପଡ଼ା ଗଳିମୁହଁରେ ପୋଡ଼ିଥିଲେ । ଏମାନେ ସମସ୍ତେ ସେତେବେଳେ ଥିଲେ ଛାତ୍ର । ତତ୍‌କାଳୀନ ସଂସ୍କୃତ ହେଡ୍ ପଣ୍ଡିତ ଶ୍ରୀ ମିଶ୍ର ସେମାନଙ୍କ ପ୍ରେରଣାର ଉତ୍ସ ଥିଲେ ।

୧୯୨୧ରେ ସମଗ୍ର ଜିଲାରେ ଅସହଯୋଗ ଆନ୍ଦୋଳନ ବ୍ୟାପିଗଲା । ସମ୍ବଲପୁର,ବରଗଡ଼, ଝାରସୁଗୁଡ଼ାରେ ଏ ଆନ୍ଦୋଳନ ତୀବ୍ରତର ରୂପ ନେଲା ।

ଜାତୀୟତାବାଦ ଓ ଜାତିପ୍ରେମରେ ଉଦ୍‌ବୁଦ୍ଧ ହୋଇ ସମ୍ବଲପୁର ଜିଲା ସ୍କୁଲର ଛାତ୍ରମାନେ ୧୯୨୧ ଜାନୁଆରୀ ୨ତାରିଖ ଦିନ ବୁଢ଼ାରଜା ପାହାଡ଼ ତଳେ ଏକ ସଭା କଲେ । ସେ ଦିନ ଥିଲା ରବିବାର ଛୁଟି ଦିନ । ଏହି ସଭାରେ ଅରୁଣ ଦାସ, ମହମ୍ମଦ ହୁସେନ, ଅବ୍‌ଦୁଲ ମଜୀଦ, ଲକ୍ଷ୍ମୀନାରାୟଣ ମିଶ୍ର, ଚନ୍ଦ୍ରଶେଖର ପାଣିଗ୍ରାହୀ, ବେଣୀମାଧବ ସୂପକାର, ଜଗନ୍ନାଥ ମିଶ୍ର, ଗୌରୀଶଙ୍କର ସାହାଣୀ, ନୃସିଂହ ଗୁରୁ, କୃତାର୍ଥ ଆଚାର୍ଯ୍ୟ ପ୍ରମୁଖ ଛାତ୍ର ଅସହଯୋଗ ଆନ୍ଦୋଳନରେ ବାର୍ତ୍ତା ପ୍ରଚାର କରି ଅଗ୍ନିବର୍ଷୀ ଭାଷଣ ଦେଲେ । ଛାତ୍ର ମହଲରେ ଅଭୂତପୂର୍ବ ଉନ୍ମାଦନା ଖେଳିଗଲା ।

ଏହି ଛାତ୍ରସଭାର ପ୍ରଭାବ ଥିଲା ଅନପେକ୍ଷିତ । ଏହି ଐତିହାସିକ ସଭାରେ ପରଦିନ ସ୍କୁଲବର୍ଜନ ପାଇଁ ପ୍ରସ୍ତାବ ଗୃହୀତ ହେଲା ଓ ସମ୍ବଲପୁରରେ ହରତାଳର ଡାକରା ଦିଆଗଲା ।

ତା'ପର ଦିନ ଜାନୁୟାରୀ ୩ ତାରିଖ ଦିନ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ନେତୃତ୍ୱରେ ଦୁଇ ଶତାଧିକ ଛାତ୍ର ସମ୍ବଲପୁର ଜିଲା ସ୍କୁଲ ବର୍ଜନ କଲେ । ସେହିଦିନ ସହରରେ ସଂପୂର୍ଣ୍ଣ ହରତାଳ ମଧ୍ୟ ଅଭୂତପୂର୍ବ ଭାବରେ ସଫଳ ହେଲା । ଛାତ୍ରମାନଙ୍କ ଡାକରାରେ ଲୋକେ ସ୍ୱତଃପ୍ରବୃତ୍ତ ଭାବରେ ହରତାଳକୁ ସଫଳ କରିଥିଲେ । ଏହା ପଛରେ ଚନ୍ଦ୍ରଶେଖର, ଜନାର୍ଦ୍ଦନ ସୂପକାର, ଧରଣୀଧର ମିଶ୍ର, ଦାଶରଥୀ ମିଶ୍ର ଓ ଅନ୍ୟମାନଙ୍କ ପୃଷ୍ଠ ପ୍ରେରଣା ରହିଥିଲା ।

ସେହି ଦିନ ବାଲିବନ୍ଧାର ସୋମନାଥ ମନ୍ଦିର ସମ୍ମୁଖରେ ଏକ ବିରାଟ ଜନସଭା ହୋଇ ଥିଲା । ସଭାରେ ଚନ୍ଦ୍ରଶେଖର ବେହେରା, ଦାଶରଥି ମିଶ୍ର, ସେଠ ଲଦାଭାଇ ଥାରିଆ, ରତନ ସିଂହ ଭାଇ, ସେଠ ରାମପ୍ରତାପ, ଜନାର୍ଦନ ସୂପକାର, ଆନନ୍ଦରାମ ଶୁକ୍ଳ, ରାମକୃଷ୍ଣ ବେହେରା, ବୈକୁଣ୍ଠ ବେହେରା, ମହେନ୍ଦ୍ରନାଥ ବର୍ମା ପ୍ରମୁଖ ଓ ଛାତ୍ରମାନେ ଉଦ୍‌ବୋଧନ ଦେଇଥିଲେ । କେବଳ ସମ୍ବଲପୁର କି ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷରେ ସ୍ୱାଧୀନତା ସଂଗ୍ରାମ ଓ ଅସହଯୋଗ ଆନ୍ଦୋଳନରେ ସମ୍ବଲପୁରର ଏ ଛାତ୍ର ଆନ୍ଦୋଳନ ଓ ହରତାଳ ଥିଲା ଅନ୍ୟତମ । ଓଡ଼ିଶାରେ ଥିଲା ପ୍ରଥମ ।

ନିର୍ଭିକ ଆଇନଜୀବୀ ତଥା ଉତ୍କଳ ସମ୍ମିଳନୀର ପୂର୍ବତନ ସଭାପତି ଚନ୍ଦ୍ରଶେଖର ବେହେରା, ଦାଶରଥୀ ମିଶ୍ର ଓ ଅନ୍ୟାନ୍ୟ ସହଯୋଗୀମାନଙ୍କ ସାହାଯ୍ୟରେ ଏହି ଛାତ୍ର ଆନ୍ଦୋଳନକୁ ଉଜ୍ଜୀବିତ ରଖିବା ଲାଗି ଭାରତୀୟ ନେତୃବୃନ୍ଦଙ୍କୁ ଅଭିହିତ କରାଇଥିଲେ ।

ସମ୍ବଲପୁର ଜିଲାସ୍କୁଲ ଛାତ୍ରଙ୍କ ବିଦ୍ୟାଳୟ ବର୍ଜନ ଓ ସମ୍ବଲପୁରର ହରତାଳ ଦେଶର ସ୍ୱାଧୀନତା ସଂଗ୍ରାମର ଇତିହାସରେ ସେତେବେଳେ ସର୍ବପ୍ରଥମ ଘଟଣା ହୋଇଥିବାରୁ ବଙ୍ଗଳାର 'ଦି ସର୍ଭେଣ୍ଟ' ପତ୍ରିକାର ସଂପାଦକ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ ସଂପାଦକୀୟରେ ଲେଖିଥିଲେ-

''କାହିଁ ଜଙ୍ଗଲ ଭିତରେ ସମ୍ବଲପୁର । ସେଠାରେ ତରୁଣ ଛାତ୍ରଗଣ
ଅସହଯୋଗ ଆନ୍ଦୋଳନରେ ସ୍କୁଲ ବର୍ଜନ କରିଛନ୍ତି, ଅଥଚ
କଲିକତା ନଗରୀରେ ଉନ୍ମାଦନା ଦେଖାଯାଉ ନାହିଁ ।''

ପଣ୍ଡିତ ଗୋପବନ୍ଧୁ ଦାସ ଖବର ପାଇ କହିଥିଲେ :

''ସୁଦୂର ସମ୍ବଲପୁରରେ ମହାମାନବର ଡାକ ଶୁଭିଲା ।
ସେମାନେ (ଛାତ୍ରମାନ-ଲେ.)ସ୍କୁଲ ଛାଡ଼ି ବାହାରି ଆସିଲେ ।
ତମର ଏଠି କାହାର ନିନ୍ଦ ଭାଙ୍ଗୁ ନାହିଁ । ମାତ୍ର ମନେରଖ,
ତମର ଉତ୍ତରାଧିକାରୀମାନେ ତମକୁ କଣ କହିବେ ?
ସେମାନେ ଭାବିବେ - ଆମ ବାପ ଅଜା ଏତେ ଭୀରୁ ଥିଲେ ।''

ଡ. ହରେକୃଷ୍ଣ ମହତାବ ଲେଖିଥିଲେ :

''୧୯୨୧ ମସିହାରେ ସମ୍ବଲପୁରରେ ପ୍ରଥମ ସ୍କୁଲ ବର୍ଜନ
ଉତ୍ସାହ ସହକାରେ ଆରମ୍ଭ ହୋଇଥିଲା ଏବଂ ସମ୍ବଲପୁରର
ଉଦାହରଣ କଲିକତାରେ ଦିଆହୋଇ ଇଂରେଜୀ ଶିକ୍ଷାନୁଷ୍ଠାନ
ବର୍ଜନ ପାଇଁ ଆହ୍ୱାନ କରାଯାଇଥିଲା ।''

ଦେଶର ବଡ଼ବଡ଼ ପତ୍ରପତ୍ରିକାମାନଙ୍କରେ ଏ ଘଟଣାର ପ୍ରଶଂସା କରି ସମ୍ବାଦ, ସଂପାଦକୀୟମାନ ପ୍ରକାଶ ପାଇଥିଲା ।

ବିଦ୍ୟାଳୟ ପରିତ୍ୟାଗ କରିଥିବା ଛାତ୍ରମାନଙ୍କ ଶିକ୍ଷା ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ଚନ୍ଦ୍ରଶେଖର ବେହେରାଙ୍କ ଉଦ୍ୟମରେ ସମ୍ବଲପୁରର ଫ୍ରେଞ୍ଚର କ୍ଲବ୍‌ଠାରେ ୧୯୨୧ରେ

ଓଡ଼ିଶାର ପ୍ରଥମ 'ଜାତୀୟ ବିଦ୍ୟାଳୟ' ପ୍ରତିଷ୍ଠା ହେଲା । ଚନ୍ଦ୍ରଶେଖର ବେହେରା ଏହି କ୍ଲବ ର ସଭାପତି ଥିବାରୁ କ୍ଲବ ଘରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ସମ୍ଭବ ହୋଇ ପାରିଥିଲା ।

ପ୍ରାରମ୍ଭରେ ଶଙ୍କର ପ୍ରସାଦ ପାଢ଼ୀ, ସୟଦ ଅବଦୁଲ୍, ବଳଦେବ ବହିଦାର ପମୁଖ ସମ୍ବଲପୁରର ବହୁ ବିଶିଷ୍ଟ ବ୍ୟକ୍ତି ଏହି ବିଦ୍ୟାଳୟରେ ଅବୈତନିକ ଶିକ୍ଷକ ଭାବରେ ଯୋଗ ଦେଇଥିଲେ ।

ଏ ଘଟଣା ଜାଣି ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଓ ଜଗନ୍ନାଥ ମିଶ୍ରଙ୍କ ବଡ଼ଭାଇ ଭାଗୀରଥୀ ମିଶ୍ରଙ୍କୁ ନେଇ ସମ୍ବଲପୁର ଆସିଲେ । କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପନା ଛାଡ଼ି ନୀଳକଣ୍ଠ ଦାସ ଜାତୀୟ ବିଦ୍ୟାଳୟରେ ଯୋଗଦାନ କରି ପ୍ରଧାନ ଶିକ୍ଷକ ଓ ଭାଗୀରଥି ମିଶ୍ର ସହକାରୀ ପ୍ରଧାନ ଶିକ୍ଷକ ରହିଲେ । ଆଇନଜୀବୀ ମହେନ୍ଦ୍ରନାଥ ବର୍ମା ଓ ଅଚ୍ୟୁତାନନ୍ଦ ପୁରୋହିତ ବିଦ୍ୟାଳୟରେ ପ୍ରତ୍ୟହ ସାମୟିକ ଶିକ୍ଷାଦାନ କରୁଥିଲେ । ଅମ୍ବିକା ପ୍ରସାଦ ପଟ୍ଟନାୟକ, ବାଳମୁକୁନ୍ଦ ମିଶ୍ର, ଅନନ୍ତରାମ ବେହେରା, ବିଷ୍ଣୁପ୍ରସାଦ ସିଂହ ଶିକ୍ଷକ ଥିଲେ । ପଣ୍ଡିତ ଶିବକୁମାର ଶାସ୍ତ୍ରୀ, ସଂସ୍କୃତ, କମଳ ପ୍ରସାଦ ହିନ୍ଦୀ, ପର୍ଶୁରାମ ସାହାଣି ବ୍ୟାୟାମ ଶିକ୍ଷକ ଥିଲେ । ଭଗବାନ ପ୍ରସାଦ ରେଓ୍ୱାନୀ, ନୀଳମଣି ମହାକୁଡ଼ ଶିକ୍ଷାଦାନ କରୁଥିଲାବେଳେ ପାଟଣାରୁ ଇଂଜିନିୟରିଂ ସ୍କୁଲର ପାଠପଢ଼ା ଛାଡ଼ି ଗଣେଷ ପ୍ରସାଦ ପାଢୀ ଓ ଚକ୍ରଧର ପଣ୍ଡା ଜାତୀୟ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ଏତଦ୍‌ଭିନ୍ନ ଚରଖା ନିର୍ମାଣ ପାଇଁ ଜଙ୍ଗଲୀ ମିସ୍ତ୍ରୀ, ଲୁଗାବୁଣା ପାଇଁ ଗୌରାଙ୍ଗ ମେହେର, ଖଟଦଉଡ଼ି ଶିକ୍ଷାଦାନ ପାଇଁ ହରିଜନ ଗଜରାଜ ନିଯୁକ୍ତ ପାଇଥିଲେ । ମାତ୍ର କେଇ ଜଣ ଶିକ୍ଷକ ନାମକୁ ମାତ୍ର ଦରମା ପାଉଥିଲାବେଳେ ଅନ୍ୟମାନେ ଥିଲେ ସଂପୂର୍ଣ୍ଣ ଅବୈତନିକ ।

ଏହି ବିଦ୍ୟାଳୟ ପାଇଁ ଚନ୍ଦ୍ରଶେଖର ବେହେରା ବିଶେଷ ଚାନ୍ଦା ଦେବା ସହ ଚାନ୍ଦା ମଧ୍ୟ ସଂଗ୍ରହ କରୁଥିଲେ । ସେ ବିଦ୍ୟାଳୟକୁ ଆବଶ୍ୟକ ଆଲମିରା, ଟେବୁଲ, ଚୌକି ଆଦି ଯୋଗାଇ ଦେଇଥିଲେ । ଜାତୀୟ କଂଗ୍ରେସର କଲିକତା ଅଧିବେଶନରେ ଏହି ଜାତୀୟ ବିଦ୍ୟାଳୟ ବିଶେଷ ପ୍ରଶଂସା କରାଯାଇଥିଲା ।

ସେତେବେଳେ ଅନ୍ୟୂନ ୨୦୦ଜଣ ଛାତ୍ର ଏହି ବିଦ୍ୟାଳୟରେ ନାମ ଲେଖାଇଥିଲେ । ସାଧାରଣ ଶିକ୍ଷା ସାଙ୍ଗକୁ ସୁତାକଟା, ଲୁଗାବୁଣା, ବଢ଼େଇ କାମ, ବିଭିନ୍ନ ଶିଳ୍ପ କାରିଗରି ଶିକ୍ଷା ସହ ହିନ୍ଦୀ ଶିକ୍ଷାର ମଧ୍ୟ ବ୍ୟବସ୍ଥା ରହିଥିଲା । ତା'ସହିତ ଏହି ବିଦ୍ୟାଳୟ ଛାତ୍ରମାନଙ୍କ ଭିତରେ ଜାତୀୟତାବାଦ, ଦେଶପ୍ରେମ ଓ ସ୍ୱାଧୀନତା ଆନ୍ଦୋଳନର ଶିକ୍ଷା ପୀଠ ଭାବେ କାର୍ଯ୍ୟ କରୁଥିଲା । ଛାତ୍ର ଓ ଶିକ୍ଷକମାନେ ଅବସର ସମୟରେ ଜିଲ୍ଲାର ଗ୍ରାମାଞ୍ଚଳରେ ଏବଂ

ଜିଲ୍ଲାର କୋଣ ଅନୁକୋଣରେ ଆନ୍ଦୋଳନ ଓ ଗାନ୍ଧୀ-ବାର୍ତ୍ତା ପ୍ରଚାରରେ ଲାଗିଥିଲେ । ଜିଲ୍ଲାର ପ୍ରତ୍ୟେକ ଭାଗରେ ପ୍ରତ୍ୟହ ଜନସଭାମାନ ଆୟୋଜନ କରାଯାଉଥିଲା ।

ଜାତୀୟ ବିଦ୍ୟାଳୟର ଛାତ୍ରାବାସ ପାଇଁ ବ୍ରଜମୋହନ ପଣ୍ଡା ଘର ଯୋଗାଇ ଦେଇଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ ସମ୍ବଲପୁର ଆସିଥିଲା ବେଳେ ତାଙ୍କୁ ଓ ଅନ୍ୟମାନଙ୍କୁ ସମ୍ବଲପୁରରେ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେମାନେ ଚନ୍ଦ୍ରଶେଖରଙ୍କ ଘରେ ଅତିଥି ହୋଇଥିଲେ ।

ସେତେବେଳେ ସମ୍ବଲପୁରରୁ 'ଉତ୍କଳ ସେବକ' ଓ 'ସାଧନା' ସାପ୍ତାହିକ ପତ୍ରିକା ସ୍ୱପ୍ନେଶ୍ୱର ଦାସଙ୍କ ସଂପାଦନାରେ ପ୍ରକାଶ ପାଉଥିଲା । ପରେ ନୀଳକଣ୍ଠ ଦାସଙ୍କ ସଂପାଦନାରେ ସାପ୍ତାହିକ ପତ୍ରିକା 'ସେବା' ଧରଣୀଧର ମିଶ୍ରଙ୍କ 'ମିଶ୍ର ପ୍ରେସ'ରୁ ପ୍ରକାଶ ପାଇଥିଲା । ପରେ ଧରଣୀଧର ମିଶ୍ର ଏହାର ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । ସ୍ୱାଧୀନତା ଓ ଅସହଯୋଗ ଆନ୍ଦୋଳନର ସଙ୍ଗଠନରେ ଏହି ପତ୍ରିକାମାନ ମୁଖ୍ୟ ଭୂମିକା ଗ୍ରହଣ କରିବା ସହ ସମଗ୍ର ଓଡ଼ିଶାରେ ଆଦୃତ ହୋଇପାରିଥିଲା ।

ଜାତୀୟ ବିଦ୍ୟାଳୟ ଠିକଣା ଭାବରେ ଚାଲୁଥିବା ବେଳେ ଅଚାନକ ଏହାର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଲା । ଏହା ଫଳରେ ବିଦ୍ୟାଳୟର ପରିଚାଳନାଗତ ଅସୁବିଧା ସୃଷ୍ଟି ହେଲା । ଛାତ୍ରମାନେ ଏଥିରେ ନିରୁତ୍ସାହିତ ହୋଇ ନିଜ ବ୍ୟବସ୍ଥା ନିଜେ କରିବାକୁ ବାଧ୍ୟ ହେଲେ ।

ତଥାପି କେତେକ ଛାତ୍ର ମୁକ୍ତି ପଥର ଯାତ୍ରୀ ହେବାକୁ ଶ୍ରେୟସ୍କର ମନେ କରି ସ୍ୱାଧୀନତା ଆନ୍ଦୋଳନରେ ସଂପୂର୍ଣ୍ଣ ଭାବରେ ଝାସ ଦେଲେ ।

ଛାତ୍ର ଆନ୍ଦୋଳନର ପ୍ରେରଣା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ତଥା ସୁଦୂର କଲିକତା ମହାନଗରୀ ଆଦିର ଛାତ୍ର ସମାଜରେ ଦେଶପ୍ରେମ ଜ୍ୱାଳାକୁ ଉଦ୍ଦୀପ୍ତ କରିଥିଲା । ସେହିପରି ଅନ୍ୟ ଦିଗରେ ଛାତ୍ର ଆନ୍ଦୋଳନ ପରେ ଜିଲା ପ୍ରଶାସନ ପକ୍ଷରୁ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ଗତିବିଧି ଉପରେ ନିୟନ୍ତ୍ରଣ ଜାରି କରାଗଲା ।

୧୯୨୧ରେ ସମଗ୍ର ଅବିଭକ୍ତ ସମ୍ବଲପୁର ଜିଲାରେ ଅସହଯୋଗ ଆନ୍ଦୋଳନର ଜୁଆର ଉଠିଲା । ଜିଲା କଂଗ୍ରେସ କମିଟିର ପ୍ରଥମ ନିର୍ବାଚନ ହେଲା । ଏଥିରେ ଚନ୍ଦ୍ରଶେଖର ବେହେରା ଅଧ୍ୟକ୍ଷ, ଗୋକୁଳଚନ୍ଦ୍ର ବାବୁ, ସଂପାଦକ ଓ ସ୍ୱପ୍ନେଶ୍ୱର ଦାସ ଯୁଗ୍ମ-ସଂପାଦକ

ରହିଥିଲେ । ଚନ୍ଦ୍ରଶେଖରଙ୍କ ପରେ ନୀଳକଣ୍ଠ ଦାସ ଜିଲ୍ଲା କଂଗ୍ରେସ ସଭାପତି ପଦଭାର ଗ୍ରହଣ କରିଥିଲେ । ଏ ଆନ୍ଦୋଳନ ବନାଗ୍ନି ପରି ବରଗଡ଼, ଝାରସୁଗୁଡ଼ା, ଅତାବିରା, କୁଚିଣ୍ଡା,ଭେଡେନ, ପଦ୍ମପୁର ଆଦିକୁ ବ୍ୟାପିଗଲା । ଲକ୍ଷ୍ମୀନାରାୟଣ ମିଶ୍ର, ଚନ୍ଦ୍ରଶେଖର ପାଣିଗ୍ରାହୀ, ଅରୁଣ ଦାସ ଗ୍ରାମାଞ୍ଚଳ ପ୍ରଚାର ଦାୟିତ୍ୱରେ ରହିଲେ । ସେମାନେ ଟୁକୁରା, ନୂଆପାଲି, ଗୋବିନ୍ଦପୁର, ଭଟଲି, କୁସନପୁରୀ, କନାବିରା. ସରେଇପାଲି, ଢୁଚିଦା. ଆମ୍ବାଭୋନା ଆଦିରେ ବ୍ୟାପକ ସଂଗଠନ କରି ୨୮୦୦ଜଣ କଂଗ୍ରେସ ସଭ୍ୟ ସଂଗ୍ରହ କଲେ । ସୁତାକଟା, ନିଶାନିବାରଣ, ସ୍କୁଲକଲେଜ ବର୍ଜନ, ଅଦାଲତ ବର୍ଜନର ଆହ୍ୱାନ ଦିଆଯାଇ ପଞ୍ଚାୟତ ମାଧ୍ୟମରେ ବିବାଦ ତୁଟାଇବାର ଆହ୍ୱାନ ଦିଆଗଲା । ସରକାର ପକ୍ଷରୁ ଜିଲାର ବିଭିନ୍ନ ସ୍ଥାନରେ ଏହାର ବିରୋଧୀ ସଭାମାନ ଆୟୋଜିତ ହେଲା । ଲୋକଙ୍କୁ ହଇରାଣ ହରକତ କରି, ଧମକଚମକ ଦେଇ ଏଭଳି ଆନ୍ଦୋଳନରୁ ନିବୃତ୍ତ ରହିବାକୁ କୁହାଗଲା ।

୧୯୨୧ରେ ସମ୍ବଲପୁର ଜିଲାରେ ୪୮୦୦ଜଣ ଚାରିଅଣିଆ ପ୍ରାଥମିକ କଂଗ୍ରେସ ସଭ୍ୟ ଓ ଆବଶ୍ୟକ ପରିମାଣ ତିଳକ ସ୍ୱରାଜ ପାଣ୍ଠୀ ଚାନ୍ଦା ସଂଗ୍ରହ କରାଯାଇଥିଲା । ପ୍ରାୟ ୨୦୦୦ ଚ଼ରଖାରେ ସୁତାକଟା ଚାଲିଥିଲା । ଏସବୁ ମୂଳରେ ଜାତୀୟ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ସେମାନେ ଗ୍ରାମାଞ୍ଚଳରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ତ୍ତା ପହଞ୍ଚାଇବାର ବ୍ରତ ଗ୍ରହଣ କରି ସାରିଥିଲେ । କହିବାକୁ ଗଲେ ସେତେବେଳେ ସେମାନେ ହିଁ ଥିଲେ ଜିଲାରେ ଅସହଯୋଗ ଆନ୍ଦୋଳନ କର୍ଣ୍ଣଧାର ।

ଏହି ଆନ୍ଦୋଳନର ପରିସର ଥିଲା ଅତ୍ୟନ୍ତ ବ୍ୟାପକ । ବରଗଡ଼, ଝାରସୁଗୁଡ଼ା, ତାଳପଟିଆ, ରଂପେଲା, ମାନପୁର ଅସହଯୋଗ ଆନ୍ଦୋଳନର ମୁଖ୍ୟ କେନ୍ଦ୍ର ହୋଇଥିଲା । ଲକ୍ଷ୍ମୀନାରାୟଣ ଏପ୍ରିଲ ୬ରୁ ୧୩ ତାରିଖ, ଜାତୀୟ ସପ୍ତାହ ପାଳନ ଅବସରରେ ସ୍ଥାନେସ୍ଥାନେ କଂଗ୍ରେସ ପତାକା ଉତ୍ତୋଳନ କରିଥିଲେ । ବ୍ରିଟେନ ଯୁବରାଜଙ୍କ ଭାରତ ଆଗମନ ବିରୋଧରେ ସହରରେ ସଫଳ ହରତାଳ କରାଇଥିଲେ । ନଭେମ୍ବର ୧୬ରେ ଗାନ୍ଧୀଘାଟରେ ସଭା ହେଲା । ଧରଣୀଧର ମିଶ୍ର, ଗଣେଷ ପ୍ରସାଦ ପାଢ଼ୀ, ଭାଗିରଥୀ ମିଶ୍ର, ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ଉପରେ ନିଷେଧାଜ୍ଞା ଜାରି ହେଲା ।

ଝାରସୁଗୁଡ଼ା ଓ ମାନପୁର ଜିଲାର ଦୁଇଟା ମୁଖ୍ୟ ପ୍ରଚାର କେନ୍ଦ୍ର ଥିଲା । ଝାରସୁଗୁଡ଼ାରେ ମହାବୀର ସିଂହ ଓ ମାନପୁରରେ ଘନଶ୍ୟାମ ପାଣିଗ୍ରାହୀ ଏହାର ନେତୃତ୍ୱ

ନେଇଥିଲେ । ଘନଶ୍ୟାମ ପାଣିଗ୍ରାହୀଙ୍କ ପରିବାର ମଧ୍ୟ ଏଥିରେ ଅକୁଣ୍ଠ ସାହାଯ୍ୟ ସହଯୋଗ କରିଥିଲେ ।

ସେହିପରି ବରପାଲିରେ ଭାଗୀରଥୀ ପଟ୍ଟନାୟକ, ପଞ୍ଚପଡ଼ାରେ ଚିନ୍ତାମଣି ପୂଜାରୀ, ପାଣିମୋରାରେ ଯଶୋବନ୍ତ ଭୋଇ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଝାରସୁଗୁଡ଼ାର ଶୁକରାମ ତନ୍ତୀ, କଷ୍ଟରାମ ତନ୍ତୀ, କନାରାମ ତନ୍ତୀ ନିରକ୍ଷର ହରିଜନ ହୋଇ ମଧ୍ୟ କଂଗ୍ରେସରେ ଯୋଗ ଦେଇ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ମହାବୀର ସିଂହଙ୍କ ନେତୃତ୍ୱରେ ଝାରସୁଗୁଡ଼ା ଅଞ୍ଚଳରେ ଆନ୍ଦୋଳନ ଆଗେଇଲା । ଗାଁ-ଗାଁରେ ସଭାମାନ ହେଲା । ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର ହେଲା । ଇଂରେଜ ସରକାର ବିରୋଧୀ ପ୍ରତିବାଦାତ୍ମକ ସ୍ୱର ଜମାଟ ବାନ୍ଧିବାକୁ ଲାଗିଲା । ମହାବୀର ସିଂହ ଗିରଫ ହୋଇ ୬ମାସ କାରାବରଣ କରିଥିଲେ । ତାଙ୍କୁ ଗିରଫ କରିବାର ପ୍ରତିବାଦରେ ଝାରସୁଗୁଡ଼ାରେ ଏକ ବିରାଟ ଶୋଭାଯାତ୍ରା ବାହାରିଥିଲା । ମହାବୀର ୧୯୨୨ରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଦସ୍ୟ ହୋଇଥିଲେ ।

ଝାରସୁଗୁଡ଼ା ପ୍ରଚାର କେନ୍ଦ୍ର ଅଧୀନରେ ପଞ୍ଚପଡ଼ା, ସମଡ଼ା ଓ ଝିର୍ଲାପାଲି ଶାଖା କେନ୍ଦ୍ର ଥିଲା । ଚିନ୍ତାମଣି ପୂଜାରୀ, ମୋହନ ସିଂହ ଓ ରତ୍ନାକର ପଟେଲ ଏଗୁଡ଼ିକର ଦାୟିତ୍ୱରେ ଥିଲେ ।

ପଞ୍ଚପଡ଼ା ଓ ଝିର୍ଲାପାଲି ହାତକଟା ସୂତା ଉତ୍ପାଦନର ବିଶିଷ୍ଟ କେନ୍ଦ୍ର ଥିଲା । ଲଇକେରା ଥାନାର ଭାଲୁପଡ଼ା ମଧ୍ୟ ହାତକଟା ସୂତା ଉତ୍ପାଦନ କେନ୍ଦ୍ରଥିଲା । ରାଞ୍ଚି ଜଗନ୍ନାଥପୁରର ଲାଲା ତ୍ରିଲୋଚନ ଶାହଦେଓ ସୂତା ସଂଗ୍ରହର ବିଶେଷ ଦାୟିତ୍ୱ ତୁଲାଉଥିଲେ । ଶାହଦେଓ ଓ ନୃସିଂହ ଗୁରୁ ସେ ଅଞ୍ଚଳର ମୁଖ୍ୟ ପ୍ରଚାର କାର୍ଯ୍ୟ ଦାୟିତ୍ୱରେ ଥିଲେ ।

ସମ୍ବଲପୁର ବାଲିବନ୍ଧା ଘାଟଠାରେ ଏହି ସମୟରେ ବିଲାତି ଲୁଗା ପୋଡ଼ାଯାଇଥିଲା । ଏହି ଲୁଗାର ପରିମାଣ ଏତେ ବେଶୀ ଥିଲା ଯେ ତାହା କଳନା କରି ହେବ ନାହିଁ ବୋଲି ଡ. ଶ୍ରଦ୍ଧାକର ସୂପକାର ପ୍ରକାଶ କରିଥିଲେ ।

ସେହି ସମୟରେ ସମ୍ବଲପୁରରେ ଓକିଲମାନଙ୍କ ଅଦାଲତ ବର୍ଜନ ମଧ୍ୟ ସଫଳ ହୋଇଥିଲା । ସମ୍ବଲପୁରରେ ବୋଧରାମ ଦୁବେ, ଆଚ୍ୟୁତାନନ୍ଦ ପୁରୋହିତ, ଭାଗୀରଥି ମିଶ୍ର ପ୍ରମୁଖ ଓକିଲ, ଓକିଲାତି ବର୍ଜନ କରିଥିଲେ ଓ ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇଥିଲେ ।

ସେହି ବର୍ଷ କଂଗ୍ରେସ କାର୍ଯ୍ୟକାରୀ କମିଟି, ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଭ୍ୟ ଭାବେ ବ୍ରଜମୋହନ ପଣ୍ଡା ରହିଥିଲେ ।

ଛାତ୍ର ଆନ୍ଦୋଳନଜନିତ କଟକଣାକୁ ଖାତର ନ କରି ଲକ୍ଷ୍ମୀନାରାୟଣ ମିଶ୍ର ଜାତୀୟ କଂଗ୍ରେସର ଆହ୍ୱାନକ୍ରମେ ଇଂଲଣ୍ଡ ଯୁବରାଜଙ୍କ ଆଗମନ ବିରୋଧରେ ସମ୍ବଲପୁରରେ ଏକ ଧର୍ମଘଟର ଆୟୋଜନ କରିଥିଲେ । ରାଜନୀତିରେ ସକ୍ରିୟ ଅଂଶଗ୍ରହଣ ଯୋଗୁଁ ତାଙ୍କୁ ବିଦ୍ୟାଳୟରୁ ବହିଷ୍କାର କରାଯାଇ ସାରିଥିଲା । ଏହି ଧର୍ମଘଟ ଡିସେମ୍ବର ୧୭,୧୯୨୧ ଦିନ ଆୟୋଜିତ ହୋଇଥିଲା ।

୧୯୨୨ରେ ଶାସନ ନିକଟସ୍ଥ ସମାସିଂହାର ଏକ ଖଦି କେନ୍ଦ୍ର ନୃସିଂହ ଗୁରୁଙ୍କ ଦାୟିତ୍ୱରେ ପରିଚାଳିତ ହେଉଥିଲା । ବରଗାଁଠାରେ ମଧ୍ୟ ଅନ୍ୟ ଏକ ପ୍ରଧାନ ଖଦୀ ଉତ୍ପାଦନ କେନ୍ଦ୍ର ରହିଥିଲା ।

ଅସହଯୋଗ ଆନ୍ଦୋଳନ ସମୟରେ ଗୋପବନ୍ଧୁ ଚୌଧୁରୀ ବରଗଡ଼ର ଡେପୁଟି ମାଜିଷ୍ଟ୍ରେଟ ଥିଲେ । ସେ ଆନ୍ଦୋଳନରେ ଯୋଗ ଦେଇ ସରକାରୀ ଉଚ୍ଚ ଚାକିରୀ ତ୍ୟାଗ କରିଥିଲେ ।

ଏହି ଘଟଣା ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସମ୍ବଲପୁର୍‌ରେ ଅସହଯୋଗ ଆନ୍ଦୋଳନର କ୍ଷିପ୍ରତା ଅନୁଧ୍ୟାନ କରିବା ଲାଗି ସେ କଲିକତାରୁ ଦୁଇ ଜଣ କଂଗ୍ରେସ ନେତା ସତୀଶଚନ୍ଦ୍ର ଦାସଗୁପ୍ତ ଓ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀଙ୍କୁ ପଠାଇଥିଲେ ।

କଟକରୁ ଗୋପବନ୍ଧୁ ଚୌଧୁରୀ, ଗଞ୍ଜାମରୁ ନିରଂଜନ ପଟ୍ଟନାୟକ ପ୍ରମୁଖ ଅସିଥିଲାବେଳେ ଜୁନ ୧୮,୧୯୨୧ରେ ପାଟନାର ସଦାକତ ଆଶ୍ରମର ପ୍ରତିଷ୍ଠାତା ବାରିଷ୍ଟର ମଜହର-ଉଲ-ହକ୍ ଗୋପବନ୍ଧୁଙ୍କ ସହ ଆସିଥିଲେ । ସେ ସମ୍ବଲପୁରର ରାଣୀ ବଗିଚାଠାରେ ଏକ ସାଧାରଣ ସଭାକୁ ସମ୍ବୋଧିତ କରିଥିଲେ ।

ମହାତ୍ମାଗାନ୍ଧୀଙ୍କ ଆହ୍ୱାନ ଓ ଆନ୍ଦୋଳନରେ ଉଦ୍‌ବୁଦ୍ଧ ହୋଇ ବରପାଲିର ବରପୁତ୍ର ଭାଗୀରଥି ପଟ୍ଟନାୟକ ୧୯୨୨ରେ ଆନ୍ଦୋଳନରେ ଯୋଗ ଦେଇଥିଲେ । ଭାଗୀରଥି ପାଟଣା ମହାରାଜା ପୃଥ୍ୱୀରାଜ ସିଂହଦେଓଙ୍କ ଅଧୀନସ୍ଥ କର୍ମଚାରୀ ଥିଲାବେଳେ ରାଜା, ରାଜପରିବାରର ସଦସ୍ୟ ତଥା ପଦସ୍ଥ କର୍ମଚାରୀମାନଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ କରି ଗିରଫ ହୋଇଥିଲେ । ତାଙ୍କ ଘର ବାଜ୍ୟାପ୍ତିବେଳେ ବହୁ ଦେଶପ୍ରେମାତ୍ମକ ବହି ଓ ଖଦଡ଼ ବାହାରିଥିଲା । ତାଙ୍କୁ ବର୍ଷେ କାଳ କଠୋର କାରାଦଣ୍ଡ ହୋଇଥିଲା । ତା'ପରେ ସେ ବରପାଲିକୁ କେବଳ ଖଣ୍ଡେ ଚରଖା ଓ ଶିଳ ପଥର ନେଇ ଚାଲି ଆସିଥିଲେ ।

ଗୟା କଂଗ୍ରେସର ପ୍ରସ୍ତୁତି ପାଇଁ ୨୩ରୁ ୨୫ ଅକ୍ଟୋବର ୧୯୨୨ ପର୍ଯ୍ୟନ୍ତ ବାଲିବନ୍ଧାଠାରେ କଂଗ୍ରେସର ସଭା ହେଲା । ଭାଗୀରଥୀ ଏହାର ସଙ୍ଗଠନରେ ଲାଗି ପଡ଼ିଲେ । ସେ ଗାଁ-ଗାଁ ପଦଯାତ୍ରା କରି ଲୋକମାନଙ୍କୁ ଗାନ୍ଧୀବାଣୀ ଓ କଂଗ୍ରେସର ଆନ୍ଦୋଳନ ବିଷୟରେ ବୁଝାଉଥିଲେ । ସେ ବେକରେ ଢୋଲ ପକାଇ ଡିଙ୍ଗରା ପିଟି ହଜାର-ହଜାର ପ୍ରଚାରପତ୍ର ହାତରେ ଲେଖି, ଜାର୍ବନ କରି ଗାଁ-ଗାଁ ଯାଇ ବାଣ୍ଟୁଥିଲେ ।

ଜିଲା କଂଗ୍ରେସ କମିଟିର ସୁପାରିଶ କ୍ରମେ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ଗୟା କଂଗ୍ରେସର ପ୍ରତିନିଧି ହୋଇଥିଲେ । ସେ ମହାବୀର ସିଂହ ଓ ତାଙ୍କ ପତ୍ନୀ ଏବଂ ଜୟରାମଙ୍କ ସହ ଯାଇ ଗୟା କଂଗ୍ରେସରେ ଯୋଗ ଦେଇଥିଲେ । ଗାନ୍ଧୀ ଓ ନେତାଙ୍କ ଗିରଫ ପ୍ରତିବାଦରେ ସମ୍ବଲପୁରରେ ହରତାଲ ଆୟୋଜନ କରିଥିଲେ ଲକ୍ଷ୍ମୀନାରାୟଣ । ବରଗଡ଼ ବାଲିଟିକିରାରୁ ମଧ୍ୟବିତ୍ତ ଚାଷୀ ଫକୀର ବେହେରାଙ୍କ ଘର କଂଗ୍ରେସ ଆନ୍ଦୋଳନର ଏକ ଦୁର୍ଗରେ ପରିଣତ ହୋଇଥିଲା । ଫକୀର ବେହେରା ଖାଲି ପାଦରେ ମୋଟା ଖଦଡ଼, ଧୋତି, ଖଦଡ଼ ବଣ୍ଡି, ଗାନ୍ଧୀ ଟୋପି ପିନ୍ଧି, ଖଦଡ଼ ଚଦର ଘୋଡ଼ାଇ ବରଗଡ଼ ଅଞ୍ଚଳରେ କଂଗ୍ରେସର ସଙ୍ଗଠନ କାର୍ଯ୍ୟ କରୁଥିଲେ । ତାଙ୍କ ଘର ଉପରେ ସବୁବେଳେ କଂଗ୍ରେସ ପତାକା ଉଡୁଥିଲା । ମିଲ୍ ଲୁଗା ପୋଡ଼ିବା ଅପରାଧରେ ସେ ୧୯୨୦ରେ ହଜାରୀବାଗ ଜେଲରେ କାରାଦଣ୍ଡ ଭୋଗ କରିଥିଲେ ।

ରେମଣ୍ଡାର ମାଧବ ସାଥୁଆ ଅସହଯୋଗ ଆନ୍ଦୋଳନର ଜଣେ ବରିଷ୍ଠ କର୍ମକର୍ତ୍ତା ଥିଲେ । ଶିକ୍ଷକ ଘନଶ୍ୟାମ ପାଣିଗ୍ରାହୀ ୧୯୧୯ରେ ସରକାରୀ ଚାକିରୀରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ । ୧୯୨୧ର ଡିସେମ୍ବରରେ ସେ କଂଗ୍ରେସର ଅହମଦାବାଦ ଅଧିବେଶନରେ ଯୋଗ ଦେଇଥିଲେ ।

ସେଠାରୁ ଫେରି [illegible] କେତେକ ସହଯୋଗୀଙ୍କ ସହ କଂଗ୍ରେସ ସଭ୍ୟ ସଂଗ୍ରହ, ହିନ୍ଦୁ-ମୁସଲିମ ଏକତା, ଅସ୍ପୃଶ୍ୟ [illegible] ବିଦେଶୀଦ୍ରବ୍ୟ ବର୍ଜନ ଆଦିରେ ନିଜକୁ ନିୟୋଜିତ କରିଥିଲେ ।

ସେ ଏମିତି ଜଣେ ସମର୍ପିତ କଂଗ୍ରେସୀ ଥିଲେ ଯିଏ ନିଜ ସଦ୍ୟ ବିବାହିତ ପତ୍ନୀଙ୍କ ବନ୍ଧାପନା ଲୁଗା, ନିଜ ବିବାହ ଲୁଗାକୁ ମାନପୁର ଗାଁ ଦାଣ୍ଡରେ ପୋଡ଼ି ଆଜୀବନ ଖଦୀ ଧାରଣ କରିଥିଲେ ।

ଫକୀର ବେହେରା ୧୯୨୨ରେ ସମ୍ବଲପୁର ଜିଲାର ପ୍ରତିନିଧିତ୍ୱ କରି ପାଦରେ ଚାଲିଚାଲି ଗୟା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ସମ୍ବଲପୁରର ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠାରେ ମଧ୍ୟ ତାଙ୍କର ଯୋଗଦାନ ଥିଲା ।

ପଦ୍ମପୁରର ନିତ୍ୟାନନ୍ଦ ପାଢ଼ୀ ବିଦ୍ୟାଳୟ ପରିତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ପଦ୍ମପୁର ଅଞ୍ଚଳରେ ମୁକ୍ତି ସଂଗ୍ରାମରେ ବାର୍ତ୍ତା ପ୍ରଚାର କରିଥିଲେ ।

ଏପ୍ରିଲ ୨୬, ୧୯୨୧ ଦିନ ଗୋପବନ୍ଧୁ ଦାସ ଝାରସୁଗୁଡ଼ାକୁ କଂଗ୍ରେସର ପ୍ରଚାର କାର୍ଯ୍ୟରେ ଆସିଥିଲେ । ଠିକାଦାର ମହାବୀର ପ୍ରସାଦ ସିଂହ ତାଙ୍କୁ ସ୍ୱେଚ୍ଛାକୃତ ଆର୍ଥିକ ସାହାଯ୍ୟ ଦେଇଥିଲେ ।

ଭାଗୀରଥି ପଟ୍ଟନାୟକ, ଲକ୍ଷ୍ମୀନାରାୟଣ ମିଶ୍ର, ପଞ୍ଚପଡ଼ାର ଚିନ୍ତାମଣି ପୂଜାରୀ ମୁଙ୍ଗାପଡ଼ାର ବିହାରୀରାମ ତନ୍ତୀ ପ୍ରମୁଖ ଝାରସୁଗୁଡ଼ାରେ ଏକ କଂଗ୍ରେସ କାର୍ଯ୍ୟାଳୟ ସ୍ଥାପନ କରିଥିଲେ ।

ଗ୍ରାମାଞ୍ଚଳରେ ନିଶାଦ୍ରବ୍ୟ ବର୍ଜନ, ଅସ୍ପୃଶ୍ୟତା ନିବାରଣ, ବିଦେଶୀ ବସ୍ତ୍ର ବର୍ଜନ ପାଇଁ ପ୍ରଚାର ଅଭିଯାନ ଆରମ୍ଭ ହୋଇଥିଲା । ସୂତାକାଟିବା ପାଇଁ ମହିଳାମାନଙ୍କ ମଧ୍ୟରେ ବ୍ୟାପକ ପ୍ରଚାର କରାଯାଇଥିଲା ।

କଂଗ୍ରେସର ଜାତୀୟ କମିଟିର ଆହ୍ୱାନରେ ଝାରସୁଗୁଡ଼ାରେ ହରତାଳ ପାଳନ କରାଯାଇଥିଲା । ଛାତ୍ରମାନେ ଶ୍ରେଣୀବର୍ଜନ କରି ଏଥିରେ ଯୋଗ ଦେଇଥିଲେ ।

୧୯୨୨ ଏପ୍ରିଲ ୬ରୁ ୧୩ ତାରିଖ ପର୍ଯ୍ୟନ୍ତ ଝାରସୁଗୁଡାରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡର ସ୍ମାରକୀ ଦିବସ ପାଳନ କରାଯାଇଥିଲା । ଏଥିରେ ଭାଗୀରଥି ପଟ୍ଟନାୟକ, ଚିନ୍ତାମଣି ପୂଜାରୀ, ସୁଖରାମ ତନ୍ତୀ, କଷ୍ଟରାମ ତନ୍ତୀ ପ୍ରମୁଖଙ୍କୁ ଜେଲବରଣ କରିବାକୁ ପଡ଼ିଥିଲା ।

ଅସହଯୋଗ ଆନ୍ଦୋଳନରେ ଝାରସୁଗୁଡ଼ାର କଇଦରାମ ତନ୍ତୀ, ଶୁଖା ତନ୍ତୀ, କଷ୍ଟରାମ ତନ୍ତୀ ଆଦିଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସ୍ୱାଧୀନତାର ବାର୍ତ୍ତା ପ୍ରଚାର ନିମନ୍ତେ ବିହାରୀରାମ ତନ୍ତୀ ସ୍ୱଲିଖିତ ଗୀତ ଗାୟନକୁ ପ୍ରଧାନ ଆୟୁଧ କରିଥିଲେ ।

ରାଜପୁରର ପ୍ରଭାକର ମିଶ୍ର କଟକରେ ଛାତ୍ର ଥିବା ସମୟରୁ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ଆସୁଥିଲେ । କଂଗ୍ରେସର ପ୍ରଚାରପତ୍ର ଓ ବିଭିନ୍ନ ଖବରକାଗଜରେ ସରକାର ବିରୋଧୀ ଲେଖା ପ୍ରକାଶିନ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥାଇଥିଲା । ଝାରସୁଗୁଡ଼ା ଥାନା ଅଧିକାରୀ ମନବୋଧ ପଣ୍ଡା ତାଙ୍କ ଦୂର ସଂପର୍କିୟ ହୋଇଥିବାରୁ ସେ ଗିରଫ ହେବାରୁ ରକ୍ଷା ପାଇଥିଲେ ।

୧୯୨୧ରେ ଶେଷ ଭାଗରେ ଜାତୀୟ ବିଦ୍ୟାଳୟ ବନ୍ଦ ହୋଇଯିବା ଫଳରେ ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନ ଧିମେଇ ଯାଇଥିଲା ।

ଗାନ୍ଧୀଙ୍କ ନେତୃତ୍ୱରେ ୧୯୨୦ ଅଗଷ୍ଟଠାରୁ ୧୯୨୨ ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମର ଏହି ପ୍ରଥମ ପର୍ଯ୍ୟାୟ ଆନ୍ଦୋଳନ ଚାଲିଥିଲା । ଚୌରୀଚୌରା ହିଂସାକାଣ୍ଡ ଯୋଗୁଁ ଗାନ୍ଧୀ ୧୯୨୨ରେ ଏହି ଆନ୍ଦୋଳନକୁ ସ୍ଥଗିତ କରିଦେଲେ ।

୧୯୨୨ରେ ସମ୍ବଲପୁର ଜିଲା କଂଗ୍ରେସ କମିଟି ଗଠିତ ହେଲା । ଚନ୍ଦ୍ରଶେଖର ସଭାପତି ଓ ଡା. ରାମଚନ୍ଦ୍ର ମିଶ୍ର ସଂପାଦକ ରହିଲେ । ଖଦୀ ବୋର୍ଡ ଗଠିତ ହେଲା ଓ ଚରଖା ଆନ୍ଦୋଳନ ଚାଲିଲା ।

୧୯୨୨ର ଶେଷାର୍ଦ୍ଧ । ଅସହଯୋଗ ଆନ୍ଦୋଳନ ଆପାତଃ ଶାନ୍ତ ଥିଲା ବେଳେ ୧୯୨୩ରେ ଓଡ଼ିଶାରେ ସ୍ୱରାଜ୍ୟ ପାର୍ଟି ଗଠିତ ହୋଇଥିଲା । ଏହି ଦଳ ପ୍ରଭୁସତ୍ତାସଂପନ୍ନ ରାଜ୍ୟ ଚାହିଁ ବିଧାୟକମଣ୍ଡଳି ଓ ଲୋକାଲ ବୋର୍ଡରେ ବିରୋଧର ନୀତି ଗ୍ରହଣ କଲା । ଏହାର ସଭ୍ୟମାନେ ବର୍ଜନ ପନ୍ଥା ପରିବର୍ତ୍ତେ ବିଭିନ୍ନ ପ୍ରତିନିଧିମୂଳକ ସଂଗଠନରେ ନିର୍ବାଚନ ମାଧ୍ୟମରେ ଯାଇ ସେଠି ଅବରୋଧ କରି ସରକାରକୁ ଅଚଳ କରିବାର ନୀତି ଗ୍ରହଣ କଲେ । ପଣ୍ଡିତ ନୀଳକଣ୍ଠ ଦାସ ଓ ଭୁବନାନନ୍ଦ ଦାସ ଓଡ଼ିଶାର କଂଗ୍ରେସର ପ୍ରାର୍ଥୀ ହେଲେ ଏବଂ ବିପୁଳ ଜନମତରେ ବିଜୟୀ ହେଲେ । ନିର୍ବାଚନ ବେଳେ ଜିଲାର ନୃସିଂହ ଗୁରୁ ଗ୍ରାମାଞ୍ଚଳରେ ବ୍ୟାପକ ପ୍ରଚାର ଚଳାଇଥିଲେ ।

ଗୟା କଂଗ୍ରେସ ପରେ ଗାନ୍ଧୀଙ୍କୁ ଜାନୁୟାରୀ ୧୧, ୧୯୨୩ରେ ଗିରଫ କରାଗଲା । ସମଗ୍ର ଦେଶରେ ହରତାଳର ଆୟୋଜନ ହେଲା । ଭାଗୀରଥି ଓ ଅନ୍ୟାନ୍ୟ କର୍ମୀମାନଙ୍କ ଉଦ୍ୟମରେ ଜାନୁଆରୀ ୧୮ ତାରିଖ ଦିନ ସମ୍ବଲପୁର ବନ୍ଦ ସଫଳ ହେଲା ।

ମଇ ୧୯୨୩, ନାଗପୁର 'ପତାକା ସତ୍ୟାଗ୍ରହ'ରେ ସମ୍ବଲପୁର, ଝାରସୁଗୁଡ଼ାର କୁଞ୍ଜବିହାରୀ ମେହେର, କଷ୍ଟରାମ ତନ୍ତି, ଗୋବିନ୍ଦ ବ୍ରାହ୍ମଣ, ରଘୁବୀର ଗୌଡ଼, ଶିବଗୋବିନ୍ଦ ଗୌଡ଼ ଆଦି ବହୁ କଂଗ୍ରେସ କର୍ମୀ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ନେତୃତ୍ୱରେ ଯୋଗଦାନ କରିଥିଲେ । ସେଠାରେ ୧୪୪ ଧାରା ଭଙ୍ଗ କରି ରେଳଧାରଣା ଅବରୋଧ କରି ସେ ଓ କଷ୍ଟରାମ ତନ୍ତୀ ଗିରଫ ହୋଇଥିଲେ । ନାଗପୁରର ଏହା ଥିଲା ପତାକା ଆନ୍ଦୋଳନ ।

ଭାଗୀରଥି ପଟ୍ଟନାୟକ ଅର୍ଥାଭାବରେ ପାଦରେ ଚାଲି ଚାଲି ୧୯୨୩ରେ କାକିନାଡ଼ା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ଗଲାବେଳେ ସେ ଆଗଲପୁର, ବଲାଙ୍ଗୀର, ସଇଁତଲା, ଭବାନୀପାଟଣା, ପାର୍ବତୀପୁର ଆଦିରେ କଂଗ୍ରେସର ପ୍ରଚାର ଚଳାଇ ଚାଲିଥିଲେ । ସେଠାରେ ସେ ମହମ୍ମଦ ଅଲି ଓ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଙ୍ଗେ ଭେଟ କରିଥିଲେ ।

୧୯୨୪ରେ ଜେଲ ଭିତରେ ଗାନ୍ଧୀଙ୍କ ପେଟରେ ଅସ୍ତ୍ରୋପଚାର ହେଲା ବେଳକୁ ଭାଗୀରଥି କାକିନାଡ଼ାରୁ ଫେରି ପୁରୀରେ ଥିଲେ । ଭାଗୀରଥି, ରାମଦାସ ବାବାଜୀ ଓ ନୃସିଂହ ଚ୍ୟାଉ ପଟ୍ଟନାୟକଙ୍କ ସହ ମିଶି ସେ ପୁରୀରେ ଏକ ଜନସଭା କରି ଗାନ୍ଧୀଙ୍କ ମୁକ୍ତି ଦାବି କରିଥିଲେ ।

ଲକ୍ଷ୍ମୀନାରାୟଣ ମିଶ୍ରଙ୍କୁ ଜିଲା କମିଟି ପକ୍ଷରୁ ତାରକେଶ୍ୱର ଆନ୍ଦୋଳନରେ ଯୋଗ ଦେବାକୁ ପଠାଯାଇଥିଲା । ସେଠାରେ ସେ ଗିରଫ ହୋଇଥିଲେ । ସେହି ୧୯୨୪ରେ ଏକ ସଭା ହୋଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ପାଇଁ ପ୍ରସ୍ତାବ ନିଆଯାଇଥିଲା । ଚନ୍ଦ୍ରଶେଖର ଏହାର ପ୍ରଚାର ପାଇଁ ଗଞ୍ଜାମକୁ ଦଳେ ସ୍ୱେଚ୍ଛାସେବୀ ପଠାଇବାର ପ୍ରସ୍ତାବ ଦେଇଥିଲେ ।

❑❑❑

# ଖଦୀ ଓ ଚରଖା ଆନ୍ଦୋଳନ

୧୯୨୨ରେ ସମ୍ବଲପୁର ଜିଲାରେ ଖଦୀ ଓ ଚରଖା ଆନ୍ଦୋଳନ ଆରମ୍ଭ ହୋଇ ସାରିଥିଲା । ଜିଲାର ବିଭିନ୍ନ ସ୍ଥାନରେ ଖଦୀ କେନ୍ଦ୍ରମାନ ମୁଖ୍ୟତଃ ୧୯୨୨ରେ ହିଁ ପ୍ରତିଷ୍ଠିତ ହେଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଚିନ୍ତାମଣି ପୂଜାରୀ, ଘନଶ୍ୟାମ ପାଣିଗ୍ରାହୀ, ନୃସିଂହ ଗୁରୁ, ମହାବୀର ସିଂହ, ଭାଗୀରଥି ପଟ୍ଟନାୟକ ପ୍ରମୁଖ ଖଦୀ କାମ ଓ କଂଗ୍ରେସ ସଙ୍ଗଠନ କାର୍ଯ୍ୟରେ ଜୋରସୋରରେ ଲାଗି ପଡ଼ିଥିଲେ ।

ମହାତ୍ମାଗାନ୍ଧୀ ୧୯୨୫ରେ ଅଖିଳ ଭାରତୀୟ ଚରଖା ସଂଘ ସ୍ଥାପନ କଲା ପରଠୁ ଖଦୀ ଆନ୍ଦୋଳନ ଆହୁରି ଜୋର ଧରିଲା । ସଂଘ ପକ୍ଷରୁ ସମଗ୍ର ଦେଶରେ ସଙ୍ଗଠିତ ଭାବରେ ତୁଳା ଚାଷ, ତୁଳା ଭିଣା, ସୂତାକଟା, ଖଦଡ଼ ବୁଣା ଓ ବିକ୍ରୟ ବ୍ୟବସ୍ଥା ଆଦି ଯାବତୀୟ କାର୍ଯ୍ୟ ଆରମ୍ଭ ହେଲା । ରାଜନୀତିରୁ ଗାନ୍ଧୀଜୀ ଏହାକୁ ପୃଥକ୍ ରଖିଲେ ଓ ଏହି ସଂଘର କର୍ମକର୍ତ୍ତାମାନଙ୍କୁ ଅସହଯୋଗ ସତ୍ୟାଗ୍ରହ ଆଦି କରିବାକୁ ମନା କରିଦେଲେ ।

କିନ୍ତୁ ସମ୍ବଲପୁରରେ ଗାନ୍ଧୀଜୀଙ୍କ ଶେଷ ନିୟମଟି ଭିନ୍ନ ଭାବରେ କାର୍ଯ୍ୟକାରୀ ହୋଇଥିଲା । ସଂଘର ସାଧାରଣ କର୍ମକର୍ତ୍ତାମାନଙ୍କୁ ବହୁଳ ଭାବରେ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଭୂମିକା ନେଉଥିବାର ଦେଖାଗଲା ବେଳେ ଏହି ଆନ୍ଦୋଳନର ମୁଖ୍ୟ ନେତାମାନେ ମଧ୍ୟ ବରିଷ୍ଠ କଂଗ୍ରେସୀ କର୍ମୀ ଥିଲେ, ଯେଉଁମାନେ ଖୋଲାଖୋଲି ଭାବରେ ରାଜନୀତି ଓ ଅସହଯୋଗ ସତ୍ୟାଗ୍ରହ ସହ ସକ୍ରିୟ ଓ ଓତପ୍ରୋତଃ ଭାବରେ ଜଡ଼ିତ ଥିଲେ ।

ଅସହଯୋଗ ଆନ୍ଦୋଳନ ସମୟରେ ପଞ୍ଚପଡ଼ା, ରେମଣ୍ଡା, ମାନପୁର, ଝିର୍ଲାପାଲି, ଲଇକେରାର ଭାଲୁପଡ଼ା, ଶାସନର ସମାସିଂହା, ବରଗାଁ, ବରଗଡ଼, ଝାରସୁଗୁଡ଼ା ଆଦି ସ୍ଥାନରେ ହାତକଟା ସୂତା ଉତ୍ପାଦନ କେନ୍ଦ୍ରମାନ ସ୍ଥାପିତ ହୋଇ ସାରିଥିଲା । ଏଥିରେ ମହାବୀର ସିଂହ, ଘନଶ୍ୟାମ ପାଣିଗ୍ରାହୀ, ନୃସିଂହ ଗୁରୁ ପ୍ରମୁଖ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ଲକ୍ଷ୍ମୀନାରାୟଣ ୧୯୨୫ରେ ସମ୍ବଲପୁରରେ ଅଖିଳଭାରତ ବୁଣାକାର ସଂଘର ଏକ ଶାଖା ଖୋଲିଥିଲେ ଓ ଖଦୀ ଆନ୍ଦୋଳନକୁ ସଫଳ କରାଇଥିଲେ ।

ସ୍ୱାଧୀନତା ଆନ୍ଦୋଳନର ବ୍ୟସ୍ତତା ଭିତରେ ଏହି କେନ୍ଦ୍ରମାନ ବେଶୀ ଦିନ ତିଷ୍ଠି ରହି ପାରି ନଥିଲା ହେଲେ ଏହା ତୃଣମୂଳ ସ୍ତରରେ କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନ ଚେତନା ସହ ଲୋକଙ୍କୁ ସଂପୃକ୍ତ କରି ଆତ୍ମନିର୍ଭରଶୀଳ ଓ ସ୍ୱଦେଶିକତା ଦିଗରେ ବିଶେଷ ଭାବରେ ଉଦ୍‌ବୁଦ୍ଧ ସାହାଯ୍ୟ କରିଥିଲେ ।

ଏହି କେନ୍ଦ୍ର ମଧ୍ୟରୁ କୃତାର୍ଥ ଆଚାର୍ଯ୍ୟଙ୍କ ବରଗଡ଼ ଖଦୀ କେନ୍ଦ୍ର ସମଗ୍ର ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା । ପରବର୍ତ୍ତୀ ସମୟରେ ଉକ୍ତ ଖଦୀକେନ୍ଦ୍ର ଏକ ସମବାୟ ଅନୁଷ୍ଠାନ 'ସମ୍ବଲପୁରୀ ହସ୍ତତନ୍ତ ସସୀମ ସହଯୋଗ ସମିତି ଲିମିଟେଡ୍' କଂପାନୀରେ ପରିଣତ ହୋଇ ଉପେକ୍ଷିତ ବୁଣାକାରମାନଙ୍କୁ କେବଳ ଯେ ଆତ୍ମନିର୍ଭରଶୀଳ କରିବାକୁ ସଙ୍ଗଠିତ କଲା କେବଳ ସେତିକି ନୁହେଁ ବାନ୍ଧକଳାର ବିକାଶ ସହ ସମ୍ବଲପୁରର ସ୍ୱାଭିମାନ ବିଶ୍ୱପ୍ରସିଦ୍ଧ ସମ୍ବଲପୁରୀ ଶାଢ଼ୀର ଉତ୍ପାଦକ ଭାବେ ଦେଶ ବିଦେଶରେ ସମ୍ବଲପୁରର ଗୌରବ ବୃଦ୍ଧି କଲା ।

୧୯୩୭ରେ ଝାରସୁଗୁଡ଼ାର ତାଳପଟିଆ ଗାଁରେ ଏକ ଚରଖା ସଂଘ ସ୍ଥାପନ କରାଯାଇଥିଲା । ବୁଦ୍ଧଦେବ ମହାନନ୍ଦ, ବୈଦେଶ୍ୱର ତନ୍ତୀ, କଲବା ତନ୍ତୀ, ମଙ୍ଗସପୁରର ଦ୍ୱାରିକା କୁସୁମ, ଝାରସୁଗୁଡ଼ାର ଜଗନ୍ ମଗର, ଟାଙ୍ଗରପାଲିର କଷ୍ଟରାମ ତନ୍ତୀ ପ୍ରଭୃତିଙ୍କ ଦାୟିତ୍ୱରେ ଏହି କେନ୍ଦ୍ରରେ ତିନିଶହ ପୁରୁଷ ଓ ସ୍ତ୍ରୀ ସକ୍ରିୟ କର୍ମୀ ରୂପେ କାର୍ଯ୍ୟ କରୁଥିଲେ ।

ସମ୍ବଲପୁରରୁ ନୃସିଂହ ଗୁରୁ, ଲକ୍ଷ୍ମୀନାରାୟଣ ମିଶ୍ର, ପଞ୍ଚପଡ଼ାର ଚିନ୍ତାମଣି ପୂଜାରୀ ପ୍ରମୁଖ ମଝିରେ ମଝିରେ ଏହି କେନ୍ଦ୍ରର କାର୍ଯ୍ୟ ତଦାରଖ କରିବାକୁ ଆସୁଥିଲେ । ୧୯୪୦ରେ କଟକରୁ ଗୋପବନ୍ଧୁ ଚୌଧୁରୀ ମଧ୍ୟ ଆସିଥିଲେ ।

ଏ ଅଞ୍ଚଳରେ ଚରଖା ଏକ ନୂଆ ଜିନିଷ ନଥିଲା । ବଲାଙ୍ଗୀର, ସୁନ୍ଦରଗଡ଼, ବାମଣ୍ଡା ଆଦିରେ ବହୁକାଳରୁ ଚରଖାର ପ୍ରଚଳନ ଥିଲା । ବିଶେଷତଃ ଅଗରିଆ ସଂପ୍ରଦାୟ ହାତ ତିଆରି ସୂତାବସ୍ତ୍ର ପରିଧାନ କ୍ଷେତ୍ରରେ ଅଗ୍ରଣୀ ଓ ସ୍ୱାବଲମ୍ବୀ ଥିଲେ । ସମ୍ବଲପୁରର ଲଇକେରା, ଅମ୍ବାଭୋନା ଆଦି ଅଞ୍ଚଳରେ ମଧ୍ୟ ଖଦୀ ଉତ୍ପାଦନ ଆଗରୁ ପ୍ରଚଳିତ ରହିଥିଲା ।

ଜିଲାର କଂଗ୍ରେସ କର୍ମକର୍ତ୍ତାଗଣ ବିଶେଷ କରି ପଞ୍ଚପଡ଼ାର ମୋଟା ଖଦଡ଼ ପିନ୍ଧୁଥିଲେ । ପରେ କୃତାର୍ଥ ଆଚାର୍ଯ୍ୟ କଟକ ଓ ବ୍ରହ୍ମପୁରରୁ ଭଲ ଓ ସରୁ ଖଦୀଆଣି ବରଗଡ଼ରେ ଏକ ଦୋକାନ ଖୋଲିଥିଲେ ।

୧୯୨୮ରୁ ଭାରତରେ ଖଦୀ ଓ ଚରଖା ଆନ୍ଦୋଳନ ସ୍ତିମିତ ହୋଇ ଯାଇଥିଲା ବେଳେ ତାହା ସମ୍ବଲପୁରରେ ବଳବତ୍ତର ରହିଥିଲା । ବଙ୍ଗର ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ, ପଣ୍ଡିତ ଲକ୍ଷ୍ମୀନାରାୟଣ ଓ ଅନ୍ୟମାନେ ଏହାର ଗଭୀର ପ୍ରଶଂସା କରିଥିଲେ ।

❑❑❑

# ନିଶା ନିବାରଣ ଆନ୍ଦୋଳନ

ଗୋଟିଏ ପଟେ କଂଗ୍ରେସର ସାଙ୍ଗଠନିକ, ରାଜନୈତିକ ଗତିବିଧି ଚାଲିଥିଲା ବେଳେ ଅନ୍ୟ ପକ୍ଷରେ ଗାନ୍ଧୀ ପ୍ରବର୍ତ୍ତିତ ସମାଜ ସଂଗଠନ କାର୍ଯ୍ୟ ମଧ୍ୟ ସମାନ୍ତରାଳ ଭାବରେ ଚାଲିଥିଲା । ନିଶା ନିବାରଣ ଆନ୍ଦୋଳନ ଏ କ୍ଷେତ୍ରରେ ଥିଲା ଅନ୍ୟତମ । ସମ୍ବଲପୁର ଜିଲା ଏ କ୍ଷେତ୍ରରେ ଏଭଳି ଅଗ୍ରଣୀ ଭୂମିକା ନେଇଥିଲା ଯେ ଅବକାରୀ ରାଜସ୍ୱ କ୍ଷତି ଅଭିଯୋଗରେ ସମ୍ବଲପୁରର ତତ୍‌କାଳୀନ ଆଇରିସ ଡେପୁଟି କମିଶନର ଜନଷ୍ଟନ ସାହେବଙ୍କୁ ୧୯୩୪ରେ ନିଲମ୍ବିତ କରି ଦିଆ ଯାଇଥିଲା ।

ଅବିଭକ୍ତ ସମ୍ବଲପୁର ଜିଲାର ନିଶା ନିବାରଣ ଆନ୍ଦୋଳନର ମୁଖ୍ୟ ନେତୃତ୍ୱ ନେଇଥିଲେ ଭାଗୀରଥି ପଟ୍ଟନାୟକ, ଚିନ୍ତାମଣ ପୂଜାରୀ, ଦୟାନନ୍ଦ ଶତପଥୀ, ଲକ୍ଷ୍ମୀନାରାୟଣ ମିଶ୍ର ଓ ନୃସିଂହ ଗୁରୁ ।

ସେମାନେ ଓରାମ, ମୁଣ୍ଡା, କୋଲ, ଖଡ଼ିଆ, ଗଣ୍ଡ, ଭୂୟାଁ, ସଉରା, ଘସିଆ, ଚମାର ଆଦି ଜିଲାର ଉପଜାତିମାନଙ୍କର ସ୍ୱତନ୍ତ୍ର ସଙ୍ଗଠନମାନ କରି ନିଶା ନିବାରଣ, ଅସ୍ପୃଶ୍ୟତା ନିବାରଣ, ଅଖାଦ୍ୟ ମାଂସ ବର୍ଜନ ଓ ଚରଖା ସଚେତନତା ଆଦି ବୃଦ୍ଧି କରିଥିଲେ । ଏଥିରେ ଜ୍ୟୋତିରାମ ତନ୍ତୀ, ଶୁଖରାମ ତନ୍ତୀ ଓ ସ୍ୱାମୀ ସୁଚିଦାନନ୍ଦ ସେମାନଙ୍କୁ ବିଶେଷ ଭାବରେ ସାହାଯ୍ୟ କରୁଥିଲେ ।

ଜିଲାର ଶହ-ଶହ ଗାଁରେ ସଭାସମିତିମାନ କରାଯାଇଥିଲା । ସଭାରେ ହଜାର ହଜାର ଆଦିବାସୀ, ହରିଜନ ଯୋଗ ଦେଉଥିଲେ । ସେମାନଙ୍କୁ ନିଶା ନିବାରଣର ସାମାଜିକ, ପାରିବାରିକ, ଅର୍ଥନୈତିକ ଲାଭ ଓ ଅପକାରିତା ବିଷୟରେ ବୁଝା ଯାଉଥିଲା ।

ଆଦିବାସୀ ଅଧ୍ୟୁସିତ ସମ୍ବଲପୁର ଜିଲାରେ ଆଦିବାସୀ, ହରିଜନମାନଙ୍କୁ ନିଶାରୁ ବିମୁଖ କରିବା ସହଜିଆ କାମ ନଥିଲା । ଏମାନେ ଆବାଳବୃଦ୍ଧବନୀତା ନିଶାସେବନ କରୁଥିଲେ । ଦିନ ଯାକର କଠିନ ଖଟଣୀ ପରେ ନିଶା ଥିଲା ସେମାନଙ୍କ ଲାଗି ଏକମାତ୍ର ଶ୍ରମକ୍ଳାନ୍ତି ଲାଘବକାରୀ ଓ ମନୋରଞ୍ଜନର ମାଧ୍ୟମ । ଏହାକୁ କେନ୍ଦ୍ର କରି ସେମାନଙ୍କ ସମାଜରେ ସତତ ଗଣ୍ଡଗୋଳ, ଅପରାଧ ପ୍ରବଣତା, ମାଲିମକଦ୍ଦମା ଲାଗି ରହୁଥିଲା । ନିଶା ସେମାନଙ୍କୁ ସବୁଦିଗରୁ ଶୋଷଣ କରି ସେମାନଙ୍କ ବିନାଶର କାରଣ ହୋଇଥିଲା । ସେମାନେ କରଜରେ ବୁଡୁଥିଲେ ।

ଯେତେବେଳେ ସେମାନଙ୍କୁ ନିଶାର ଅପକାରିତା ବିଷୟରେ ହୃଦୟଙ୍ଗମ କରାଇ ଦିଅଗଲା, ସେତେବେଳେ ସେମାନେ ନିଶାବର୍ଜନ କରିବାକୁ ହାତରେ ତମ୍ବା, ତୁଳସୀ, ଶାଳଗ୍ରାମ ଧରି ଶପଥ କରୁଥିଲେ । ନିଷିଦ୍ଧ ପଶୁମାଂସ ନ ଖାଇବାକୁ, ଚରଖା ଚଳାଇବାକୁ ସଂକଳ୍ପ କରୁଥିଲେ ।

୧୯୨୯, କେବଳ ଗୋଟିଏ ବର୍ଷ ଭିତରେ ହରିଜନ, ଆଦିବାସୀ ଗାଁ ଗଣ୍ଡା ଗୁଡ଼ିକରେ ଗୋଟିଏ ହେଲେ ଗ୍ରାମ୍ୟ ଘୁଷୁରି ଦେଖିବାକୁ ମିଳିଲେ ନାହିଁ । କେହି ମଲା ପଶୁ ମାଂସ ଖାଇଲେ ନାହିଁ । ସଂପୂର୍ଣ୍ଣ ଭାବେ ମଦ ପିଇବାକୁ ଛାଡ଼ି ଦେଲେ ବୋଲି ଭାଗୀରଥି ଓ ଚିନ୍ତାମଣି ନେହେରୁଙ୍କୁ ରିପୋର୍ଟ ଦେଇଥିଲେ । ଏ ସଫଳତାରେ ନେହେରୁ ସେମାନଙ୍କୁ ଅଭିନନ୍ଦନ ଜଣାଇଥିଲେ । ଏ ସଫଳତା ପଛରେ କର୍ମିମାନଙ୍କ ଦିନରାତିର ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା ।

ହେଲେ ଜିଲାରେ ଖଦଡ଼ର ସେତେଟା ପ୍ରଚାର ପ୍ରସାର ହୋଇ ପାରିଲା ନାହିଁ । ସେହି ବର୍ଷ ଧାନକଟା ପରେ ଆଉ ଥରେ ଧାନ ନଡ଼ାରୁ ଧାନ ହେବା ଫଳରେ ଜିଲାରେ ଲୋକେ ଥରେ ଭାଦ୍ରବ ମାସରେ ଆଉ ଥରେ କାର୍ତ୍ତିକ ମାସରେ ନୂଆ ଖାଇଥିଲେ । ଦ୍ୱିତୀୟ ନୂଆ ଖାଇକୁ ଲୋକେ 'ଗାନ୍ଧୀ ନୂଆଖାଇ' ବୋଲି କହିଲେ ।

ନିବାରଣ କାର୍ଯ୍ୟ ଯେମିତି ବିଘ୍ନିତ ନ ହେବ ସେଥିଲାଗି ଲକ୍ଷ୍ମୀନାରାୟଣ ମିଶ୍ର ତତ୍‌କାଳୀନ ଡେପୁଟି କମିଶନର ଜନଷ୍ଟନ ସାହେବଙ୍କୁ ଅନେକ ପ୍ରକାରେ ବୁଝାଇ ଥିଲେ । ଜନଷ୍ଟନ ସାହେବ ଥିଲେ ଆୟାରଲେଣ୍ଡବାସୀ ଓ ଉଦାରମନା । ସେ ପ୍ରକାରାନ୍ତରେ ନିଶା ନିବାରଣ ଆନ୍ଦୋଳନକୁ ସମର୍ଥନ ଜଣାଇଥିଲେ ।

ସମଗ୍ର ଜିଲ୍ଲାରେ ଏ ଆନ୍ଦୋଳନ ସଫଳ ହୋଇଥିଲା । ମଦଭାଟି ଠିକାଦାରମାନେ ଏଥିରେ ଅନନ୍ୟୋପାୟ ହୋଇ ସରକାରଙ୍କୁ ନିଜ ନିଜ ଲାଇସେନ୍‌ସ ଫେରାଇ ଦେଇଥିଲେ । ୧୯୨୮-୨୯ ବର୍ଷରେ ଜିଲାର ସମସ୍ତ ମଦଭାଟି ବନ୍ଦ ହୋଇ ଯାଇଥିଲା । ଏହି କାରଣରୁ ଇଂରେଜ ସରକାର ସମ୍ବଲପୁରର ତତ୍‌କାଳୀନ ଡେପୁଟି କମିଶନରଙ୍କୁ ନିଲମ୍ବିତ କରିଥିଲେ ।

ଜିଲାର ମଦଭାଟି ବନ୍ଦ ହେବା ବିଷୟରେ ଛୋଟଲାଟ୍ କମିଶନରଙ୍କ ଜରିଆରେ ଜନ୍‌ଷ୍ଟନ ସାହେବଙ୍କୁ କୈଫିୟତ ମାଗିଥିଲେ । ଏହି କୈଫିୟତ ଦେବାକୁ ଯାଇ ସ୍ୱାଧୀନଚେତା ଜନଷ୍ଟନ୍ ଲେଖିଥିଲେ -

''ସମ୍ବଲପୁର ଜିଲାରେ ଗୋଟିଏ ସାମାଜିକ କୁସଂସ୍କାର
ବିରୋଧରେ ଉତ୍ତମ କାର୍ଯ୍ୟଟିଏ ହେଉଛି । ପ୍ରଚାର ଚାଲିଛି ।

ସଭା ସମିତି ଚାଲିଛି ଓ ନିମ୍ନ ଶ୍ରେଣୀର ଲୋକମାନେ ମଦ୍ୟପାନ ଛାଡ଼ି ଦେଇଛନ୍ତି । ଅଧିକାଂଶ ମଦ ଠିକାଦାରମାନେ ତାଙ୍କର ଲାଇସେନ୍‌ସ ଫେରାଇ ଦେଉଛନ୍ତି । କିନ୍ତୁ ଏହାଦ୍ୱାରା ରାଜସ୍ୱର ଯେଉଁ କ୍ଷତି ଘଟୁଛି, ତାହାକୁ ଅନ୍ୟ କୌଣସି ପ୍ରକାରେ ମୁଁ ପୂରଣ କରିଦେବି ।''

ଏଭଳି ନିଶା ନିବାରଣ ଆନ୍ଦୋଳନ ସମଗ୍ର ଦେଶରେ ଥିଲା ଅଭୂତପୂର୍ବ । ପଣ୍ଡିତ ନେହେରୁ ସମ୍ବଲପୁରର ଏ ସଫଳତା ପାଇଁ ଚିନ୍ତାମଣି ଓ ଭାଗୀରଥିଙ୍କୁ ପ୍ରଶଂସା କରି ଚିଠି ଲେଖିଥିଲେ ।

ଗାନ୍ଧୀ -ଇରଉଇନ ଚୁକ୍ତି ଫଳରେ କଂଗ୍ରେସର ବିଜୟ ହେଲା ଭାବି ନେତାମାନେ ସଙ୍ଗଠନ କାର୍ଯ୍ୟରେ ଦୁଇ ଗୁଣ ଉତ୍ସାହର ସହିତ ଲାଗ ପଡ଼ିଲେ । ପଣ୍ଡିତ ଲକ୍ଷ୍ମୀନାରୟଣ ମିଶ୍ର ଏକ କର୍ମୀ ସଭା ଡାକିଲେ । ସେଥିରେ ତାଙ୍କ ସମେତ ଭାଗୀରଥି, ବିହାରୀ ରାମ, ନୃସିଂହ ଗୁରୁ, ଦୁର୍ଗାପ୍ରସାଦ ଗୁରୁ, ସୁଧାଂଶୁ ଶେଖର ଗୁପ୍ତ, ବେଣୀମାଧବ ଗଡ଼ତିଆ, ବିନାୟକ ପାଢ଼ୀ, ଦୟାନନ୍ଦ ସତପଥୀ, ଜମ୍ବୁବତୀ ଦେବୀ, ପ୍ରଫୁଲ୍ଲ ପଟ୍ଟନାୟକ ମଧ୍ୟ ଯୋଗ ଦେଇଥିଲେ । ସମ୍ବଲପୁର ଜିଲାର ଅବଶିଷ୍ଟ ମଦଭାଟିମାନଙ୍କରେ ପିକେଟିଂ କରିବାକୁ ଓ ସଭାସମିତିମାନ ଆୟୋଜନ କରିବାକୁ ବୈଠକରେ ନିଷ୍ପତ୍ତି ନିଆଗଲା ।

ପ୍ରଥମେ ଝାରସୁଗୁଡ଼ା ମଦଭାଟିରେ ପିକେଟିଂ କରାଗଲା । ନେତୃତ୍ୱ ନେଲେ ଲକ୍ଷ୍ମୀନାରାୟଣ ମିଶ୍ର । ସେଦିନ ସମଗ୍ର ଝାରସୁଗୁଡ଼ା ସହର ହୁଲସ୍ଥୁଳ । ଥାନା ଦରୋଗା ମନବୋଧ ପଣ୍ଡା, ଗନି ଖାନ ଆଦି କନେଷ୍ଟବଲମାନଙ୍କୁ ସଙ୍ଗରେ ଧରି ଘେରାଏ ପଇନ୍ତରା ମାରିଗଲେ । ହେଲେ କାହାକୁ ଗିରଫ କରାଗଲା ନାହିଁ । କେତେ ଦିନ ଧରି ସେମିତି ପିକେଟିଂ ଚାଲୁ ରହିଲା ।

ସେତେବେଳେ ନୀଳମଣି ସେନାପତି ସମ୍ବଲପୁରର ଡେପୁଟି କମିଶନର ଥାନ୍ତି । ତାଙ୍କ ଓ ଲକ୍ଷ୍ମୀନାରୟଣ ମିଶ୍ରଙ୍କ ମଧ୍ୟରେ ଏକରକମ ପ୍ରତିଦ୍ୱନ୍ଦ୍ୱିତା ଚାଲିଥାଏ ।

ପରିଶେଷରେ ନୀଳମଣି ସେନାପତି ଗାନ୍ଧୀ-ଇରଉଇନ ଚୁକ୍ତି ସତ୍ତ୍ୱେ ସମସ୍ତଙ୍କୁ ଗିରଫ କରିବାକୁ ଆଦେଶ ଦେଇଥିଲେ । ହେଲେ ସେମାନଙ୍କ ଉପରେ ନିଶା ନିରାକରଣ ପିକେଟିଂ ପରିବର୍ତ୍ତେ କେତେକ ଫୌଜଦାରୀ ମକଦ୍ଦମା ଦାୟର କରାଯାଇ ସେହି ଅଭିଯୋଗରେ ଗିରଫ

କରା ଯାଇଥିଲା । ପଣ୍ଡିତ ମିଶ୍ର, ବିହାରୀ ରାମ, ଭାଗୀରଥି, ବେଣୀ ମାଧବ ଓ ରାମଭରୋସେ ରାମ ପ୍ରମୁଖ ଗିରଫ ହେଲେ ।

ତା'ପର ଦିନ ପ୍ରଫୁଲ୍ଲ ଓ ଅନ୍ୟମାନେ ମିଶି ଅନ୍ୟାୟ ଓ ମିଥ୍ୟା ଅଭିଯୋଗରେ ଗିରଫଦାରୀର ପ୍ରତିବାଦ ସଭା କଲେ । ଜାତୀୟ କଂଗ୍ରେସ ପତାକା ସହ ଏକ ବିରାଟ ଶୋଭାଯାତ୍ରା ବାହାରିଲା । ସେଥିରେ ମୁଙ୍ଗାପଡ଼ାର ବହୁ ଲୋକ ଅଂଶଗ୍ରହଣ କଲେ । ଆଗରେ ପତାକା ଧରି ବିହାରୀ ରାମ ତନ୍ତୀଙ୍କ ବୃଦ୍ଧା ମା ତୁଳସୀ ଦେବୀ, ବିହାରୀ ରାମ ଓ ରାମ ଭରୋସେଙ୍କ ସ୍ତ୍ରୀ ଚାଲିଥାନ୍ତି ।

ତା' ଆର ଦିନଠୁ ଝାରସୁଗୁଡ଼ା ମଦଭାଟିରେ ସପ୍ତାହେ କାଳ ପିକେଟିଂ ଚାଲିଲା । ଜମ୍ବୁବତୀ, ତୁଳସୀ ଦେବୀ, ବିହାରୀ ରାମଙ୍କ ସ୍ତ୍ରୀ, ପ୍ରଫୁଲ୍ଲ ପଟ୍ଟନାୟକ ଆଦି ନିୟମିତ ପିକେଟିଂ କରୁଥାନ୍ତି । ହେଲେ ଆଉ କାହାରିକି ଗିରଫ କରାଯାଉ ନଥିଲା ।

ଏମିତି ଭାବରେ ୧୫ ଦିନ ଯାଏଁ ପିକେଟିଂ କଲା ପରେ ସ୍ତ୍ରୀ ଲୋକମାନେ କହିଲେ ଯେ ସରକାର ହାର ମାନିଗଲା । ସେମାନେ ଆଉ ପିକେଟିଂ କରିବାକୁ ଆସି ନ ଥିଲେ ମଧ୍ୟ ରାମଭରୋସେ ଓ ବିହାରୀମାନଙ୍କ ପରିବାର ସହ ପ୍ରଫୁଲ୍ଲ ଆହୁରି ୧୫ ଦିନ କାଳ ପିକେଟିଂ ଜାରି ରଖିଥିଲେ ।

ଝାରସୁଗୁଡ଼ା ମଦଭାଟି ପିକେଟିଂ ଘଟଣାରେ ଗାନ୍ଧୀ-ଇରଉଇନ୍ ଚୁକ୍ତିର ଖିଲାଫ କରି ନୀଳମଣି ସେନାପତି ପିକେଟିଂକାରୀଙ୍କୁ ଗିରଫ କରିବା ଘଟଣା ଥିଲା ସମ୍ପୂର୍ଣ୍ଣ ବେଆଇନ । ଚୁକ୍ତି ଅନୁସାରେ ପିକେଟିଂକାରୀଙ୍କ ଗିରଫଦାରୀ ବା ସେମାନଙ୍କୁ ଦଣ୍ଡିତ କରିବା ଥିଲା ବିଧିବିରୋଧୀ ।

ଏହି ବ୍ୟତିକ୍ରମର ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରିବାକୁ ଏପ୍ରିଲ୍ ୧୪, ୧୯୩୧ରେ ନୀଳକଣ୍ଠ ଦାସ ଓ ଗୋପବନ୍ଧୁ ଚୌଧୁରୀ ସମ୍ବଲପୁର ଆସିଥିଲେ । ତା'ପରେ ସେମାନେ କ୍ଷୁବ୍ଧ ହୋଇ ବଡ଼ ଲାଟ୍ ଓ ଛୋଟ ଲାଟ୍‌ଙ୍କ ଠାରେ ତୀବ୍ର ପ୍ରତିବାଦ କରିଥିଲେ । ଝାରସୁଗୁଡ଼ାର ରାମଦେବ ମାରୁଆଡ଼ିଙ୍କ ଜମାନତରେ ସମସ୍ତେ ମୁକ୍ତ ହେଲେ । ଏତିକି ବେଳେ ଜିଲ୍ଲା କଂଗ୍ରେସର ପୁନର୍ଗଠନ ଓ ପ୍ରତିବାଦ ସଭା ସଙ୍ଗଠନମାନ ବ୍ୟାପକ ଭାବରେ କରାଯାଉଥିଲା । ଏହି ଗିରଫଦାରୀର ବିଶେଷ ଅନୁସନ୍ଧାନ ପାଇଁ ଡ. ହରେକୃଷ୍ଣ ମହତାବ, ନୀଳକଣ୍ଠ ଦାସ ଓ ରାଧାନାଥ ରଥ ମେ ୧୩, ୧୯୩୧ରେ ପୁଣି ଝାରସୁଗୁଡ଼ା ଆସିଲେ । ୧୪ ତାରିଖରେ ଝାରସୁଗୁଡ଼ା ଓ ୧୫ ତାରିଖରେ ବରଗଡ଼ରେ ବିରାଟ ସାଧାରଣ ସଭା କରାଗଲା ।

ଅନୁସନ୍ଧାନ ପାଇଁ ଗୋଦାବରୀଶ ମିଶ୍ର, ସରଳା ଦେବୀ ମଧ ଆସିଥିଲେ । ତାଙ୍କ କଠୋର ସମାଲୋଚନା ଯୋଗୁଁ ନୀଳମଣି ତାଙ୍କୁ ଦିନକ ପାଇଁ ଗିରଫ କରିଥିଲେ ।

ଏହା ପରେ ପରେ ପିକେଟିଂକାରୀଙ୍କ ଜମାନତ ରଦ୍ଦ ହେଲା ଓ ଜୁନ୍ ୫ ତାରିଖ ଦିନ ସମସ୍ତଙ୍କୁ ଜେଲ୍‌କୁ ପଠାଇ ଦିଆଗଲା । ସମସ୍ତଙ୍କୁ ଛ'ମାସ ଜେଲ୍ ଓ ୫୦୦ ଟଙ୍କା ଜୋରିମାନା ହେଲା । ଜୋରିମାନା ପାଇଁ ବିହାରୀ ରାମଙ୍କ ଧାନ, ଚାଉଳ, ବାସନ କୁସନ ସବୁ ଜବତ କରି ନିଲାମ ହୋଇଥିଲା । ସେପ୍ଟେମ୍ବର ୧, ୧୯୩୧ରେ ସମସ୍ତେ ଜେଲ୍‌ରୁ ମୁକ୍ତ ହେଲେ । ଜେଲ୍ ଫାଟକରେ ଏକ ବିରାଟ ଗଣସମାବେଶ ସତ୍ୟାଗ୍ରହୀମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲା ।

ଗାନ୍ଧୀ-ଇରଉଇନ୍ ଚୁକ୍ତି ପରେ ସମଗ୍ର ଦେଶ ଶାନ୍ତ ରହିଥିଲା ବେଳେ ସମ୍ବଲପୁର ଜନତା ଜାଗ୍ରତ ରହିଥିଲା । ଆଉ ଝାରସୁଗୁଡ଼ା ଗିରଫଦାରୀ ଥିଲା ଗାନ୍ଧୀ-ଇରଉଇନ୍ ଚୁକ୍ତିର ଏକ ଐତିହାସିକ ବିଡ଼ମ୍ବନା । ଇତିହାସର ଏକ ଅଜ୍ଞାତ ରହସ୍ୟମୟ ଅଧ୍ୟାୟ । ୧୯୩୧ ଅଗଷ୍ଟ ୫ ତାରିଖରେ ବରଗଡ ମଦଦୋକାନ ଆଗରେ ଏକ ବଡ଼ ଧରଣର ପିକେଟିଂ ହୋଇଥିଲା ।

ନିଶା ବିରୋଧରେ ସମଗ୍ର ଜିଲ୍ଲା ପିକେଟିଂର ନିଶାରେ ମସଗୁଲ୍ ହୋଇ ଯାଇଥିଲା । ସହରାଞ୍ଚଳରୁ ଗ୍ରାମାଞ୍ଚଳ ଯାଏଁ ବନାଗ୍ନି ପରି ବ୍ୟାପୀ ଯାଇଥିଲା ନିଶା ନିବାରଣ । ଏଥିରେ କେବଳ ପୁରୁଷ ନୁହନ୍ତି, ନାରୀମାନେ ଏପରିକି ପିଲମାନେ ମଧ ଖୋଲାଖୋଲି ଭାବରେ ଅଂଶଗ୍ରହଣ କରି ସରକାରଙ୍କ ମୁଣ୍ଡବ୍ୟଥାର କାରଣ ହୋଇଥିଲେ ।

ଏ ଆନ୍ଦୋଳନ କେବଳ ମଦରେ ସୀମିତ ରହିନଥିଲା । ମଦ ଦୋକାନ ଗଂଜା ଦୋକାନ ଛଡ଼ା ଅନ୍ୟତ୍ର ପିକେଟିଂ ହୋଇନଥିଲେ ମଧ ଦେଶୀ ମଦଭାଟି, ମହୁଲୀ କେନ୍ଦ୍ର ଏପରିକି ଖଜୁରୀ ରସ ତାଡ଼ି ବିକ୍ରୟ କେନ୍ଦ୍ର ଉପରେ ମଧ ବିଶେଷ ପ୍ରଭାବ ପଡ଼ିଥିଲା । ଏହି ବ୍ୟବସାୟ କରି ଯେଉଁମାନେ ଚଳୁଥିଲେ, ବିଶୋଷ କରି ଗରୀବ ବେପାରୀଙ୍କ ଅର୍ଥନୀତି ଭାଙ୍ଗିପଡ଼ିବାରୁ ଜନସାଧାରଣ ସେମାନଙ୍କ ଭରଣପୋଷଣ ଦିଗରେ ସାହାଯ୍ୟ ସହଯୋଗ କରିବାକୁ ସ୍ୱତଃ ଆଗେଇ ଆସିଥିଲେ ।

ମାର୍ଚ୍ଚ ୧୦, ୧୯୩୧ରେ ବୁଢ଼ାରାଜା ପାହାଡ଼ ପାଦଦେଶରେ ମଦ ଦୋକାନ ଆଗରେ ପିକେଟିଂ କରିବା ପାଇଁ ଏକ ସଭା ହୋଇଥିଲା । ସଭାମଧ୍ୟରୁ ସୁଧାଂଶୁ ଶେଖର ଗୁପ୍ତ, ଦୁର୍ଗାପ୍ରସାଦ ଗୁରୁ, ବିନାୟକ ପାଢ଼ୀ, ଭାଗିରଥି ପଟ୍ଟନାୟକ ଓ ପ୍ରଫୁଲ୍ଲଙ୍କୁ ଗିରଫ କରାଯାଇଥିଲା ।

ସମ୍ବଲପୁର ସହରର ବଡ଼ବଜାର ମଦ ଦୋକାନ ଆଗରେ ବହୁ ଲୋକ ପିକେଟିଂ କରିଥିଲେ । କର୍ମୀମାନଙ୍କୁ ଉତ୍ସାହିତ କରିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାସ ଏପ୍ରିଲ୍ ୬, ୧୯୩୧ରେ ସମ୍ବଲପୁର ଆସିଥିଲେ । ଏପ୍ରିଲ୍ ୧୧ ତାରିଖ ଦିନ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ ମଧ୍ୟ ପହଞ୍ଚିଥିଲେ ।

ସମ୍ବଲପୁରଠାରେ ମଦ ବିରୋଧୀ ଆନ୍ଦୋଳନ ଭୟଙ୍କର ରୂପ ନେଇଥିଲା । ଏପ୍ରିଲ୍ ୧୩ ତାରିଖ ଦିନ କଂଗ୍ରେସ ସତ୍ୟାଗ୍ରହୀମାନେ ଦଲାଇପଡ଼ାର ମଦଦୋକାନ ସମ୍ମୁଖରେ ପିକେଟିଂ କରିଥିଲେ । ଅଗଷ୍ଟ ୫ ତାରିଖ ଦିନ ବରଗଡ଼ର ମଦଦୋକାନ ଆଗରେ ପିକେଟିଂ କରାଯାଇଥିଲା ।

ତା'ପରେ ୧୯୩୨ ଅଗଷ୍ଟ ମାସରେ କଷ୍ଟରାମ ତନ୍ତୀ ଆଉ ଜଣେ ବୃଦ୍ଧାଙ୍କ ନେତୃତ୍ୱରେ ମଦବିରୋଧୀ ଆନ୍ଦୋଳନ ହୋଇଥିଲା । ମହାବୀର ସିଂହ ଝାରସୁଗୁଡ଼ା ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ । ତାଳପଟିଆ ବଜାରରେ କଂଗ୍ରେସ ପ୍ରଚାର ପତ୍ର ବାଣ୍ଟିବା ବେଳେ ଏମାନଙ୍କୁ ଗିରଫ କରାଯାଇଥିଲା ।

ଭେଡେନ୍ ମଦଭାଟି ଭାଙ୍ଗିବା ଅପରାଧରେ ରେମଣ୍ଡାର ଲକ୍ଷ୍ମଣ ଜାୟସଓ୍ୱାଲ୍, ଯୋଗେନ୍ଦ୍ର ବେହେରା, ଅନିରୁଦ୍ଧ ସାହୁ, ଭୀମସେନ ସାହୁ, ଦ୍ୱାରକା ମହାପାତ୍ର, ହୃଷୀକେଶ ପ୍ରମୁଖଙ୍କୁ ଭେଡେନ୍ ପୋଲିସ୍ ଗିରଫ କରିଥିଲା ।

ଅତାବିରା ମଦଭାଟି ଭାଙ୍ଗିବା ଘଟଣାକୁ କେନ୍ଦ୍ରକରି ମଙ୍ଗଳୁ ପ୍ରଧାନ, ବାଳୀବୀର ସାହୁ, ଭୀମସେନ ମେହେର, ମହେଶ୍ୱର ନାୟକ, ହୃଷୀକେଶ ନାୟକ ଗିରଫ ହୋଇଥିଲେ ।

ବରଗଡ଼ ମଦଭାଟି ଭାଙ୍ଗିବା ଘଟଣାରେ ଫକୀର ବେହେରା, ଗଙ୍ଗାଧର ସରାଫ, ଯୋଗେନ୍ଦ୍ର ପ୍ରଧାନ, ନିତ୍ୟାନନ୍ଦ ମହାପାତ୍ର, ଉପେନ୍ଦ୍ର ସାହୁ, ମଙ୍ଗଳୁ ପ୍ରଧାନ, ହୃଷୀକେଶ ଗିରଫ ହୋଇଥିଲେ ।

ବରଗାଁର ବିନାୟକ ପାଢ଼ୀ ୧୯୩୧ରେ ସମ୍ବଲପୁର ମଦଦୋକାନ ଆଗରେ ପିକେଟିଂ କରି ଗିରଫ ହୋଇଥିଲେ । ତାଙ୍କୁ ତିନି ସପ୍ତାହ ଜେଲ୍ ଓ ୭୫ ଟଙ୍କା ଜୋରିମାନା କରାଯାଇଥିଲା ।

ନିଶା ନିବାରଣ ଆନ୍ଦୋଳନରେ ବାନର ସେନାର ବି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ବାନର ସେନାର ଜନୈକ କର୍ମୀ ବ୍ରହ୍ମାନନ୍ଦ ପୂଜାରୀ ଏକ ସ୍ୱେଚ୍ଛାସେବୀ ଦଳ ସହ ସମ୍ବଲପୁରରୁ ପୁରୀ ପର୍ଯ୍ୟନ୍ତ ଚାଲି ଚାଲି ଯାଇଥିଲେ । ପୁରୀର ଲକ୍ଷ୍ମୀ ବଜାର ଅଫିମ ଦୋକାନ ଆଗରେ ପିକେଟିଂ କରିବା ଫଳରେ ତାଙ୍କୁ ସେଠାରେ ଗିରଫ ରାଯାଇଥିଲା ।

ପୋଲିସ୍ ହାଜତରୁ ଖଲାସ ପାଇଲା ପରେ ସେ କଟକରେ ପୁଣିଥରେ ସରକାରୀ ଗଞ୍ଜେଇ ଦୋକାନ ଆଗରେ ପିକେଟିଂ କରି ଗିରଫ ହୋଇଥିଲେ । ଏଥିପାଇଁ ତାଙ୍କୁ ଜାନୁଆରୀ ୨୪, ୧୯୩୨ରେ ୬ ମାସ ଜେଲ୍‌ଦଣ୍ଡ ହୋଇଥିଲା । କଟକ ଓ ପରେ ପାଟନା କ୍ୟାମ୍ପ ଜେଲ୍‌ରେ ତାଙ୍କୁ ରଖାଯାଇଥିଲା ।

ବରଗଡ଼ର ଗୋପାଳ ଗଣ୍ଡା ସ୍ଥାନୀୟ ମଦଦୋକାନ ବନ୍ଦ କରିବାକୁ ନେତୃତ୍ୱ ନେଇ ୧୫ ମାସ ସଶ୍ରମ କାରାଦଣ୍ଡ ଭୋଗ କରିଥିଲେ । ଅକ୍ଟୋବର ୬, ୧୯୪୨ରୁ ଡିସେମ୍ବର ୧୯, ୧୯୪୩ ପର୍ଯ୍ୟନ୍ତ ଜେଲ୍‌ରେ ଅତିବାହିତ କରିଥିଲେ ।

ସେହିପରି ଆଉ ଜଣେ ରାମେଶ୍ୱର ଗଡ଼ତିଆ ବରଗଡ଼ ମଦ ଦୋକାନରେ ପିକେଟିଂ କରି ଅକ୍‌ଟୋବର ୧୪, ୧୯୪୨ରୁ ଅଗଷ୍ଟ ୯, ୧୯୪୩ ପର୍ଯ୍ୟନ୍ତ ସମ୍ବଲପୁର ଜେଲ୍‌ରେ ଅବରୁଦ୍ଧ ହୋଇଥିଲେ । ସେବା ସୁରୁଜାଲ୍ ବରଗଡ଼ ମଦଦୋକାନରେ ପିକେଟିଂ କରିବା ଅପରାଧରେ ୧୫ ମାସ ଧରି ଜେଲ୍‌ର ଯାତନା ସହିଥିଲେ । ଗୁଡ଼େଶିରାର କୁଂଜ ବିହାରୀ ଦାଶ ଶିକ୍ଷକତା ଛାଡ଼ି ୧୯୩୨ରେ ନିଶା ନିବାରଣ ଆନ୍ଦୋଳନରେ ଯୋଗଦାନ କରିଥିଲେ ।

ସମ୍ବଲପୁର ଜିଲ୍ଲାରେ ନିଶା ନିବାରଣ ଆନ୍ଦୋଳନର ସଫଳତା ଥିଲା ଅପୂର୍ବ ଓ ଅଭୁତପୂର୍ବ ।

□□□

# ସମାନ୍ତର କଂଗ୍ରେସ କମିଟି

ଏକ ଦିଗରେ ସ୍ୱାଧୀନତା ଆନ୍ଦୋଳନ ଆଗେଇ ଚାଲିଥିଲା ବେଳେ ଅନ୍ୟ ଦିଗରେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟି ଭିତରେ ଦଳୀୟ କନ୍ଦଳ ମଧ୍ୟ ଦେଖାଯାଇଥିଲା ।

୧୯୨୪ରେ ଚନ୍ଦ୍ରଶେଖର ବେହେରା ଜିଲ୍ଲା କଂଗ୍ରେସର ସଭାପତି ଥିଲେ । ତାଙ୍କ କମିଟିରେ ତାଙ୍କ ଭଳି ଆଉ କେତେ ଜଣ ଖଦଡ଼ଧାରୀ ଓକିଲ ଥିଲେ । ସେମାନଙ୍କ ମଧ୍ୟରେ ଅଚ୍ୟୁତାନନ୍ଦ ପୁରୋହିତ, ଦୋଧରାମ ଦୁବେ, କପିଳେଶ୍ୱର ନନ୍ଦ ପ୍ରମୁଖ ଅନ୍ୟତମ ।

ଏହି ନେତୃବର୍ଗ ଗ୍ରାମାଞ୍ଚଳରେ କଂଗ୍ରେସ ସଂଗଠନର ପ୍ରଚାର-ପ୍ରସାର ଉପରେ ଗୁରୁତ୍ୱାରୋପ ନକରି କଟକରୁ ଆସୁଥିବା ବିଭିନ୍ନ ବଡ଼ ବଡ଼ ନେତାମାନଙ୍କ ସ୍ୱାଗତ ସତ୍କାର ଆଦିରେ ବିଶେଷ ବ୍ୟସ୍ତ ରହୁଥିଲେ । ଲକ୍ଷ୍ମୀନାରାୟଣ ମିଶ୍ର, ଚିନ୍ତାମଣି ପୂଜାରୀ, ଭାଗିରଥି ପଟ୍ଟନାୟକ, ନୃସିଂହ ଗୁରୁ ଆଦି ଏହାର ପରିପନ୍ଥୀ ଥିଲେ । ଏମାନେ ଗାଁ ଗହଳ, ସହର ଆଦିରେ ବୁଲି ବୁଲି କଂଗ୍ରେସ ସଂଗଠନ ସହ ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ଖଦୀ ସଂଗଠନ ପାଇଁ ଦିନରାତି ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଏଭଳି ଅବସ୍ଥାରେ ଜିଲ୍ଲାରେ ଏକ ସମାନ୍ତର କଂଗ୍ରେସ କମିଟି ଗଠନ କରାଯାଇଥିଲା ।

ଅଗଷ୍ଟ ୬, ୧୯୨୪ ଦିନ ଜିଲ୍ଲା କଂଗ୍ରେସ କମିଟି ବୈଠକରେ ଛୋଟ ଲାଟ୍‌କୁ ସମ୍ବର୍ଦ୍ଧନା ଜଣାଇଥିବା କାରଣରୁ ଚନ୍ଦ୍ରଶେଖର ବେହେରାଙ୍କୁ କଂଗ୍ରେସ ଜିଲ୍ଲା ସଭାପତି ପଦରୁ ବହିଷ୍କାର କରାଯାଇ ତାଙ୍କ ସ୍ଥାନରେ ଚିନ୍ତାମଣି ପୂଜାରୀଙ୍କୁ ସଭାପତି ଓ ଭାଗୀରଥି ପଟ୍ଟନାୟକଙ୍କୁ ସମ୍ପାଦକ କରାଯାଇଥିଲା । ଭାଗୀରଥି ତାଙ୍କ ଡାଏରୀରେ ଲେଖିଛନ୍ତି ଯେ, ''ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସମ୍ବଲପୁର ଜିଲ୍ଲାରେ କଂଗ୍ରେସ ସଂଗଠନ ଆଡ଼କୁ ସେତେଟା ଧ୍ୟାନ ଦେଉନଥିଲା । ଏ ବିଷୟରେ ଅଭିଯୋଗ ହେଲେ ଏଠାରେ ସ୍ୱୟଂ ଲକ୍ଷ୍ମୀନାରାୟଣ, ଭାଗୀରଥି, ନୃସିଂହ, ଚିନ୍ତାମଣି ରହିଥିବାରୁ ସେଠାରେ ଆଉ ବା କାହାର ଆବଶ୍ୟକତା କ'ଣ ବୋଲି ପ୍ରାଦେଶିକ ସଭାପତି ନୀଳକଣ୍ଠ ଦାସ ଏଡ଼ାଇ ଦେଉଥିଲେ । ଏ କଥା କାହାକୁ ପସନ୍ଦ ହେଉନଥିଲା ।''

ଅନେକ ଅପେକ୍ଷା ପରେ ଚିନ୍ତାମଣି ଜିଲ୍ଲା କଂଗ୍ରେସ ପକ୍ଷରୁ ସମ୍ବଲପୁର କମିଟିକ ପ୍ରଦେଶ କମିଟିରୁ ଅଲଗା ଭାବେ ସ୍ୱୀକୃତି ଦେବାକୁ ଜାତୀୟ କମିଟି ନିକଟରେ ଦାବି ଜଣାଇଲେ । ଭାଗୀରଥି ୧୯୨୪ରେ ବେଲଗାଓଁ କଂଗ୍ରେସରେ ଯୋଗଦେବାକୁ ଯାଇ ଅଧିବେଶନରେ ଉପରୋକ୍ତ ଆପତ୍ତିପତ୍ର ବାଣ୍ଟିଥିଲେ । ଲକ୍ଷ୍ମୀନାରାୟଣଙ୍କ ଏକ ପତ୍ର ସହ ଏହି ପତ୍ର ଜବାହାରଲାଲ୍ ନେହେରୁଙ୍କୁ ମଧ୍ୟ ଦିଆଯାଇଥିଲା ।

ଜାତୀୟ କମିଟି ଏହାର ବିଚାର ଦାୟିତ୍ୱ ଡ. ରାଜେନ୍ଦ୍ର ପ୍ରସାଦ, ରାଘବେନ୍ଦ୍ର ରାଓ ଓ ରବିଶଙ୍କର ଶୁକ୍ଳଙ୍କ ଉପରେ ନ୍ୟସ୍ତ କଲେ ।

ନେହେରୁ ଗୋପବନ୍ଧୁ ଦାସଙ୍କୁ ଆପତ୍ତିପତ୍ର ଦେଖାଇଲେ । ଗୋପବନ୍ଧୁ ଏସବୁ ଜାଣି ନଥିବା ଦର୍ଶାଇଥିଲେ ଓ ପରେ ତାଙ୍କ ହସ୍ତକ୍ଷେପ ଫଳରେ ଏ ବିବାଦର ଅବସାନ ହୋଇଥିଲା ।

ଜାନୁଆରୀ ୨୧, ୧୯୨୯, ଜାତୀୟ କଂଗ୍ରେସର କଲିକତା ମହାଅଧିବେଶନରେ ଚିନ୍ତାମଣି ପୂଜାରୀ ଓ ଲକ୍ଷ୍ମୀନାରାୟଣ ଯୋଗଦେଲେ । ସେଠାରେ ସେମାନେ ଗାନ୍ଧି, ମୋତିଲାଲ୍ ଓ ଜବାହାରଲାଲ୍‌ଙ୍କ ଆଗରେ ନିଷ୍କ୍ରିୟ, ପୁରୁଣା ଜିଲ୍ଲା କଂଗ୍ରେସ କମିଟି କଥା ପ୍ରକାଶ କରି ସମ୍ବଲପୁରର ସମସ୍ତ ସାଂଗଠନିକ ବିବରଣୀ ଦେଇଥିଲେ ।

ଏ କଥା ଶୁଣି ଗାନ୍ଧି ମର୍ମାହତ ହେଲେ । ସମଗ୍ର ଜିଲ୍ଲାରେ ଭାଗୀରଥି, ଚିନ୍ତାମଣି, ଲକ୍ଷ୍ମୀନାରାୟଣ, ନୃସିଂହ ଗୁରୁଙ୍କ ଦ୍ୱାରା ଚାଲିଥିବା ଅସ୍ପୃଶ୍ୟତା, ନିଶା ନିବାରଣ, ଖଦୀ ଅନୁଷ୍ଠାନ କଥା ଶୁଣି ଆନନ୍ଦ ପ୍ରକାଶ କରିଥିଲେ ।

ସଂଗେ ସଂଗେ ପୁରୁଣା କମିଟିକୁ ବାତିଲ୍ କରି ନୂଆ କମିଟିକୁ ସ୍ୱୀକୃତି ଦେବାକୁ ପ୍ରାଦେଶିକ କମିଟିକୁ ନିର୍ଦ୍ଦେଶ ଦିଆଗଲା ।

ଏହାପରେ ବିଧିବଦ୍ଧ ଭାବରେ ନୂତନ ଜିଲ୍ଲା କମିଟି ଗଠିତ ହେଲା । ଏହାର କର୍ମକର୍ତ୍ତା ହେଲେ ସଭାପତି ଚିନ୍ତାମଣି ପୂଜାରୀ, ସମ୍ପାଦକ ଭାଗୀରଥି ପଟ୍ଟନାୟକ ଓ ସଂଗଠନ ସମ୍ପାଦକ ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ନୃସିଂହ ଗୁରୁ ।

ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟି ସେଦିନ ବଡ଼ବଡ଼ିଆ, ବଡ଼ ପାଠୁଆମାନଙ୍କ ହାତରୁ ଗାଁ ଗହଳର ସାଧାରଣ ଲୋକଙ୍କ ହାତକୁ ଚାଲି ଆସିଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉପରୋକ୍ତ କର୍ମକର୍ତ୍ତାଙ୍କ ସମେତ କଂଗ୍ରେସର ମୁଖ୍ୟକର୍ମୀ ଘନଶ୍ୟାମ ପାଣିଗ୍ରାହୀ, ବୃନ୍ଦାବନ ଗୁରୁ, କୃତାର୍ଥ ଆଚାର୍ଯ୍ୟ, ଦୁର୍ଗାପ୍ରସାଦ ଗୁରୁ, ସୁଧାଂଶୁଶେଖର ଦେଓ, ଦୟାନନ୍ଦ ଶତପଥୀ ଆଦିଙ୍କ ଶିକ୍ଷାଗତ ଯୋଗ୍ୟତା ମେଟ୍ରିକ୍‌ରୁ ଊର୍ଦ୍ଧ୍ୱ ନଥିଲା ।

ଜୁଲାଇ ୧୬, ୧୯୨୭ରେ ସମ୍ବଲପୁର ସହରରେ ଏକ ସଭା ହେଲା । ଏଥିରେ ଲକ୍ଷ୍ମୀନାରାୟଣ ନାଗପୁର କଂଗ୍ରେସକୁ ସବୁମନ୍ତେ ସାହାଯ୍ୟ କରିବାକୁ ନିବେଦନ କରି ବ୍ରିଟିଶ୍ ସରକାରର ଉଚ୍ଛେଦ କରି ସ୍ୱରାଜ ହାସଲ କରିବାକୁ ଓ ସରକାରୀ କର୍ମଚାରୀଙ୍କ ସହ ସମସ୍ତ ସଂପର୍କ ଛିନ୍ନ କରିବାକୁ ଆହ୍ୱାନ ଦେଲେ ।

❑❑❑

# ମହାତ୍ମାଗାନ୍ଧୀଙ୍କ ପ୍ରଥମ ସମ୍ବଲପୁର ଆଗମନ

ମହାତ୍ମା ଗାନ୍ଧୀଙ୍କ ଝାରସୁଗୁଡ଼ା ଓ ସମ୍ବଲପୁର ଆଗମନ ଥିଲା ଏ ଅଞ୍ଚଳର ସ୍ୱାଧୀନତା ଆନ୍ଦୋଳନର ଏକ ଐତିହାସିକ ଘଟଣା । ଏହାଥିଲା ଏ ଅଞ୍ଚଳର ଅଗ୍ରଣୀ ସ୍ୱାଧୀନତା ସଂଗ୍ରାମ ପ୍ରତି ଏକ ଯଥାର୍ଥ ଜାତୀୟ ସମ୍ମାନ ।

ଚୀନ୍‌କୁ ଭାରତୀୟ ସୈନ୍ୟ ପ୍ରେରଣ ବିରୋଧରେ ସମ୍ବଲପୁରରେ ୧୯୨୭ ପ୍ରାରମ୍ଭରେ ଆନ୍ଦୋଳନ ହେଲା । ଜାନୁଆରୀ ୩୦ରେ ବାଲିବନ୍ଧା ଠାରେ ଏକ ସଭା କରି ଲକ୍ଷ୍ମୀନାରାୟଣ ଏହାର ବିରୋଧ କଲେ । ତତ୍‌କାଳୀନ ପୌରପରିଷଦ କଂଗ୍ରେସ ଆଦର୍ଶ ଓ ଲକ୍ଷ୍ୟରେ ସମର୍ଥକ ନଥିବାରୁ ତା' ବିରୋଧରେ ଆନ୍ଦୋନଳ ହେଲା । ମେ ୧୮ରେ ଏକ ସଭା ହୋଇ ସମ୍ବଲପୁର ପୌରପରିଷଦର ନୂତନ ଗୃହ ତତ୍‌କାଳୀନ ଡେପୁଟି କମିଶନର ଏଫ୍.ସି.କିଙ୍ଗ୍‌ଙ୍କ ଦ୍ୱାରା ଉଦ୍‌ଘାଟନ ନକରାଇବାକୁ ଦାବି କରାଗଲା । ଜାନୁଆରୀ ୧୯୨୮ରେ ବିହାର-ଓଡ଼ିଶା ରାଜ୍ୟପାଳଙ୍କ ସମ୍ବଲପୁର ଗସ୍ତର ବିରୋଧରେ ଲକ୍ଷ୍ମୀନାରାୟଣଙ୍କ ନେତୃତ୍ୱରେ ସହରରେ ହରତାଳ ପାଳିତ ହେଲା । ଗାନ୍ଧୀଙ୍କ ଗସ୍ତ ପାଇଁ ଅଭ୍ୟର୍ଥନା ପ୍ରସ୍ତୁତି ଚାଲିଲା ।

ଡିସେମ୍ବର ୨୨, ୧୯୨୮ରେ ମହାତ୍ମା ଗାନ୍ଧି ତାଙ୍କ ପ୍ରଥମ ସମ୍ବଲପୁର ଗସ୍ତରେ ଆସି ଝାରସୁଗୁଡ଼ାରେ ଓହ୍ଲାଇଥିଲେ । ତାଙ୍କ ସହ କସ୍ତୁରବା ଗାନ୍ଧି ଓ ପୁତ୍ର ଦେବଦାସ ଗାନ୍ଧି ମଧ ଆସିଥିଲେ । ଝାରସୁଗୁଡ଼ାରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେଠାରେ ସେ କେତେକ ସଭାରେ ଯୋଗ ଦେଇଥିଲେ ।

ତା'ପରେ ଡିସେମ୍ବର ୨୩ ତାରିଖ ଦିନ ସେ ସମ୍ବଲପୁର ପହଞ୍ଚିଥିଲେ । ତାଙ୍କୁ ସମ୍ବଲପୁରର ପ୍ରତ୍ୟେକ ଶ୍ରେଣୀର ଲୋକଙ୍କ ପକ୍ଷରୁ ଉଚ୍ଛ୍ୱସିତ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏଥିପାଇଁ ଚନ୍ଦ୍ରଶେଖର, ଗୌରୀଶଙ୍କର ମିଶ୍ର, ଅଚ୍ୟୁତାନନ୍ଦ ପୁରୋହିତ, ଲକ୍ଷ୍ମୀନାରାୟଣ ମିଶ୍ର ଓ ଅନ୍ୟ ଦୁଇଜଣ ଓକିଲଙ୍କୁ ନେଇ ଏକ ଅଭ୍ୟର୍ଥନା କମିଟି ଗଠିତ ହୋଇଥିଲା । ସେତେବେଳେ ଚନ୍ଦ୍ରଶେଖର ଜିଲ୍ଲା କଂଗ୍ରେସ ସଭାପତି ଓ ବୋଧରାମ ଦୁବେ ସଂପାଦକ ଥିଲେ । କସ୍ତୁରବାଙ୍କୁ ମହିଳାମାନେ ସ୍ୱତନ୍ତ୍ର ସମ୍ବର୍ଦ୍ଧନା ଦେଇଥିଲେ ।

ବ୍ରହ୍ମପୁରା ମନ୍ଦିର ସାମ୍ନା ମହାନଦୀ ବାଲିପଠାରେ ଏକ ବିରାଟ ଜନସଭାରେ ମହାତ୍ମା ଗାନ୍ଧି ଉଦ୍‌ବୋଧନ ଦେଇଥିଲେ । ମହାତ୍ମା ଗାନ୍ଧି ଚନ୍ଦ୍ରଶେଖର ବେହେରାଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ଜନସଭାରେ ଗାନ୍ଧୀ ସ୍ୱଦେଶୀ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବା ସହିତ ନିଜ ହାତରେ କର୍ମୀମାନଙ୍କୁ ଖଦୀ ଲୁଗା ବିକ୍ରୟ କରିଥିଲେ ।

ମହାତ୍ମା ଗାନ୍ଧିଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଦେବା ପାଇଁ ସମ୍ବଲପୁରର ମହିଳାମାନଙ୍କ ପକ୍ଷରୁ ଏକ ସ୍ୱତନ୍ତ୍ର ସଭାର ଆୟୋଜନ କରାଯାଇଥିଲା । ଗାନ୍ଧୀ ନିଶା ନିବାରଣ, ଅସ୍ପୃଶ୍ୟତା ଓ ବିଦେଶୀ ବସ୍ତ୍ର ବର୍ଜନ ପାଇଁ ନାରୀ ସମାଜକୁ ଆହ୍ୱାନ ଦେଇଥିଲେ ।

ଅସୁସ୍ଥତା ବଶତଃ ଗାନ୍ଧି ଶୀଘ୍ର ଫେରିଯିବା ଫଳରେ ସେ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ରେମଣ୍ଡା ଓ ପଞ୍ଚପଡ଼ାର ଖଦୀ କେନ୍ଦ୍ର ପରିଦର୍ଶନରେ ଯାଇପାରି ନଥିଲେ । ସେଠାରେ ଖଦୀର ଦୁଇଟା ଭବ୍ୟ ପ୍ରଦର୍ଶନୀ ମଧ କରାଯାଇଥିଲା । ଏଥିପାଇଁ ଭାଗୀରଥି ଓ ଚିନ୍ତାମଣି ଅନେକ ପ୍ରସ୍ତୁତି ମଧ କରି ରଖିଥିଲେ ।

ଗାନ୍ଧୀଜୀଙ୍କ ଏହି ଯାତ୍ରା କଂଗ୍ରେସ କର୍ମୀ ଓ ଜନସାଧାରଣଙ୍କୁ ବିଶେଷ ଉତ୍ସାହିତ କରିଥିଲା ।

ଗାନ୍ଧୀଜୀଙ୍କ ସମ୍ବଲପୁର ଗସ୍ତ ବିବରଣୀ ସମ୍ପର୍କରେ ଡ. ହରେକୃଷ୍ଣ ମହତାବ ଲେଖିଛନ୍ତି :

''ଗାନ୍ଧିଜୀ ବାରମ୍ବାର ଓଡ଼ିଶା ଗସ୍ତକୁ ଆସି ସମ୍ବଲପୁର ନଯାଉଥିବାରୁ ସେଠାରେ ଅସନ୍ତୋଷ ପ୍ରକାଶ ପାଇଥିଲା । ୧୯୨୧ ମସିହାରେ ସମ୍ବଲପୁରରେ ପ୍ରଥମେ ସ୍କୁଲ୍ ବର୍ଜନ ଉତ୍ସାହ ସହକାରେ ଆରମ୍ଭ ହୋଇଥିଲା ଏବଂ ସମ୍ବଲପୁରର ଉଦାହରଣ କଲିକତାରେ ଦିଆହୋଇ ଇଂରେଜ ଶିକ୍ଷାନୁଷ୍ଠାନ ବର୍ଜନ ପାଇଁ ଆହ୍ୱାନ କରାଯାଇଥିଲା । ଏଣୁ ସମ୍ବଲପୁରକୁ ଗାନ୍ଧିଜୀ ଯିବାପାଇଁ ଦାବି କରିବା ସମ୍ବଲପୁରବାସୀଙ୍କ ପକ୍ଷରେ ନ୍ୟାଯ୍ୟ ଥିଲା । ଗାନ୍ଧିଜୀ ଏ ଦାବି ଗ୍ରହଣ କରିଥିଲେ । ବମ୍ବେରୁ କଲିକତା ଯିବା ବାଟରେ ସେ ୧୯୨୮ ଡିସେମ୍ବର ୨୨ ତାରିଖରେ ଝାରସୁଗୁଡ଼ାରେ ଟ୍ରେନ୍‌ରୁ ଓହ୍ଲାଇ ସମ୍ବଲପୁର ଆସିଥିଲେ ଓ ସେହିଦିନ ସନ୍ଧ୍ୟାରେ ଫେରିଯାଇ କଲିକତାରେ ଡିସେମ୍ବର ୨୩ରେ ପହଞ୍ଚିଥିଲେ । ସମ୍ବଲପୁର ଗସ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

''ପୂର୍ବ ପ୍ରତିଶ୍ରୁତି ଅନୁସାରେ ଉତ୍କଳର ସମ୍ବଲପୁର ପରିଦର୍ଶନ ପାଇଁ ଗାନ୍ଧିଜୀ ଝାରସୁଗୁଡ଼ାରେ ଓହ୍ଲାଇଥିଲେ । ମହାନଦୀ ବାଲିରେ ସକାଳେ ସାଧାରଣ ସଭା ହୋଇଥିଲା । ସଭାରେ ସମ୍ବଲପୁରର ମ୍ୟୁନିସିପାଲିଟି ଓ ଅଭ୍ୟର୍ଥନା ସମିତି ମାନପତ୍ର ପ୍ରଦାନ କରିଥିଲେ । ଏହି ମାନପତ୍ରମାନଙ୍କରେ ସମ୍ବଲପୁରର ଦୁଃଖ କାହାଣୀ ବର୍ଣ୍ଣିତ ହୋଇଥିଲା । ଏକ ଦିଗରେ ସମ୍ବଲପୁର ପ୍ରତି ପ୍ରକୃତି ପ୍ରତିକୂଳ ଓ ଅନ୍ୟ ଦିଗରେ ଲୋକଙ୍କ ମନୋଭାବ ପ୍ରତି ଟିକେ ହେଲେ ଭ୍ରୁକ୍ଷେପ ନକରି ଶାସନର ସୁବିଧା ପାଇଁ ସମ୍ବଲପୁର ଖେଳଣା ହୋଇଯାଇଛି ବୋଲି ମାନପତ୍ରରେ କୁହାଯାଇଥିଲା ।

ଗାନ୍ଧିଜୀଙ୍କ ଭାଷଣ ଦରିଦ୍ରନାରାୟଣଙ୍କ ସେବା ପାଇଁ ଏକ ଆବେଗମୟ ନିବେଦନ ଥିଲା - ''ଏ ସଂସାରରେ ମୋର ଜୀବନର ଯେତେଦିନ ବାକି ଅଛି, ସେଥିରେ ମୁଁ ଯେଉଁ

କାମକୁ ସବୁଠାରୁ ବେଶୀ ଫଳଦାୟକ ବୋଲି ମନେ କରୁଛି, ସେହି ଖଦୀ କାର୍ଯ୍ୟରେ ମୁଁ ନିଜକୁ ନିୟୋଜିତ କରିବି । ମୁଁ ସଭା ଶୋଭାଯାତ୍ରାରେ ଶକ୍ତି ଅପଚୟ କରିବି ନାହିଁ । ମୁଁ ମୋ ଜୀବନର ଫଳଦାୟକ କାର୍ଯ୍ୟ କଅଣ ହେବ ସେ ବିଷୟରେ ତୁମ ନିଜ ମତ ପୋଷଣ କରିବାର ଅଧିକାର ତୁମର ଅଛି; କିନ୍ତୁ ତାହାହେଲେ ମୋତେ ଏକାକୀ ଛାଡ଼ିଦିଅ ।''

ଦେଶର ଦାରିଦ୍ର୍ୟ ସମ୍ବନ୍ଧରେ ଗାନ୍ଧିଜୀ କହିଲେ - ''ଏକ ଦିଗରେ କ୍ରମଶଃ ଟିକସ୍ ବୃଦ୍ଧି କରାହେଉଛି ଓ ଅନ୍ୟ ଦିଗରେ ବ୍ୟବସାୟୀମାନେ ଷାଠିଏ କୋଟି ଟଙ୍କାର ବିଦେଶୀ ଲୁଗା ଆଣି ଜମା କରି ଦେଉଛନ୍ତି । ଏ ଦୁଇ ଚକି ମଧ୍ୟରେ ଲୋକେ ଯେ ପେଷି ହୋଇ ଧୂଳି ହୋଇଯାଉଛନ୍ତି ଏଥିରେ ବିସ୍ମିତ ହେବାର କିଛି ନାହିଁ । ବସ୍ତୁତଃ ଆଉ କିଛି ହେଉଥିଲେ ବିସ୍ମୟର ବିଷୟ ହୁଅନ୍ତା ।

ଯେଉଁ ତିନିଜଣ ମହାନ୍ ନେତାଙ୍କ ଠାରେ ଓଡ଼ିଶା କୃତଜ୍ଞ, ଦେଶବନ୍ଧୁ ଲାଲାଜୀ ଓ ଗୋପବନ୍ଧୁ ସେମାନଙ୍କ ମଧ୍ୟରେ ପ୍ରଧାନ । ସେମାନଙ୍କର ଗ୍ରାମ ସଙ୍ଗଠନ ଓ ଦାରିଦ୍ର୍ୟ ଦୂରିକରଣ ପାଇଁ ଖଦୀରେ ଅବିଚଳିତ ବିଶ୍ୱାସ ଥିଲା । ସେ ବିଶ୍ୱାସରେ ସେମାନଙ୍କର ଯାତ୍ରା ଶେଷ ହେବା ଆଡ଼କୁ କ୍ରମେ ଦୃଢ଼ତର ହେଉଥିଲା । ସେମାନଙ୍କର ସ୍ମୃତି ପ୍ରତି ନ୍ୟାୟ କରିବାକୁ ହେଲେ ମନଦେଇ ଖଦୀ କାମ ହାତକୁ ନେବା ଉଚିତ । ସେଥିରେ ପ୍ରକୃତିର ଧ୍ୱଂସ ଓ ମନୁଷ୍ୟର ଶୋଷଣରୁ ଉତ୍କଳକୁ ରକ୍ଷା କରିହେବ ।'' ତେଣୁ ଗାନ୍ଧିଜୀ ସମ୍ବଲପୁରକୁ ଏକ ସମୃଦ୍ଧିଶାଳୀ ଖଦୀ କେନ୍ଦ୍ର କରିବାକୁ ଇଚ୍ଛାପ୍ରକାଶ କରିଥିଲେ ।

ଭାଷଣ ପରେ ପାଣ୍ଠି ସଂଗ୍ରହ ଓ ଖଦୀ ବିକ୍ରି କରା ହୋଇଥିଲା । ବହୁ ଲୋକ ଖଦୀ କିଣିଥିଲେ । ଛଅ ଶହ ଟଙ୍କାରୁ ଊର୍ଦ୍ଧ୍ୱ ଖଦୀ ବିକ୍ରି ହୋଇଥିଲା ।

ସନ୍ଧ୍ୟାରେ ମହିଳା ସଭା ସର୍ବୋପରି ବିଶ୍ୱାସର ଏକ ପ୍ରଦର୍ଶନ ଥିଲା । ସକାଳ ସଭା ଠାରୁ ଏ ସଭାରେ ବେଶୀ ଲୋକ ଥିଲେ । ଏତେ ଲୋକ ହୋଇଥିଲେ ଯେ, ଶ୍ରୋତୃମଣ୍ଡଳୀର ଅଳ୍ପ ଅଂଶ ମାତ୍ର ଗାନ୍ଧିଜୀଙ୍କ ବକ୍ତୃତା ଶୁଣି ପାରିଥିଲେ । ଗାନ୍ଧିଜୀଙ୍କୁ ଯେ ଆଖି ପୂରାଇ ଦେଖିପାରିଲେ ଏଇଥିରେ ସେମାନଙ୍କ ସନ୍ତୋଷ ଥିଲା । ଗାନ୍ଧିଜୀ ପାଣ୍ଠି ପାଇଁ ଯେତେବେଳେ ନିବେଦନ କଲେ, ସେତେବେଳେ ଲୋକଙ୍କ ଉତ୍ସାହରେ ସଂଗ୍ରହ କରିବା ପାଇଁ ଯେଉଁ ବନ୍ଦୋବସ୍ତ ହୋଇଥିଲା, ସେସବୁ ଭାଙ୍ଗିଗଲା । ପାଣ୍ଠି ବେଶୀ କିଛି ହୋଇନଥିଲା, କାରଣ ବେଶୀ ଭାଗ ପଇସା ଆଦାୟ ହୋଇଥିଲା, କିନ୍ତୁ ଭକ୍ତି ଓ ବିଶ୍ୱାସରେ ପ୍ରଦତ୍ତ ପାହୁଲାଟାକୁ ମଧ୍ୟ ନେବା ପାଇଁ ଦେବତା ମନା କରନ୍ତି ନାହିଁ ।

ସମ୍ବଲପୁରରେ ସଂଗୃହୀତ ମୋଟ ପାଣ୍ଠି ୧୭୯୦ ଟଙ୍କାରୁ ଊର୍ଦ୍ଧ୍ୱ ହୋଇଥିଲା । ସନ୍ଧ୍ୟାରେ ସମ୍ବଲପୁରରୁ ବାହାରି ଆମ୍ଭେମାନେ ୨୩ ତାରିଖ ସକାଳେ ପହଞ୍ଚିଲୁ ।''

*(୧ ତାରିଖ ଜାନୁଆରୀ ୧୯୨୯, ୟଙ୍ଗ ଇଣ୍ଡିଆ)*

ଗାନ୍ଧିଙ୍କ ଗସ୍ତ ଅବସରରେ ଆସିଥିବା ବିଶିଷ୍ଟ ନାରୀ ନେତ୍ରୀ ଶ୍ରୀମତୀ କୃଷ୍ଣା ଦେବୀ

ବରଗଡ଼ ଯାତ୍ରା କରିଥିଲେ । ବରଗଡ଼ ସବଡିଭିଜନ୍‌ର ମହିଳାମାନେ ଏକ ବିରାଟ ସଭା କରି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ ।

ଫକୀର ବେହେରା କଂଗ୍ରେସ କାର୍ଯ୍ୟ ପାଇଁ ବରଗଡ଼ରେ ତାଙ୍କର ଏକ ଦୁଇ ମହଲା କୋଠା ଦାନ କରିଥାନ୍ତି । ଶ୍ରୀମତୀ କୃଷ୍ଣା ଦେବୀ ସେଠାରେ ବରଗଡ଼ର ପ୍ରଥମ କଂଗ୍ରେସ କାର୍ଯ୍ୟାଳୟ ଉଦ୍‌ଘାଟନ କରିଥିଲେ ।

ଏହି ସମୟରେ ଲକ୍ଷ୍ମୀନାରାୟଣ ମିଶ୍ର ଓଡ଼ିଶା ହରିଜନ ସେବକ ସଂଘର ସମ୍ପାଦକ ଓ ନୃସିଂହ ଗୁରୁ ଜିଲ୍ଲା ସେବକ ସଂଘର ସଭାପତି ଥିଲେ ।

ମହାତ୍ମା ଗାନ୍ଧୀଙ୍କ ଗସ୍ତ ସମ୍ବଲପୁର ଆନ୍ଦୋଳନକୁ ଅତିମାତ୍ରାରେ ତେଜାଇ ଦେଇଥିଲା । ସେ ନାରୀମାନଙ୍କୁ ସଂଗ୍ରାମରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବାକୁ ଆହ୍ୱାନ ଦେଇଥିଲେ । ସମାଜର ଦୁର୍ବଳ ଓ ନିମ୍ନ ଶ୍ରେଣୀମାନଙ୍କ ମଧ୍ୟରେ ଏକ ନବଜୀବନ ଓ ଆଶାର ସଂଚାର ହୋଇପାରିଥିଲା ।

୧୯୨୮ରେ ଲକ୍ଷ୍ମୀନାରାୟଣ ସାଇମନ୍ କମିଶନ୍‌ର ଭାରତ ଆଗମନର ବିରୋଧ କରି ଗିରଫ ହୋଇଥିଲେ । ବ୍ରିଟିଶ୍ ସରକାରଙ୍କ ଲାହୋର ଓ ଲକ୍ଷ୍ନୌ କାଣ୍ଡ ତଥା ପାଟନାକୁ କମିଶନକୁ ସ୍ୱାଗତ କରିବାକୁ ଯାଇଥିବା ୧୧ ଜଣଙ୍କ ତୀବ୍ର ନିନ୍ଦା କରିଥିଲେ ।

ମହାତ୍ମା ଗାନ୍ଧୀଙ୍କ ପାଇଁ ଗଠିତ ସମ୍ବର୍ଦ୍ଧନା ସମିତି ପାଇଁ ଲକ୍ଷ୍ମୀନାରାୟଣ ଗିରଫ ହୋଇଥିଲେ । ଜେଲ୍‌ରୁ ମୁକ୍ତ ହେଲାପରେ ସେ କଂଗ୍ରେସର କଲିକତା ଅଧିବେଶନରେ ଯୋଗଦେଇ ଗାନ୍ଧୀ, ମୋତିଲାଲ୍, ଜବାହାରଲାଲ୍ ନେହେରୁଙ୍କୁ ଭେଟିଥିଲେ । ସମ୍ବଲପୁର ଫେରି ସେ ବିଦେଶୀ ଦ୍ରବ୍ୟ ଏବଂ ବିଶେଷତଃ ଲୁଗା ବର୍ଜନ, ଆନ୍ଦୋଳନର ପୁରୋଧା ସାଜିଥିଲେ । ଏହି କଂଗ୍ରେସରେ ଚନ୍ଦ୍ରଶେଖର ଏକ ବିରାଟ ପ୍ରତିନିଧିମଣ୍ଡଳୀ ନେଇ ସମ୍ବଲପୁରରୁ ଯୋଗ ଦେଇଥିଲେ ।

୧୯୨୯ରେ ଲକ୍ଷ୍ମୀନାରାୟଣଙ୍କ ନେତୃତ୍ୱରେ ଜିଲ୍ଲାରେ ଗୁଡ଼ିଏ ହରିଜନ ସେବକ ସଂଘ ଶାଖା ଗଠିତ ହୋଇଥିଲା ।

ଫଟାପାଲିର ଦ୍ୱୈପାୟନ ଗୁପ୍ତା, କୁର୍ଲାର ପରମାନନ୍ଦ ପଣ୍ଡା ପ୍ରମୁଖ ରଂପେଲା, ମୁରା, ଉଣେଇଶ ଖଣ୍ଡ ମୌଜାର ମହାଦେବ ପାଲି ଥାନା ଅଞ୍ଚଳରେ ଗ୍ରାମ ଗ୍ରାମ ବୁଲି ଅସ୍ପୃଶ୍ୟତା ନିବାରଣ ପ୍ରଚାରରେ ଲାଗିଥିଲେ ।

❑❑❑

# ବାନରସେନା : ସେବାଦଳ

ବାନର ସେନା ଗଠନ ଓ ସେବା ଦଳ ପ୍ରଶିକ୍ଷଣ କ୍ଷେତ୍ରରେ ମଧ୍ଯ ସମ୍ବଲପୁର ଜିଲ୍ଲାର ଭୂମିକା ଗୁରୁତ୍ୱପୂର୍ଣ୍ଣ ରହିଥିଲା । ଜାତିପ୍ରେମ, କଂଗ୍ରେସର ତତ୍‌କାଳୀନ ସ୍ୱାଧୀନତା ଭାବାଦର୍ଶରେ କିଶୋରମାନଙ୍କୁ ଦୀକ୍ଷିତ କରିବା ଏହାର ଉଦ୍ଦେଶ୍ୟ ଥିଲା । ଯାହାଫଳରେ ଭବିଷ୍ୟତରେ ସଚୋଟ କଂଗ୍ରେସ ସଂଗ୍ରାମୀ ବାହାରିପାରିବେ । ଯେଉଁମାନେ କଂଗ୍ରେସର ସଂଗ୍ରାମୀ ଇତିହାସ ସହ ସୁପରିଚିତ ଥିବେ । ନିର୍ଭିକ ହେବେ । ସତ୍ୟାଗ୍ରହୀର ଜୀବନ ବିତାଇବେ । ସତ୍ୟାଗ୍ରହର ଆଦର୍ଶ ଅନୁସାରେ ଜୀବନ ଆଚରଣ କରି ପାରିବେ । ଇନ୍ଦିରା ଗାନ୍ଧିଙ୍କୁ ତେର ବର୍ଷ ହୋଇଥିଲା ବେଳେ ସେ ନିଜର ସମବୟସୀ ପୁଅଝିଅଙ୍କୁ ନେଇ ବାନର ସେନାର ପ୍ରଥମ ସଙ୍ଗଠନ ଆରମ୍ଭ କରିଥିଲେ । ଏହି ବାଲସେନା ଥିଲା କଂଗ୍ରେସର ବିଶେଷ ସହାୟକ ଓ ସ୍ୱାଧୀନତା ସଂଗ୍ରାମରେ ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ରାଜତନ୍ତ୍ର ବିରୋଧରେ କଂଗ୍ରେସବାଣୀ ପ୍ରଚାର ଓ କଂଗ୍ରେସ ସଙ୍ଗଠନ କରିବା ଅପରାଧରେ, ଗଡ଼ଜାତୀୟ ରାଜ ଅତ୍ୟାଚାର ବିରୋଧରେ ବିଦ୍ରୋହ ଡାକରା ଦେଇ ବାମଣ୍ଡା ରାଜ୍ୟରୁ ବିତାଡ଼ିତ ଦୟାନନ୍ଦ ଶତପଥୀ ସମ୍ବଲପୁର ଆସି ଜିଲ୍ଲା କଂଗ୍ରେସରେ ଯୋଗ ଦେଇଥିଲେ । କଂଗ୍ରେସ ନିର୍ଦ୍ଦେଶରେ ସେ ବିଭିନ୍ନ ଗଣସଙ୍ଗଠନରେ ଯୋଗଦେଇ ସର୍ବପ୍ରଥମେ କଂଗ୍ରେସର ସେବା ଦଳ ନାମରେ ଏକ ଗଣ ସଂଗଠନ ଗଢ଼ି ଜିଲ୍ଲାର ବିଭିନ୍ନ କେନ୍ଦ୍ରରୁ ଗଠନମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ଗାନ୍ଧିବାଣୀ ପ୍ରଚାର କରିବାକୁ ଲାଗିଲେ ।

୧୯୩୧ରେ କଂଗ୍ରେସ ସେବା ଦଳ କେନ୍ଦ୍ରରେ ସ୍ୱେଚ୍ଛାସେବକ ତାଲିମ ପ୍ରଦାନ କାର୍ଯ୍ୟ ଆରମ୍ଭ ହେଲା ।

ବରଗଡ଼ ବାଲିଟିକ୍ରା କଂଗ୍ରେସ ସମ୍ମିଳନୀରେ ସମ୍ବଲପୁରରେ ଏଭଳି ଏକ ରାଷ୍ଟ୍ରୀୟ ସେବା ତାଲିମ ଦେବାର ପ୍ରସ୍ତାବ କ୍ରମେ ସ୍ୱାଧୀନତା ସଂଗ୍ରାମର ଆବଶ୍ୟକତା ଦୃଷ୍ଟିରୁ ୧୯୩୯ରେ ଏକ କେନ୍ଦ୍ର ପ୍ରତିଷ୍ଠିତ ହେଲା । ଜିଲ୍ଲାର ସ୍ୱେଚ୍ଛାସେବକମାନଙ୍କୁ ପ୍ରଶିକ୍ଷଣ ଦେବାକୁ ଏକ ମାସ ତାଲିମ ଦେବାର ବ୍ୟବସ୍ଥା ହେଲା ।

ଜିଲ୍ଲା କଂଗ୍ରେସ କମିଟିର ତତ୍‌କାଳୀନ ସଂପାଦକ ଦୟାନନ୍ଦଙ୍କ ନେତୃତ୍ୱ ଓ ବିହାରୀଲାଲ୍ ବାବୁଙ୍କ ପରିଚାଳନାରେ ତାଲିମ କେନ୍ଦ୍ର ଆଗେଇ ଚାଲିଲା । ନୈତିକତା ମାଧ୍ୟମରେ କର୍ମୀ ସଙ୍ଗଠନ ଏହାର ଲକ୍ଷ୍ୟ ଥିଲା । ଡ. ଶ୍ରଦ୍ଧାକର ସୂପକାର ଓ ଡା. ହୁସେନ୍ କେନ୍ଦ୍ରରେ ରାଜନୈତିକ ଶିକ୍ଷା ଦେଇଥିଲେ ।

୧୯୩୨ରେ ନାଗର ଦାସଙ୍କ ପୌରୋହିତ୍ୟରେ ଅତାବିରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସମ୍ମୁଖରେ ଏକ ସାଧାରଣ ସଭା ହୋଇଥିଲା । ଏଥିରେ ଲକ୍ଷ୍ମୀନାରାୟଣ ଓ ଦୟାନନ୍ଦ ଶତପଥୀ ଅଗ୍ନିବର୍ଷୀ ଭାଷଣ ଦେଇଥିଲେ । ସେମାନଙ୍କ ଭାଷଣ ଶୁଣି ଉତ୍ତେଜିତ ଛାତ୍ରମାନେ ବିଦ୍ୟାଳୟ ଛାଡ଼ି ସଭାମଣ୍ଡପକୁ ଉଠି ଆସିଥିଲେ ।

ସେମାନଙ୍କ ଉତ୍ସାହକୁ ସ୍ୱାଗତ ଜଣାଇ ଲକ୍ଷ୍ମୀନାରାୟଣ ସଭାରେ ଏକ ବାନର ସେନା ଗଠନ କରିଥିଲେ । ହୃଷୀକେଶ ନାୟକ ବାନରସେନାର ଜଣେ ଅନ୍ୟତମ ସଦସ୍ୟ ଥିଲେ ।

ଉକ୍ତ ଆନ୍ଦୋଳନକୁ ସଫଳ କରିବା ଲାଗି ବାନର ସେନା ଥିଲା କଂଗ୍ରେସର ଏକ ସଫଳ ଆୟୁଧ ।

ବ୍ରିଟିଶ୍ ସରକାର ବିରୋଧୀ ପତ୍ରପତ୍ରିକା, ପ୍ରଚାରପତ୍ର ଜନସାଧାରଣଙ୍କ ମଧ୍ୟରେ ପହଞ୍ଚାଇବା, ସଭା ସମିତିରେ ତ୍ରିରଙ୍ଗ ପତାକା ଧରି ଶୋଭାଯାତ୍ରାରେ ଆନ୍ଦୋଳନକାରୀ ଓ ନେତାମାନଙ୍କ ପଛରେ ବୁଲିବା ଥିଲା ବାନର ସେନାର ମୁଖ୍ୟ କାମ ।

୧୧ ବର୍ଷୀୟ ହୃଷୀକେଶ ଅତାବିରା ବାନର ସେନାର ସେନାପତି ହୋଇଥିଲେ ।

ବାନର ସେନାର କାର୍ଯ୍ୟ ନାଗର ଦାସଙ୍କ ନେତୃତ୍ୱରେ ଚାଲିଥିଲା । ସେ ଥିଲେ ଜଣେ ଗୁଜରାଟୀ । ଏକାଧାରରେ ଜଣେ ବିପ୍ଳବୀ, ଜନନାୟକ, ସମାଜସେବୀ, ଗାନ୍ଧୀବାଦୀ ଓ କୁଟୀର ଶିଳ୍ପର ପୃଷ୍ଠପୋଷକ ।

ଶ୍ରୀ ନାୟକ ବାନର ସେନା ଧରି ଗାଁ ଗାଁ ବୁଲି ପ୍ରଚାର କାର୍ଯ୍ୟ କରିଥିଲେ ।

କାଦୋବାହାଲ ବଜାରରେ ଏକ ବ୍ରିଟିଶ୍ ବିରୋଧୀ ବିଶାଳ ଶୋଭାଯାତ୍ରାରେ ତ୍ରିରଙ୍ଗା ପତାକା ଧରି ଯୋଗଦେଇ ଗିରଫ ହୋଇଥିଲେ ।

ସେବା ଦଳଟି କେବଳ କିଶୋର, ତରୁଣମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ଯେଉଁମାନେ ପ୍ରଶିକ୍ଷଣ ପାଇଲା ପରେ କଂଗ୍ରେସ ଆନ୍ଦୋଳନକୁ ସଫଳତା ସହକାରେ ସାହାଯ୍ୟ କରିବାକୁ ସକ୍ଷମ ହୋଇପାରିବେ ।

ସେବା ଦଳରେ ପ୍ରଥମ ପର୍ଯ୍ୟାୟରେ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ୩୦ ଜଣ ସଭ୍ୟଙ୍କୁ ପ୍ରଶିକ୍ଷଣ ପାଇଁ ଗ୍ରହଣ କରାଯାଇଥିଲା । ଏଥିରେ ସାଧୁଚରଣ ପଟ୍ଟନାୟକ, କବି ଖଗେଶ୍ୱର ସେଠ, ପାଣିମୋରାର ୬/୭ ଜଣ କର୍ମୀ ଓ ଅନ୍ୟମାନେ ଯୋଗ ଦେଇଥିଲେ ।

ଏହା ପୂର୍ବରୁ ୧୯୩୨ର ପୁରୀ କଂଗ୍ରେସ ଉପଲକ୍ଷ୍ୟେ ବରଗଡ଼ ଠାରେ କମାଣ୍ଡର ଦୟାନନ୍ଦଙ୍କ ନେତୃତ୍ୱରେ ପନ୍ଦର ଜଣଙ୍କୁ ତାଲିମ ଦିଆଯାଇଥିଲା । ବରଗଡ଼ର କଂଗ୍ରେସ

କାର୍ଯ୍ୟାଳୟ କୃଷ୍ଣାଶ୍ରମ ଠାରେ ଚାଲିଥିବା ତାଲିମ କେନ୍ଦ୍ରରେ ଜମ୍ବୁବତୀ ଦେବୀ ଆଶ୍ରମ ମାତା ଭାବରେ ଦୟାନନ୍ଦଙ୍କୁ ସାହାଯ୍ୟ କରିଥିଲେ । ଏହି ଦଳରେ ପ୍ରଫୁଲ୍ଲ ପଟ୍ଟନାୟକ ପ୍ରମୁଖ ତାଲିମ ନେଇଥିଲେ ।

ପ୍ରଶିକ୍ଷାର୍ଥୀମାନେ ଦିନେ ଛଡ଼ା ଦିନେ ବରଗଡ଼ର ବିଭିନ୍ନ ସ୍ଥାନକୁ ଯାଇ ଚାନ୍ଦା ସଂଗ୍ରହ କରୁଥିଲେ ।

ଶିବିରରେ ପ୍ରତିଦିନ ସକାଳୁ ପ୍ରଭାତ ଫେରୀ ଓ ବିଭିନ୍ନ ସମାଜ ଉନ୍ନୟନ କାର୍ଯ୍ୟ କରାଯାଉଥିଲା । ଗ୍ରାମ ସଫେଇ, ପୋଖରୀ ସଫେଇ ଆଦି ମଧ୍ୟ ଚାଲିଥାଏ । ମଝିରେ ମଝିରେ କଂଗ୍ରେସର ଚାନ୍ଦା ଆଦାୟ ବି ହେଉଥାଏ । ଏହା ସହିତ ଶୋଭାଯାତ୍ରା, ସୂତ୍ରଯଜ୍ଞ, ବୌଦ୍ଧିକ କ୍ଲାସ୍, ସଭା, ସମିତି ଆଦି କଠୋର ଅନୁଶାସନ ମଧ୍ୟରେ ଚାଲିଥାଏ । ବୌଦ୍ଧିକ ଶ୍ରେଣୀର ଶିକ୍ଷକ ଭାବରେ ବୋଧରାମ ଦୁବେ, ନୃସିହ ଗୁରୁ, ଦୁର୍ଗାପ୍ରସାଦ ଗୁରୁ, ଶ୍ରଦ୍ଧାକର ସୂପକାର ପ୍ରମୁଖ ଯୋଗ ଦେଉଥାନ୍ତି ।

ବରଗଡ଼ ତାଲିମ କେନ୍ଦ୍ର ପରେ ଦୟାନନ୍ଦଙ୍କ ନେତୃତ୍ୱରେ ସେବା ଦଳ କର୍ମୀଗଣ ଝାରସୁଗୁଡ଼ାକୁ ପଦଯାତ୍ରା କରିଥିଲେ । ସେମାନଙ୍କ ସାଙ୍ଗରେ ବିହାରୀ ରାମ ଥାନ୍ତି । ବାଟରେ ଦୁଇଟା ଗାଁରେ ରହଣୀ ବେଳେ ସେଠାରେ ଜାତୀୟ ପତାକା ଉତ୍ତୋଳନ, ଗ୍ରାମ ସଫେଇ, ସଭା କାର୍ଯ୍ୟ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଗାଁର ସବୁଠୁ ଗରିବ କିମ୍ବା ହରିଜନମାନଙ୍କ ଘରେ ଜଣେ ଜଣେ ରହିଥିଲେ ।

ତାଲିମ ପରେ ବିଭିନ୍ନ ସ୍ୱେଚ୍ଛାସେବୀମାନଙ୍କୁ ବିଭିନ୍ନ ଅଞ୍ଚଳକୁ କାମ ପାଇଁ ପଠାଯାଉଥିଲା ।

ସେହିପରି ଛୋଟ ଛୋଟ ଦେଶ ପ୍ରେମୀ ବାଳକମାନଙ୍କୁ ନେଇ ବାନର ସେନା ମଧ୍ୟ ଜିଲ୍ଲାରେ ଗଠନ କରାଯାଇଥିଲା । ସେମାନେ ଦେଶସେବୀଙ୍କ ସହ ନେତାମାନଙ୍କ ସଂପର୍କ ସୂତ୍ର ଭାବେ କାର୍ଯ୍ୟ କରୁଥିଲେ । ସେମାନେ ପୋଲିସ୍‌ର ସନ୍ଦେହ ବଳୟ ଭିତରକୁ ଆସିପାରୁ ନଥିବାରୁ ଗୁପ୍ତ ସମ୍ବାଦ, ପ୍ରଚାର ପତ୍ରିକା, ଚିଠିପତ୍ର ସରବରାହ କ୍ଷେତ୍ରରେ ବାନର ସେନାର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

୧୯୩୮ରେ ଫକୀର ବେହେରା ବାନର ସେନାର ଅଧିନାୟକ ରହିଥିଲେ । ଅତାବିରା ତାଲବି ଗ୍ରାମର ତୀର୍ଥବାସୀ ପୁରୋହିତ, ସମ୍ବଲପୁର ଦଲାଇପଡ଼ାର ପ୍ରେମାନନ୍ଦ ମେହେର ଆଦି ବାନର ସେନାରେ କାର୍ଯ୍ୟ କରିଥିଲେ ।

ବରଗାଁର ବାନର ସେନା ସଦସ୍ୟ ବିନାୟକ ପାଢ଼ୀ ଲବଣ ସତ୍ୟାଗ୍ରହ ପରେ କଟକରେ କଂଗ୍ରେସ ପତାକା ଉତ୍ତୋଳନ କରିବା ଅପରାଧରେ କଟକ ଓ ପାଟନା କେଂପ ଜେଲ୍‌ରେ ୬ ମାସ କାରାଦଣ୍ଡ ଭୋଗିଥିଲେ ।

ସେ ଥିଲେ ଦୈନିକ 'ଆଶା' ଓ ଅନ୍ୟାନ୍ୟ ଜାତୀୟତାବାଦୀ ପତ୍ରପତ୍ରିକାର ସାମ୍ବାଦିକ । ଏପରିକି ତାଙ୍କୁ ଜିଲ୍ଲାର ପ୍ରଥମ ସାମ୍ବାଦିକ ଭାବେ ମଧ୍ୟ ଉଲ୍ଲେଖ କରାଯାଏ ।

ସେହିପରି ବ୍ରହ୍ମାନନ୍ଦ ପୂଜାରୀ ୧୬ ବର୍ଷ ବୟସରେ ବାନର ସେନାରେ ଯୋଗଦେଇ ଏକ ସ୍ୱେଚ୍ଛାସେବୀ ଦଳ ସହ ସମ୍ବଲପୁରରୁ ଚାଲି ଚାଲି ପୁରୀର କଂଗ୍ରେସ ଅଧିବେଶନକୁ ଯାଇଥିଲେ ।

ସମ୍ବଲପୁର, ବରଗଡ଼ର ଛାତ୍ର, ଓକିଲ, ଜନସାଧାରଣଙ୍କ ମଧ୍ୟରେ ପ୍ରଶିକ୍ଷଣ ଶିବିର ମାନ ବ୍ୟାପକ ପ୍ରଭାବ ପକାଇଥିଲା । ୧୯୩୨ ଓ ୧୯୩୪ରେ ସ୍ୱାଧୀନତା ଆନ୍ଦୋଳନରେ ଯେଉଁ ଲହର ଆସିଲା, ତାହାର ବ୍ୟାପକ ପ୍ରାଥମିକ ପ୍ରସ୍ତୁତି ଏହି ପ୍ରଶିକ୍ଷଣ ଶିବିରମାନ ସେ ଅଞ୍ଚଳରେ କରିସାରିଥିଲା । ଜନସାଧାରଣ ଓ ଛାତ୍ର ସମାଜର ସହଯୋଗରେ ଶିବିରମାନ ସଂପନ୍ନ ହୋଇଥିଲା ।

ଛୋଟ ଛୋଟ ପିଲାଙ୍କ ବାନରସେନା ଗଠନ ଲୋକଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଘରେ ଘରେ କଂଗ୍ରେସର ପ୍ରଚାରପତ୍ର ପହଞ୍ଚାଇବା ବାନରସେନାର ମୁଖ୍ୟ କାର୍ଯ୍ୟ ଥିଲା ।

❑❑❑

# ପ୍ରେସ୍, ପତ୍ରପତ୍ରିକା

କଂଗ୍ରେସ କାର୍ଯ୍ୟକ୍ରମ, କୃଷକ ସଙ୍ଗଠନ, ନିଶା ନିବାରଣ, ଖଦୀ ପ୍ରତିଷ୍ଠାନ, ସ୍ୱାଧୀନତା ଆନ୍ଦୋଳନର ଜନସାଧାରଣରେ ବ୍ୟାପକ ପ୍ରଚାର, ପ୍ରସାରର ଲକ୍ଷ୍ୟ ନେଇ ଲକ୍ଷ୍ମୀନାରାୟଣ ମିଶ୍ର, ଚିନ୍ତାମଣି ପୂଜାରୀ ଓ ଭାଗୀରଥି ପଟ୍ଟନାୟକ ୧୯୨୭ରେ ''ସ୍ୱାଧୀନ ଭାରତ'' ନାମକ ଏକ ଗୁପ୍ତ ପତ୍ରିକା ପ୍ରକାଶନର ଯୋଜନା କରିଥିଲେ । ଏକ ସାଇକ୍ଲୋଷ୍ଟାଇଲ୍ ମେସିନ୍‌ର ବ୍ୟବସ୍ଥା କଥା ମଧ ଚିନ୍ତା କରାଗଲା । ଏହି ଯୋଜନା ଅକ୍ଲାନ୍ତ ଚେଷ୍ଟା ପରେ ୧୯୨୯ରେ ଫଳବତୀ ହେଲା ।

ଟଙ୍କା ଯୋଗାଡ଼ କରିବାକୁ ଯାଇ ଚିନ୍ତାମଣି ନିଜର ଖଣ୍ଡେ ଜମି ବିକ୍ରି କରିଦେଲେ । ଭାଗୀରଥି ଓ ଚିନ୍ତାମଣି ଚାନ୍ଦାଭେଦାରୁ କିଛି ଅର୍ଥ ସଂଗ୍ରହ କଲେ । ତତ୍‌କାଳୀନ ହିମଗିର ଜମିଦାରଙ୍କ ଠାରୁ ୩୭୫ ଟଙ୍କା ଋଣ ସୂତ୍ରରେ ଅଣାଗଲା ।

ଅନେକ କଷ୍ଟରେ ପ୍ରେସ୍ କିଣା ଗଲା । ହେଲେ ଏହି ପ୍ରେସ୍ ସମ୍ବଲପୁରରେ ବସାଯିବ କି ଝାରସୁଗୁଡ଼ାରେ ବସିବ ସେ ନେଇ ମତଭେଦ ଉପୁଜିଲା । ଏହି ମତଭେଦର ସମାଧାନ ନହେଉଣୁ ତାହା ଇଂରେଜ ସରକାରଙ୍କ ଦ୍ୱାରା ଜବତ ହେଲା । ସାଇକ୍ଲୋଷ୍ଟାଇଲ୍ ମେସିନ୍ ମେସିନ୍‌ର କିଛିଦିନ କାମ ଚାଲିଲା । ହେଲେ ତାହା ମଧ ଜବତ ହୋଇଗଲା ।

ଦୁର୍ଗାପ୍ରସାଦ ନାୟକ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଜାତୀୟ ସେବା ସଂସ୍ଥାର ସଂଯୋଜକ ଥିଲା ବେଳେ ଛାତ୍ରଙ୍କ ସହାୟତାରେ ମାଟି ତଳୁ ମୁଦ୍ରଣ ଯନ୍ତଟା ଉଦ୍ଧାର କରିଥିଲେ । ତାହା ବିଶ୍ୱବିଦ୍ୟାଳୟ ମ୍ୟୁଜିୟମ୍‌ରେ ସଂରକ୍ଷିତ ରହିଛି ।

ଦୁର୍ଗାପ୍ରସାଦ ଗୁରୁ ଥିଲେ ସମ୍ବଲପୁରର ପ୍ରଥମ ସାମ୍ବାଦିକ ।

□□□

# ଲବଣ-ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନ : ୧୯୩୦

ଓଡ଼ିଶାର ଲବଣ ସତ୍ୟାଗ୍ରହ ଦେଶର ଅନ୍ୟାନ୍ୟ ସତ୍ୟାଗ୍ରହକୁ ବଳେଇ ପଡ଼ିଥିଲା । ଇଞ୍ଚୁଡ଼ିର ସତ୍ୟାଗ୍ରହ, ଗାନ୍ଧୀଙ୍କ ଦାଣ୍ଡି ସତ୍ୟାଗ୍ରହ ସହ ସମକକ୍ଷ ଥିଲା ଓ ଏଥିରେ ସମ୍ବଲପୁର ଜିଲ୍ଲାର ସତ୍ୟାଗ୍ରହୀଗଣ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

ସେତେବେଳେ ଇଂରେଜ ସରକାର ଲୋକଙ୍କ ହାତରୁ ଲୁଣ ମାରିବାର ଅଧିକାର ଛଡାଇ ନେଇଥିଲେ । ଲୁଣ ଉପରେ ଯେ କେବଳ କର ବସା ଯାଇଥିଲା ତା' ନୁହଁ, ତା' ସହିତ ବିଦେଶୀ ଲିଭରପୁଲ୍, ଇଂଲଣ୍ଡରୁ ଲୁଣ ଅଣାଯାଇ ଇଂରେଜ ସରକାର ଓଡ଼ିଶାରେ ବିକୁଥିଲେ । ଏହି ଲୁଣ ଥିଲା ଦେଶୀ ଲୁଣ ଅପେକ୍ଷା ଶସ୍ତା ।

ସରକାର ଓଡ଼ିଶାର ଲୁଣ ବାହାରକୁ ରପ୍ତାନି କରି ଅତ୍ୟଧିକ ଲାଭ ପାଇବାକୁ ଲାଗିଲେ । ସେମାନେ ନିଜ ଲୁଣ କମ୍ ମୂଲ୍ୟରେ ବିକ୍ରୟ କରିବା ଦ୍ୱାରା ଯେଉଁ କ୍ଷତି ହେଉଥିଲା । ଓଡ଼ିଶା ଲୁଣ ତଦପେକ୍ଷା ବେଶୀ ଲାଭ ଦେବା ଫଳରେ ସେମାନେ ଓଡ଼ିଶା ଲୁଣ ଉପରେ ଏକଚାଟିଆ ଅଧିକାର ସାବ୍ୟସ୍ତ କରି ଲୋକଙ୍କ ଠାରୁ ଲୁଣମରା ଅଧିକାର ଛଡ଼ାଇ ନେଉଥିଲେ । ଏହାଫଳରେ ଓଡ଼ିଶାରେ ଘୋର ପ୍ରତିକ୍ରିୟା ଦେଖାଯାଇଥିଲା ।

ଏହା ଫଳରେ ପ୍ରାୟ ୪୦ ହଜାର ଓଡ଼ିଆ ଲବଣ ଶ୍ରମିକ ଜୀବିକା ହରାଇଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ ନ'ଅଙ୍କ ଦୁର୍ଭିକ୍ଷରେ ଅନାହାରରେ ପ୍ରାଣ ହରାଇଥିଲା ବେଳେ ଅନ୍ୟମାନେ ପ୍ରାଣ ବିକଳରେ ଆସାମ, ବର୍ମା ଆଦିକୁ ପଳାୟନ କରିଥିଲେ । ନ'ଅଙ୍କରେ ଏଭଳି ଲବଣ ଶ୍ରମିକଙ୍କ ମୃତ୍ୟୁ ହାର ଥିଲା ଏକ ତୃତୀୟାଂଶ ।

ଏକ ସରକାରୀ ହିସାବରୁ ଜଣାଯାଏ ଯେ, ସରକାର ଲୁଣ ଶିଳ୍ପରୁ ୧୮୦୪ରେ ୪୩,୪୩୫ ଟଙ୍କା ଲାଭ ପାଇଥିଲା ବେଳେ ୧୮୦୫ରେ ଏହି ଲାଭ ୧୦୪,୮୯୪ ଟଙ୍କାକୁ ଗୋଟାଏ ବର୍ଷରେ ବୃଦ୍ଧି ପାଇଥିଲା । ଏହ ହାର କ୍ରମାଗତ ଭାବରେ ବୃଦ୍ଧି ପାଇ ଚାଲିଥିଲା ବୋଲି ବାଲେଶ୍ୱର କଲେକ୍ଟରଙ୍କ ଏକ ରିପୋର୍ଟରୁ ଜଣାଯାଏ ।

ଉଇଲିୟମ୍ ଟ୍ରୋୱର ବଫ୍ ୧୮୧୭ର ଖୋର୍ଦ୍ଧା ପାଇକ ବିଦ୍ରୋହର ମୂଳକାରଣ ଲୁଣ ଉପରେ ସରକାରଙ୍କ ଏକଚାଟିଆ ନିୟନ୍ତ୍ରଣ ଓ ରପ୍ତାନି ନୀତି ବୋଲି ସରକାରଙ୍କୁ ସେତେବେଳେ ସଚେତନ କରାଇ ଦେଇଥିଲେ ।

ଲୁଣ ଅଭାବର ଉପକୂଳ ଅଞ୍ଚଳରେ ଶୁଖୁଆ ଶିଳ୍ପର ମଧ୍ୟ ବିପର୍ଯ୍ୟୟ ଘଟିଥିଲା ।

ଲର୍ଡ ଡେଲ୍‌ହାଉସିଙ୍କ ପରେ ନିୟନ୍ତ୍ରଣ ସାମାନ୍ୟ କୋହଳ କରାଗଲା ବେଳକୁ ଓଡ଼ିଶା ଲୁଣ ବିଦେଶୀ ଲୁଣ ସହ ବଜାର ପ୍ରତିଯୋଗିତାରେ ତିଷ୍ଠି ପାରିଲା ନାହିଁ । ଏଭଳି ଅବସ୍ଥାରେ ଗାନ୍ଧୀଙ୍କ ଲବଣ-ସତ୍ୟାଗ୍ରହ ଭାରତ ସମେତ ଓଡ଼ିଶା ବାସୀଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

ଦାଣ୍ଡୀ ଲବଣ ସତ୍ୟାଗ୍ରହ ଘୋଷଣା ପରେ ପରେ ସମ୍ବଲପୁରରେ ମଧ୍ୟ ଲବଣ ସତ୍ୟାଗ୍ରହର ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୋଇଥିଲା । ଭାଗୀରଥି ପଟ୍ଟନାୟକ ଓ ଦୟାନନ୍ଦ ଶତପଥୀ ଏଥିରେ ମୁଖ୍ୟ ଭୂମିକା ନେଲେ । ସେମାନେ ଗାଁ-ଗାଁ ବୁଲି କର୍ମୀ ସଙ୍ଗଠନ କରିବାରେ ଲାଗିଗଲେ ।

ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଲକ୍ଷ୍ମୀନାରାୟଣ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ପ୍ରେରଣରେ ଜିଲ୍ଲା ସ୍କୁଲ୍‌ର ଛାତ୍ରମାନେ ଆନ୍ଦୋଳନ ସଂଗଠନ କରିବାର ନେତୃତ୍ୱ ନେଲେ । ଲବଣ ସତ୍ୟାଗ୍ରହ ମାର୍ଚ୍ଚ ୧୨ ତାରିଖ ଦିନ ବିଦ୍ୟାଳୟ ବର୍ଜନ କରିବାର ଦୃଢ଼ ଶପଥ ନେଲେ । ବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଦୃଢ଼ ବିରୋଧ ସତ୍ତ୍ୱେ ସେଦିନ ସ୍କୁଲ୍ ଉପରେ ପତାକା ଉତ୍ତୋଳନ ହୋଇନଥିଲା କି ଛାତ୍ରମାନେ ଶ୍ରେଣୀରେ ଯୋଗଦେଇ ନଥିଲେ । ଛାତ୍ରମାନେ ମନ୍ଦିରମାନଙ୍କୁ ଯାଇ ଗାନ୍ଧୀଙ୍କ ସଫଳତା ପାଇଁ ସମୂହ ପ୍ରାର୍ଥନା କରିଥିଲେ ।

ମାର୍ଚ୍ଚ ୧୬ ତାରିଖ ଦିନ ବାଲିବନ୍ଧା ଘାଟ ଠାରେ ଏକ ବିରାଟ ଜନସଭା ହୋଇଥିଲା । ଲକ୍ଷ୍ମୀନାରାୟଣଙ୍କ ଉପରେ ୧୪୪ ଧାରା ଜାରି ହେବାରୁ ସେ ପାଖକୁ ଲାଗିଥିବା ମ୍ୟୁନିସିପାଲିଟି ପଡ଼ିଆକୁ ଯାଇ ସଭା କଲେ । ସେ ସରକାରୀ ମନୋବୃତ୍ତିର ନିନ୍ଦା କରି ଲୋକଙ୍କୁ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେବାକୁ ଆହ୍ୱାନ ଦେଲେ ।

ମାର୍ଚ୍ଚ ୧୭ରେ ସେନ୍‌ପାର୍କ ଠାରେ ଆଉ ଏକ ସଭା ହେଲା । ଲକ୍ଷ୍ମୀନାରାୟଣ 'ହରତାଳ' ପାଳନ ପାଇଁ ଆହ୍ୱାନ ଦେଲେ । ତାଙ୍କୁ ଗିରଫ କରାଗଲା । ଦୟାନନ୍ଦ ଓ ଭାଗୀରଥିଙ୍କୁ କାରଣ ଦର୍ଶାଅ ନୋଟିସ୍ ଦିଆଗଲା । ପାଞ୍ଚ ମାସ ପାଇଁ ସବୁ ରକମ ସଭା ସମିତି ଉପରେ ନିଷେଧାଜ୍ଞା ଜାରି ହେଲା ।

ମାର୍ଚ୍ଚ ୬, ୧୯୩୦ ଦିନ ଭାଗୀରଥି, ଚତୁର୍ଭୁଜ ଓ ପ୍ରେମଶଙ୍କରଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ବରଗଡ଼ରେ ହୋଇଥିବା ବିରାଟ ସଭାକୁ ଲକ୍ଷ୍ମୀନାରାୟଣ ଓ ଭାଗୀରଥି ପଟ୍ଟନାୟକ ସମ୍ବୋଧିତ କରିଥିଲେ । ଏ ସଭା ପାଇଁ ଲାଭନ୍‌ସରାଇ ସର୍ବେଶ୍ୱର ଦୋରା ଓ ପ୍ରଫୁଲ୍ଲ ପଟ୍ଟନାୟକଙ୍କ ଅବଦାନ ଥିଲା ଉଲ୍ଲେଖନୀୟ ।

ଲକ୍ଷ୍ମୀନାରାୟଣ, ଭାଗୀରଥି ଓ ଦୟାନନ୍ଦଙ୍କ ପ୍ରଚେଷ୍ଟାରେ ସମ୍ବଲପୁରରେ ଏକ ବିରାଟ ଶୋଭାଯାତ୍ରା ବାହାରିଥିଲା । ପୋଲିସ୍‌ର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ଏହି ସଭାରେ ହଜାର ହଜାର ଲୋକ ରୁଣ୍ଡ ହୋଇ ସରକାରୀ ଲୁଣ ନୀତିର ପ୍ରତିବାଦ କରିଥିଲେ ।

ପୋଲିସ୍ ପ୍ରତିରୋଧର ବିରୋଧରେ ମାର୍ଚ୍ଚ ୧୭ ଦିନ ପ୍ରତିବାଦ ସଭା ଓ ତା'ପର ଦିନ ସମ୍ବଲପୁରରେ ସଂପୂର୍ଣ୍ଣ ହରତାଳ ପାଳନ କରାଯାଇଥିଲା । ୧୯ ତାରିଖ ଦିନ ଭାଗୀରଥି, ଦୟାନନ୍ଦ, ଚିନ୍ତାମଣି, ସୁଧାଂଶୁଶେଖର, ନୃସିଂହ ଗୁରୁ, ଦୁର୍ଗା ଗୁରୁ ଆଦି ସମସ୍ତଙ୍କ ବିରୋଧରେ ୧୪୪ ଦଫାରେ ମୋକଦ୍ଦମା ଦାଏର କରାଯାଇ କୋର୍ଟକୁ ଚାଲାଣ କରାଗଲା ।

୨୧ ତାରିଖ ଦିନ ପୁଣିଥରେ ବରଗଡ଼ରେ ସଭା, ଶୋଭାଯାତ୍ରା ଓ ହରତାଳ ପାଳନ କରାଗଲା ।

ତା'ପରେ ମାର୍ଚ୍ଚ ୩୧, ୧୯୩୦ରେ ବରଗଡ଼ର ଜୀରାନଦୀ ଉପରେ ୫ ହଜାର ଲୋକଙ୍କର ଏକ ବିରାଟ ସଭା ଆୟୋଜିତ ହେଲା । ସଭାରେ ଭାଗୀରଥି, ଲକ୍ଷ୍ମୀନାରାୟଣ, ମହାବୀର, ଘନଶ୍ୟାମ, ଚତୁର୍ଭୁଜ, ସର୍ବେଶ୍ୱର, ପ୍ରେମଶଙ୍କର ଓ ପ୍ରଫୁଲ୍ଲ ଉଦ୍‌ବୋଧନ ଦେଲେ । ଶତାଧିକ ଲୋକ ଲବଣ ସତ୍ୟାଗ୍ରହରେ ଯୋଗଦେବାକୁ ଅଣ୍ଟା ଭିଡ଼ିଲେ । ଏ ଘଟଣା ଫଳରେ ସରକାର ଭୟଭୀତ ହୋଇ ଜନସମାବେଶକୁ ରୋକିବା ଉଦ୍ଦେଶ୍ୟରେ ସମଗ୍ର ଜିଲ୍ଲାରେ ୧୪୪ ଧାରା ଜାରି କଲେ । ତଥାପି ଏହାକୁ ଉପେକ୍ଷା କରି ଗାଁ ଗାଁରେ ସଭା, ସମିତି ଚାଲିଲା । ପ୍ରସ୍ତୁତି ଲାଗି ରହିଲା । ଚାନ୍ଦା ଆଦାୟ ହେଲା । ହରତାଳ ହେଲା ।

ଏପ୍ରିଲ୍ ୧୨, ୧୯୩୦ ଦିନ ବରଗଡ଼ର ପ୍ରଥମ ଲବଣ ସତ୍ୟାଗ୍ରହୀ ଦଳ ବାହାରିଲେ । ଏଥିରେ ଥିଲେ ବୀରବର ଦାସ, ରାମକୃଷ୍ଣ ଦାଶ, ସୀତାରାମ ଦାସିଆର, ନୀଳକଣ୍ଠ ମେହେର ।

ସମ୍ବଲପୁରରେ ଘନଶ୍ୟାମ ପାଣିଗ୍ରାହୀଙ୍କ ଅଧ୍ୟକ୍ଷତାରେ ଏକ ସତ୍ୟାଗ୍ରହ କମିଟି ଗଠନ କରାଯାଇଥିଲା । ଦୟାନନ୍ଦ ଶତପଥୀ ଓ ହରିହର ବେହେରା କମିଟିର ଯୁଗ୍ମ-ସମ୍ପାଦକ ଥିଲେ ।

ଏପ୍ରିଲ୍ ୧୩, ୧୯୩୦ ଦିନ ସମ୍ବଲପୁରରୁ ଚାରି ଦଳ ସତ୍ୟାଗ୍ରହୀ ଲୁଣ ମାରିବା ପାଇଁ ବାଲେଶ୍ୱର ଠାରୁ ପ୍ରାୟ ୧୨ ମାଇଲ ଦୂର ଇଂଚୁଡ଼ିର ସମୁଦ୍ର କୂଳକୁ ଯାତ୍ରା କଲେ ।

ପ୍ରଥମ ଦଳରେ ଥିଲେ : ସୁଧାଂଶୁ ଶେଖର ଗୁପ୍ତ
ଦୁର୍ଗାପ୍ରସାଦ ଗୁରୁ
ରାମ ପ୍ରସାଦ ସାହୁ

| | | |
|---|---|---|
| ଦ୍ୱିତୀୟ ଦଳ | : | ଦୟାନନ୍ଦ ଶତପଥୀ |
| | | ପ୍ରେମଶଙ୍କର ପଟ୍ଟନାୟକ |
| | | ଭାଗୀରଥି ପଟ୍ଟନାୟକ |
| ତୃତୀୟ ଦଳ | : | ମହାବୀର ସିଂହ |
| | | ଶିବଦେଓ ମହାରାଜ |
| | | ବିନାୟକ ପାଢ଼ୀ |
| ଚତୁର୍ଥ ଦଳରେ ରହିଲେ | : | ଘନଶ୍ୟାମ ପାଣିଗ୍ରାହୀ |
| | | ଲକ୍ଷ୍ମଣ ଗିରି |
| | | ଗୌରାଙ୍ଗ ମେହେର |

ଦୟାନନ୍ଦ ଶତପଥୀ, ପ୍ରେମଶଙ୍କର ପଟ୍ଟନାୟକ, ଚତୁର୍ଭୁଜ ମିଶ୍ର ଓ ସତୀଡିପାର ଜୟକୃଷ୍ଣ ସାହୁ ବାଲେଶ୍ୱର ଯାଇ ଏପ୍ରିଲ୍ ୧୪ ତାରିଖ ଦିନ ଲବଣ ସତ୍ୟାଗ୍ରହରେ ଯୋଗଦେଲେ । ଜିଲ୍ଲାର ଭିନ୍ନ ଅଞ୍ଚଳରୁ ଶତାଧିକ ସତ୍ୟାଗ୍ରହୀ ଲୁଣ ମାରିବାକୁ ଯାଇଥିଲେ ମଧ୍ୟ ତାହାର ସଂପୂର୍ଣ୍ଣ ବିବରଣୀ ଏବେ ମିଳିବି ପାରୁ ନାହିଁ । ଏହି ଚାରୋଟି ଯାକ ଦଳ ଉପରେ ପୋଲିସ୍ ପକ୍ଷରୁ ବ୍ୟାପକ ଅତ୍ୟାଚାର କରାଯାଇଥିଲା ।

ପ୍ରଥମ ଦଳଟି ଏପ୍ରିଲ୍ ୧୯୩୦ରେ ସମ୍ବଲପୁରରୁ ବାହାରି କଟକରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଯାଉଥିବା ଦଳ ସହ ଯୋଗଦାନ କରିଥିଲେ । ଓଡ଼ିଶାରେ ଏହି ସତ୍ୟାଗ୍ରହର ନେତୃତ୍ୱ ନେଇଥାନ୍ତି ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ରମା ଦେବୀ ଓ ମାଳତୀ ଚୌଧୁରୀ ।

ଦୟାନନ୍ଦ ଶତପଥୀ, ସୁଧାଂଶୁ ଶେଖର ଗୁପ୍ତ, ମହାବୀର ସିଂହ, ଲକ୍ଷ୍ମଣ ଗିରି, ବିନାୟକ ପାଢ଼ୀ, ରାମପ୍ରସାଦ ସିଂହ ପ୍ରମୁଖ ଗିରଫ ହୋଇ କାରାଦଣ୍ଡ ଭୋଗ କରିଥିଲେ । ଫଟା ପାଲିର ଜଳନ୍ଧର ସାହୁ ମଧ୍ୟ ଗିରଫ ହୋଇଥିଲେ ।

ଲବଣ ସତ୍ୟାଗ୍ରହ ଆନ୍ଦୋଳନ ଜିଲ୍ଲାର ଗାଁ ଗଣ୍ଡାମାନଙ୍କରେ ମଧ୍ୟ ବ୍ୟାପୀ ଯାଇଥିଲା । ସମ୍ବଲପୁର, ବରଗଡ଼, ଝାରସୁଗୁଡ଼ା, ବରପାଲି, ରେମଣ୍ଡା, ପାଣିମୋରା, ସମଲେଇପଦର, ଭେଉଁରିଆ ଆଦି ସ୍ଥାନରେ ଏହା ବ୍ୟାପକ ରୂପ ଧାରଣ କରିଥିଲା । ସମ୍ବଲପୁରରୁ ୧୦ ଜଣ ମହିଳା ମଧ୍ୟ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିବା ଜଣାଯାଏ ।

ଓଡ଼ିଶାର ଲବଣ ସତ୍ୟାଗ୍ରହରେ ଇଂଚୁଡ଼ି ଠାରେ ଏପ୍ରିଲ୍ ୧୪ ତାରିଖରୁ ଲୁଣ ମରା ଆରମ୍ଭ ହୋଇଥିଲା । ଗୁଜରାଟରୁ ମଧ୍ୟ ଦଳେ ସତ୍ୟାଗ୍ରହୀ ଆସି ଏଥିରେ ଯୋଗ ଦେଇଥିଲେ ।

ଏପ୍ରିଲ୍ ୨୦ରେ ରମା ଦେବୀ ଓ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଶହ ଶହ ମହିଳା ଲୁଣ ମାରିଥିଲେ । ବାଲେଶ୍ୱରର ସାରଥା, କଟକର କୁଜଙ୍ଗ, ପୁରୀର କୁହୁଡ଼ି, ସିଂଘେଶ୍ୱରୀ, ଲାତ୍ରା, ଗଞ୍ଜାମର ହୁମାରେ ମଧ୍ୟ ଲୁଣ ମରା ଯାଇଥିଲା ।

ଏହା ପରେ ପରେ ଆଇନ ଅମାନ୍ୟ ଆନ୍ଦୋଳନ, ବିଦେଶୀ ବସ୍ତ୍ର ବର୍ଜନ, ମଦଭାଟି ଆଗରେ ପିକେଟିଂ, ଖଦୀର ପ୍ରସାର ଆଦି ତୀବ୍ରତର ହେଲା । ସ୍କୁଲ୍, କଲେଜର ଛାତ୍ରମାନେ ଏଥିରେ ବ୍ୟାପକ ପରିମାଣରେ ଯୋଗଦେଲେ ।

ଲବଣ ସତ୍ୟାଗ୍ରହ ଏ ଦେଶର ସ୍ୱାଧୀନତା ସଂଗ୍ରାମର ଏକ ନୈତିକ ବିଜୟ । ଏହାର ସଫଳତା ସମଗ୍ର ଦେଶରେ ଅଦ୍‌ଭୁତ ଉତ୍ସାହ ଓ ଆତ୍ମବିଶ୍ୱାସ ସଂଚାର କରିଥିଲା ।

ଏହି ସମୟରେ ଲକ୍ଷ୍ମୀନାରାୟଣ ଗିରଫ ହୋଇ ପାଟନା, ହଜାରୀବାଗ ଓ ଭାଗଲପୁର ଜେଲ୍‌ରେ ଥିଲେ । ଫଟାପାଲିର ଜଳନ୍ଧର ଗୁପ୍ତା (ସାହୁ) ଲବଣ ସତ୍ୟାଗ୍ରହରେ ଯୋଗଦେଇ ପୁରୀ ଜେଲ୍‌ରେ ୬ ମାସ ରହିଥିଲେ । ତାଙ୍କ ଘର ଭାଙ୍ଗି ଜିନିଷପତ୍ର ନିଲାମ କରି ଦିଆଯାଇଥିଲା ।

❑❑❑

# ପୁରୀ କଂଗ୍ରେସ ପଥେ

ପ୍ରତ୍ୟେକ ଜାତୀୟ ପ୍ରତିବାଦରେ ସମ୍ବଲପୁର ଅଗ୍ରଣି ଭୂମିକା ରହିଛି । ୧୯୨୮ରେ ସାଇମନ୍ କମିଶନ ବିରୋଧରେ ହୋଇଥିବା ଆନ୍ଦୋଳନରେ ପଞ୍ଜାବକେଶରୀ ଲାଲା ଲଜପତ ରାୟଙ୍କ ଅକାଳ ନିଧନ ସମଗ୍ର ଦେଶକୁ ଉତ୍କ୍ଷିପ୍ତ କରିଦେଇଥିଲା । ଏହାର ବିରୋଧରେ ଦେଶ ବ୍ୟାପୀ ବିରୋଧ ଆନ୍ଦୋଳନର ଢୁଆର ଉଠିଥିଲା ।

ନଭେମ୍ବର ୨୧ରେ ବରପାଲି ଠାରେ ଏକ ବିରାଟ ଶୋକସଭା ହୋଇଥିଲା । ଭାଗୀରଥି ଏହାର ଆୟୋଜକ ଥିଲେ । ଏହି ଶୋକ ଓ ବିରୋଧ ସଭାର ଆୟୋଜନ ଲାଗି ଚିନ୍ତାମଣି ପୂଜାରୀ ଓ ମହାବୀର ସିଂହଙ୍କୁ ମହାନଦୀର ଉତ୍ତରତୀରର ଓ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଓ ଭାଗୀରଥି ପଟ୍ଟନାୟକଙ୍କୁ ଦକ୍ଷିଣ ତୀରର ଦାୟିତ୍ୱ ଦିଆଯାଇଥିଲା । ସମ୍ବଲପୁର ସହରର ଦାୟିତ୍ୱରେ ଥିଲେ ନୃସିଂହ ଗୁରୁ ଓ ସୁଧାଂଶୁ ଶେଖର ଗୁପ୍ତ । ବରଗଡ଼, ରେମଣ୍ଡା ଆଦି ବିଭିନ୍ନ ସ୍ଥାନରେ ହୋଇଥିବା ପ୍ରତିବାଦ ସଭା ମଧ୍ୟ ବିଶେଷ ଭାବରେ ସଫଳ ହୋଇଥିଲା । ସମ୍ବଲପୁରରେ ବି ଦେଶର ପ୍ରାଣତନ୍ତ୍ରୀର ସ୍ପନ୍ଦନ ଅନୁଭୂତ ହୋଇଥିଲା ଗଭୀର ଭାବରେ ।

ଏ ଭିତରେ ଆସିଲା ପୁରୀ କଂଗ୍ରେସର ଡାକରା । ଚାଲିଲା ବ୍ୟାପକ ପ୍ରସ୍ତୁତି ଅଧିବେଶନକୁ ସଫଳ କରିବା ପାଇଁ । ସେପ୍ଟେମ୍ବର ୧୮ ତାରିଖ ଦିନ ପୁରୀ କଂଗ୍ରେସ ପାଇଁ ଜିଲ୍ଲା କଂଗ୍ରେସ କମିଟିର ପ୍ରସ୍ତୁତି ବୈଠକ ବସିଲା । କଂଗ୍ରେସ ସେବା ଦଳର କର୍ମୀମାନେ ଏଥିରେ ବିଶେଷ ସହଯୋଗ କଲେ । ଗାଁ-ଗାଁରେ ଚାନ୍ଦା ସଂଗ୍ରହ ହେଲା । ମହିଳାମାନଙ୍କୁ ଚାନ୍ଦା ସଂଗ୍ରହରେ ସକ୍ରିୟ କରିବା ପାଇଁ ରମା ଦେବୀ ସମ୍ବଲପୁର ଆସିଲେ । ସେହିପରି ପୁରୀରୁ ପଣ୍ଡିତ ରଘୁନାଥ ମିଶ୍ର ବରଗଡ଼ ଆସି ପହଞ୍ଚିଲେ । ସମ୍ବଲପୁରରେ ଲକ୍ଷ୍ମୀନାରାୟଣ, ଭାଗୀରଥି, ପ୍ରହଲ୍ଲାଦ ରାୟ ଲାଠ, ଚିନ୍ତାମଣି, ନୃସିଂହ ଗୁରୁ, ଘନଶ୍ୟାମ ପାଣିଗ୍ରାହୀ ପ୍ରମୁଖ ଚାନ୍ଦା ସଂଗ୍ରହରେ ଜୋରସୋର୍‌ରେ ଲାଗିଗଲେ ।

ଜମ୍ବୁବତୀ ଦେବୀ ଓ କ୍ରୀଷ୍ଣା ଦେବୀଙ୍କ ଯୋଗୁଁ ଜିଲ୍ଲାର ନାରୀମାନଙ୍କ ମଧ୍ୟରେ ଏକ ନୂଆ ଚେତନା ପ୍ରବାହିତ ହୋଇସାରିଥାଏ । ସେମାନେ ଘର କୋଣ ଛାଡ଼ି ଶହ ଶହ ସଂଖ୍ୟାରେ ସଭା ସମିତିଗୁଡ଼ିକରେ ଯୋଗଦେବାକୁ ଲାଗିଥିଲେ ।

୧୯୨୯ ଲାହୋର କଂଗ୍ରେସ ଅଧିବେଶନରେ ପୂର୍ଣ୍ଣ ସ୍ୱରାଜ୍ୟ ଲକ୍ଷ୍ୟ ବୋଲି ଘୋଷଣା କରାଗଲା । ବ୍ରିଟିଶ୍ ସରକାରଙ୍କ ବିରୋଧରେ ଆନ୍ଦୋଳନ ଚଳାଇବାର ଦାୟିତ୍ୱ

ଗାନ୍ଧିଜୀଙ୍କ ଉପରେ ନ୍ୟସ୍ତ କରାଗଲା । ଏଥିପାଇଁ ସେ ଓଡ଼ିଶାରୁ ୨୭ ଜଣ ସତ୍ୟାଗ୍ରହୀଙ୍କୁ ବାଛିଲେ । ଏହାର ପ୍ରଥମ କାର୍ଯ୍ୟକ୍ରମ ଭାବରେ ୧୯୩୦ ଜାନୁଆରୀ ୨୬ ତାରିଖ ଦିନ 'ପୂର୍ଣ୍ଣ ସ୍ୱରାଜ୍ୟ' ପାଇଁ ଶପଥ ପାଠ କରାଇବାର କାର୍ଯ୍ୟକ୍ରମ ଗ୍ରହଣ କରାଗଲା ।

ଏ ଘୋଷଣା ପରେ ପରେ ସରକାର ଦେଶର ସମସ୍ତ ବଡ଼ ବଡ଼ ନେତାମାନଙ୍କୁ ଗିରଫ କରିନେଲେ । ଓଡ଼ିଶାର ନେତାମାନେ ମଧ ବାଦ୍ ପଡ଼ିଲେ ନାହିଁ । ବରଗଡ଼ଠାରେ ସାଇମନ କମିଶନ ରିପୋର୍ଟ- ୧୯୩୦ର ବିରୋଧ କରି ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଭିକାରୀ ସାହୁ ଓ ରାଜେନ୍ଦ୍ର ପଣ୍ଡା ଗିରଫ ହୋଇ ଥିଲେ ।

ପୂର୍ବରୁ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଗିରଫ ହୋଇ ଯାଇଥିବାରୁ ଜାନୁୟାରୀ ୨୬ ତାରିଖ ଦିନ ଦୟାନନ୍ଦ ଓ ତାଙ୍କ ସାଥୀମାନେ ବାଳିବନ୍ଧାସ୍ଥିତ ଗମ୍ବୁଜ ଉପରେ ପତାକା ଉତ୍ତୋଳନ କରିବାକୁ ସ୍ଥିର କରିଥାନ୍ତି । ଘୋଷିତ ସମୟର କେଇ ଘଣ୍ଟା ଆଗରୁ ଲୋକଙ୍କୁ ଭୟଭୀତ କରିବା ପାଇଁ ସହରରେ ପୋଲିସ୍ ପକ୍ଷରୁ ମାର୍ଚ୍ଚପାଷ୍ଟ କରାଗଲା । ସଭାରେ ଯୋଗଦେବାକୁ ଆସୁଥିବା ଲୋକମାନଙ୍କୁ ଅଧାବାଟରୁ ଗିରଫ କରି ନିଆଗଲା ।

ତଥାପି ପୋଲିସ୍ ଗିରଫଦାରୀକୁ ଭୟ ନକରି ସମ୍ବଲପୁରର ଅଗଣିତ ନରନାରୀ ଏହି ସଭାରେ ଯୋଗଦାନ କରିଥିଲେ । ଏକ ବିରାଟ ସାଧାରଣ ସଭା ହୋଇଥିଲା । ମାଜିଷ୍ଟ୍ରେଟ୍ ଭରତଚନ୍ଦ୍ର ନାଏକ ଉପସ୍ଥିତ ଥିଲେ । ପଣ୍ଡିତ ନୃସିଂହ ଗୁରୁ ଶଂଖ ଧ୍ୱନି କଲା ପରେ ଭାଗୀରଥି ପୂର୍ଣ୍ଣ ସ୍ୱାଧୀନତାର ଘୋଷଣାପତ୍ର ପାଠ କରିଥିଲେ ବୋଲି ଭାଗୀରଥିଙ୍କ ଜୀବନୀରୁ ଜଣାଗଲା ବେଳେ ଦୟାନନ୍ଦଙ୍କ ମୃତ୍ୟୁ ପରେ ପ୍ରକାଶ ପାଇଥିବା ସ୍ମରଣିକାରୁ ଜଣାଯାଏ ଯେ- ନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଲା ବେଳକୁ ଦୟାନନ୍ଦ ଏକାକୀ ଠିଆ ହୋଇଥିଲେ ଗମ୍ବୁଜ ଉପରେ । ଚାରିଆଡ଼େ ସଶସ୍ତ୍ର ପୋଲିସ୍ ଫଉଜର ଛାଉଣି । ସାଧାରଣ ଲୋକଙ୍କ ଚିହ୍ନବର୍ଣ୍ଣ ନାହିଁ । ଲୋକେ ଦୂରରୁ ଠିଆହୋଇ ଅନାଇ ରହିଥାନ୍ତି କାର୍ଯ୍ୟକ୍ରମକୁ । ନିର୍ଭିକ ଦେଶପ୍ରେମୀ ଦୟାନନ୍ଦ ଗମ୍ବୁଜ ଉପରେ ତ୍ରିରଙ୍ଗ ପତାକା ତ ଉତ୍ତୋଳନ କଲେ ଓ ଜାତୀୟ କଂଗ୍ରେସର ପ୍ରଚାର ପତ୍ର ଉଚ୍ଚ କଣ୍ଠରେ ପଢ଼ି ଶୁଣାଇଦେଲେ ।

ପତାକା ଉତ୍ତୋଳନ ପର୍ବ ଶେଷ ହେଲା ପରେ ଦୟାନନ୍ଦ ହାତରେ ତ୍ରିରଙ୍ଗା ପତାକା ଧରି ଓ ବେକରେ ଧେଣ୍ଟୁରା ଝୁଲାଇ ଦଉଡ଼ି ଚାଲିଲେ ବଡ଼ ସଡ଼କ ଉପରେ ସହର ପରିକ୍ରମା ପାଇଁ । ସମ୍ବଲପୁରର ତତ୍‌କାଳୀନ ଏସ୍.ପି. ଓ ସଶସ୍ତ୍ର ପୋଲିସ୍ ବାହିନୀ ଅନୁସରଣ କରୁଥାନ୍ତି । ତାଙ୍କ କଣ୍ଠରୁ ଦେଶ ମାତୃକାର ଜୟଧ୍ୱନିରେ ଚାରିଆଡ଼ ଦୁଲୁକି ଉଠୁଥାଏ । ଘର ଉପରୁ ଓ ଝରକା ଫାଙ୍କରୁ ସହରର ବିସ୍ମିତ ଜନସାଧାରଣ ତାଙ୍କୁ ଅନାଇ ରହିଥାନ୍ତି ।

ଏ କଥା ଦୟାନନ୍ଦ ବାବୁ ବଞ୍ଚିଥିଲାବେଳେ ମୋତେ ଓ ଅନ୍ୟମାନଙ୍କୁ ବି ଅନେକ ଥର କହିଥିଲେ ।

ତେବେ ଏ ଘଟଣାର ସମ୍ବାଦ ଦେବାକୁ ଯାଇ ତା. ୫-୨-୧୯୩୦ ସଂଖ୍ୟା 'ସମାଜ' ଲେଖିଥିଲା ଯେ, ''ପୂର୍ଣ୍ଣ ସ୍ୱରାଜ ଦିବସ'' ସମଗ୍ର ସମ୍ବଲପୁର ଜିଲ୍ଲାରେ ବିପୁଳ ଉତ୍ସାହ ଉଦ୍ଦୀପନା ମଧ୍ୟରେ ପାଳିତ ହୋଇଥିଲା । ସେଦିନ ସକାଳ ୮ଟା ବେଳେ ବାଲିବନ୍ଧା ଘାଟ ନିକଟସ୍ଥ ଟାୱାର୍‌ରେ ଜାତୀୟ ପତାକା ଉତ୍ତୋଳନ କରାଯାଇଥିଲା । ପତାକାରେ 'ଓଁ ବନ୍ଦେ ମାତରମ୍' ଲେଖା ଯାଇଥିଲା । ଲକ୍ଷ୍ମୀନାରାୟଣ ସମବେତ ଜନତାଙ୍କୁ ଦିବସର ତାତ୍ପର୍ଯ୍ୟ ଦର୍ଶାଇଥିଲେ । ପୋଲିସ୍ ସତର୍କତା ସହ ସବୁ ଅନୁଧ୍ୟାନ କରୁଥାଏ । ଏଥିରେ ଜିଲ୍ଲା ସ୍କୁଲ୍ ଓ ଛାତ୍ରାବାସର ଛାତ୍ରସମୂହ ଯୋଗ ଦେଇଥିଲେ । ଲୋକେ ଅନୁପ୍ରାଣିତ ହୋଇ ସହରର ଘରେ ଘରେ ତ୍ରିରଙ୍ଗା ପତାକା ଲଗାଇଥିଲେ ।''

ଲକ୍ଷ୍ମୀନାରାୟଣ ଅପରାହ୍ନ ୩ଟା ବେଳେ ଶୋଭାଯାତ୍ରାର ଆୟୋଜନ କଲେ । ନିଜେ ଏଥିରେ ଛାତ୍ର, ଜନସାଧାରଣ ଓ ସମାଜର ବଞ୍ଚିତ ଶ୍ରେଣୀର ଲୋକେ ଯୋଗ ଦେଲେ । ଏହା ଗାନ୍ଧିଘାଟରୁ ବାହାରି ସହର ପରିକ୍ରମା କଲା । ସ୍ୱାଧୀନତା ଦିବସ ପାଳନ କରି କଂଗ୍ରେସରେ ଯୋଗଦେବାକୁ ସ୍ଲୋଗାନ ଦିଆଯାଇଥିଲା ।

ଫେବୃଆରୀ ୨୬, ୧୯୩୦ ଦିନ ଲକ୍ଷ୍ମୀନାରାୟଣଙ୍କ ସଭାପତିତ୍ୱରେ ବରଗଡ଼ରେ ଏକ ଜନସଭା ହୋଇଥିଲା । ଏଥିରେ ଦୟାନନ୍ଦ ଶତପଥୀ ମଧ୍ୟ ଯୋଗ ଦେଇଥିଲେ । ପୋଲିସ୍‌ର ଧମକ ସତ୍ତ୍ୱେ ମାରୱାଡ଼ି ବଜାର ଠାରେ ଅନୁଷ୍ଠିତ ସଭାରେ ଆଖପାଖ ଗ୍ରାମର ବହୁ ଲୋକ ଯୋଗ ଦେଇଥିଲେ । ସୁଭାଷଚନ୍ଦ୍ର ବୋଷଙ୍କ ଗିରଫଦାରୀ ଖବରରେ ଲୋକେ ଉତ୍ତେଜିତ ହୋଇଉଠିଥିଲେ । ଆଇନ ଅମାନ୍ୟ ଆନ୍ଦୋଳନ ଡାକରାରେ ଅଞ୍ଚଳ ଉଠୁଥିଲା ପଡୁଥିଲା ।

ଝାରସୁଗୁଡ଼ା ମଦଭାଟି ପିକେଟିଂ ଗିରଫଦାରୀ ପରେ ପରେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ୧୯୩୧ରେ ପୁନର୍ଗଠନ କରାଯାଇଥିଲା । ଏହି କମିଟିରେ ରହିଥିବା କର୍ମକର୍ତ୍ତାମାନେ ହେଲେ :

ସଭାପତି : ଲକ୍ଷ୍ମୀନାରାୟଣ ମିଶ୍ର ।

ଉପସଭାପତି : ନାଗରମଲ କେଡ଼ିଆ ।

ସମ୍ପାଦକ : ଦୟାନନ୍ଦ ଶତପଥୀ, ଭାଗୀରଥି ପଟ୍ଟନାୟକ ।

କୋଷାଧ୍ୟକ୍ଷ : ପ୍ରହ୍ଲାଦ ରାୟ ଲାଠ ।

କାର୍ଯ୍ୟକାରୀ କମିଟି ସଦସ୍ୟ : ଚିନ୍ତାମଣି ପୂଜାରୀ, ନୃସିଂହ ଗୁରୁ, ସୁଧାଂଶୁଶେଖର ଗୁପ୍ତ, ଦୁର୍ଗା ଗୁରୁ ।

କଷ୍ଟରାମ ତନ୍ତି ଥିଲେ ଜଣେ ଭିନ୍ନ ରକମର କଂଗ୍ରେସ କର୍ମୀ । ଚିରାଚରିତ କଂଗ୍ରେସୀ ଆନ୍ଦୋଳନରେ ତାଙ୍କର ବିଶ୍ୱାସ ନଥିଲା । ସେ ଝାରସୁଗୁଡ଼ାର ପିକେଟିଂରେ ସମ୍ମତ ନହୋଇ ତାଙ୍କ ସହଯୋଗୀ କର୍ମୀମାନଙ୍କ ସହ ସମ୍ବଲପୁର ଆସିଲେ । ବଡ଼ବଜାର ସ୍ଥିତ ରାଜାଙ୍କ ପୁରୁଣା ତେଲମଖା ମହଲକୁ ଦଖଲ କରି ସାମ୍ନାରେ ଝୁଲାଇଦେଲେ ଏକ ବିରାଟ ହାତଲେଖା କାଗଜ ବୋର୍ଡ଼ 'କଷ୍ଟରାମ ତନ୍ତିଙ୍କ କଂଗ୍ରେସ କାର୍ଯ୍ୟାଳୟ' ।

ପୂର୍ବୋକ୍ତ ଘଟଣାରେ କଷ୍ଟରାମ ଓ ଅନ୍ୟମାନେ ଗିରଫ ହେଲେ । ପାଞ୍ଚ ଜଣଙ୍କୁ ଜେଲ୍ ଦଣ୍ଡ ହେଲା । ସେତେବେଳକୁ କଂଗ୍ରେସ ବେଆଇନ ଘୋଷିତ ହୋଇସାରିଥାଏ । ସମ୍ବଲପୁର, ବୁଢ଼ାରଜା ଦେହେରୀପାଲିର କୋଲପଡ଼ା । ଏହି ପଡ଼ାର କୁଳଧର ରାଏଙ୍କ ଘର ଅନେକ ଦିନ ଯାଏଁ ଏକ ସତ୍ୟାଗ୍ରହ ଆଶ୍ରମରେ ପରିଣତ ହୋଇ ଜିଲ୍ଲା ଓ ଜିଲ୍ଲା ବାହାରର ବହୁ କଂଗ୍ରେସ କର୍ମୀମାନଙ୍କୁ ଆଶ୍ରୟ ଯୋଗାଇଥିଲା ।

ମାର୍ଚ୍ଚ ୨୫, ୧୯୩୧ ଦିନ ବୁଢ଼ାରଜା ପାହାଡ଼ ତଳେ ଏକ ତେନ୍ତୁଳି ଗଛ ଛାଇରେ ଜିଲ୍ଲାର କୃଷକ ପ୍ରତିନିଧିମାନଙ୍କର ଏକ ସଭା ହୋଇ ମାର୍ଚ୍ଚ ୩୧ ତାରିଖ ଦିନ ସେଠାରେ ଗୋଟିଏ ବୃହତ୍ କୃଷକ ସଭା କରିବାକୁ ସ୍ଥିର କରାଯାଇଥିଲା ।

ଏହି ପ୍ରତିନିଧି ସଭାକୁ କୃଷକମାନେ ଆଞ୍ଜୁଳାଏ ଚାଉଳ ଓ ପଇସାଟିଏ ଲେଖାଏଁ ଚାନ୍ଦା ନେଇ ଆସିଥିଲେ । ମାର୍ଚ୍ଚ ୩୧ର ସଭାରେ ଜମ୍ବୁବତୀ, ଭାଗୀରଧି, କୃଷ୍ଣା ଦେବୀ, ସୁଧାଂଶୁ ଶେଖର ଗୁପ୍ତ, ଦୁର୍ଗା ଗୁରୁ, ବିନାୟକ ପାଢ଼ୀ ଓ ପ୍ରଫୁଲ୍ଲ ପଟ୍ଟନାୟକ ଗିରଫ ହୋଇଥିଲେ । ଜମ୍ବୁବତୀ ଓ କୃଷ୍ଣା ଦେବୀ ସେହିଦିନ ଛାଡ଼ ପାଇଲେ । ଅନ୍ୟମାନଙ୍କୁ ତତ୍କାଳୀନ ଡେପୁଟି କମିଶନର ନୀଳମଣି ସେନାପତିଙ୍କ କୋର୍ଟରେ ହାଜର କରାଗଲା ।

ପ୍ରଫୁଲ୍ଲ ଓ ବିନାୟକ ପାଢ଼ୀ ପିଲା ଥିବାରୁ ସେମାନଙ୍କୁ କ୍ଷମା ମାଗି ଘରକୁ ଯିବାକୁ କୁହାଗଲା । ପ୍ରଫୁଲ୍ଲ କ୍ଷମା ମାଗିବା ପରିବର୍ତ୍ତେ ସେନାପତି ଜଣେ ଭାରତୀୟ ହୋଇ ଇଂରେଜମାନଙ୍କ ଗୋଲାମୀ କରୁଥିବାରୁ ସାହେବ ଟୋପି ଉତାରି ଦେଇ ସମସ୍ତଙ୍କୁ କ୍ଷମା ମାଗି ଚାକିରି ଛାଡ଼ି ଚାଲିଯିବାକୁ କହିଲେ । ଅଗତ୍ୟା ସେନାପତି ସେମାନଙ୍କୁ ଛାଡ଼ି ଦେବାରୁ ସେମାନେ 'ବନ୍ଦେ ମାତରଂ, ଇନ୍‌କିଲାବ୍ -ଜିନ୍ଦାବାଦ୍, ଭାରତମାତାକି ଜୟ' ଆଦି ଧ୍ୱନି ଦେଇ ଜନଗହଳି ପୂର୍ଣ୍ଣ, ଭରା କୋର୍ଟରୁ ବାହାରି ଆସିଲେ ।

ଅନ୍ୟମାନଙ୍କୁ ୬ ମାସ ଲେଖାଏଁ କାରାବାସ ହୋଇଥିଲା । ଏହି ଚାଞ୍ଚଲ୍ୟକର ଖବର ସେତେବେଳେ ତତ୍କାଳୀନ ପ୍ରମୁଖ ଖବରକାଗଜ 'ସାଧନା', 'ସମାଜ' ଓ 'ଆଶା'ରେ ପ୍ରକାଶ ପାଇ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା ।

ଶ୍ରୀମତୀ କୃଷ୍ଣା ଦେବୀ ମୂଳତଃ ପଞ୍ଜାବ ନିବାସିନୀ ଥିଲେ । ତାଙ୍କ ପତି ଜଣେ ବିଡ଼ି ବ୍ୟବସାୟୀ ଥିଲେ । ନାଗପୁରରେ କଂଗ୍ରେସର ଯୋଗଦେଇ ସେ ଗିରଫ ହୋଇଥିଲେ । ସମ୍ବଲପୁରକୁ ଆସି ସେ ପୂରା ଦମ୍‌ରେ କଂଗ୍ରେସ ଆନ୍ଦୋଳନରେ ମାତି ଯାଇଥିଲେ ।

ସେତେବେଳର ଏକ ଉଲ୍ଲେଖନୀୟ ଘଟଣା ହେଲା ଯେ, ବ୍ୟବସାୟୀମାନେ ବିଡ଼ି କଠାରେ ତ୍ରିରଙ୍ଗ ପତାକା, ଦେଶବନ୍ଧୁ ଚିତ୍ତରଂଜନ ଦାଶ ଆଦିଙ୍କ ଚିତ୍ର ଛାପି ପ୍ରଚାର କାର୍ଯ୍ୟ ସହ ବ୍ୟବସାୟ ବୃଦ୍ଧି କରିବାକୁ ପଛେଇ ନଥିଲେ ।

ମାର୍ଚ୍ଚ ୧୨, ୧୯୩୧ ରେ ସମ୍ବଲପୁରର ଗାନ୍ଧୀଘାଟ ଠାରେ କୃଷ୍ଣା କୁମାରୀ ଦେବୀଙ୍କ ଅଧ୍ୟକ୍ଷତାରେ 'ଦାଣ୍ଡି ଦିବସ' ପାଳନ କରାଯାଇଥିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଏଥିରେ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ ।

୧୯୩୧ରେ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଓଡ଼ୋନେଲ୍ କମିଟି ଗଠିତ ହୋଇଥିଲା । ଚନ୍ଦ୍ରଶେଖର ଖରିଆର, ପଦ୍ମପୁର ଓ ଅନ୍ୟାନ୍ୟ ଅଞ୍ଚଳକୁ ସୀମା ନିର୍ଦ୍ଧାରଣ ସକାଶେ ଶଙ୍କର ପ୍ରସାଦ ପାଢ଼ୀ, ବିଜୟ କୁମାର ପାଢ଼ୀଙ୍କୁ ପଠାଇଥିଲେ ।

୧୯୩୧ ସେପ୍ଟେମ୍ବରରେ ଗାନ୍ଧିଜୀ କଂଗ୍ରେସର ଏକମାତ୍ର ପ୍ରତିନିଧି ଭାବରେ ଲଣ୍ଡନର ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେଇଥିଲେ । ବୈଠକରେ ସରକାର ସାଂପ୍ରଦାୟିକ ନୀତି ପ୍ରୟୋଗ କରି ହିନ୍ଦୁମାନଙ୍କ ଠାରୁ ମୁସଲିମ୍ ଓ ହରିଜନମାନଙ୍କୁ ଅଲଗା କରିଦେବା ପାଇଁ ଉଦ୍ୟମ କଲେ । ଗାନ୍ଧୀ ଏଥିରେ ମର୍ମାହତ ହୋଇ ଫେରିବା ପରେ ସମଗ୍ର ଦେଶରେ ଆଉ ଥରେ ଆନ୍ଦୋଳନର ଲହର ଉଠିଲା ।

ସରକାର ସବୁ ଭାରତୀୟ ନେତାମାନଙ୍କୁ ଗିରଫ କରି ଜେଲ୍‌ରେ ପୂରାଇଦେଲେ । 'ସମାଜ, 'ପ୍ରଜାତନ୍ତ୍ର', 'ଆଶା' ଆଦି ସମ୍ବାଦପତ୍ର ପ୍ରକାଶନ ବନ୍ଦ କରି ଦିଆଗଲା । ଓଡ଼ିଶାର ନେତାମାନଙ୍କୁ ମଧ୍ୟ ଜେଲ୍‌ରେ ଭର୍ତ୍ତି କରିଦିଆଗଲା ।

୧୯୩୨ରେ ସରକାର ତଫସିଲଭୁକ୍ତ ଜାତିମାନଙ୍କୁ ସବର୍ଣ୍ଣ ହିନ୍ଦୁମାନଙ୍କ ଠାରୁ ବିଚ୍ଛିନ୍ନ କରିଦେଲେ । ଗାନ୍ଧିଜୀ ସେମାନଙ୍କୁ 'ହରିଜନ' ନାମ ଦେଇ ସେମାନଙ୍କୁ ସବର୍ଣ୍ଣ ହିନ୍ଦୁ ସ୍ତରକୁ ଆଣିବାକୁ 'ହରିଜନ ସେବା' ଆରମ୍ଭ କଲେ । ଦେଶବ୍ୟାପୀ ତାଙ୍କ 'ହରିଜନ ଯାତ୍ରା' ଆରମ୍ଭ ହୋଇଗଲା ।

ଜାନୁଆରୀ ୩, ୧୯୩୨ରେ ଦୟାନନ୍ଦ ଶତପଥୀଙ୍କ ନେତୃତ୍ୱରେ ଜମ୍ବୁବତୀ, ଉଦ୍ଧବ ପ୍ରଧାନ, ନିତ୍ୟାନନ୍ଦ ପାଢ଼ୀ, ପ୍ରଫୁଲ୍ଲ ଓ ବାମଣ୍ଡା , ଦେବଗଡ଼ର ଅନେକ ସତ୍ୟାଗ୍ରହୀ ବରଗଡ଼ରୁ ପଦବ୍ରଜରେ ବିନିକା ଓ ସେଠାରୁ ନାଆ ଯୋଗେ ପୁରୀ କଂଗ୍ରେସରେ ଯୋଗଦେବା ପାଇଁ କଟକ ଯାତ୍ରା କଲେ । ଜାନୁଆରୀ ୧୧ ତାରିଖରେ ନାଆ କଟକରେ ଲାଗିଲା ।

ଏ ଭିତରେ ସରକାର ପୁରୀ କଂଗ୍ରେସକୁ ବେଆଇନ ଘୋଷଣା କରି ଦେଇଥିଲେ । ଓଡ଼ିଶା ସତ୍ୟାଗ୍ରହୀଙ୍କ ମହାତୀର୍ଥ କଟକର ସତ୍ୟାଗ୍ରହ ଆନ୍ଦୋଳନର ମୁଖ୍ୟ କେନ୍ଦ୍ର ଜୈନ ମନ୍ଦିରରେ ସେମାନେ ଅବସ୍ଥାନ କଲେ ।

ତା'ପର ଦିନ ପ୍ରଫୁଲ୍ଲ ଶତାଧିକ କିଶୋର ସତ୍ୟାଗ୍ରହୀଙ୍କ ସହ ଶୋଭାଯାତ୍ରାରେ ବାହାରି ସହର ପରିକ୍ରମା କଲେ । ସେମାନଙ୍କୁ ଗିରଫ କରାଯାଇ ଜେଲ୍‌ରେ ଦଶଥର ଲେଖାଏଁ ବେତ୍ରାଘାତ କରି ଛାଡ଼ି ଦିଆଗଲା ।

ଲକ୍ଷ୍ମୀନାରାୟଣ, ଭାଗୀରଥି ଓ ଅନ୍ୟାନ୍ୟ ସତ୍ୟାଗ୍ରହୀ କଟକରେ କାରାରୁଦ୍ଧ ହେଲେ । ରେଭେନ୍ସା ଛାତ୍ରାବାସରୁ ଶିବନାରାୟଣ ପାଢ଼ୀଙ୍କ ସହାୟତାରେ ଚାନ୍ଦା ସଂଗ୍ରହ କରି ଦୟାନନ୍ଦ ଓ ପ୍ରଫୁଲ୍ଲ ସମ୍ବଲପୁର ଫେରିଲେ ।

ଝାରସୁଗୁଡ଼ା ଓ ସମ୍ବଲପୁରରେ ସତ୍ୟାଗ୍ରହର ପ୍ରାରମ୍ଭିକ ପ୍ରସ୍ତୁତି ଶେଷ କରି ଦୟାନନ୍ଦ ପ୍ରଫୁଲ୍ଲଙ୍କ ସହ ବରଗଡ଼ ଆସି ବାଲିଟିକିରାରେ ଦୁଇ ଚାରିଦିନ ରହି ସତ୍ୟାଗ୍ରହ, ସଂଗଠନ ଆଦି ବିଷୟରେ ଆଲୋଚନା କରି ଛାତ୍ରମାନଙ୍କୁ ପିକେଟିଂ କରିବାକୁ ପ୍ରେରଣା ଦେଲେ । ହେଲେ ପାରମ୍ପରିକ ଆନ୍ଦୋଳନ କଥା ପ୍ରଫୁଲ୍ଲଙ୍କୁ ଆଦୌ ପସନ୍ଦ ନଥିଲା । ସେ ଅନ୍ୟ କିଛି କରିବାକୁ ଚାହୁଁଥିଲେ ।

ସେ ଦୟାନନ୍ଦଙ୍କୁ ଏଭଳି ପିକେଟିଂରେ କିଛି ଲାଭ ନହେବା ଦର୍ଶାଇ ଜାନୁଆରୀ ୨୬, ୧୯୩୨ ଦିନ ବରଗଡ଼ ଏସ୍.ଡି.ଓ. କୋର୍ଟ ଦଖଲ କରି ଗିରଫ ହେବାର ପ୍ରସ୍ତାବ ଦେଲେ । ଫକୀର ବେହେରା, ବାସୁଦେବ ସରାଫ୍ ଓ ଦୟାନନ୍ଦ ବାବୁ ଏହାକୁ ଅନୁମୋଦନ କଲେ । ବାଲିଟିକିରାର ଜଣେ ତାଙ୍କ ଅର୍ଦ୍ଦଳୀ ଚପରାସି ଓ ଜଣେ ପେଶକାର ଖଞ୍ଜା ହେଲେ । ସେବା ଦଳର କମାଣ୍ଡର ଦୟାନନ୍ଦ ତାଙ୍କ ଲାଗି ଏକ ହୁକୁମନାମା ଲେଖିଦେଲେ ।

ନିର୍ଦ୍ଧାରିତ ଦିନ ଆସିଲା । ଏସ୍.ଡି.ଓ. ଭି. ରାମସ୍ୱାମୀ କଚେରୀରେ ପହଞ୍ଚିବା ପୂର୍ବରୁ ଦୟାନନ୍ଦ ତାଙ୍କ ସହଯୋଗୀମାନଙ୍କ ସହ ଯାଇ 'ବନ୍ଦେ ମାତରଂ, ଇନ୍‌କିଲାବ୍ -ଜିନ୍ଦାବାଦ୍' ଧ୍ୱନି ମଧ୍ୟରେ ଏସ୍.ଡି.ଓ.ଙ୍କ ଚେୟାରରେ ଯାଇ ବସିପଡ଼ିଲେ । ସ୍ଲୋଗାନ ପରେ ସ୍ଲୋଗାନ

ଦିଆଚାଲିଥାଏ । ସେତେବେଳକୁ ଶହ ଶହ ଲୋକ କୋର୍ଟରେ ଜମା ହୋଇ ସାରିଥିଲେ । ପ୍ରଫୁଲ୍ଲ ତା'ପରେ ଉଚ୍ଚ କଣ୍ଠରେ ଘୋଷଣାନାମା ପାଠ କଲେ : -

'ହେହେତୁ ଜାନୁଆରୀ ୨୬, ୧୯୩୦ ଦିନ ଦେଶର ପୂର୍ଣ୍ଣାଙ୍ଗ ସ୍ୱାଧୀନତା ଘୋଷିତ ହୋଇସାରିଛି ତଥାପି ଇଂରେଜ ସରକାର ସେ ଦିଗରେ କିଛି ନକରି ନିଶ୍ଚେଷ୍ଟ ହୋଇ ବସି ରହିଛନ୍ତି ।

ତେଣୁ ଆଜି ଆମ୍ଭେ ସତ୍ୟାଗ୍ରହୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ ଏସ୍.ଡି.ଓ.ଙ୍କ କୋର୍ଟ ଦଖଲ କରି ସେହି ପୂର୍ଣ୍ଣ ସ୍ୱରାଜ୍ୟ ଘୋଷଣାକୁ ସାଫଲ୍ୟ ମଣ୍ଡିତ କରିଅଛୁଁ ।

ଆଜିଠୁଁ ବର୍ତ୍ତମାନର ଏସ୍.ଡି.ଓ.ଙ୍କୁ ବରଖାସ୍ତ କରାଗଲା ଏବଂ ଆଜିଠାରୁ ଆମ୍ଭର ବରଗଡ଼ ତହସିଲ ବିଦେଶୀ ଶାସନରୁ ମୁକ୍ତ ହେଲା ।

ଏସ୍.ଡି.ଓ. ପୋଲିସ୍ ନେଇ କୋର୍ଟରେ ପହଞ୍ଚିଲା ମାତ୍ରକେ ପ୍ରଫୁଲ୍ଲ ନିଜ ଅର୍ଡଲୀ ଚପରାସିକୁ ତାଙ୍କୁ ଗିରଫ କରିବାକୁ ଆଦେଶ ଦେଲେ ।

ହେଲେ ଚପରାସୀ ଏସ୍.ଡି.ଓ.ଙ୍କୁ ଗିରଫ କରିବା ଆଗରୁ ଚପରାସୀ-ପେଶ୍‌କାର ଦଶରଥ ଓ ପ୍ରଫୁଲ୍ଲଙ୍କୁ ଗିରଫ କରିନିଆଗଲା । ଏହି ଟଣା ଓଟରାରେ ଏସ୍.ଡି.ଓ. ରାମସ୍ୱାମୀ ଚେୟାରରୁ ଓଲଟି ପଡ଼ିଲେ । ଲୋକଙ୍କ ହସରେ କଚେରୀ ଉଚ୍ଛୁଳି ପଡ଼ିଲା ।

ତା'ପରଦିନ ସତ୍ୟାଗ୍ରହ କରି ପ୍ରେମଶଙ୍କର ପଟ୍ଟନାୟକ, ସର୍ବେଶ୍ୱର ଦୋରା ଓ ଅନ୍ୟ ଜଣେ ଛାତ୍ର ଗିରଫ ହେଲେ । ତୃତୀୟ ଦିନ କମାଣ୍ଡର ଦୟାନନ୍ଦ ଶତପଥୀ, ମଧୁସୂଦନ ସରାଫ୍ ପିକେଟିଂ କରି ଗିରଫ ହେଲେ । ଚତୁର୍ଥ ଦିନ ସୂର୍ଯ୍ୟା ମାରୁଆଡ଼ି ଗିରଫ ହେଲେ ।

ଦୟାନନ୍ଦଙ୍କୁ ଦେଢ଼ ବର୍ଷ, ପ୍ରଫୁଲ୍ଲ ଓ ମଧୁସୂଦନ ଛ' ଛ' ମାସ ଓ ଅନ୍ୟମାନଙ୍କୁ ମଧ ଛ' ମାସ ଲେଖାଏଁ କାରାଦଣ୍ଡ ହେଲା । ପ୍ରଫୁଲ, ମଧୁସୂଦନ, ପ୍ରେମଶଙ୍କର, ସୂର୍ଯ୍ୟା ଓ ସର୍ବେଶ୍ୱର ସମ୍ବଲପୁର ଜେଲ୍‌ରେ ରହିଲେ । ଅନ୍ୟ ଚାରିଜଣଙ୍କୁ ବିହାରର ଫୁଲୱାରୀ ସରୀଫ୍ ପାଟନା କେଂପ ଜେଲ୍‌କୁ ପଠାଇ ଦିଆଗଲା ।

କିଛିଦିନ ପରେ ପ୍ରଫୁଲ୍ଲ ଓ ଅନ୍ୟ ସମସ୍ତଙ୍କୁ ପାଟନା କେଂପ ଜେଲ୍ ଓ ଜମ୍ବୁବତୀ ଦେବୀଙ୍କୁ ଭାଗଲପୁର କେନ୍ଦ୍ରୀୟ କାରାଗାରକୁ ପଠାଇ ଦିଆଗଲା ।

ସେତେବେଳେ ଜେଲ୍‌ର ଖାଦ୍ୟ ବ୍ୟବସ୍ଥା ଅତ୍ୟନ୍ତ ନିକୃଷ୍ଟ ରହୁଥିଲା । ଏହାର ପ୍ରତିବାଦ କରି ପ୍ରଫୁଲ୍ଲ ଓ ମଧୁସୂଦନ ଅନଶନ ଆରମ୍ଭ କରିଦେଲେ । ତିନିଦିନର ଅନଶନ ପରେ କର୍ତ୍ତୃପକ୍ଷ ଖାଦ୍ୟବ୍ୟବସ୍ଥା ସୁଧାରିବାକୁ ବାଧ ହୋଇଥିଲେ ।

ସେତେବେଳେ ଜେଲ୍‌ରେ ସମ୍ବଲପୁର ଜିଲ୍ଲା କଂଗ୍ରେସର ପୂର୍ବତନ ସଂପାଦକ ଅମ୍ବିକା ମାଧବ ପ୍ରସାଦ ପଟ୍ଟନାୟକ ଥାନ୍ତି । ତାଙ୍କ ନିର୍ଦ୍ଦେଶରେ ପ୍ରଫୁଲ୍ଲ ଓ ମଦୁସୂଦନ ଜେଲ୍‌ରେ ଅନେକ ସେବା କାର୍ଯ୍ୟ କରିଥିଲେ । ଅମ୍ବିକା ବାବୁ ୧୯୨୧ରେ କଲେଜ ଛାଡ଼ି ସମ୍ବଲପୁର ଜାତୀୟ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ ।

ସେହି ସମୟରେ ହଜାରୀବାଗ୍ ଜେଲ୍‌ରେ ଲକ୍ଷ୍ମୀନାରାୟଣ ଅନଶନ କରିଥିଲେ । ତାଙ୍କର ଅନଶନ ସମ୍ବଲପୁରରେ କର୍ମୀ ମହଲରେ ଆଲୋଡ଼ନ ସୃଷ୍ଟି କଲା । ଭାଗୀରଥି ଓ ଫକୀର ବେହେରା ବରଗଡ଼ରେ ଏକ ସଭା କରି ଦିନଟିଏ ସୁଦ୍ଧା ବିଶ୍ରାମ ନନେଇ ଆନ୍ଦୋଳନକୁ ଆଗେଇ ନେବାକୁ ନିଷ୍ପତ୍ତି ନେଲେ ।

ଜୁଲାଇ ୮, ୧୯୩୨ ବରଗଡ଼ରେ ସତ୍ୟାଗ୍ରହର ଦ୍ୱିତୀୟ ପର୍ଯ୍ୟାୟ ଆନ୍ଦୋଳନ ଆରମ୍ଭ ହୋଇଗଲା । ଜମ୍ବୁବତୀ, ଭାଗୀରଥି, ବାସୁଦେବ, ଫକୀର, ପ୍ରେମଶଙ୍କର, ସର୍ବେଶ୍ୱର ଦୋରା, ମଧୁସୂଦନ ସରାଫ୍ ଓ ପ୍ରଫୁଲ୍ଲ ଇଂରେଜ ସରକାର ବିରୁଦ୍ଧରେ ଶୋଭାଯାତ୍ରା ଓ ପିକେଟିଂ କରି ଗିରଫ ହେଲେ ।

ଭାଗୀରଥିଙ୍କୁ ଏକ ବର୍ଷ ଓ ଅନ୍ୟମାନଙ୍କୁ ଛ' ମାସ ଲେଖାଏଁ ଜେଲ୍ ହେଲା । ବରଗଡ଼ ସେତେବେଳେ ସମଗ୍ର ଜିଲ୍ଲାର ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଇଥାଏ ।

ଜୁଲାଇ ୧୫ ତାରିଖ ଦିନ ବରଗଡ଼ରେ ବିଦେଶୀ ବସ୍ତ୍ର ବର୍ଜନର ଆହ୍ୱାନ ଦିଆଯାଇଥିଲା । ସମ୍ବଲପୁର ଓ ବରଗଡ଼ ଜାତୀୟତାବାଦର ନିଆଁରେ ତହକୁଥିଲା । ବରଗଡ଼ରେ ଆନ୍ଦୋଳନ ଦମନ କରିବାକୁ ଲାଠି ଚାର୍ଜ କରିବାକୁ ପଡ଼ିଥିଲା । ବହୁ ଲୋକଙ୍କୁ ଗିରଫ ଓ ଜୋରିମାନା କରାଯାଇ ବିଭିନ୍ନ ଦମନମୂଳକ ପଦକ୍ଷେପ ବଳରେ ସ୍ଥିତିକୁ ନିୟନ୍ତ୍ରଣାଧୀନ କରାଯାଇଥିଲା ।

ବରଗଡ଼ ସବ୍‌ଡିଭିଜନ୍‌ର ବରପାଲି, ରେମଣ୍ଡା, ପାଣିମୋରା, ସମଲେଇ ପଦର, ଭେଉଁରାରେ ଆନ୍ଦୋଳନ ପ୍ରବଳ ରୂପ ଧାରଣ କରିଥିଲା । ବହୁ ସ୍ତ୍ରୀ ଲୋକ ଆନ୍ଦୋଳନରେ ଯୋଗଦେଇ ବିନା ଦ୍ୱିଧାରେ ଗିରଫ ହୋଇଥିଲେ ।

ଜମ୍ବୁବତୀ ଦେବୀ ବରପାଲି ବଜାରରେ ବ୍ୟାପକ ପରିମାଣ ବିଦେଶୀ ବସ୍ତ୍ର ପୋଡ଼ି ୬ ମାସ କାରାଦଣ୍ଡ ଭୋଗ କରିଥିଲେ ।

ଅଗଷ୍ଟ ମାସରେ କଷ୍ଟରାମ ଝାରସୁଗୁଡ଼ାରେ ମଦବିରୋଧୀ ଆନ୍ଦୋଳନକୁ ତେଜାଇ ଦେଇଥିଲେ ।

ଲଖନପୁର ବ୍ଲକ୍‌ର ଫଟାପାଲିରେ ଗାଁର ମହେଶ୍ୱର ସାହୁଙ୍କ ନେତୃତ୍ୱରେ ୧୯୩୩ରେ ଏକ କୃଷକ ସମ୍ମିଳନୀ ହୋଇଥିଲା । ସେଥିରେ ମାଳତୀ ଚୌଧୁରୀ ଯୋଗ

ଦେଇଥିଲେ । ଝିର୍ଲାପାଲିରେ ମଧ କୃଷକ ସମ୍ମିଳନୀ କରାଯାଇ ଚାଷୀମାନଙ୍କ ସମସ୍ୟାର ସମାଧାନ କରିବାକୁ ଓ କଂଗ୍ରେସ ସଙ୍ଗଠନକୁ ସୁଦୃଢ଼ କରିବାକୁ ଆଲୋଚନା ହୋଇଥିଲା ।

କୃତାର୍ଥ ଆଚାର୍ଯ୍ୟ ସେତେବେଳେ ଖଦୀ କାମ ଛାଡ଼ି ସମ୍ବଲପୁରୀ ବସ୍ତ୍ରାଳୟ କାର୍ଯ୍ୟ ଆରମ୍ଭ କରି ସାରିଥାନ୍ତି ।

ଏପ୍ରିଲ୍ ୧୯୩୪ ପର୍ଯ୍ୟନ୍ତ ଆନ୍ଦୋଳନ ବିଭିନ୍ନ ରୂପରେ ଲାଗି ରହିଥିଲା ।

❑

ସଙ୍ଗଠନ କାର୍ଯ୍ୟ ଲାଗି ମାର୍ଚ୍ଚ ୨୪,୧୯୩୫ରେ ଜମ୍ବୁବତୀଙ୍କ ପୌରହିତ୍ୟରେ ଝାରସୁଗୁଡ଼ାରେ ଏକ ବିରାଟ ଜନସଭା ହୋଇ କୃଷକମାନଙ୍କ ବିଭିନ୍ନ ଦାବି ପୂରଣ ଓ ସମସ୍ୟା ନିରାକରଣ ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା ।

ଡିସେମ୍ବର ୧୯୩୫ରେ କଂଗ୍ରେସର ସୁବର୍ଣ୍ଣଜୟନ୍ତୀ ଉତ୍ସବ ସମ୍ବଲପୁର, ଝାରସୁଗୁଡ଼ା, ବରଗଡ଼, ବରପାଲି ଓ ଗ୍ରାମ ଗ୍ରାମାନ୍ତରରେ ବିପୁଳ ଉତ୍ସାହ, ଉଦ୍ଦୀପନା ମଧ୍ୟରେ ପାଳନ କରାଗଲା । ସେ ବର୍ଷ କଂଗ୍ରେସ ଜାତୀୟ ଅଧିବେଶନ ହୋଇ ନଥିଲା ।

ସୁବର୍ଣ୍ଣ ଜୟନ୍ତୀ ପରେ ଲକ୍ଷ୍ମୀନାରାୟଣ କାରିଗର ଓ ହସ୍ତଶିଳ୍ପକୁ ଉତ୍ସାହିତ କରିବା ତଥା କଳାକାରମାନଙ୍କୁ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବା ପାଇଁ ସମ୍ବଲପୁରରେ ଏକ ଗ୍ରାମ୍ୟ କଳା ପ୍ରଦର୍ଶନୀର ଆୟୋଜନ କଲେ ।

ଏଥିରେ ଅଞ୍ଚଳର ବିଶିଷ୍ଟ କଳାକାର ରଙ୍କମଣି ରଣା, ବୀରବର ସାହୁ, ରଣଜିତ ରଣା, ରାସବିହାରୀ ସାହୁ, ଧନ ବଣିଆ ପ୍ରମୁଖ କାଳାକାର, ମୃଣ୍ମୟ ଶିଳ୍ପୀ, ବୁଣାକାର, ସ୍ୱର୍ଣ୍ଣକାର ଆଦି ଯୋଗ ଦେଇଥିଲେ ।

ଲକ୍ଷ୍ମୀନାରାୟଣ ପଞ୍ଚପଡ଼ାଠାରେ ଏକ ହରିଜନ ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ । ଝାରସୁଗୁଡ଼ାରେ ରମା ଦେବୀଙ୍କ ନାମରେ ଏକ ହରିଜନ ମନ୍ଦିର ନିର୍ମାଣ କରାଯାଇଥିଲା ।

ଭାରତ ସରକାର ଆଇନ-୧୯୩୫ର ୨୮୯ ଧାରାରେ ସିନ୍ଧୁ ଓ ଓଡ଼ିଶା ଦୁଇଟି ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ଥାନ ପାଇଲା । ମାର୍ଚ୍ଚ ୩,୧୯୩୬ରେ ବ୍ରିଟିଶ ପାର୍ଲିଆମେଣ୍ଟର ସମ୍ବିଧାନର ଅଂଶବିଶେଷ ଭାବେ 'ଓଡ଼ିଶା ଅର୍ଡର' ସ୍ଥାନ ପାଇଲା ।

ଏହାପରେ ୧୯୩୬ ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରତିଷ୍ଠା ହେଲା । ସାର ଜନ୍ ଅଷ୍ଟିନ ହବାକ୍ ଏହାର ପ୍ରଥମ ଗଭର୍ନର ହେଲେ । ଏହି ନବଗଠିତ ପ୍ରଦେଶରେ ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, କୋରାପୁଟ ଓ ଗଞ୍ଜାମ ଏହି ୬ଟି ଜିଲ୍ଲା ରହିଲା ।

ହେଲେ ଓ' ଡୋନେଲ କମିଟିର ଶ୍ୱେତପତ୍ର ଓ ଓଡ଼ିଶାର ସୀମା ନିର୍ଦ୍ଧାରଣ ବିରୁଦ୍ଧରେ ମାର୍ଚ୍ଚ ୧୯, ୧୯୩୪ରେ ସର୍ବତ୍ର 'ସୀମା ଅଭିଯୋଗ ଦିବସ' ପାଳନ ସତ୍ୱେ ମେଦିନୀପୁର, ସିଂହଭୂମ, ଫୁଲଝର, ବିନ୍ଦ୍ରା ନୂଆଗଡ଼, ବସ୍ତର, ରାୟଗଡ଼, ସାରଙ୍ଗଗଡ଼, ମଂଜୁଷା, ତରଳା, ଟେକାଲୀ, ବୁଡ଼ାରସିଂ, ଜଳନ୍ତର, ପାରଳାଖେମୁଣ୍ଡିର ତଥା ବିଶାଖାପାଟଣାର କେତେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବିଚ୍ଛିନ୍ନ ହୋଇ ରହିଗଲା ।

ବ୍ରିଟିଶ ସରକାର ସମ୍ବଲପୁରକୁ ଆଂଶିକ ଭାବରେ ମିଶାଇ ଫୁଲଝର, ବିନ୍ଦ୍ରା ନୂଆଗଡ଼, ବସ୍ତର, ରାୟଗଡ଼ ଆଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳ ତଥା ପ୍ରାଚୀନ ସମ୍ବଲପୁରର ଅଂଶବିଶେଷକୁ ମଧ୍ୟପ୍ରଦେଶର ଅନ୍ତର୍ଗତ କରି ଦେବା ବିରୁଦ୍ଧରେ ଲକ୍ଷ୍ମୀ ନାରାୟଣ ତୀବ୍ର ସ୍ୱର ଉତ୍ତୋଳନ କଲେ । ସେ ବିଚ୍ଛିନ୍ନ ଅଞ୍ଚଳ କମିଶନ୍‌ର ଅନ୍ୟତମ ସଭ୍ୟ ଥିଲେ ।

ସମ୍ବଲପୁରରେ ଏକ ଯୁବ ସମ୍ମେଳନ ଆହ୍ୱାନ କରି ଜାତୀୟତାବାଦ ଓ ସମାଜ ସେବାର ଉଦାତ୍ତ ଆହ୍ୱାନ ଦେଲେ । ପ୍ରଥମ ସ୍ୱତନ୍ତ୍ର ଓଡ଼ିଶା ଦିବସକୁ ଏକ ପ୍ରତିବାଦ ଦିବସ ରୂପେ ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳନ ନ କରିବାକୁ ସେ, ନୃସିଂହ ଗୁରୁ ପ୍ରମୁଖ ଜନସାଧାରଣଙ୍କୁ ନିବେଦନ କଲେ ।

୧୯୩୬ରୁ ଲକ୍ଷ୍ମୀନାରାୟଣ, ପ୍ରହଲ୍ଲାଦରାୟ ଲାଠ, ପ୍ରଭାକର ଲାଠ, ବୋଧରାମ ଦୁବେ, ନୃସିଂହଗୁରୁ, ଦୟାନନ୍ଦ ଶତପଥୀ ପ୍ରମୁଖ ଝାରସୁଗୁଡ଼ା ଅଞ୍ଚଳ ଘନଘନ ଗସ୍ତ କରି କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମ ତଦାରଖ କରୁଥିଲେ ।

ମେ ୧୦, ୧୯୩୭ରେ ଝାରସୁଗୁଡ଼ାଠାରେ ରାଜନୈତିକ ସମ୍ମିଳନୀ ଓ ଜିଲ୍ଲା କୃଷକ ସମ୍ମିଳନୀ ଲକ୍ଷ୍ମୀନାରାୟଣଙ୍କ ଉଦ୍ୟମରେ ସଙ୍ଗଠିତ ହୋଇଥିଲା । ଏଥିରେ ଡ.ହରେକୃଷ୍ଣ ମହତାବ, ରାୟପୁରର ରବିଶଙ୍କର ଶୁକ୍ଳ ପ୍ରମୁଖ ନେତୃବୃନ୍ଦ ଯୋଗଦାନ କରିଥିଲେ ।

ଲକ୍ଷ୍ମୀ ନାରାୟଣ ଉତ୍କଳ କଂଗ୍ରେସ କମିଟିର ପ୍ରତିନିଧି ଭାବରେ ପୁରୀ ଜିଲା ରାଜନୈତିକ ସମ୍ମିଳନୀରେ ଯୋଗ ଦେଇଥିଲେ । ସେଠୁ ଫେରିଲାବେଳେ ଚନ୍ଦନପୁରଠାରେ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ଦାବି କରି ଏକ ଉଗ୍ର ଭାଷଣ ଦେବା ଅପରାଧରେ ଜୁଲାଇ ୬, ୧୯୩୭ ଦିନ ଗିରଫ ହୋଇଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ପରେ ଜାନୁୟାରୀ ୧୯୩୭ରେ ନିର୍ବାଚନ ହେଲା । କଂଗ୍ରେସ, ଓଡ଼ିଶା ଜାତୀୟତାବାଦୀ ଦଳ ଓ ମିଳିତ ଦଳ ପକ୍ଷରୁ ରାଜ୍ୟର ୫୬ଟି ଆସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା ହେଲା । ଏଥିମଧ୍ୟରୁ ୪ଟି ଆସନ ମନୋନୀତ ଆସନ ଥିଲା ।

ଏଥିମଧ୍ୟରୁ କଂଗ୍ରେସକୁ ଛାଡ଼ି ଦୁଇଟା ଯାକ ଦଳ ରାଜା ଓ ଜମିଦାରମାନଙ୍କ ଦଳ ଥିଲା ଏବଂ ସେମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଅଭିପ୍ରେତ ଥିଲା ।

କଂଗ୍ରେସ ସପକ୍ଷରେ କଂଗ୍ରେସ କର୍ମୀମାନେ ନିର୍ବାଚନ ପ୍ରଚାରରେ ଲାଗି ପଡ଼ିଲେ । ଭାଗୀରଥୀ ସୁଦୂର ବୋଡ଼ାସମ୍ବର, ଖଡିଆଳ ଅଞ୍ଚଳ ଦାୟିତ୍ୱରେ ରହିଲେ । ଫକୀର ବେହେରା ବିଜୟୀ ହେଲେ । ବୋଧରାମ ଦୁବେ ମଧ୍ୟ । ଏ ଉଭୟ ବିଜୟରେ ଲକ୍ଷ୍ମୀନାରାୟଣଙ୍କ ଭୂମିକା ଥିଲା ମହତପୂର୍ଣ୍ଣ । ନିର୍ବାଚନରେ କଂଗ୍ରେସ ୩୬, ଅଣକଂଗ୍ରେସ ଦଳ ୧୦ ଓ ସ୍ୱାଧୀନ ପ୍ରାର୍ଥୀ ୧୦ଟି କରି ଆସନ ପାଇଲେ । ପ୍ରାଦେଶିକ ସରକାରଙ୍କ ନିଷ୍ପତ୍ତିକୁ ସରକାର ଅଗ୍ରାହ୍ୟ ନ କରିବାକୁ ପ୍ରତିଶ୍ରୁତି ନଦେଲା ପର୍ଯ୍ୟନ୍ତ କଂଗ୍ରେସ ବିଧାୟିକା ମନ୍ତ୍ରୀମଣ୍ଡଳ ଗଠନ ନ କରିବାକୁ ସର୍ବଭାରତୀୟ କଂଗ୍ରେସ କମିଟି ନିର୍ଦ୍ଦେଶ ଦେଲା । ତେଣୁ ବିଧାୟିକାମଣ୍ଡଳୀ ନେତା ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ଗଠନ କଲେ ନାହିଁ । ଏହାର ପ୍ରତିବାଦରେ ନେହେରୁ ଏପ୍ରିଲ ୧, ୧୯୩୭ରେ ଦେଶବ୍ୟାପୀ ହରତାଳର ଡାକରା ଦେଲେ । ସମ୍ବଲପୁରରେ ଏ ହରତାଳ ଲକ୍ଷ୍ମୀନାରାୟଣଙ୍କ ଅକ୍ଳାନ୍ତ ଉଦ୍ୟମରେ ସଫଳ ହୋଇଥିଲା । ପ୍ରହଲ୍ଲାଦ ରାୟ ଲାଠ ମଧ୍ୟ ନିର୍ବାଚିତ ହୋଇଥିଲେ । ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ସେହି ଅବସ୍ଥା ହେଲା । ସରକାରଙ୍କ ନିମନ୍ତ୍ରଣକ୍ରମେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମାନଙ୍କୁ ନେଇ ଏପ୍ରିଲ ୧, ୧୯୩୭ରେ ମନ୍ତ୍ରୀମଣ୍ଡଳ ଗଠନ କଲେ ।

କଂଗ୍ରେସ ବିଧାୟକଗଣ ଏହାର ପ୍ରତିବାଦ କରି ପାରଳା ମନ୍ତ୍ରୀମଣ୍ଡଳର ଇସ୍ତଫା ଦାବି କଲେ । ବିଧାନପୀଠରେ ଏ ଅବସ୍ଥା ଚାଲିଥିଲା ବେଳେ ବାହାରେ ସତ୍ୟାଗ୍ରହ ଅବ୍ୟାହତ ଥାଏ ।

ଜାନୁୟାରୀ ୨୬, ୧୯୩୭ରେ ସରକାରଙ୍କ ନିଷିଦ୍ଧାଦେଶ ସତ୍ୱେ ସମ୍ବଲପୁର, ଝାରସୁଗୁଡ଼ା ତଥା ରାଜ୍ୟର ଅନ୍ୟାନ୍ୟ ବିଶିଷ୍ଟ ସହରରେ ସ୍ୱାଧୀନତା ଦିବସ ପାଳିତ ହେଲା । ସମ୍ବଲପୁରରେ ଡି.ସି.ପି. ଏକ ଜନସଭାକୁ ବେଆଇନ ଘୋଷିତ କଲେ ।

ଏପ୍ରିଲ ୧, ୧୯୩୭ରେ ଓଡ଼ିଶାରେ ଭାରତ ସରକାର ଆଇନ-୧୯୩୫କୁ ଅଗ୍ରାହ୍ୟ କରି ଏହାକୁ ଦେଶବିରୋଧୀ ଓ ପ୍ରତିକ୍ରିୟାବାଦୀ କହି ପ୍ରତ୍ୟାଖ୍ୟାନ କଲେ । ତା' ସହିତ ଏକ ଗଣତାନ୍ତ୍ରିକ ସମ୍ବିଧାନ ଗଠନ ଦାବି କଲେ ।

ଅଳ୍ପକାଳ ପରେ ସରକାର ଓ କଂଗ୍ରେସ ମଧ୍ୟରେ ଏକ ବୁଝାମଣା ହେଲା । ଜୁନ୍ ୧୯୩୭ରେ ଭାଇସରାୟ ଘୋଷଣା କଲେ ଯେ ସରକାର ପ୍ରାଦେଶିକ ମନ୍ତ୍ରୀମଣ୍ଡଳର ଦୈନନ୍ଦିନ ଶାସନରେ ହସ୍ତକ୍ଷେପ କରିବେ ନାହିଁ ।

ଏହା ଫଳରେ ପ୍ରଧାନମନ୍ତ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କ ମନ୍ତ୍ରୀମଣ୍ଡଳର ଅବସାନ ଘଟିଲା ।

ବିଶ୍ୱନାଥ ଦାସ ଜୁଲାଇ ୧୯,୧୯୩୭ରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲେ । ଏହି ତିନି ଜଣିଆ ମନ୍ତ୍ରୀ ମଣ୍ଡଳରେ ସମ୍ବଲପୁର ବୋଧରାମ ଦୁବେ ଓ କଟକର ନିତ୍ୟାନନ୍ଦ କାନୁନଗୋ ସ୍ଥାନ ପାଇଲେ ।

ଓଡ଼ିଶାରେ କଂଗ୍ରେସ ଶାସନ ହେଲା ସତ ହେଲେ ଦିଆ ଯାଇଥିବା ନିର୍ବାଚନ ପ୍ରତିଶ୍ରୁତି ପାଳନ କରାଗଲା ନାହିଁ । ସମ୍ବଲପୁର ଜିଲା କଂଗ୍ରେସ କମିଟି ପକ୍ଷରୁ କଂଗ୍ରେସ ଶାସନରେ ଲୁଣ, କେନ୍ଦୁପତ୍ର, ବିଡ଼ିର ମୂଲ୍ୟ ହ୍ରାସ ପାଇଁ ପ୍ରସ୍ତାବ ଥିଲା । କିନ୍ତୁ ଏଗୁଡ଼ିକର ମୂଲ୍ୟ ବୃଦ୍ଧି ହେଲା । ଚିନ୍ତାମଣି, ଭାଗୀରଥି, ଦୟାନନ୍ଦ ପ୍ରମୁଖ ଲୁଣ ଓ କେନ୍ଦୁପତ୍ରର ଏକଚାଟିଆ ବ୍ୟବସାୟ ଖତମ୍ କରିବାକୁ ଜିଲା କଂଗ୍ରେସ କମିଟିରେ ପ୍ରସ୍ତାବ ଦେଲେ । ହେଲେ ତାହା କାର୍ଯ୍ୟକାରୀ ହେଲା ନାହିଁ ।

ଅକ୍ଟୋବର ୨୭,୧୯୩୭ରେ ସମ୍ବଲପୁର ଟାଉନ ହଲଠାରେ ବୃନ୍ଦାବନ ଗୁରୁଙ୍କ ପୌରହିତ୍ୟରେ ଏକ ବିରାଟ ଜନସଭା ହୋଇଥିଲା । ଏଥିରେ ଗୋପବନ୍ଧୁ ଚୌଧୁରୀ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । କଂଗ୍ରେସ ସରକାରଙ୍କ ପ୍ରତିଶ୍ରୁତି ଭଙ୍ଗରେ ବ୍ୟଥିତ ହୋଇ ସେ ପ୍ରାଦେଶିକ ଶାସନକୁ 'ଇଂରେଜମାନଙ୍କ ଜେଲଖାନା' ବୋଲି ଅଭିହିତ କରିଥିଲେ ।

୧୯୩୮ରେ ସମ୍ବଲପୁର ଅଞ୍ଚଳରେ ଲକ୍ଷ୍ମୀନାରାୟଣଙ୍କ ଗତିବିଧି ସମସ୍ତଙ୍କୁ ଟପି ଯାଇଥିଲା । ଲକ୍ଷ୍ମୀନାରାୟଣ ବରଗଡ଼ରେ ଡିସେମ୍ବର ୩ରୁ ୫, ୧୯୩୮ ପର୍ଯ୍ୟନ୍ତ ଏକ ହରିଜନ ସମ୍ମେଳନ କରାଇଥିଲେ । ଏଥିରେ ପ୍ରାଣକୃଷ୍ଣ ପଡ଼ିଆରୀ, ଆଚାର୍ଯ୍ୟ ହରିହର ଦାସ ପ୍ରମୁଖ ଯୋଗ ଦେଇଥିଲେ ।

ଚାଷୀମାନଙ୍କୁ ସଙ୍ଗଠିତ କରିବା ପାଇଁ ତାଙ୍କ ପ୍ରଚେଷ୍ଟାରେ ଝାରସୁଗୁଡ଼ା ତହସିଲର ଫଟାପାଲି ଓ ଝିର୍ଲାପାଲିଠାରେ ଜାନୁୟାରୀ ୯ ଓ ୧୦,୧୯୩୮ରେ ବିରାଟ କୃଷକ ସଭା ହୋଇଥିଲା । ଏଥିରେ ମାଳତୀ ଚୌଧୁରୀ ଅଧ୍ୟକ୍ଷତା କରିଥିଲେ ।

ସେତେବେଳେ ବୋଡ଼ାସମ୍ବର ଜମିଦାରଙ୍କ ଅତ୍ୟାଚାର ସୀମା ଟପି ଯାଇଥିଲା । ଲକ୍ଷ୍ମୀନାରାୟଣ ଜମିଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ଏବଂ ଜିଲା କର୍ତ୍ତୃପକ୍ଷଙ୍କ ଅନ୍ୟାୟୋଚିତ ଆଦେଶକୁ ଆହ୍ୱାନ ଦେଇ ୧୯୩୮ରେ ଗିରଫ ହୋଇ ଜେଲ ଯାତ୍ରା କରିଥିଲେ । ତାଙ୍କ ଘର ଖାନତଲାସ ହୋଇ ବହୁ ଗୁପ୍ତ କାଗଜପତ୍ର ଜବତ ହୋଇଥିଲା ।

ସରକାରଙ୍କ ସେ ଏତେ ଚକ୍ଷୁଶୂଳ ହୋଇ ପଡ଼ିଥିଲେ ଯେ ସବୁବେଳେ ତାଙ୍କ ଉପରେ ତୀକ୍ଷ୍ଣ ନଜର ରଖା ଯାଉଥିଲା । ସେ ଯାଉଥିବା ପ୍ରତ୍ୟେକ ସଭାକୁ ଛଦ୍ମ ବେଶଧାରୀ ସି.ଆଇ.ଡି. ପଠାଯାଉଥିଲା ।

ପଣ୍ଡିତ ଲକ୍ଷ୍ମୀନାରାୟଣ ଝାରସୁଗୁଡ଼ାର ଏକ ଜନସଭାରେ ଆଗ୍ନେୟ ଆହ୍ୱାନ ଦେଇ କହିଥିଲେ - ''- ବଡ଼ଲାଟଙ୍କୁ ଦଣ୍ଡିତ କରିବା ପାଇଁ ଓ ବ୍ରିଟିଶ ସାମ୍ରାଜ୍ୟର ଅଧିକାରୀ, କର୍ମଚାରୀ ଧଳାହାତୀମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ମନ୍ତ୍ରୀମଣ୍ଡଳ ହାତରେ କ୍ଷମତା ନ ମିଳିଲା ଯାଏଁ; ପୂର୍ଣ୍ଣ ସ୍ୱାଧୀନତା ହାସଲ ହୋଇ ପାରିବ ନାହିଁ । ସାମ୍ରାଜ୍ୟ ମଧ୍ୟରେ ଏହି କର୍ମଚାରୀମାନଙ୍କୁ ଯେତେ ଦରମା ଦିଆଯାଉଛି, ସେତକ ଟଙ୍କା ମିଳିଲେ ସମଗ୍ର ଭାରତରୁ କ୍ଷୁଧା ଦୂର କରାଯାଇ ପାରିବ ।'' ୧୯୩୮ରେ ସେ ଉତ୍କଳ କଂଗ୍ରେସ କମିଟିର ସାଙ୍ଗଠନିକ ସଂପାଦକ ନିଯୁକ୍ତ ହୋଇଥିଲେ । ସେହି ବର୍ଷ ସେ ଅନ୍ୟ ୧୫ଜଣଙ୍କ ସହ ଅଖିଳ ଭାରତୀୟ କଂଗ୍ରେସ କମିଟିକୁ ନିର୍ବାଚିତ ହୋଇଥିଲେ ।

୧୯୩୮ରେ ବାଲିଟିକିରା, ବରଗଡ଼ରେ ଏକ କୃଷକ ସମ୍ମିଳନୀ ହୋଇଥିଲା । ଲକ୍ଷ୍ମୀନାରାୟଣ ଢେଙ୍କାନାଳ ସତ୍ୟାଗ୍ରହ ପାଇଁ ଯାଉଥିବା ଦିବସକୁ 'ଲକ୍ଷ୍ମୀନାରାୟଣ ଦିବସ' ଭାବରେ ପାଳନ କରିବାକୁ ସ୍ୱତଃ ପ୍ରଣୋଦିତ ହୋଇ ସଭାରେ ପ୍ରସ୍ତାବ ଗ୍ରହଣ କରାଯାଇଥିଲେ ।

ତାଙ୍କୁ ନେତୃତ୍ୱରେ ଖରିଆରରେ ବେଠି, ବେଗାରୀ, ରସଦ ପ୍ରଥା ବନ୍ଦ ହୋଇଥିଲା ।

ସେ ଡିସେମ୍ବର ୧୯୩୮ରେ ଅନ୍ୟମାନଙ୍କ ସହ ଢେଙ୍କାନଳ ଯାତ୍ରା କଲେ । ଗଲାବାଟରେ ପ୍ରଚାର କାର୍ଯ୍ୟ ଚାଲିଥିଲା । ଅନୁଗୁଳଠାରେ ତାଙ୍କୁ ଗିରଫ କରାଗଲା । ପୁଲିସ କମିଶନର ତାଙ୍କ ବ୍ୟତୀତ ଅନ୍ୟମାନଙ୍କୁ ମୁକ୍ତ କରି ଦେଇଥିଲେ ।

ଏଠାରୁ ଫେରିଲା ପରେ ସେ ପଦ୍ମପୁର ଜମିଦାରଙ୍କ ବିରୁଦ୍ଧରେ ଭୟଙ୍କର ଆନ୍ଦୋଳନ ଚଳାଇଥିଲେ ।

୧୯୩୮ରେ ସମ୍ବଲପୁରର ରାଧେଶ୍ୟାମ ମେହେର ଓ ଯୁଧିଷ୍ଠିର ମେହେର ସାବରମତୀ ଆଶ୍ରମକୁ ଯାଇ ଗାନ୍ଧୀଜୀଙ୍କୁ ଏକ ସମ୍ବଲପୁରୀ ଖଦଡ଼ ପର୍ଦା ଉପହାର ଦେଇଥିଲେ ।

□□□

# ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହ : ୧୯୩୩

ଇତ ମଧ୍ୟରେ ଇଂରେଜ ସରକାର ଆଉ ଏକ ବିଭାଜନକାରୀ ଆଇନ ପ୍ରଣୟନ କରିବାକୁ ମସୁଧା କରି ସାରିଥିଲେ; ଯହିଁରେ ଦେଶର ସାତ କୋଟି ଅସ୍ପୃଶ୍ୟମାନଙ୍କୁ ବିଶାଳ ହିନ୍ଦୁ ସମାଜର ମୁଖ୍ୟଧାରାରୁ ପୃଥକ କରି ଦିଆ ଯାଇଥିଲା । ସେହିପରି ମୁସଲମାନମାନଙ୍କୁ ମଧ୍ୟ ଅଲଗା କରି ଦିଆ ଯାଇଥିଲା । ଭାରତୀୟଙ୍କ ମଧ୍ୟରେ ବିଭେଦ କରି ସେମାନଙ୍କୁ ଅସଙ୍ଗଠିତ କରିବାକୁ ଉଦ୍ଦିଷ୍ଟ ଦିତ୍ୱୀୟ ଗୋଲ ଟେବୁଲ ବୈଠକର ଏ ନିଷ୍ପତି ଗାନ୍ଧୀଙ୍କ ମନରେ ଗଭୀର ଆଘାତ ଦେଇଥିଲା ।

ଏହି କଳା ଆଇନ ବିରୁଦ୍ଧରେ ସେ ମେ ୯, ୧୯୩୩ରୁ ଯାରବେଡ଼ା ଜେଲରେ ୨୧ ଦିନିଆ ଅନଶନ ଆରମ୍ଭ କରିଦେଲେ । ୧୪ ତାରିଖ ଦିନ ତାଙ୍କୁ ଜେଲରୁ ମୁକ୍ତ କରି ଦିଆଗଲା । ତା'ପରେ ମଧ୍ୟ ତାଙ୍କ ଐତିହାସିକ ଅନଶନ ଅବ୍ୟାହତ ରହିଲା । ସେ ବୁଝି ପାରିଥିଲେ ଯେ ଭାରତକୁ ଖଣ୍ଡିତ କରିବାକୁ ଚକ୍ରାନ୍ତର ଏହା ହିଁ ମୂଳଭିତ୍ତି ।.ପୋଲିସ ଦମନଲୀଳା ସହ ଇଂରେଜ ସରକାରଙ୍କ ଏ କୂଟନୀତିର ଆଗାମୀ ଦୁସ୍ପରିଣାମ ତାଙ୍କୁ ଅସ୍ଥିର କରି ପକାଇଲା । ଏ ମନସ୍ତାତ୍ତ୍ୱିକ ଯୁଦ୍ଧରେ ଗାନ୍ଧୀଜୀଙ୍କର ଏକରକମ ପରାଜୟର ଛାୟା ସ୍ପଷ୍ଟ ବାରି ହୋଇ ପଡୁଥିଲା । ତାଙ୍କର ଏ ଅନଶନ ସତ୍ୟାଗ୍ରହ ଆନ୍ଦୋଳନରେ ବ୍ୟାପକ ପରିବର୍ତ୍ତନ ଆଣିଲା ।

ସେତେବେଳ ପର୍ଯ୍ୟନ୍ତ କଂଗ୍ରେସ ଆନ୍ଦୋଳନ ମୁଖ୍ୟତଃ ଉଚ୍ଚସ୍ତରୀୟ ଥିଲାବାଲା, ଉଚ୍ଚ ଶିକ୍ଷିତ, ବୃଦ୍ଧୀଜୀବୀମାନଙ୍କ ଆନ୍ଦୋଳନ ହୋଇ ରହିଥିଲା । ଗାନ୍ଧୀଜୀ ଏହାର ଅସାରତା ଉପଲବ୍ଧୀ କଲେ । ଏହାକୁ ସେ ଭାରତର ଜନସାଧାରଣଙ୍କ ଆନ୍ଦୋଳନରେ ପରିଣତ କରିବାକୁ ଚାହିଁଲେ । କାରଣ ଗଣଆନ୍ଦୋଳନ ବିନା ସ୍ୱାଧୀନତାର ପଥ ପ୍ରଶସ୍ତ ନଥିଲା । ସେ ଚାହିଁଲେ ଯେ ନେତାମାନଙ୍କ କରଦ ହୋଇ ନେତାସର୍ବସ୍ୱ ଆନ୍ଦୋଳନର ମୂଲ୍ୟ କିଛି ନାହିଁ । ଲୋକେ ନିଜର ନେତୃତ୍ୱ ନିଜେ ନିଅନ୍ତୁ । ପୁଣି ଇଂରେଜ ସରକାରଙ୍କ ବିଭାଜନବାଦୀ ନୀତି ବିରୁଦ୍ଧରେ ସଂଗ୍ରାମ କରିବାକୁ ହରିଜନ ଜାଗରଣ ଆବଶ୍ୟକ ଥିଲା । ଏଥିପାଇଁ ବିଶେଷ ସମୟର ଆବଶ୍ୟକତା ଥିଲା । ଘଡ଼ିସନ୍ଧି ମୁହୂର୍ତ୍ତରେ ସତ୍ୟାଗ୍ରହ ଓ ହରିଜନ ଆନ୍ଦୋଳନ ଚଳାଇବା ବାସ୍ତବ କ୍ଷେତ୍ରରେ ସମ୍ଭବ ନଥିଲା । ଏଥିପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦେବା ଆବଶ୍ୟକ ଥିଲା । ପୁଣି ଲୋକଙ୍କ ମଧ୍ୟରୁ ନେତୃତ୍ୱ ପ୍ରତି ସବୁ କ୍ଷେତ୍ରରେ ଚାହିଁ ରହିବାର ଦୃଷ୍ଟିକୋଣର ପରିବର୍ତ୍ତନ ଆବଶ୍ୟକ ଥିଲା । ତା'ସହିତ ଏ କ୍ଷେତ୍ରରେ ମଧ୍ୟ ଲୋକଙ୍କୁ ସ୍ୱାବଲମ୍ବୀ କରିବା ଅପରିହାର୍ଯ୍ୟ ଥିଲା ।

ତେଣୁ ଗାନ୍ଧୀ ଏଥିପାଇଁ ଏକ କଠୋର ପଦକ୍ଷେପ ନେଲେ । ଅଗଷ୍ଟ ୧,୧୯୩୩ ଦିନ ସେ ତାଙ୍କର ସାବରମତୀ ଆଶ୍ରମ ବନ୍ଦ କରିଦେଲେ । କଂଗ୍ରେସୀ ଆନ୍ଦୋଳନର ଏ କେନ୍ଦ୍ରୀୟ କାର୍ଯ୍ୟାଳୟ ବନ୍ଦ କରିବା ସହିତ ସେ ଏକ ଐତିହାସିକ ନିସ୍ପତ୍ତି ନେଲେ ଯେ ସେ ନିଜେ ଆଗାମୀ ଆନ୍ଦୋଳନରେ କେଣଣି ପ୍ରକାରେ ଅଂଶଗ୍ରହଣ କରିବେ ନାହିଁ ।

ସେ ତାଙ୍କ ଘୋଷଣାରେ ସମସ୍ତଙ୍କୁ ଚମକାଇ ଦେଇ କହିଲେ : ''- ଜେଲରୁ ଫେରି ଯେଉଁ ସତ୍ୟାଗ୍ରହୀମାନେ ଘରେ ଆରାମରେ ବସିଛନ୍ତି; ସେମାନେ ହେଉଛନ୍ତି ଦେଶଦ୍ରୋହୀ । ମୁଁ ଏଣିକି ସତ୍ୟାଗ୍ରହ ପରିଚାଳନା କରିବି ନାହିଁ । ସାବରମତୀ ଆଶ୍ରମକୁ ବନ୍ଦ କରି ଦିଆଯାଇଛି । ଯେଉଁମାନେ ନିଜର ବ୍ୟକ୍ତିଗତ ଇଚ୍ଛାରେ ସତ୍ୟାଗ୍ରହ କରିବାକୁ ଚାହାନ୍ତି, ସେମାନେ କରି ପାରନ୍ତି ।''

ଏହାପରେ କଂଗ୍ରେସ କୌଣସି ଆନ୍ଦୋଳନରେ ନେତୃତ୍ୱ ନେଇ ନଥିଲା । ଗାନ୍ଧୀଜୀ ସମଗ୍ର ଦେଶ ବୁଲି ଅସ୍ପୃଶ୍ୟତା ନିବାରଣ ପାଇଁ ପ୍ରଚାର ଚଳାଇଲେ ।

ଗାନ୍ଧୀଜୀଙ୍କର ଏ ଖୋଲା ଆହ୍ୱାନ ଥିଲା ସତ୍ୟାଗ୍ରହୀମାନଙ୍କ ସଂକଳ୍ପର କଠୋର ପରୀକ୍ଷା । ଟାଣୁଆ ସତ୍ୟାଗ୍ରହୀମାନେ ଆଉ ଘରେ ବସି ନପାରି ରାସ୍ତାକୁ ଓହ୍ଲାଇ ଆସିଲେ । ଆରମ୍ଭ ହୋଇଗଲା ଐତିହାସିକ ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହ ।

ସେପ୍ଟେମ୍ବର ୨୧,୧୯୩୩ ଦିନ ଭାଗୀରଥି, ଜମ୍ବୁବତୀ ଓ ପ୍ରଫୁଲ୍ଲ ବରଗଡ଼ରେ ଆଇନ ଅମାନ୍ୟ କରି ଗିରଫ ହେଲେ । ସେମାନଙ୍କୁ ଯଥାକ୍ରମେ ୬ ମାସ, ୫ ମାସ ଓ ୪ ମାସ କାରାଦଣ୍ଡ ହେଲା । ଭାଗୀରଥୀ ଓ ପ୍ରଫୁଲ୍ଲଙ୍କୁ ପାଟଣା କେଂପଜେଲ ଓ ଜମ୍ବୁବତୀଙ୍କୁ ଭାଗଲପୁର ସେଣ୍ଟ୍ରାଲ ଜେଲକୁ ପଠାଇ ଦିଆଗଲା ।

ସମ୍ବଲପୁରରେ ବ୍ୟକ୍ତିଗତ ସତ୍ୟାଗ୍ରହ କରିବା ଅପରାଧରେ ପୂର୍ବରୁ ଗିରଫ ହୋଇ ନୃସିହ ଗୁରୁ, ବୃନ୍ଦାବନ ଗୁରୁ, ମହାବୀର ସିଂହ ପ୍ରମୁଖ ପାଟନା କେଂପ ଜେଲରେ ରହିଥାନ୍ତି । ଦେଶ ତଥା ରାଜ୍ୟର ସତ୍ୟାଗ୍ରହୀଙ୍କ ସମାବେଶରେ ପାଟନା ଜେଲ ଉଚ୍ଛୁଳି ଉଠିଥାଏ ।

୧୯୩୪ ମସିହା । ଝାରସୁଗୁଡ଼ାରେ ଗାନ୍ଧୀଙ୍କୁ ସ୍ୱାଗତ ଜଣାଇବା ଲାଗି ବ୍ୟାପକ ପ୍ରସ୍ତୁତି ଚାଲିଥାଏ । ହେଲେ ସମ୍ବର୍ଦ୍ଧନା ସମିତିରେ ଅସଲ ହରିଜନ ସେବକ ଚିନ୍ତାମଣି କି ବିହାରୀରାମ ତନ୍ତୀ ନଥାନ୍ତି । କେବଳ ଜଣେ ସଚୋଟ କର୍ମୀ ନୃସିଂହ ଗୁରୁ ସବୁ କାର୍ଯ୍ୟ ତୁଲାଉଥାନ୍ତି ।

ସେତିକିବେଳେ ଭାଗୀରଥୀ ଓ ଜମ୍ବୁବତୀ ବିହାରରୁ ମୁକ୍ତ ହୋଇ ପହଞ୍ଚିଲେ । ସେମାନେ ଚିନ୍ତାମଣି, ବିହାରୀରାମ ପରିବାର ଓ ନୃସିଂହଙ୍କୁ ନେଇ ପ୍ରସ୍ତୁତିରେ ଲାଗିଗଲେ ।

ମେ ୪,୧୯୩୪ ରାତି ୩ଟା ଟ୍ରେନରେ ଗାନ୍ଧୀ, ଠକ୍କର ବାପା ଓ ତାଙ୍କର ସହଯୋଗୀମାନେ ଝାରସୁଗୁଡ଼ା ଷ୍ଟେସନରେ ଓହ୍ଲାଇଲେ । ଷ୍ଟେସନରେ ବିରାଟ କର୍ମୀ ସମାବେଶ ହୋଇଥାଏ ।

ବିହାରୀରାମଙ୍କ ମାତା ବୃଦ୍ଧା ତୁଳସୀ ଦେବୀ ଗାନ୍ଧୀଙ୍କ ବେକରେ ପ୍ରଥମେ ଗେଣ୍ଡୁଫୁଲର ଏକ ବିରାଟ ମାଳ ପିନ୍ଧାଇ ଦେଲେ । ଗାନ୍ଧୀ ତୁଳସୀ ଓ ଜମ୍ବୁବତୀଙ୍କ କାନ୍ଧରେ ଭରା ଦେଇ ବିହାରୀ ରାମଙ୍କ ଘରକୁ ଯାଇ ସେଠାରେ ଅବସ୍ଥାନ କଲେ । ଝାରସୁଗୁଡ଼ାରେ ସେ ଏକ ବିରାଟ ସାଧାରଣ ସଭାରେ ଅସ୍ପୃଶ୍ୟତା ନିବାରଣ ଉପରେ ଉଦ୍‌ବୋଧନ ଦେଲେ । ଜମ୍ବୁବତୀଙ୍କ ନେତୃତ୍ୱରେ ମୁଙ୍ଗାପଡ଼ାକୁ ହରିଜନକର୍ମୀମାନେ ଶୋଭାଯାତ୍ରାରେ ଆସି ତାଙ୍କୁ ସ୍ୱାଗତ କରିଥିଲେ ।

ମେ ୫ ତାରିଖ ଦିନ ଗାନ୍ଧୀ ସମ୍ବଲପୁର ଆସିଲେ । ଏଥର ସେ ଡା. ରାମଚନ୍ଦ୍ର ମିଶ୍ରଙ୍କ ଘରେ ରହିଥିଲେ । ସହରର ଜନାର୍ଦ୍ଦନ ସୂପକାର ହରିଜନମାନଙ୍କ ଉଦ୍ଦେଶ୍ୟରେ ଏକ ଘର ଦାନ କରିଥିଲେ । ପରେ ତାହା ହରିଜନ ଛାତ୍ରାବାସରେ ପରିଣତ ହୋଇଥିଲା । ଗାନ୍ଧୀ ଏହାକୁ ଉଦ୍‌ଘାଟନ କରିଥିଲେ । ଦୟାନନ୍ଦ ହରିଜନ ଛାତ୍ରାବାସରେ ରହି ଗାନ୍ଧୀଙ୍କ କାର୍ଯ୍ୟକ୍ରମକୁ ଆଗେଇ ନେବାରେ ବିଶେଷ ଭାବରେ ନୃସିଂହ ଗୁରୁଙ୍କୁ ସାହାଯ୍ୟ କରିଥିଲେ ।

ଗାନ୍ଧୀଙ୍କ ଦ୍ୱିତୀୟ ସମ୍ବଲପୁର ଗସ୍ତର ବିବରଣୀ 'ହରିଜନ'ର ତା. ୧୮।୫।୧୯୩୪ ସଂଖ୍ୟାରେ ପ୍ରକାଶ ପାଇଥିଲା । ଗାନ୍ଧୀଙ୍କ ଅନ୍ୟତମ ସହକାରୀ ବାଲାଜୀ ଗୋବିନ୍ଦଜୀ ଦେଶାଇ ଲେଖିଥିଲେ : ''ସମ୍ବଲପୁର

ଜାମସେଦପୁରରୁ ଆମେ ରେଳରେ ଝାରସୁଗୁଡ଼ା ଗଲୁ । ସେଠାରେ ଭୋର ୩ଟା ବେଳେ ପହଞ୍ଚିଲୁ । ଓଡ଼ିଶା ଗସ୍ତ ଝାରସୁଗୁଡ଼ାରୁ ଆରମ୍ଭ ହେଲା । ଝାରସୁଗୁଡ଼ାରେ ଗୋଟିଏ ସଭାରେ ଯୋଗଦେଇ ଆମେ ମଟରରେ ସମ୍ବଲପୁର ଗଲୁ ।

ଜାମସେଦପୁରର ଆପେକ୍ଷାକୃତ ବିଭବ ଓ ସମ୍ବଲପୁରର ଦାରିଦ୍ର୍ୟ ମଧ୍ୟରେ ପ୍ରଭେଦ ଏଠାରେ ଅତି ସ୍ପଷ୍ଟ ଜଣା ପଡୁଥିଲା । ପହଞ୍ଚିବା ମାତ୍ରେ ଗାନ୍ଧୀଜୀ ଚାରୋଟି ବସ୍ତି ପରିଦର୍ଶନ କଲେ । ପରିଷ୍କୃତ ଜଳର ଅଭାବ ସମ୍ବନ୍ଧରେ ସବୁଠାରେ ତିକ୍ତ ଆପତ୍ତି । ଯେଉଁ ପୁଷ୍କରିଣୀମାନଙ୍କରୁ ହରିଜନମାନେ ଜଳ ବ୍ୟବହାର କରନ୍ତି ସେ ସବୁ କର୍ଦ୍ଦମମୟ ନର୍ଦ୍ଦମା । ଫଳରେ ପରିଷ୍କୃତ ଜଳ ବିନା ଯେଉଁ ସବୁ ରୋଗ ହେବାର କଥା ତାହା ସେମାନେ ଭୋଗୁଛନ୍ତି । ଗାନ୍ଧିଜୀ ହରିଜନମାନଙ୍କ ସହିତ କଥା ହେଲେ । ପଚାରିଲେ ପୁଷ୍କରିଣୀ ସବୁ ପରିଷ୍କାର କରିବାପାଇଁ ସେମାନେ ଶ୍ରମ କରିବେ କି ନାହିଁ । ସର୍ବସମ୍ମତି କ୍ରମେ ଓ ଉତ୍ସାହ ସହକାରେ

ସେମାନେ କରିବେ ବୋଲି କହିଲେ । ମ୍ୟୁନସିପାଲିଟି ଚେୟାରମେନଙ୍କୁ ଏ କଥା ଜଣାଇ ଦିଆଗଲା । ସେନିଟରୀ ଇଂଜିନିୟର ଲୋକଙ୍କ କଥାରେ ବିଶ୍ୱାସ କରି କାମ ତଦାରଖ କରିବେ ବୋଲି ଆଶା କରାଯାଏ ।''

## ଗସ୍ତକ୍ରମ: ଓଡ଼ିଶା-୧

୫ ତାରିଖ ମେ - ଝାରସୁଗୁଡ଼ା, ସାଧାରଣ ସଭା, ପାଣ୍ଠିସଂଗ୍ରହ ଟ୪୩୫ଟଙ୍କା ଦଶ ଅଣା ୭ପାହୁଲା. ଝାରସୁଗୁଡ଼ାରୁ ମଟରକାରରେ ସମ୍ବଲପୁର, ୩୦ ମାଇଲ, ହରିଜନ ବସ୍ତି ଓ କୁଷ୍ଠ ଚିକିତ୍ସାଳୟ ପରିଦର୍ଶନ, ସାଧାରଣ ସଭା, ମାନପତ୍ର,ପାଣ୍ଠି ସଂଗ୍ରହ ଟ୫୩୫ ସାଢ଼େ ପାଞ୍ଚଟାରେ ସମ୍ବଲପୁରରୁ ମଟରକାରରେ ବାମୁର ୫୨ ମାଇଲ ।

ସମ୍ବଲପୁରଠାରେ ଗାନ୍ଧିଜୀ ଉଦ୍‌ବୋଧନ ଦେଇ କହିଥିଲେ : ''- ମୋ କଥା ମାନି ଅସ୍ପୃଶ୍ୟତାକୁ ଛାଡ଼ିଦିଅ । ହରିଜନମାନଙ୍କୁ ଘୃଣା କରନାହିଁ। ତାଙ୍କ ପାଖକୁ ଯାଇ ସେମାନଙ୍କୁ ଆଦର କର । ସମାଜରେ ସେମାନଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଦିଅ । ମୋ କଥା ଯଦି ହିନ୍ଦୁମାନେ ମାନିବେ ନାହିଁ, ତା'ହେଲେ ଇଂରେଜ ସରକାର ତାଙ୍କୁ ଆମଠାରୁ ଅଲଗା କରିଦେଇ ଆମ ବିରୁଦ୍ଧରେ ଠିଆ କରାଇବେ ।

ଯଦି ମା ମାନେ ଚାହିଁବେ ଏ ଦେଶରୁ ଅସ୍ପୃଶ୍ୟତା ଦୂର ହୋଇ ପାରିବ । ତୁମର ଛୁଆ ଯଦି ତୁମ ଦେହରେ ମଳ ତ୍ୟାଗ କରେ, ସେ ମଇଳାକୁ ତମେ ଯେପରି ନିଜ ହାତରେ ଧୋଇପୋଛି ଦେଉଛ, ଠିକ୍ ସେହିପରି ହରିଜନମାନଙ୍କୁ ମଧ୍ୟ ହିନ୍ଦୁ ସମାଜର ଶିଶୁ ମନେକରି ତାଙ୍କ ଉପରେ ସ୍ନେହଭାବ ରଖ ।''

ଏହା ଥିଲା ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମସେ ମେକଡୋନାଲ୍‌ଡଙ୍କ 'କମ୍ୟୁନାଲ ଏୱାର୍ଡ' ବିରୁଦ୍ଧରେ ଗାନ୍ଧିଜୀଙ୍କ ସଂଗ୍ରାମ । ଅଗଷ୍ଟ ୩୨ରେ ସରକାର ଏ ଏୱାର୍ଡ ଘୋଷଣା ପୂର୍ବକ ନିର୍ବାଚନରେ ସାଂପ୍ରଦାୟିକ ପ୍ରତିନିଧିତ୍ୱ ନୀତି ପ୍ରବର୍ତ୍ତନ କରି ମୁସଲିମ, ଶିଖ ଓ ଅସବର୍ଣ୍ଣ ଦଳିତ ସଂପ୍ରଦାୟସବୁକୁ ସ୍ୱତନ୍ତ୍ର କରିଦେଇଥିଲେ । ଏହା ହିନ୍ଦୁ ସମାଜ ଓ ଭାରତୀୟ ଏକତାକୁ ଭୂଲୁଣ୍ଠିତ କରିବାକୁ ଉଦ୍ଦିଷ୍ଟ ଥିଲା । ଏହା ବିରୁଦ୍ଧରେ ଗାନ୍ଧୀ ସେପ୍ଟେମ୍ବର ୨୦,୧୯୩୨ରୁ ୟାରବେଡ଼ା ଜେଲରେ ଆମରଣ ଅନଶନ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଜୀବନ ରକ୍ଷାପାଇଁ ତାହା ସରକାର ଗ୍ରହଣ କରିନେଲେ ।

ହିନ୍ଦୁ ଓ ଦଳିତ ଶ୍ରେଣୀ ନେତୃବର୍ଗ ମିଶି ପୁନା ସନ୍ଧି କଲେ, ମହାତ୍ମାଗାନ୍ଧୀଙ୍କ ଜୀବନ ରକ୍ଷା ପାଇଁ ତାହା ସରକାର ଗ୍ରହଣ କରିନେଲେ । ଏହା ଫଳରେ ଗାନ୍ଧୀ ସେପ୍ଟେମ୍ବର ୨୬ରେ

ଅନଶନ ପ୍ରତ୍ୟାହାର କଲେ । ଗାନ୍ଧୀଙ୍କ ଅନଶନ ଓ ପୁନା ସନ୍ଧି ଦେଶରେ ଏବଂ ଓଡ଼ିଶାରେ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନକୁ ତେଜୀୟାନ କଲା ।

ଗୋପବନ୍ଧୁ ଚୌଧୁରୀ, ରମା ଦେବୀ ଏ ଆନ୍ଦୋଳନ ପ୍ରତି ସଂପୂର୍ଣ୍ଣ ସମର୍ପିତ ଥିଲେ । କଟକ ଓ ଖୋର୍ଦ୍ଧାର ଏକ ପ୍ରତିନିଧି ମଣ୍ଡଳୀ ଗଜପତି ମହାରାଜାଙ୍କ ପାଖକୁ ଯାଇ ହରିଜନମାନଙ୍କ ଜଗନ୍ନାଥ ମନ୍ଦିର ପ୍ରବେଶ ଅଧିକାର ମାଗିଲେ । ପୁରୀର ମହନ୍ତ ବଡ଼ଲାଟଙ୍କୁ ଏ ଆନ୍ଦୋଳନକୁ ନିନ୍ଦା କରି ଏକ ସ୍ମାରକପତ୍ର ଦେଲେ । ଗାନ୍ଧୀ ତାଙ୍କ ପୁରୀ ଗସ୍ତ ବେଳେ ହରିଜନମାନଙ୍କୁ ଅଧିକାର ଦିଆ ଯାଇ ନଥିବାରୁ ନିଜେ ମନ୍ଦିର ପ୍ରବେଶ କଲେ ନାହିଁ । ସନାତନପନ୍ଥୀମାନେ ତାଙ୍କ ଯାତ୍ରାରେ ବିରୋଧ କରି କଳାପତାକା ପ୍ରଦର୍ଶନ କଲେ ।

ଲକ୍ଷ୍ମୀନାରାୟଣ ହଜାରୀବାଗ ଜେଲରେ ଦୁଇ ବର୍ଷ କଟାଇ ଡିସେମ୍ବର ୧୯୩୪ରେ ଫେରିଲା ପରେ ଜିଲା କଂଗ୍ରେସ କମିଟି ପକ୍ଷରୁ ତାଙ୍କୁ ଗଠନାତ୍ମକ କାର୍ଯ୍ୟରେ ନିଯୁକ୍ତି କରାଗଲା ।

ସେ ହରିଜନ ବସ୍ତି ସଫେଇ, ହରିଜନ ଛାତ୍ର ସଂଗ୍ରହ, ସେମାନଙ୍କ ପାଇଁ କୂଅ ଖୋଳା, ବିଦ୍ୟାଳୟ ପ୍ରତିଷ୍ଠା ଆଦି କାମରେ ଲାଗିଲେ । ଝାରସୁଗୁଡ଼ାର ପଞ୍ଚପଡ଼ାଠାରେ ଏକ 'ହରିଜନ ନିବାସ'ର ଭିତ୍ତି ଦିଆଗଲା । ସମ୍ବଲପୁରଠାରେ ସେ ହରିଜନ ବିଦ୍ୟାଳୟ ଖୋଲିଲେ । ପ୍ରାଦେଶିକ ହରିଜନ ସଂଘ ୭୨୮ଟଙ୍କା ସାହାଯ୍ୟ ଦେଲା । ଏହା ହରିଜନମାନଙ୍କ ସାମାଜିକ ଓ ଶିକ୍ଷାର ସ୍ତରରେ ଉନ୍ନତି କରିବାକୁ ଉଦ୍ଦିଷ୍ଟ ଥିଲା । ଝାରସୁଗୁଡ଼ାର ପଣ୍ଡୁପଥରଠାରେ ଏକ ହରିଜନ ମନ୍ଦିର ନିର୍ମାଣ କରାଗଲା । ଏହର ଉଦ୍‌ଘାଟନ ଉତ୍ସବରେ ଲକ୍ଷ୍ମୀନାରାୟଣ ଓ ବୋଧରାମ ଦୁବେ ଉପସ୍ଥିତ ଥିଲେ । ସେଠାରେ ଜାତୀୟ ପତାକା ଉତ୍ତୋଳନ କରି ଜାତୀୟ ସଙ୍ଗୀତ ଗାନ କରାଯାଇଥିଲା ।

ଏ ଭିତରେ କଂଗ୍ରେସ ଓ ବ୍ରିଟିଶ ସରକାର ମଧ୍ୟରେ ଏକ ରାଜିନାମା ହେଲା । ଏହା ଫଳରେ ସରକାର ଭାରତ ସରକାର ଆଇନ - ୧୯୩୫ ପ୍ରଣୟନ କଲେ । ଭାରତୀୟମାନେ ନିଜ ନିଜ ରାଜ୍ୟରେ ନିର୍ବାଚନ ଲଢ଼ି ବିଧାନସଭାକୁ ଯିବାର ଅଧିକାର ପାଇଲେ । ଏହି ପ୍ରାଦେଶିକ ସ୍ୱୟଂଶାସନ ବଳରେ ସେମାନେ ମନ୍ତ୍ରୀମଣ୍ଡଳ ଗଠନ କରି ପ୍ରାଦେଶିକ ଶାସନ ଚଳାଇବା ଓ ବଡ଼ଲାଟଙ୍କ ଅଧୀନରେ ପ୍ରାଦେଶିକ ସରକାର ହାତରେ ସୀମିତ ଅଧିକାର ରହିବା ବ୍ୟବସ୍ଥା ପ୍ରଣୟନ କରାଗଲା । ପ୍ରଗତିଶୀଳ ଶକ୍ତି ଏହାକୁ ପୂର୍ଣ୍ଣ ସ୍ୱାଧୀନତା ଘୋଷଣାର ବିରୋଧ ବୋଲି ଆଗ୍ରାହ୍ୟ କଲେ ।

❏❏❏

# ଦ୍ୱିତୀୟ ବ୍ୟକ୍ତିଗତ ସତ୍ୟାଗ୍ରହ : ୧୯୪୦

୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଇଂରେଜ ସରକାର ପ୍ରଦେଶ ବା କେନ୍ଦ୍ରରେ ଲୋକପ୍ରତିନିଧିମାନଙ୍କ ସହ ବିନା ପରାମର୍ଶରେ ଭାରତ ପକ୍ଷରୁ ଯୁଦ୍ଧ ଘୋଷଣା କଲେ ।

ଯୁଦ୍ଧରେ ଭାରତର ଯୋଗଦାନ ପାଇଁ କଂଗ୍ରେସ ପକ୍ଷରୁ ଦୁଇଟି ସର୍ତ୍ତ ରଖାଗଲା :

- ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ସ୍ୱରୂପ ସଙ୍ଗେ ସଙ୍ଗେ ଏକ ଲୋକପ୍ରିୟ ସରକାର ପ୍ରତିଷ୍ଠା ।
- ଯୁଦ୍ଧ ପରେ ନୂତନ ସମ୍ବିଧାନ ପ୍ରବର୍ତ୍ତନ ଓ ପୂର୍ଣ୍ଣ ସ୍ୱାଧୀନତା ।

ସରକାର କଂଗ୍ରେସର ଏ ସର୍ତ୍ତକୁ ମାନିଲେ ନାହିଁ । କଂଗ୍ରେସ ସଦସ୍ୟମାନେ ସରକାରରୁ ଇସ୍ତଫା ଦେବାକୁ ସ୍ଥିର କଲେ । ସେହି ଅନୁସାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ନଭେମ୍ବର ୧୯୩୯ରେ ଇସ୍ତାଫା ପ୍ରଦାନ କଲେ । କଂଗ୍ରେସ ନେତାମାନେ ସଙ୍ଗଠନ କାର୍ଯ୍ୟରେ ଆତ୍ମନିୟୋଗ କରି ସରକାରଙ୍କ ଯୁଦ୍ଧନୀତି ବିରୁଦ୍ଧରେ ଆନ୍ଦୋଳନ ଚଳାଇଲେ ।

ସେହି ବର୍ଷ ଗାନ୍ଧୀଙ୍କ ପଟ୍ଟଶିଷ୍ୟ ଅମୃତଲାଲ ଠକ୍କର (ଠକ୍କର ବାପା) ଭାବନଗର ଗୁଜରାଟରୁ ଆସି ଝାରସୁଗୁଡ଼ାର ବୁରୋମାଲଠାରେ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଏହି ଆଶ୍ରମକୁ କେନ୍ଦ୍ର କରି ସମ୍ବଲପୁର କଂଗ୍ରେସ କର୍ମିମାନେ ଜିଲାର ଗ୍ରାମାଞ୍ଚଳରେ ନିଶା ନିବାରଣ ଓ କୁସଂସ୍କାର ଦୂରୀକରଣ କାର୍ଯ୍ୟକ୍ରମମାନ ଆଗେଇ ନେଇଥିଲେ । ଏହା ୧୯୪୦ ଯାଏଁ ଚାଲିଥିଲା ।

ସେହି ବର୍ଷ ମେ ୧୭ ତାରିଖ ଦିନ ବ୍ରଜରାଜନଗର ନିକଟସ୍ଥ ତେଲେନପାଲି ଗ୍ରାମରେ ଇବ୍ ନଦୀକୂଳ ଆମ୍ବତୋଟାରେ ଡ.ଶ୍ରଦ୍ଧାକାର ସୂପକାରଙ୍କ ଅଧ୍ୟକ୍ଷତାରେ ଏକ ବିରାଟ କୃଷକ ଓ କଂଗ୍ରେସ ସମ୍ମିଳନୀ ହୋଇଥିଲା ।

ତେଲେନପାଲିର ବଂଶୀଧର ଦାସ ଓ ଗଙ୍ଗାଦତ୍ତ ଦାଶ ଏଠି ପ୍ରାଥମିକ କଂଗ୍ରେସ କମିଟିର ସଭାପତି ଓ ସଂପାଦକ ରହିଥିଲେ । ୧୯୩୭ରେ ବ୍ରଜରାଜନଗର ତେଲେନପାଲିଠାରେ ବିରଲା ପକ୍ଷରୁ ଓରିଏଣ୍ଟ କାଗଜ କଳ ପ୍ରତିଷ୍ଠା ହେଲା ବେଳେ କାରଖାନା ସକାଶେ ଜମି ଅଧିଗ୍ରହଣବେଳେ ଗ୍ରାମବାସୀଙ୍କ ମଧ୍ୟରେ ପ୍ରବଳ ଅସନ୍ତୋଷ ସୃଷ୍ଟି ହୋଇଥିଲା । ଏହି ଅବସରରେ ସେଠାରେ କଂଗ୍ରେସର ଏକ ପ୍ରାଥମିକ କମିଟି ଗଠିତ ହୋଇଥିଲା ।

କମିଟି କାର୍ଯ୍ୟକ୍ରମ ପରଦର୍ଶନ ପାଇଁ ସମ୍ବଲପୁରର ଲିଙ୍ଗରାଜ ମେହେର, ଅନନ୍ତରାମ ବରିହା, ଦୟାନନ୍ଦ ସତପଥୀ, ଦୁର୍ଗାପ୍ରସାଦ ଗୁରୁ ପ୍ରମୁଖ ଯାଉଥିଲେ ।

କୃଷକ ସମ୍ମିଳନୀରେ ବିହାରୀରାମ ତନ୍ତୀ, ତାଙ୍କର ମାତା ତୁଳସୀ ଦେବୀ, ନୃସିଂହ ଗୁରୁ ପ୍ରମୁଖ ଯୋଗ ଦେଇଥିଲେ ।

ପ୍ରଦେଶ କଂଗ୍ରେସ କମିଟି ନିଷ୍ପତ୍ତି ଅନୁସାରେ ପ୍ରତି ଥାନାରେ ଗୋଟିଏ ଲେଖାଏଁ ସଭା ଆୟୋଜନ କରିବାକୁ ସ୍ଥିର ହୋଇଥିଲା । ସଭାରେ ମାଜିଷ୍ଟ୍ରେଟ ଓ ପୋଲିସ ଉପସ୍ଥିତ ଥିଲେ ।

୧୯୩୯ରେ ବିହାରୀରାମଙ୍କ ନେତୃତ୍ୱରେ ଝାରସୁଗୁଡ଼ାରେ ସେବାଦଳ ଗଠନ କରାଯାଇଥିଲା । କୁରୋମାଲ ଶ୍ମଶାନ ପ୍ରାନ୍ତରରେ କର୍ମୀମାନେ ଗୋପନ ବୈଠକ କରୁଥିଲେ ।

ବିହାରୀରାମ ତନ୍ତୀ ତେଲେନାପାଲିର ରାମଚଣ୍ଡୀ କୁବ ସମ୍ମୁଖରେ ବିଶ୍ୱଯୁଦ୍ଧ ବିରୋଧୀ ସତ୍ୟାଗ୍ରହ ଆରମ୍ଭ କରି ଗିରଫ ହୋଇଥିଲେ ।

ଝାରସୁଗୁଡ଼ାରେ ସତ୍ୟାଗ୍ରହ, ବିକ୍ଷୋଭ କରି ବହୁ କଂଗ୍ରେସ କର୍ମି ଜେଲବରଣ କରିଥିଲେ । ବିଶ୍ୱଯୁଦ୍ଧ ଯୋଗୁଁ ଝାରସୁଗୁଡ଼ାଠାରେ ଏକ ସାମରିକ ବିମାନଘାଟି ଓ ଛାଉଣି ପ୍ରତିଷ୍ଠା କରାଯାଇଥିଲା । ସରକାର ଏଥିପାଇଁ ଜମି ଅଧିଗ୍ରହଣ କରିବାରୁ ଚାଷୀ ଓ ଜମିମାଲିକମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦେବାକୁ ଦାବି କରି କଂଗ୍ରେସ ପକ୍ଷରୁ ପ୍ରବଳ ଆନ୍ଦୋଳନ ହୋଇଥିଲା । ସରକାର ଉପଯୁକ୍ତ କ୍ଷତିପୂରଣ ଦେବାକୁ ବାଧ୍ୟ ହୋଇଥିଲେ । ଉପେନ୍ଦ୍ର ଦୀକ୍ଷିତ ଏଥିରେ ମୁଖ୍ୟ ଭୂମିକା ନେଇଥିଲେ ।

୧୯୩୮-୩୯ ବେଳକୁ ବାମଣ୍ଡା, ବରଗଡ଼, ସମ୍ବଲପୁର ଅଞ୍ଚଳରେ ମଧ୍ୟ ଆଇନ ଅମାନ୍ୟ ଆନ୍ଦୋଳନ ତେଜିଥିଲା । ବାମଣ୍ଡାରୁ ଟିଙ୍କବୀରର ବୈଷ୍ଣବଚରଣ ନାୟକ, ବଳ ନାୟକ ଯଥାକ୍ରମେ ୩ ଓ ୪ ବର୍ଷ ଜେଲ ଭୋଗିଥିଲେ । ତାଳବାହାଲୀର ସହଦେବ ସାହୁ, କରଲଗାର କୀର୍ତ୍ତିକିଆ ବେହେରା, ନେତ୍ରାନନ୍ଦ ବେହେରା, ଗୋପାଳ ପ୍ରଧାନ, କୃଷ୍ଣଚନ୍ଦ୍ର ପ୍ରଧାନ, ପୁଡ଼ାପରାର ବିଦ୍ୟାଧର ସାହୁ, ବଳଭଦ୍ର ସାହୁ, ବୁଡ଼ାପାଳର କନ୍ଦର୍ପ ପ୍ରଧାନ, ସଂଘାପସିର ଶ୍ରୀଧର ଓ ଦିବାକର ବେହେରା, କାଦୋପଡ଼ାର ମହାଦେବ ପ୍ରଧାନ, ମେଦିନୀପୁରର ମାନଗୋବିନ୍ଦ ଦାସ ଆଦି ଗିରଫ ହୋଇ ତିନି ବର୍ଷ ଲେଖାଏଁ ଜେଲ ଦଣ୍ଡ ଭୋଗିଥିଲେ ।

୧୯୩୯ରେ ବ୍ରିଟିଶ ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ପ୍ରହଲ୍ଲାଦରାୟ ଲାଠ ବିଧାନସଭା ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ ।

ଆଇନ ଅମାନ୍ୟ କରି ପାଣିମୋରାର ଶ୍ୟାମସୁନ୍ଦର ସାହୁ, ଯଶୋବନ୍ତ ଭୋଇ, ରାଘବଚରଣ ପ୍ରଧାନ, ଶରଣ୍ଡାପାଲିର ରକ୍ଷୀ ସରାଫ, ଚମରୁ ପରିଡ଼ା, ଖରମୁଣ୍ଡାର ଧନୁର୍ଯ୍ୟ ପ୍ରଧାନ, ସୋହେଲାର ଚନ୍ଦ୍ର ଶେଖର ସାହୁ, ଗର୍ଭଣାର ଚୈତନ୍ୟ ସରାଫ, କନଗାଁର ଡମ୍ବରୁଧର ଦୁଆନ ପ୍ରମୁଖ ଗିରଫ ହୋଇ କାରାବାସୀ ହୋଇଥିଲେ ।

୧୯୪୦ରେ ମହାତ୍ମାଗାନ୍ଧୀ ରାମଗଡ଼ କଂଗ୍ରେସ ଅଧିବେଶନରେ ବ୍ୟକ୍ତିଗତ ସତ୍ୟାଗ୍ରହ ଘୋଷଣା କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଭିତରେ ମହାତ୍ମାଗାନ୍ଧୀଙ୍କ ଆନ୍ଦୋଳନ ଆହ୍ୱାନରେ ସମଗ୍ର ଦେଶ ଜାଗି ଉଠିଲା ।

ସ୍ଲୋଗାନ୍ ହେଲା - ''ଇସ୍ ଲଡ଼ାଇ ମେଁ ଅଂଗ୍ରେଜ୍ ସରକାର କୋ ନା ଏକ୍ ଭାଇ ଦେଙ୍ଗେ ନା ଏକ୍ ପାଇ ଦେଙ୍ଗେ ।'' ଆନ୍ଦୋଳନ ଚଳାଇବାକୁ ପ୍ରତ୍ୟେକ ରାଜ୍ୟରେ ଜଣେ ଜଣେ ଡିକ୍‌ଟେଟର ମନୋନୀତ ହେଲେ । ପ୍ରଥମ ସତ୍ୟାଗ୍ରହୀ ଭାବେ ବିନୋବା ଭାବେ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ମନୋନୀତ ହେଲେ ।

ପ୍ରାଣକୃଷ୍ଣ ପଡ଼ିଆରୀ ଏହାର ଓଡ଼ିଶା ନିର୍ଦ୍ଦେଶକ ଥିଲେ । ତାଙ୍କ ଅଧୀନରେ ଜିଲା ସ୍ତରରେ ମଧ୍ୟ ଡିକ୍‌ଟେଟର ମନୋନୀତ ହୋଇଥିଲେ । ଦୟାନନ୍ଦ ଶତପଥୀ ସମ୍ବଲପୁର ଜିଲାର ଡିକ୍‌ଟେଟର ମନୋନୀତ ହୋଇଥିଲେ ।

୧୯୪୦ ଡିସେମ୍ବର ୨ରେ ନନ୍ଦପଡ଼ାଠାରେ ସରକାର ବିରୋଧୀ ଧ୍ୱନି ଦେଇ ବୋଧରାମ ଦୁବେ ସମ୍ବଲପୁରରେ ବ୍ୟକ୍ତିଗତ ସତ୍ୟାଗ୍ରହ ଶୁଭାରମ୍ଭ କଲେ । ଏଥିପାଇଁ ତାଙ୍କୁ ଗିରଫ କରାଯାଇଥିଲା ଏବଂ ୯ ମାସ କାରାଦଣ୍ଡ ହୋଇଥିଲା । ସେତେବେଳେ ପ୍ରହଲ୍ଲାଦରାୟ ଲାଠ ସମ୍ବଲପୁରର ଜିଲା କଂଗ୍ରେସର ସଭାପତି ଥାନ୍ତି ।

ଦୟାନନ୍ଦ ଓ ନୃସିଂହ ଗୁରୁ ଏ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରି ବିଭିନ୍ନ ସ୍ଥାନରେ ପିକେଟିଂ, ଧର୍ମଘଟର ଆୟୋଜନ କରିଥିଲେ । ଦୟାନନ୍ଦଙ୍କୁ ଗିରଫ କରି ସମ୍ବଲପୁର, ବ୍ରହ୍ମପୁର, ଭାଗଲପୁର ଜେଲରେ ରଖାଯାଇଥିଲା । ମୁକ୍ତ ହେଲା ପରେ ତାଙ୍କୁ ବର୍ଷେ କାଳ ଗୃହବନ୍ଦୀ କରି ରଖାଯାଇଥିଲା ।

ଡିସେମ୍ବର ୩ରେ ଫକୀର ବେହେରା ବରଗଡ଼ରେ ସତ୍ୟାଗ୍ରହ କରି ଗିରଫ ହେଲେ । ତାଙ୍କୁ ୬ ମାସ କାରାବାସ ହେଲା । ସେ ସମ୍ବଲପୁର ଜେଲରେ ରହିଲେ । ପରେ ମଙ୍ଗଳୁ ପ୍ରଧାନ ଗିରଫ ହୋଇ ୩ମାସ ଜେଲ ସହ ୭୫ଟଙ୍କା ଜୋରିମାନ ଦଣ୍ଡ ପାଇଲେ । ପ୍ରହଲ୍ଲାଦ ଲାଠ ଗିରଫ ହୋଇ ୮ମାସ ଜେଲ ଭୋଗ କଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହ ସଙ୍ଗଠନ ପାଇଁ ଭାଗୀରଥି ସମ୍ବଲପୁର, ବୋଡ଼ାସମ୍ବର, ଜଗଦଳପୁର, ଖଡ଼ିଆଳ, ନୂଆପଡ଼ା,କଟାବାଂଜି, ବଲାଙ୍ଗୀର, କଳାହାଣ୍ଡିର ଗ୍ରାମେ ଗ୍ରାମେ ପଦବ୍ରଜରେ ଘୂରି ବୁଲୁଥାନ୍ତି ।

ଜାନୁୟାରୀ, ୧୯୪୦ରେ ବରଗଡ଼ଠାରେ ଗୋଟିଏ ବିରାଟ କୃଷକ ସମ୍ମିଳନୀ ହେଲା । ଢେଙ୍କାନାଳ ଗଡ଼ଜାତ ଆନ୍ଦୋଳନରେ ଶହୀଦ ବୀରଙ୍କ ସ୍ମୃତିଉଦ୍ଦେଶ୍ୟରେ ପାଣିମୋରାରେ ମାର୍ଚ୍ଚ ୧,୧୯୪୦ରେ ଶହୀଦ ଦିବସ ପାଳିତ ହେଲା । ଏଥିରେ ଲକ୍ଷ୍ମୀନାରାୟଣ ପୌରହିତ୍ୟ କରିଥିଲେ ।

ଏ ଭିତରେ ଜେଲରେ ସତ୍ୟାଗ୍ରହୀ ଦାଶରଥୀ ବେହେରା, ଡମ୍ବରୁଧରଙ୍କ ମୃତ୍ୟୁ ହୋଇଥିଲା ।

ବ୍ୟକ୍ତିଗତ ସତ୍ୟାଗ୍ରହରେ ଅଂଶଗ୍ରହଣ କରି ଘନଶ୍ୟାମ ପାଣିଗ୍ରାହୀ (ମାନପୁର), ଉପେନ୍ଦ୍ର ପାଣିଗ୍ରାହୀ (ବରଗାଁ), ବୈକୁଣ୍ଠନାଥ ପାଢ଼ୀ, ବିନାୟକ ପାଢ଼ୀ, ପଦ୍ମଲୋଚନ ବେହେରା, ବ୍ରଜରାଜ ସାହୁ, ଗଙ୍ଗାଧର ସରାଫ, ଭାଗୀରଥୀ ପଟ୍ଟନାୟକ,ମହେଶଚନ୍ଦ୍ର ସାହୁ, ଦାଶରଥୀ ମହାପାତ୍ର, ଧନଂଜୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ବିରଞ୍ଚିନାରାୟଣ ପ୍ରଧାନ, ବିଦ୍ୟସୁନ୍ଦର ସାହୁ, ଡମ୍ବରୁଧର ଦୁଆନ, ମହେଶ୍ୱର ସାହୁ, ପୁରୁଷୋତ୍ତମ ସାହୁ ପ୍ରମୁଖ ଜେଲ ବରଣ କରିଥିଲେ ।

୧୯୪୦ରୁ ଝାରସୁଗୁଡ଼ା ତଥା ନିକଟବର୍ତ୍ତୀ ଅନେକ ଗ୍ରାମାଞ୍ଚଳରେ କଂଗ୍ରେସ ପ୍ରତି ଅଭୂତପୂର୍ବ ଜନସମର୍ଥନ ଦେଖଯାଇଥିଲା । ମୁଙ୍ଗାପଡ଼ାର ବିହାରୀରାମ ତନ୍ତୀଙ୍କ ବାସଗୃହ କଂଗ୍ରେସର ମୁଖ୍ୟ କାର୍ଯ୍ୟାଳୟ ହୋଇସାରିଥିଲା ।

୧୯୪୦ରେ ଝାରସୁଗୁଡ଼ା ପୁରୁଣାବସ୍ତି ଅଞ୍ଚଳରେ କଂଗ୍ରେସର ଏକ ବିରାଟ ସଭା ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ, ବିଜୟଲକ୍ଷ୍ମୀ ପଣ୍ଡିତ, ଇନ୍ଦିରାଗାନ୍ଧୀ ପ୍ରମୁଖ ଏଥିରେ ଯୋଗଦାନ କରିଥିଲେ ।

ପଞ୍ଚପଡ଼ାର ଚିନ୍ତାମଣି ପୂଜାରୀଙ୍କ ବାସଗୃହ କଂଗ୍ରେସର ଏକ ଗୋପନ କାର୍ଯ୍ୟାଳୟରେ ପରିଣତ ହୋଇଥିଲ । ଡ.ମହତାବଙ୍କ ସମେତ ବହୁ ରାଜ୍ୟସ୍ତରୀୟ ନେତା ଆସି ସେଠାରେ ଆତ୍ମଗୋପନ କରୁଥିଲେ । ଚିନ୍ତାମଣିଙ୍କ ପତ୍ନୀ ସେମାନଙ୍କୁ ମାତୃସୁଲଭ ସେବା କରୁଥିଲେ ।

ପଞ୍ଚପଡ଼ାର ହାରାଧନ ପୂଜାରୀ, ମୁନୀ ଗୌଡ଼, ସୁଖରାମ ତନ୍ତୀ ପ୍ରମୁଖ ତାଙ୍କ ନେତୃତ୍ୱରେ ପଞ୍ଚପଡ଼ାର ଆମ୍ବତୋଟାରେ ଅନେକଥର ସଭା ଆୟୋଜନ କରିଥିଲେ ।

ପ୍ରଚାରପତ୍ର ବଣ୍ଟନ କରିବା ଏହି କର୍ମିମାନଙ୍କର ମୁଖ୍ୟ କାର୍ଯ୍ୟ ଥିଲା । ଅସ୍ପୃଶ୍ୟତା ନିବାରଣ ଓ ମନ୍ଦିରରେ ହରିଜନ ପ୍ରବେଶ ପାଇଁ ଲକ୍ଷ୍ମୀନାରାୟଣ, ଗଜେନ୍ଦ୍ର ଖଟେଇ, କମଳଲୋଚନ ଭୋଇ ପ୍ରମୁଖଙ୍କ ନେତୃତ୍ୱ ଥିଲା ଅନ୍ୟତମ ।

୧୯୪୦ରେ ଗୋପବନ୍ଧୁ ଚୌଧୁରୀ ତାଳପଟିଆ ଚରଖା ସଂଘ ପରିଦର୍ଶନ କରିଥିଲେ ଓ ବୁଦ୍ଧଦେବ ମହାନନ୍ଦଙ୍କ ଘରେ ଆତିଥ୍ୟ ଗ୍ରହଣ କରିଥିଲେ ।

ସମ୍ବଲପୁରଠାରେ ହୋଇଥିବା କଂଗ୍ରେସ ବିକ୍ଷୋଭରେ ଯୋଗ ଦେଇ ବୁଦ୍ଧଦେବ ଗିରଫ ହୋଇ ଏକ ମାସ ଜେଲ ଦଣ୍ଡ ଭୋଗିଥିଲେ । ନଇସୁଗୁଡ଼ାର ଜଗନ୍ ମଗର, ଚନ୍ଦରପୁରର ମକୁନ୍ଦ ତନ୍ତୀ, ପୂଜାରୀପାଲିର ଆର୍ତ୍ତତ୍ରାଣ ପୂଜାରୀ ମଧ୍ୟ ଜେଲ ବରଣ କରିଥିଲେ ।

ଝାରସୁଗୁଡ଼ାରେ ବିହାରୀରାମ ତନ୍ତୀ, ତାଙ୍କ ମାତା ତୁଳସୀ ଦେବୀ, ପତ୍ନୀ ହାରାମତୀ ଦେବୀ, କଷ୍ଟରାମ ତନ୍ତୀ, ଚନ୍ଦ୍ର ମହାନନ୍ଦ, ରାମଭରୋସେ ବିଭାର, ରଘୁରାମ ତନ୍ତୀ, ଦୈତାରୀ ତନ୍ତୀ, ଋଷଭ ମହାନନ୍ଦ, ଶୁକଦେବ ଶ୍ରୀଓ୍ୱାସ ପ୍ରମୁଖ କଂଗ୍ରେସ ସଙ୍ଗଠନ ସହ ଓତପ୍ରୋତଃ ଭାବରେ ଜଡ଼ିତ ରହିଥିଲେ । ସେହିପରି ସୁରେନ୍ ବନାର୍ଜୀ, ତିପୁପଡ଼ାର ମହାବୀର ପ୍ରସାଦ ସିଂହ, ବ୍ରିଜମଙ୍ଗଳ ସିଂହ, ମାଲିକରାମ ଯାଦବ କଂଗ୍ରେସ ଆନ୍ଦୋଳନର ମୁଖ୍ୟ ଭୂମିକା ନେଇଥିଲେ ।

ପୁରୁଣାବସ୍ତି ଅଞ୍ଚଳର ଲକ୍ଷ୍ମଣଜୀ କ୍ରିଷ୍ଟଜୀ, ଅର୍ଜୁନ ତ୍ରିପାଠୀ, ଶଙ୍କର ପ୍ରସାଦ ପାଣ୍ଡେ ଆଦି ପରୋକ୍ଷ ଭାବରେ ସଙ୍ଗଠନ ସହ ସାମିଲ ଥିଲେ ।

ରାଜକୋଟ (ଗୁଜରାତ) ପ୍ରଜା ଆନ୍ଦୋଳନର ଅନ୍ୟତମ ଜେଲଫେରନ୍ତା ନେତା ଭାନୁଶଙ୍କର ମୋହନଲାଲ ଯୋଷୀ ଗୁଜରାତୀ ପଡ଼ାରେ ଅବସ୍ଥାନ କରୁଥିଲେ । ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ୧୧ଜଣ ସଭ୍ୟଙ୍କ ମଧ୍ୟରେ ଥିଲେ ଅନ୍ୟତମ ।

ବିଭିନ୍ନ ସମୟରେ ଝାରସୁଗୁଡ଼ାକୁ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ସରଳା ଦେବୀ, ସାରଙ୍ଗଧର ଦାଶ, ପ୍ରାଣକୃଷ୍ଣ ପଢ଼ିଆରୀ, ବଳବନ୍ତରାୟ ମେହତା, ଅମୃତଲାଲ ଠକ୍‌କର, ମୀରା ବେନ୍, ଗାନ୍ଧୀଙ୍କ ସଚୀବ ମହାଦେବ ଦେଶାଇ, ସାଦିକ ଅଲି ଆଦି ଆସିଥିଲେ ।

ଭାନୁଶଙ୍କର ବାମଣ୍ଡାରେ ଦୟାନନ୍ଦ ଶତପଥୀ ଓ ରତ୍ନାକର ପଟେଲଙ୍କ ସହ ଆନ୍ଦୋଳନ କରି ଗିରଫ ହୋଇଥିଲେ । ହେଲେ ବାମଣ୍ଡା ରାଜା ଭାନୁଗଙ୍ଗ ଦେବଙ୍କ ଘନିଷ୍ଠ ହୋଇଥିବାରୁ ସେ ଛାଡ଼ ପାଇଥିଲେ । ତଥାପି ତାଙ୍କ ଉପରେ ପୁଲିସର ସତର୍କ ଦୃଷ୍ଟି ରହିଥିଲା ।

ତାଙ୍କର ଘର ଅନେକ ଥର ଖାନତଲାସ ହୋଇଥିଲା । ଜାନୁୟାରୀ ୧୮, ୧୯୪୧ରେ ସେ ଗିରଫ ହୋଇ ସମ୍ବଲପୁର ଜେଲକୁ ଆସିଥିଲେ । ଏ ଗିରଫଦାରୀ ଝାରସୁଗୁଡ଼ା ପୋଲିସ ହାତରେ ହୋଇଥିଲା ।

ବାମରାରେ ସତ୍ୟାଗ୍ରହ ଆନ୍ଦୋଳନ କରି ଝିର୍ଲାପାଲିର ରତ୍ନାକର ପଟେଲ, ଦୟାନନ୍ଦ ଏକାଧିକ ବାର ଜେଲ ଯାଇଥିଲେ । ଫଟାପାଲିର ମହେଶ୍ୱର ସାହୁ, ଟିଙ୍କବୀରର ଦାଶରଥୀ ମହାପାତ୍ର ଜେଲ ଯାଇଥିଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହ ବା ଆଇନ ଅମାନ୍ୟ ଆନ୍ଦୋଳନ, ଭାରତଛାଡ଼ ଆନ୍ଦୋଳନ ପାଇଁ ବ୍ୟାପକ ଭିତ୍ତିଭୂମି ପ୍ରସ୍ତୁତ କରି ଦେଇଥିଲା । ଅବିଭକ୍ତ ସମ୍ବଲପୁରର ଭୂମିକା ଏହି ଆନ୍ଦୋଳନରେ ଥିଲା ଗୌରବୋଜ୍ଜ୍ୱଳ ।

ଉଲ୍ଲେଖଯୋଗ୍ୟ ଯେ ୧୯୪୧ରେ ତାଳଚେ଼ରଠାରେ ଏକ ବ୍ରିଟିଶ ବିରୋଧୀ ସଭାରେ ଯୋଗ ଦେଇ ଗଡ଼ଜାତ ଆନ୍ଦୋଳନର ପୁରୋଧା ପବିତ୍ର ମୋହନ ପ୍ରଧାନଙ୍କ ସହ ରେମଣ୍ଡାର ମଙ୍ଗଲୁ ପ୍ରଧାନ ଓ କୁଲୁଣ୍ଡାର ହୃଷିକେଶ ନାୟକ ଗିରଫ ହୋଇଥିଲେ ।

କନସିଂହାଠାରେ ସଭା, ଶୋଭାଯାତ୍ରା କରି ଫକୀର ବେହେରା, ମଙ୍ଗଲୁ ପ୍ରଧାନ, ଯୋଖିପାଲିର ଓକିଲ ରାଜେନ୍ଦ୍ର ପଣ୍ଡା, ବୀରଜାମ୍ବ୍ରର ଗୌନ୍ତିଆ ଖଗେଶ୍ୱର ପାତ୍ର, ଧନଞ୍ଜୟ ମିଶ୍ର, ହୃଷିକେଶ ନାୟକ ଓ ଅନ୍ୟମାନେ ମେଲଛାମୁଣ୍ଡା ପୋଲିସ ହାତରେ ଗିରଫ ହୋଇଥିଲେ ।

ଜଟଲାଶ୍ରୀଗିଡ଼ାରେ ସଭା କରି ସୋହେଲା ପୋଲିସ ହାତରେ ଫକୀର ବେହେରା, ହୃଷିକେଶ ନାୟକ, ଗଙ୍ଗାଧର ସରାଫ, ମଙ୍ଗଲୁ ପ୍ରଧାନ, ଯୋଗେନ୍ଦ୍ର ଦୋରା ଗିରଫ ହୋଇଥିଲେ ।

ସଂଗ୍ରାମୀମାନେ ବାଲିଚିକ୍ରାରେ ଫକୀର ବେହେରାଙ୍କ ଘରେ ଏକ ଗୁପ୍ତ ସଭାକରି ବରଗଡ଼ ଡାକବଙ୍ଗଳା ପୋଡ଼ିବାକୁ ମନ୍ତ୍ରଣା କରି ଡାକବଙ୍ଗଳା ଆଖପାଖରେ ପେଟ୍ରୋଲ, କିରୋସିନି ମହଜୁଦ କରି ରଖିଥିଲେ ।

ମାତ୍ର ବରଗଡ଼ ପୋଲିସ ଏ ଖବର ପାଇ ଫକୀର ବେହେରାଙ୍କ ଘର ଘେରାଉ କରି ହୃଷିକେଶ ନାୟକ, ମଙ୍ଗଲୁ ପ୍ରଧାନ, ଫକୀର ବେହେରା, ରାଜେନ୍ଦ୍ର ପଣ୍ଡାଙ୍କୁ ଗିରଫ କରିଥିଲେ । ଦୀନବନ୍ଧୁ ବେହେରା ଗୁପ୍ତ କାଗଜପତ୍ର ପୋଡ଼ି ଦେଇଥିଲେ । କୃତାର୍ଥ ଆଚାର୍ଯ୍ୟ ଖସି ପଳାଇବାରେ ସଫଳ ହୋଇଥିଲେ ।

ସମ୍ବଲପୁର ଜେଲରେ ସେତେବେଳେ 'ବି' ଓ 'ସି' ଶ୍ରେଣୀ ରହିଥିଲା । 'ବି' ଶ୍ରେଣୀ ଜେଲରେ ଲକ୍ଷ୍ମୀନାରାୟଣ, ଦୟାନନ୍ଦ, ଫକୀର ବେହେରା, ଗଜେନ୍ଦ୍ର ପଣ୍ଡା, ନରସିଂହ ଗୁରୁ ଆଦି ନେତୃସ୍ଥାନୀୟ ସଂଗ୍ରାମୀମାନଙ୍କୁ ରଖାଯାଇଥିଲା । 'ସି' ଶ୍ରେଣୀରେ ଚମରୁ ପରିଡ଼ା ସମେତ ବିଜେପୁରର ୩୨ଜଣ; ରାମଚନ୍ଦ୍ର ପୁରୀଙ୍କ ସହ ସମଲେଇ ପଦରର ୭ଜଣ, ଯୁଧିଷ୍ଠିର, ରାଧେଶ୍ୟାମ ମେହେରଙ୍କ ସହ ସମ୍ବଲପୁରର ୬ଜଣ, କମଗାଁର ବିରଂଚି ପ୍ରଧାନ, ଗୁଡ଼େଶିରାର କୁଂଜବିହାରୀ ଦାସ, ମାୟାଧର ପୁରୀଙ୍କ ସହ ପଦ୍ମପୁର ଅଞ୍ଚଳର ୬ଜଣ, ନୂଆପଡ଼ା, ଖରିଆର, କୁମନା ଅଞ୍ଚଳର ସଂଗ୍ରାମୀ ଜଟାଶଙ୍କର ଶର୍ମା, କେଜୁ ବାବା, ରାମଲାଲ ପ୍ରମୁଖ ୭୮ ଜଣଙ୍କୁ ଗୋଟିଏ କୋଠରୀରେ ରଖାଯାଇଥିଲା । ଅନ୍ୟ କୋଠରୀରେ ମଙ୍ଗଲୁ ପ୍ରଧାନ, ଲକ୍ଷ୍ମଣ ଜାୟସୱାଲ, ଯୋଗେନ୍ଦ୍ର ଦୋରା, ଅନିରୁଦ୍ଧ ସାହୁ, ହନୁମନ୍ତ ସାହୁ, ବାବାଜୀ ମେହେର, ଭୀମସେନ ମେହେର, ଭୀମ ସାହୁ, ଦ୍ୱାରିକା ମହାପାତ୍ର, ରାମଚନ୍ଦ୍ର ନନ୍ଦ, ମହେଶ୍ୱର ନାୟକ ଓ ହୃଷିକେଶ ନାୟକଙ୍କୁ ରଖା ଯାଇଥିଲା ।

ମହିଳାମାନଙ୍କ ପାଇଁ ଥିବା ସ୍ୱତନ୍ତ୍ର କୋଠରୀରେ ପାର୍ବତୀ ଗିରି, ପ୍ରଭାବତୀ ଦେବୀ ଆଦି ରହିଥିଲେ ।

ଜେଲର ନିୟମ ଉଲ୍ଲଙ୍ଘନ କରି ପାଣିମୋରର ଚମରୁ ପରିଡ଼ା ଓ ରେମଣ୍ଡାର ବାଳୀବୀର ସାହୁ ସେଲ୍ ଦଣ୍ଡ ଭୋଗ କରିଥିଲେ । ସେମାନଙ୍କ ହାତରେ କଡ଼ି ଓ ଗୋଡ଼ରେ ବେଡ଼ି ରହିଥିଲା ।

❑❑❑

# ଭାରତଛାଡ଼ ଆନ୍ଦୋଳନ

୧୯୪୨ ମସିହା ଭାରତରେ ସ୍ୱାଧୀନତା ଆନ୍ଦୋଳନର ଚରମ ପର୍ଯ୍ୟାୟ । ଦ୍ୱିତୀୟ ବିଶ୍ୱ ମହାସମରର ନିଆଁରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡ ଜଳୁଥାଏ । ହିଟଲରର ଫାସିଷ୍ଟ ଓ ନାଜୀ ବାହିନୀ ଇଉରୋପରେ ଆତଙ୍କ ଖେଳାଇ ଦେଉଥାଏ । ପ୍ରଗତିଶୀଳ ଶକ୍ତି ସେମାନଙ୍କ ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥାନ୍ତି । ସାମ୍ରାଜ୍ୟବାଦୀ ଜାପାନ ବ୍ରିଟିଶ ଭାରତ ଉପରେ ଆକ୍ରମଣ କରି କଲିକତାର ପାର୍ଲହାର୍ବର ବନ୍ଦରକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା । ଫେବୃଆରୀ ୧୫ରେ ସିଙ୍ଗାପୁର ଦଖଲ କରିନେଲା ।

ଏହା ବିରୁଦ୍ଧରେ ବାମପନ୍ଥୀ ଦଳ, ଛାତ୍ର, ଯୁବକମାନଙ୍କର ଦେଶବ୍ୟାପୀ ପ୍ରତିବାଦ ଆନ୍ଦୋଳନର ଲହର ଉଠିଲା । ଭାରତୀୟ ଜାତୀୟ କଂଗ୍ରେସ ଯୁଦ୍ଧକୁ ସମର୍ଥନ କଲା ନାହିଁ । ଜନସାଧାରଣଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ଦେଖାଦେଲା ।

ମାର୍ଚ୍ଚ ୪୨ରେ ଷ୍ଟେଫର୍ଡ କ୍ରିପ୍‌ସଙ୍କ ମିଶନ ବିଫଳ ହେଲା । ଜୁଲାଇ ୧୪ ତାରିଖ ଦିନ ଏ ଘଡିସନ୍ଧି କାଳରେ ୱାର୍ଧାରେ କଂଗ୍ରେସର ଜରୁରୀକାଳୀନ କାର୍ଯ୍ୟକାରିଣୀ ବୈଠକ ବସିଲା । ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେଲା । ଅଗଷ୍ଟ ୮, ୧୯୪୨ରେ ବମ୍ବେର ଗ୍ୱାଲିଅର ଟେଙ୍କ ପଡ଼ିଆରେ କଂଗ୍ରେସର ଖୋଲା ଅଧିବେଶନ ବସିଲା ।

ଏହି ଅଧିବେଶନରେ ଓଡ଼ିଶାର ୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ପ୍ରତିନିଧି ମଣ୍ଡଳୀରେ ସମ୍ବଲପୁରର ଲକ୍ଷ୍ମୀନାରାୟଣ ମିଶ୍ର ଓ ପ୍ରହଲ୍ଲାଦରାୟ ଲାଠ ରହିଥିଲେ ।

ଗାନ୍ଧୀଜୀ ଡାକରା ଦେଲେ-'ଇଂରେଜମାନେ ଭାରତଛାଡ଼ । କର୍ମୀମାନେ ଶେଷ ସଂଗ୍ରାମ କର ବା ମର ।'

ଆନ୍ଦୋଳନ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ଅଗଷ୍ଟ ୯ ତାରିଖ ଦିନ ଗାନ୍ଧୀଜୀ ଓ କଂଗ୍ରେସ କାର୍ଯ୍ୟକାରିଣୀ ପରିଷଦର ସମସ୍ତ ସଭ୍ୟମାନଙ୍କୁ ଗିରଫ କରି ନିଆଗଲା ।

ଗାନ୍ଧୀଜୀ ତାଙ୍କ ସେକ୍ରେଟାରୀ ପ୍ୟାରେଲାଲଙ୍କ ହାତରେ ଜେଲ ଭିତରୁ ସରକାରଙ୍କୁ ସଂପୂର୍ଣ୍ଣ ଅଚଳ କରିଦେବାର ସନ୍ଦେଶ ଦେଲେ । ବିପ୍ଳବକୁ ଗାଁ-ଗାଁରେ ପହଞ୍ଚାଇ ପୋଲିସ ହାତରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଇ ଗୁପ୍ତ ଓ ନିରାପଦ ଜାଗାରେ ଲୁଚାଇ ରଖିବାର ନିର୍ଦ୍ଦେଶ ଦେଲେ । ରେଳ, ଡାକ ଓ ତାର ସଂପର୍କ ବିଚ୍ଛିନ୍ନ କରି ସରକାରକୁ ପଙ୍ଗୁ କରିଦେବାର ନିର୍ଦ୍ଦେଶ ଦିଆଗଲା ।

ସଂଗ୍ରାମୀମାନେ ସରକାରକୁ ଅଚଳ କରିଦେଲେ । ଶାସନ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଲା । ବ୍ରିଟିଶ ସରକାର ଭାରତର ଦେଶୀୟ ସେନାବାହିନୀ ଉପରେ ବିଶ୍ୱାସ ନରଖି ଆମେରିକାନ ବାହିନୀର ସାହାଯ୍ୟ ଲୋଡ଼ିଲେ । ମିତ୍ରଶକ୍ତିର ଅବସ୍ଥା ସଙ୍କଟଜନକ ହୋଇ ପଡ଼ିଲା ।

ଜାପାନ ଯେ କୌଣସି ମୁହୂର୍ତ୍ତରେ ଓଡ଼ିଶାର ପୂର୍ବ ଉପକୂଳ ଅଞ୍ଚଳ ଅଧିକାର କରି ନେବାର ଆଶଙ୍କା କରି ଅନେକ ସରକାରୀ କାର୍ଯ୍ୟାଳୟ କଟକରୁ ସମ୍ବଲପୁରକୁ ସ୍ଥାନାନ୍ତରିତ କରି ଦିଆଗଲା ।

ବମ୍ବେ ଅଧିବେଶନରୁ ଫେରିଲା ବେଳେ ଲକ୍ଷ୍ମୀନାରାୟଣଙ୍କୁ ଝାରସୁଗୁଡ଼ାଠାରେ ଗିରଫ କରାଗଲା । ଏହାର ପ୍ରତିବାଦରେ ସମ୍ବଲପୁର ଓ ଝାରସୁଗୁଡ଼ାରେ ଘନଘନ ବନ୍ଦ ପାଳନ କରାଗଲା । ସରକାର ଅନନ୍ୟୋପାୟ ହୋଇ ତାଙ୍କୁ ୧୯୪୪ରେ ମୁକ୍ତ କରିଦେଲେ ।

ଏହି ଅଗଷ୍ଟ ଆନ୍ଦୋଳନ ଆରମ୍ଭର ଅବ୍ୟବହିତ ପୂର୍ବରୁ କଂଗ୍ରେସ ନେତାମାନଙ୍କୁ ଦେଶବ୍ୟାପୀ ଗିରଫ କରାଯିବା ସହ କଂଗ୍ରେସ ଅନୁଷ୍ଠାନଗୁଡ଼ିକ ବେଆଇନ ଘୋଷଣା କରାଗଲା । ସାଧାରଣ ଲୋକେ ବିନାନେତାରେ ନିଜେ ନିଜର ନେତୃତ୍ୱ ନେଇ ଅନେକ ସରକାରୀ କାର୍ଯ୍ୟାଳୟ, ଘର ପୋଡ଼ି ଦେଲେ, ସାମରିକ ଗମନାଗମନ ବିଚ୍ଛିନ୍ନ କରିବାକୁ ପୋଲମାନ ଭାଙ୍ଗିଦେଲେ, ସରକାରୀ ସଂପତ୍ତି, କାଗଜପତ୍ର ନଷ୍ଟ ହେଲା । ଅନେକ ସ୍ଥାନରେ ଏ ଆନ୍ଦୋଳନ ହିଂସାତ୍ମକ ରୂପ ନେଲା ।

ଜମ୍ବୁବତୀ ବିହାରର ଦୁମକାରେ, ଭାଗୀରଥି ବରଗଡ଼ରେ ଭାରତରକ୍ଷା ଆଇନରେ ଗିରଫ ହେଲେ । ହରତାଲ ସାଙ୍ଗକୁ ଛାତ୍ରମାନେ ସମ୍ବଲପୁର, ଝାରସୁଗୁଡ଼ାରେ ବିକ୍ଷୋଭ ପ୍ରଦର୍ଶନ କଲେ ।

ସମ୍ବଲପୁରରେ ନୃସିଂହ ଗୁରୁ, ଦୟାନନ୍ଦ ଶତପଥୀ, ଦୁର୍ଗାପ୍ରସାଦ ଗୁରୁ, ରାମରକ୍ଷା ଶୁକ୍ଳ, ବୋଧରାମ ଦୁବେ, ପ୍ରହଲ୍ଲାଦରାୟ ଲାଠ ଗିରଫ ହୋଇଥିଲେ ।

ସମ୍ବଲପୁରର ଡିକ୍‌ଟେଟର ଦୟାନନ୍ଦଙ୍କର ଦ୍ୱାରା ଗୁପ୍ତ ଭାବରେ ଆନ୍ଦୋଳନ ପରିଚାଳିତ ହେଉଥିଲା । ସେ ଗିରଫ ହୋଇଯିବା ପରେ ଶିବନାରାୟଣ ପାଢ଼ୀ କାର୍ଯ୍ୟାଳୟରେ ରହି ଆନ୍ଦୋଳନ ପରିଚାଳନା କରୁଥିଲେ । ଏହି ସମ୍ବଲପୁର କାର୍ଯ୍ୟାଳୟରେ ତାଙ୍କୁ ଦୁର୍ଗା ନାଏକ ସାହାଯ୍ୟ କରୁଥିଲେ । ସମଗ୍ର ଜିଲାରେ ଅସହଯୋଗ ଓ ଭାରତଛାଡ଼ ଆନ୍ଦୋଳନର ନିଆଁ ଜଳୁଥିଲା । ଛାତ୍ରମାନେ ମଧ୍ୟ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରି ବିକ୍ଷୋଭ, ଧର୍ମଘଟ କରୁଥିଲେ ।

ବିଶିଷ୍ଟ ନେତା ଭୈରବଚନ୍ଦ୍ର ମହାନ୍ତି ଏହି ସମୟରେ କିଛିଦିନ ସମ୍ବଲପୁରରେ ଆତ୍ମଗୋପନ କରି ରହିଥିଲେ । ଆନ୍ଦୋଳନକୁ ସାହାଯ୍ୟ କରୁଥିବାରୁ କାନ୍ତାରାମ ପୁରୋହିତ, ଲକ୍ଷ୍ମୀନାରାୟଣ ବାବୁ ଗିରଫ ହୋଇଥିଲେ । ଏମାନେ ପ୍ରତ୍ୟକ୍ଷ ଭାବରେ ଆନ୍ଦୋଳନରେ ନ ରହି ଗୁପ୍ତଭାବରେ ସାହାଯ୍ୟ ସହଯୋଗ କରୁଥିଲେ । ବିଶିଷ୍ଟ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଡାଏରୀରୁ ଏମାନଙ୍କ ନାଁ ପାଇ ପୋଲିସ ଗିରଫ କରିଥିଲେ । ସେତେବେଳେ ରେଭେନ୍‌ସା କଲେଜ, କଟକର ପଢୁଥିବା ବିଷ୍ଣୁପ୍ରସାଦ ମିଶ୍ରଙ୍କୁ ମଧ୍ୟ ଗିରଫ କରାଯାଇଥିଲା ।

ସମ୍ବଲପୁର ଟ୍ରେଜେରୀ ଓ କୋର୍ଟ ସମ୍ମୁଖରେ ପିକେଟିଂ କରି ଆନନ୍ଦଚନ୍ଦ୍ର ମେହେର ୧ ବର୍ଷ କାରାଦଣ୍ଡ ଭୋଗିବା ସହ ୫୦ ଟଙ୍କା ଜୋରିମାନ ଦେଇଥିଲେ । ଯୁଧିଷ୍ଠିର ମେହେର, ରାଧେଶ୍ୟାମ ମେହେର, ପ୍ରେମାନନ୍ଦ ମେହେର, ବରଗଡ଼ର ପବିତ୍ର ଦାଶ ପ୍ରମୁଖ ଗିରଫ ହୋଇଥିଲେ । ପବିତ୍ର ଦାସଙ୍କୁ ଅଗଷ୍ଟ ୨୧, ୧୯୪୨ଦିନ ତତ୍‌କାଳୀନ ମାଜିଷ୍ଟ୍ରେଟ ୧ ବର୍ଷ ଜେଲଦଣ୍ଡ ସାଙ୍ଗକୁ ୫୦ଟଙ୍କା ଜୋରିମାନ ଆଦେଶ ଦେଇଥିଲେ । ଜୋରିମାନା ନ ଦେବାରୁ ସେ ଅଧିକ ୩ମାସ ଜେଲ ଦଣ୍ଡ ଭୋଗ କରିଥିଲେ । ଏହା ସତ୍ତ୍ୱେ ବ୍ରିଟିଶ ସରକାର ତାଙ୍କ ଘରଜବ୍ତି କରି ଜୋରିମାନା ଅସୁଲ କରିଥିଲେ ।

ପୋଡ଼ାବଳଣ୍ଡା ରେଢ଼ାଖୋଲର ପରମେଶ୍ୱର ପ୍ରଧାନ, ଚେରୁଆପଡ଼ା (ସମ୍ବଲପୁର)ର ହରିଜନ ଛାତ୍ରବାସ ଦାୟିତ୍ୱରେ ଥିଲେ । ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ, ବୁଢ଼ାରଜାପାହାଡ଼ ମନ୍ଦିରରେ ସଭା ଆଦି କରି ସେ ସ୍କୁଲ ବର୍ଜନ କରିଥିଲେ ।

ଗୁରୁପାଲିର ଦୁର୍ଗାପ୍ରସାଦ ଗୁରୁ, ରାମରକ୍ଷା ଶୁକ୍ଳ ଓ ଦୟାନନ୍ଦ ଶତପଥୀଙ୍କ ନାମରେ ଭାରତରକ୍ଷା ଆଇନରେ ପୋଲିସ ଏକ ମିଥ୍ୟା ମକଦ୍ଦମା କରିଥିଲେ । ଫଳରେ ସେମାନଙ୍କୁ କାରାବରଣ କରିବାକୁ ହୋଇଥିଲା । ପରେ ସେମାନେ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ ମଧ୍ୟ ପୁଣି ସେମାନଙ୍କୁ ଅଟକବନ୍ଦୀ ରୂପେ ଗିରଫ କରାଯାଇଥିଲା ।

କୁଦ୍ ଜାମପାଲିର ରାଧାଶ୍ୟାମ ପାଢ଼ୀ ମାହାତ୍ମାଗାନ୍ଧୀଙ୍କ ଡାକରାରେ ଉଦ୍‌ବୁଦ୍ଧ ହୋଇ ସ୍କୁଲଶିକ୍ଷା ବର୍ଜନ କରି ୧୯୩୬ରୁ ନିଜକୁ ସ୍ୱାଧୀନତା ସଂଗ୍ରାମରେ ସମର୍ପିତ କରିଥିଲେ । ସ୍ୱଦେଶୀ ଆନ୍ଦୋଳନର ଜଣେ ମୁଖ୍ୟ ପ୍ରଚାରକ ଭାବରେ ତାଙ୍କୁ ଓ ତାଙ୍କ ପାଇଁ ତାଙ୍କ ପରିବାର ବର୍ଗଙ୍କୁ ଅନେକ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥିଲା ।

କେବଳ ସେ ନୁହନ୍ତି ପ୍ରତ୍ୟେକ ସଂଗ୍ରାମୀମାନଙ୍କ ପରିବାରର ଏ ଏକ ସାଧାରଣ ନିୟତି ଥିଲା । ସେମାନେ ପ୍ରତ୍ୟକ୍ଷ ସଂଗ୍ରାମରେ ଝାସ ଦେଇ ନ ଥିଲେ ମଧ୍ୟ ସଂଗ୍ରାମୀମାନଙ୍କଠୁ ବେଶୀ ନିର୍ଯ୍ୟାତନା ଭୋଗ କରିଛନ୍ତି ।

ଦୁର୍ଗାଗୁରୁଙ୍କୁ ଜାତୀୟ ପତାକା ଉତ୍ତୋଳନ ଅପରାଧରେ ଗିରଫ କରାଯାଇଥିଲା ।

୧୯୪୨ରେ ଲକ୍ଷ୍ମୀନାରାୟଣ ଏଲାହାବାଦ କଂଗ୍ରେସରେ ଯୋଗ ଦେଇଥିଲେ । ଏହା ପରେ ବିଭିନ୍ନ ସଭାସମିତିରେ କଂଗ୍ରେସ ପ୍ରଚାର କାର୍ଯ୍ୟକରି ସେ ଗିରଫ ହୋଇଥିଲେ । ତାଙ୍କ ଘର ଖାନତଲାସ ହୋଇ ବହୁ ଗୁପ୍ତକାଗଜପତ୍ର ଜବତ ହୋଇଥିଲା ।

ଏଲାହାବାଦ ଅଧିବେଶନରେ ତାଙ୍କ ଓ ଅନ୍ୟ କେତେଙ୍କ ଦାବିରେ ପାକିସ୍ଥାନ ଗଠନ ବିରୋଧରେ ରାଜଗୋପାଳ ଆଚାରୀଙ୍କ ପ୍ରସ୍ତାବ ଉପରେ ଆଲୋଚ଼ନା ହୋଇଥିଲା । ସେଠାରେ ସେ ନେହେରୁ ଓ ମୌଲାନା ଆଜାଦଙ୍କ ସହ ଝାରସୁଗୁଡ଼ା ମାଲିମୁଣ୍ଡାର ଜନସାଧାରଣଙ୍କ ଦୁଃଖଦୁର୍ଦ୍ଦଶା ଉପରେ ଗମ୍ଭୀର ଆଲୋଚ଼ନା କରିଥିଲେ । ଗ୍ରାମବାସୀଙ୍କୁ ସାମରିକ ବିମାନଘାଟୀ ପ୍ରତିଷ୍ଠାପାଇଁ ଉଚ୍ଛେଦ କରି ଦିଆଯାଇଥିଲା ।

ତାଙ୍କର ବାରମ୍ବାର ଦାବିଦାବା ଫଳରେ ଅବସ୍ଥା ଅନୁଧ୍ୟାନ କରିବାକୁ ଗାନ୍ଧୀ ମୀରା ବେନଙ୍କୁ ଝାରସୁଗୁଡ଼ା ପଠାଇଥିଲେ ।

୧୯୪୨ରେ ବିଜୟ କୁମାର ପାଣିଙ୍କ ନେତୃତ୍ୱରେ ଦଳେ ଉତ୍‌କ୍ଷିପ୍ତ କଂଗ୍ରେସ କର୍ମୀ ବିମାନଘାଟୀରେ ଅଗ୍ନିସଂଯୋଗ କରି ଦେଇଥିଲେ ବୋଲି ଜନଶ୍ରୁତି ରହିଛି ।

ଝାରସୁଗୁଡ଼ା ଅଞ୍ଚଳରେ ବିହାରୀରାମ ତନ୍ତୀ, ଦୟାନନ୍ଦ, ଶିବନାରାୟଣ ପାଢ଼ୀଙ୍କ ସହ ଗୁପ୍ତ ସଂପର୍କ ରଖି ପ୍ରବଳ ଆନ୍ଦୋଳନ ଚଳାଇଥିଲେ । ଝାରସୁଗୁଡ଼ାରେ ଲକ୍ଷ୍ମୀନାରାୟଣ ମିଶ୍ର, ଭାନୁଶଙ୍କର ଯୋଶୀ, ବିହାରୀରାମ, ପଞ୍ଚପଡ଼ାରେ ଚିନ୍ତାମଣୀ, ହାରାଚାନ୍ଦ ପୂଜାରୀ ପ୍ରମୁଖ ଗିରଫ ହୋଇଥିଲେ ।

ବିହାରୀରାମଙ୍କୁ ୬ମାସ ଜେଲଦଣ୍ଡ ଦେଇ ପାଟନା କେଂପ ଜେଲକୁ ପଠାଇ ଦିଆଗଲା । ପାଟନାରୁ ଫେରି ସେ ପୁରୀଠାରେ କଂଗ୍ରେସ ବାର୍ତ୍ତା ଗୀତ ଆକାରରେ ଗାଉଥିବାବେଳେ ଗିରଫ ହୋଇ ସାଥୀମାନଙ୍କ ସହ ପୁଣି ୬ମାସ ଜେଲ ଭୋଗିଲେ । ତାଙ୍କ ମାତା ତୁଳସୀ ଦେବୀ ମଧ୍ୟ ଜେଲ ଗଲେ ।

ଝାରସୁଗୁଡ଼ାରେ କଂଗ୍ରେସ ବିକ୍ଷୋଭରେ ଯୋଗ ଦେଇ ତାଳପଟିଆର ବୁଦ୍ଧଦେବ ମହାନନ୍ଦ ଗିରଫ ହେଲେ । ତାଙ୍କ ଘର ଖାନତଲାସ ଓ ଜିନିଷପତ୍ର ନିଲାମ ହୋଇଥିଲା । ତାଙ୍କୁ ତିନିମାସ ଜେଲ ହୋଇଥିଲା । ତାଙ୍କ ସହ ଝାରସୁଗୁଡ଼ାର ଚନ୍ଦ୍ର ମହାନନ୍ଦ, ରାମଭରୋସେ ବିଭାର ଆଦି ଜେଲ ଯାଇଥିଲେ । ବିଦେଶୀ ଦ୍ରବ୍ୟ ବର୍ଜନ, ଇଂରେଜ ସରକାରଙ୍କୁ ଟିକସ ଓ ବିଶ୍ୱଯୁଦ୍ଧ ପାଇଁ ଚାନ୍ଦା ନ ଦେବା ଲାଗି ସେ ଗ୍ରାମେ-ଗ୍ରାମେ ବୁଲି ପ୍ରଚାର ଚଳାଇଥିଲେ ।

ଅଗଷ୍ଟ ବିପ୍ଲବରେ ଝାରସୁଗୁଡ଼ା ହାଇସ୍କୁଲର ଛାତ୍ରମାନେ ଏକ ବିରାଟ ଶୋଭାଯାତ୍ରା କରି ସରକାର ଓ ଯୁଦ୍ଧବିରୋଧୀ ସ୍ଲୋଗାନ ଦେଇଥିଲେ । ଶୋଭାଯାତ୍ର ଉପରେ ପୋଲିସ କଠୋର ଦମନନୀତି ପ୍ରୟୋଗ କରିଥିଲା । ଛାତ୍ରନେତା ପି.ରାମାରାଓ, ଶୁକଦେବ ଶ୍ରୀଓ୍ୱାସ, ଚମନଲାଲ ଶ୍ରୀଓ୍ୱାସ ପ୍ରମୂଖ ଗିରଫ ହେଲେ ।

ଛାତ୍ରନେତା ଚମନଲାଲ ଝାରସୁଗୁଡ଼ା ପୋଷ୍ଟ ଅଫିସ ଓ ଥାନାରେ ଜାତୀୟ ପତାକା ଉତ୍ତୋଳନ କରି ଝଣ୍ଡାଚୀକ ଜନସଭାରେ ଅଗ୍ନିବର୍ଷି ଭାଷଣ ଦେଉଥିଲାବେଳେ ଥାନା ଅଧିକାରୀ ଗୋଳକ ବିହାରୀ ବଳୀୟାର ସିଂହଙ୍କ ଦ୍ୱାରା ଗିରଫ ହୋଇଥିଲେ ।

ଲଇକେରା, ରୁଚିକା, ପାଇକମାଲା, ଭଟଲିରେ ମଧ୍ୟ ଶହ-ଶହ ସତ୍ୟାଗ୍ରହୀ ଆନ୍ଦୋଳନ କରି ଗିରଫ ହୋଇଥିଲେ । ସମ୍ବଲପୁର, ବରଗଡ଼, ବରପାଲି, ରେମଣ୍ଡା, ମାନପୁର, ପାଣିମୋରା, ବାଲିଚିକିରା, ଟୁକୁର୍ଲା, କୁଲୁଣ୍ଡା, ସମଲେଇ ପଦର, ଭେଉଁରିଆ, ପଦ୍ମପୁର ଆଦିରେ ବିଦ୍ରୋହ ନିଆଁ ପ୍ରଜ୍ୱଳିତ ହୋଇଥିଲା ।

ଏଥିରେ ଘନଶ୍ୟାମ ପାଣିଗ୍ରାହୀ, ରାଜେନ୍ଦ୍ର ପ୍ରସାଦ ପଣ୍ଡା, ବିହାରୀରାମ, ଶୁକ ପ୍ରସାଦ, ମଙ୍ଗଳୁ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ଚମରୁ ପରଡ଼ିଆ, ଯଶୋବନ୍ତ ଭୋଇ, ମାୟାଧର ପୁରୋହିତ, ବିରଂଚି ପ୍ରଧାନ, ଆନନ୍ଦ ମେହେର, ପ୍ରେମାନନ୍ଦ ମେହେର, ରାଧେଶ୍ୟାମ ମେହେର, ପବିତ୍ର ଦାସ, ହୃଷିକେଶ ନାୟକ, ଦଣ୍ଡାବତୀ ଦେବୀ, ଫୁଲଶର ପ୍ରଧାନ, କୁବେର ଗିରି, ଲକ୍ଷ୍ମଣ ପୂଜାରୀ, ମୀନକେତନ ସରାଫ, ଦିବ୍ୟସୁନ୍ଦର ସାହୁ, ରାମଚନ୍ଦ୍ର ନନ୍ଦ, ଧନସିଂହ ପ୍ରଧାନ, ଦୟାନିଧି ନାୟକ, ଜୀତେନ୍ଦ୍ରୀୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ରାଘବଚନ୍ଦ୍ର ପ୍ରଧାନ, ଦିବାକର ମିଶ୍ର, ବୈରାଗୀ ରଣା, ଚୈତନ୍ୟ ସାହୁ, ବିଦ୍ୟାଧର ପ୍ରଧାନ, ଉଗ୍ରସେନ ବନଛୋର, ଡମ୍ବରୁଧର ଦୁଆନ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ସନ୍ତୋଷ ସ୍ୱାଇଁ, ମଙ୍ଗଳ ଗିରି, ଶ୍ରୀବସ୍ତ ନାଏକ, ଯୋଗେନ୍ଦ୍ର ଦୋରା, ଦେବାନନ୍ଦ ଗୁପ୍ତା, ଚନ୍ଦ୍ରଭାନୁ ପରଡିଆ, କୁଂଜବିହାରୀ ଦାସ, ବିଶ୍ୱେଶ୍ୱର ଦାସ, ତୀର୍ଥବାସୀ ପୁରୋହିତ, ଭୀମସେନ ସାହୁ, ଦ୍ୱାରିକାନାଥ ମହାପାତ୍ର, ବାବାଜୀ ମେହେର, ଅର୍ଜ୍ଜୁନ ଗୁପ୍ତା, ମଦନ ଭୁଏ, ହରିହର ଭୋଇ, ଦଶରଥ ନାୟକ, କଏରା ସାହୁ, ଚୈତନ୍ୟ ସରାଫ୍, ଧନୁ ସାହୁ, ପ୍ରଭାକର ପ୍ରଧାନ, ଗୋକୁଳ ନାୟକ, କହ୍ନେଇଲାଲ ସାହୁ, ଚନ୍ଦ୍ରଶେଖର ସାହୁ, ଧନେଶ୍ୱର ପ୍ରଧାନ, ଧନଂଜୟ ପ୍ରଧାନ ପ୍ରମୂଖ ଝାସ ଦେଇ କାରାବରଣ କରିଥିଲେ ।

ଭାନୁଶଙ୍କର ଯୋଶୀଙ୍କୁ ସହଜରେ ଗିରଫ କରାଯାଇ ପାରି ନଥିଲା । ତାଙ୍କ ଘର ଘେରାଉ କରି ମଧ୍ୟ ପୋଲିସ ତାଙ୍କୁ ଧରିବାରେ ସକ୍ଷମ ହୋଇ ନଥିଲା । ଅନନ୍ୟୋପାୟ ହୋଇ ତାଙ୍କୁ ଧରାଇ ଦେବା ପାଇଁ ୫୦୦ ଟଙ୍କା ପୁରସ୍କାର ଘୋଷଣା କରା ଯାଇଥିଲା ।

ଏହି ଆନ୍ଦୋଳନରେ ଗିରଫ ଅଗ୍ରଣୀ କର୍ମୀମାନେ ଥିଲେ- ଡାଲପଟିଆର କୈଦେଶ୍ୱର ତନ୍ତୀ, କଳବା ତନ୍ତୀ, ଟାଙ୍ଗରପାଲିର କଷ୍ଟରାମ ତନ୍ତୀ, ନଣ୍ଡସୁଗୁଡ଼ାର ଜଗନ ମଗର, ମଙ୍ଗସପୁରର ଦ୍ୱାରିକା କୁସୁମ, ଚନ୍ଦରପୁରର ମକୁନ୍ଦ ତନ୍ତୀ, ସିଆଳରମାର ମସଦ ତାଜବ, ଏମନ ବାଗ, ଭୋଲାନାଥ ପଟୁଆରୀ, କେଶବ ବଖରା, ଝିର୍ଲାପାଲିର ରତ୍ନାକର ପଟେଲ, ରଘୁନାଥ ପାଲିର ଅଯୋଧ୍ୟା ସରାଫ, ସାହାସପୁରର ସାଧୁଚରଣ ପଟ୍ଟନାୟକ, ଟେଲେନପାଲିର ବଂଶୀଧର ମିଶ୍ର, ଗଙ୍ଗାଦତ୍ତ ଦାସ, ରମେଶଚନ୍ଦ୍ର ପଣ୍ଡା, କୁମ୍ଭାରବନ୍ଧର ଦୀବନ୍ଧୁ ପଣ୍ଡା, ରଂପେଲାର ପୁରୁଷୋତ୍ତମ ପଣ୍ଡା, ପୁରନ୍ଦର ପଣ୍ଡା, ଡିଲିଆର ଟେକାରୁ ଭୋଇ, କମଳଲୋଚନ ପ୍ରଧାନ, ଲଖନପୁରର ଯୁଧିଷ୍ଠିର ପାଣିଗ୍ରାହୀ, ସାହାଜବାହାଲର ସତ୍ୟାନନ୍ଦ ପୂଜାରୀ, ନିତ୍ୟାନନ୍ଦ ପୂଜାରୀ, ପୃଥିରୀପାଲିର ଆର୍ତ୍ତତ୍ରାଣ ପୂଜାରୀ, ଫଟାପାଲିର ଦ୍ୱୈପାୟନ ଗୁପ୍ତ, ପୂର୍ଣ୍ଣଚନ୍ଦ୍ର ଗୁପ୍ତ, ଅର୍ଜୁନ ମୁଣ୍ଡ, ଚିନ୍ତାମଣି ଗୁପ୍ତ ଓ ଅନ୍ୟମାନେ ।

ବେଲପାହାଡ଼ରେ ଏହି ସମୟରେ ଏକ ବିରାଟ ଜନସଭା ହୋଇଥିଲା । ସେଥିରେ ମାଳତୀ ଚୌଧୁରୀ ଭାଷଣ ଦେଇଥିଲେ । ବଂଜାରୀରେ କଂଗ୍ରେସ ନେତା ମୋହନ ସିଂହଙ୍କୁ ଗିରଫ କରାଯାଇଥିଲା । ତାଙ୍କ ଘର ମଧ୍ୟ ଖାନତଲାସ କରାଯାଇଥିଲା ।

ବରଗଡ଼ କଂଗ୍ରେସ କାର୍ଯ୍ୟାଳୟ ଏତିକି ବେଳେ ଖାନତଲାସ କରାଯାଇଥିଲା । ବରଗଡ଼ର ଦଳେ ଯୁବକଙ୍କୁ ନେଇ କଂଗ୍ରେସ ପକ୍ଷରୁ ଏକ ଦେଶରକ୍ଷୀ ଦଳ ଗଢ଼ା ଯାଇଥିଲା । ସେମାନେ ନିୟମିତ ଭାବରେ ଡ୍ରିଲ, ବ୍ୟାୟାମ ଅଭ୍ୟାସ କରିବା ସହ ଲାଠି ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ବ୍ୟବହାରର ପ୍ରଶିକ୍ଷଣ ପାଇଲେ । ଏହି ଦଳର ନେତା ଓ ବ୍ୟାୟାମ ଶିକ୍ଷକଙ୍କୁ ଗିରଫ କରାଯାଇଥିଲା ।

ଏହି ଅଗଷ୍ଟ ବିପ୍ଳବରେ ବରଗଡ଼, ବରପାଲି, ରେମଣ୍ଡା, ମାନପୁର, ପାଣିମୋରା, ବାଲିଟିକରା, ଟୁକୁର୍ଲା, କୁଲୁଣ୍ଡା, ସମଲେଇପଦର, ଭେଉଁରିଆ, ପାଇକମାଲ, ପଦ୍ମପୁର ଆଦିର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଭାଗୀରଥି ପୋଲିସଠାରୁ ଲୁଚି ଲୁଚି ସତ୍ୟାଗ୍ରହୀମାନଙ୍କୁ ସଙ୍ଗଠିତ କରୁଥିଲେ । ଅଗଷ୍ଟ ବିପ୍ଳବକୁ ବ୍ୟାପକ କରିବାକୁ ସେ ଧମା, ସୋନପୁର,ବୌଦ ଗସ୍ତ କରିଥିଲେ । ପୋଲିସ ଓ୍ୱାରଣ୍ଟ ଧରି ତାଙ୍କ ପିଛା କରୁଥାଏ । ଶେଷରେ ଅଗଷ୍ଟ ୨୫ରେ ଗିରଫ ହେଲେ ଭାଗୀରଥି । ତାଙ୍କ ଜଣେ ପରିଚିତଙ୍କ ବିଶ୍ୱାସଘାତକତା ଯୋଗୁଁ ଏ ଗିରଫଦାରୀ ସମ୍ଭବ ହୋଇଥିଲା । ଜେଲରେ ଥିଲାବେଳେ ସୁଦୂର ଦୁମ୍‌କା (ବିହାର)ରେ ତାଙ୍କ ପତ୍ନୀ ଜମ୍ବୁବତୀଙ୍କ ବିୟୋଗ ଘଟିଥିଲା । ପୁଅ ପ୍ରଫୁଲ୍ଲ ୨୧ ବର୍ଷର ଜେଲଦଣ୍ଡ ପାଇ ଭାଗଲପୁର ଜେଲରେ । ଜେଲରୁ

ଫେରି ଭାଗୀରଥି ସରକାର ବିରୋଧୀ ଭାଷଣ ଦେଇ ପୁଣି ନଭେମ୍ବର ୮,୧୯୪୪ରୁ ମେ ୧୬,୧୯୪୫ ପର୍ଯ୍ୟନ୍ତ ସମ୍ବଲପୁର ଜେଲରେ ରହିଲେ ।

ବରଗଡ଼ ଥାନା ଘେରଉ କରି ୧୮ଜଣ କର୍ମୀ ଗିରଫ ହୋଇଥିଲେ । ଏ ସମୟରେ ଏସ.ଡି.ଓଙ୍କୁ ଆକ୍ରମଣ ମଧ୍ୟ ହୋଇଥିଲା ।

ରାମଚନ୍ଦ୍ର ପୁରୀ, ଦୈତାରୀ ଗିରି, ମଙ୍ଗଳଗିରି ଆଦିଙ୍କ ସହ ଭାରତଛାଡ଼ ଆନ୍ଦୋଳନ କରି ପାର୍ବତୀ ଗିରି ୧୬ବର୍ଷ ବୟସରେ ଜେଲ ଯାଇଥିଲେ । କୁମ୍ଭାରୀର ବସନ୍ତ କୁମାର ସାହୁ ରେଭେନ୍‌ସା ଇଷ୍ଟ ହଷ୍ଟେଲରେ ଥାଇ ଛାତ୍ର ଆନ୍ଦୋଳନରେ ଲକ୍ଷ୍ମୀନାରାୟଣ, ବାଙ୍କବିହାରୀ ଦାସ, ନିଶାମଣି ଖୁଣ୍ଟିଆ, ସୂରଜମଲ ଶାହା, ସୁରେନ୍ଦ୍ର ମହାନ୍ତିଙ୍କୁ ସହଯୋଗ କରି ଛାତ୍ରାବାସରୁ ତଡ଼ା ଖାଇଥିଲେ । ତାଙ୍କ ବିରୁଦ୍ଧରେ ୱାରେଣ୍ଟ ବାହାରିଥିଲା । ସେ ଆନ୍ଦୋଳନର ଗୁପ୍ତ କାଗଜପତ୍ର ଆଣି ଶିବନାରାୟଣ ପାଢ଼ୀଙ୍କୁ ଦେଇଥିଲେ ।

ଫକୀର ବେହେରା ୧୯୪୨ରେ ଅଟକବନ୍ଦୀ ରହି ଜେଲ ଭୋଗିଥିଲେ । ଗୁଡ଼େଶିରାର କୁଂଜବିହାରୀ ଶିକ୍ଷକତା ଛାଡ଼ି ଖଦଡ଼ ପିନ୍ଧି, ହାତରେ ପତାକା ଧରି ବରଗଡ଼ ବଜାରରେ ଗୀତ ଗାଇ ଗାଇ କଂଗ୍ରେସ ବାର୍ତ୍ତା ପ୍ରଚାର କରି ବିଶ୍ୱେଶ୍ୱର ଦାସଙ୍କ ସହ ଗିରଫ ହୋଇ ୬ମାସ ଜେଲଦଣ୍ଡ ଓ ୧୦୦ଟଙ୍କା ଜୋରିମାନ ଦିଅନ୍ତି । ଘନଶ୍ୟାମ ପାଣିଗ୍ରାହୀ ସେପ୍ଟେମ୍ବର ୩ ରୁ ମେ ୧୯,୧୯୪୪ ପର୍ଯ୍ୟନ୍ତ ଅଟକବନ୍ଦୀ ରହି ସୋନପୁର ଓ ବୌଦ୍ଧ ପ୍ରଜାମଣ୍ଡଳର ମୁଖ୍ୟ ପରାମର୍ଶଦାତା ଥିଲେ । ରେମଣ୍ଡାର ମଙ୍ଗଳୁ ପ୍ରଧାନ, ଯୋଗୀନ୍ଦ୍ର ଦୋରା, ମହେଶ୍ୱର ନାୟକ, ଲକ୍ଷ୍ମଣଲାଲ ଜାୟସୱାଲ, ରାମଚନ୍ଦ୍ର ନନ୍ଦ, ଭୀମସେନ ମେହେର, ବାଲୀବୀର ସାହୁ, ଦ୍ୱାରିକାନାଥ ମହାପାତ୍ର, ହନୁପ୍ରଧାନ, ବେଣୁଧର ପ୍ରଧାନ, ରାମଚରିତ ଜାୟସୱାଲ, ପରମେଶ୍ୱର ସରାଫ, ବାବାଜୀ ମେହେର, ଭୀମସେନ ସାହୁ, ଅନିରୁଦ୍ଧ ସାହୁ ପ୍ରମୁଖ ଜେଲ ଯାଇଥିଲେ ।

ପଦ୍ମପୁରର ନିତ୍ୟାନନ୍ଦ ପାଢ଼ୀ ଭାରତଛାଡ ଆନ୍ଦୋଳନରେ ଯୋଗ ଦେଇ ଅଟକବନ୍ଦୀ ରହି ଜୋରିମାନା ଦେଇଥିଲେ । ତାଙ୍କ ଭାଇ ସଚ୍ଚିଦାନନ୍ଦ ପାଢ଼ୀ ସ୍ୱାଧୀନତା ସଂଗ୍ରାମୀ ରୂପେ ଫୁଲବାଣୀ ଜେଲରେ ବନ୍ଦୀ ଥିଲେ ।

କୁଲୁଣ୍ଡାର ହୃଷିକେଶ ନାୟକ, ଅତାବିରା, କାଦୋବାହାଲ, ଗୋଡ଼ଭାଗା, ପାହାଡ଼ଶ୍ରୀଗିଡ଼ା ବଜାରରେ ପାହାଡ଼ଶ୍ରୀଗିଡ଼ାର ଭାସ୍କର ସରାଫଙ୍କ ସହ ଶୋଭାଯାତ୍ରା କରି ଅତାବିରାରେ ଗିରଫ ହୋଇଥିଲେ । ପୁଣି ସେ ବଜାର-ପ୍ରଚାର ପାଇଁ ଅଗଷ୍ଟ ୨୪ ରେ ଗିରଫ ହୋଇଥିଲେ । ତାଙ୍କୁ ଦଶ ମାସ ସଶ୍ରମ ଜେଲ ଓ ୨୦ ଟଙ୍କା ଜୋରିମାନା ହୋଇଥିଲା ।

୧୯୪୦-୪୨ ମଧ୍ୟରେ ପାଣିମୋରା ଗ୍ରାମର ୩୨ ଜଣ ସଂଗ୍ରାମୀ ଆନ୍ଦୋଳନ କରି ଜେଲବରଣ କରିଥିଲେ । ପାଣିମୋରାର ମୀନକେତନ ସାହୁ ୧୭ ବର୍ଷ ବୟସରେ ବେଆଇନ ଘୋଷିତ ଜାତୀୟ କଂଗ୍ରେସ ଅଫିସ ବଳପୂର୍ବକ ଚଳାଇବା ଅପରାଧରେ ସମ୍ବଲପୁର ଜେଲରେ ବର୍ଷେ କାରାଦଣ୍ଡ ଭୋଗ କରିଥିଲେ । ପୂର୍ଣ୍ଣଚନ୍ଦ୍ର ପ୍ରଧାନ ୧୯୪୨ରେ ବରଗଡ଼ ଏସ.ଡ଼ି.ଓ. କୋର୍ଟ ଆକ୍ରମଣ କରି ୬ ମାସ ଜେଲ ଯାଇଥିଲେ । ଏହି ଅପରାଧରେ ରାଧାଶ୍ୟାମ ମେହେର ବର୍ଷେ କାରା ଭୋଗ କରିଥିଲେ ।

ବରଗଡ଼ ହାଇସ୍କୁଲ ଓ ବରଗଡ଼ ଥାନାର କାଗଜପତ୍ର ପୋଡ଼ିବା ଅପରାଧରେ ସେ ୧୯୪୨ରେ ବନ୍ଦୀ ହୋଇଥିଲେ । ଗୁଡ଼େଶିରାର କୁଂଜବିହାରୀ ଦାସ ବରଗଡ଼ରେ ପୋଲିସ ଅତ୍ୟାଚାରର ପ୍ରତିବାଦ କରି ଗଣବିକ୍ଷୋଭ ଆୟୋଜନ କରି ୧୯୪୨ରେ ଜେଲ ଯାଇଥିଲେ ।

ପାଣିମୋରା କଂଗ୍ରେସ କାର୍ଯ୍ୟାଳୟ ଦଖଲ କରିବା ଅପରାଧରେ ଧନ ସିଂହ, ଚୈତନ୍ୟ ସରାଫ, ଶଙ୍କର ପ୍ରଧାନ, ଫକୀର ବେହେରା ବର୍ଷେ ଲେଖାଏଁ କାରାବାସ ଭୋଗିଥିଲେ । ଜିତେନ୍ଦ୍ର ପ୍ରଧାନ ବରଗଡ଼ ଏସ.ଡି.ଓ. କୋର୍ଟ ଆକ୍ରମଣ କରି ୬ମାସ କାରାଦଣ୍ଡ ଭୋଗିଥିଲେ । ବିଜେପୁର ଥାନ ପୋଡ଼ିବା ଉଦ୍ୟମ କରି ରାମଚନ୍ଦ୍ର ପୁରୀ ୧୫ ମାସ କାରାବାସ ସହ ୫୦ଟଙ୍କା ଜୋରିମାନା ଦେଇଥିଲେ । ପାଣିମୋରାରୁ ଚୈତନ୍ୟ ସାହୁ ବେଆଇନ ଘୋଷିତ କଂଗ୍ରେସ କାର୍ଯ୍ୟାଳୟ ତାଲା ଭାଙ୍ଗି ବର୍ଷେ କାରାଦଣ୍ଡ ଭୋଗ କରିଥିଲେ ।

ଜାନୁୟାରୀ ୧୪, ୧୯୪୩ । ଭେଜିକୁଦ ଗାଁର ମକର ଯାତ୍ରା ଅବସରରେ ଚାଲିଥିବା ଜୁଆଖେଳ ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ସତ୍ୟାଗ୍ରହ ହୋଇଥିଲା । ପୁରନ୍ଦର ପଣ୍ଡା ଏଥିରେ ନେତୃତ୍ୱ ନେଇ ଗିରଫ ହୋଇଥିଲେ ।

ବ୍ରଜରାଜନଗରର ଓରିଏଣ୍ଟ କାଗଜ କଳରେ ୧୯୩୯ ଶେଷ ବେଳକୁ ଦୁର୍ଗାପ୍ରସାଦ ଗୁରୁ ଏକ ଶ୍ରମିକ ସଙ୍ଗଠନ କରିଥିଲେ । ଏହା ପୂର୍ବରୁ ଓଡ଼ିଶାରେ ବିଧିବଦ୍ଧ ଭାବେ କୌଣସି ଶ୍ରମିକ ସଙ୍ଗଠନ ନଥିଲା । ମେ ୧୦, ୧୯୪୦ରେ କାରାଖାନାରେ ଶ୍ରମିକ ସଂଘ ପ୍ରତିଷ୍ଠା ହେଲା । ବିଦେଶରୁ କାଗଜ ତିଆରି ପାଇଁ ମଣ୍ଡ ନ ଆଣି ସ୍ଥାନୀୟ କଞ୍ଚାମାଲ, ବାଉଁଶ ଦ୍ୱାରା କାଗଜ ଉତ୍ପାଦନ ଉପରେ ଗୁରୁତ୍ୱାରୋପ କରିବାକୁ ଶ୍ରମିକ ସଂଘ ଦାବି କରି ଅଭିଯାନ ଚଲାଇଲା ।

ଏହା ଫଳରେ ୧୯୪୪ରେ ପ୍ରବଳ ଶ୍ରମିକ ଆନ୍ଦୋଳନ ହେଲା । କଂଗ୍ରେସ କର୍ମୀ ଦୁର୍ଗାଗୁରୁ, ଗଙ୍ଗାଦତ୍ତ ଦାସ, ବଂଶୀଧର ଦାସ ପ୍ରମୁଖ ଦିନରେ କାରଖାନାରେ କାମ କରି ରାତିରେ ସତ୍ୟାଗ୍ରହୀ ସାଜୁଥିଲେ । ଶ୍ରମିକ ସମସ୍ୟା ସମାଧାନ ପାଇଁ ଉଭୟ ଦାଶଙ୍କୁ ଜାତୀୟ

ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିବାକୁ ପ୍ରଦେଶ କମିଟି ବାରଣ କରିଥିବାର ଜଣାଯାଏ । ଏହି ଆନ୍ଦୋଳନପରେ ବ୍ରଜରାଜନଗର ଅଞ୍ଚଳରେ ପ୍ରବେଶ ନକରିବାକୁ ଦୁର୍ଗା ଗୁରୁଙ୍କ ଉପରେ ନିଷେଧାଜ୍ଞା ଜାରି ହୋଇଥିଲା । ଏହାର ବିରୁଦ୍ଧାଚରଣ କରି ସେ ସେପ୍ଟେମ୍ବର ୩, ୧୯୪୪ରେ ଗିରଫ ହୋଇଥିଲେ ୧୯୪୫ରେ ଆଇ.ଏନ.ଟି.ୟୁ.ସି.ରେ ଯୋଗ ଦେଇ ରାମପୁର କୁଦୋପାଲିର ଉପେନ୍ଦ୍ର ଦୀକ୍ଷିତ ନିଜକୁ ଜଣେ ପ୍ରବୀଣ କଂଗ୍ରେସୀ ନେତା ଭାବରେ ପ୍ରତିଷ୍ଠିତ କରି ପାରିଥିଲେ । ସେ ୧୯୫୬ରେ ତୁର୍କୀରେ ହୋଇଥିବା ଆନ୍ତର୍ଜାତୀୟ ଶ୍ରମିକ ସଂଗଠନ (ଆଇ.ଏଲ.ଓ.)ରେ ଭାରତର କୋଇଲା ଖଣି ଶ୍ରମିକଙ୍କ ପ୍ରତିନିଧିତ୍ୱ କରିବା ସହ ଜିଲା କଂଗ୍ରେସ ସଭାପତି ସଂପାଦକ, ଜିଲା ପରିଷଦ ଚେୟାରମେନ, ବିଧାନସଭା ସଭ୍ୟ ଓ ବିଭିନ୍ନ ମନ୍ତ୍ରୀ ପଦ ମଣ୍ଡନ କରିଥିଲେ ।

ସରକାରୀ ଅବହେଳାରୁ ଜେଲରେ କସ୍ତୁରବା ଓ ମହାଦେବ ଦେଶାଇଙ୍କ ମୃତ୍ୟୁ, ପଶ୍ଚିମବଙ୍ଗର ଭୟାବହ ଦୁର୍ଭିକ୍ଷ, ଜୋରଜୁଲମ କରି ଯୁଦ୍ଧ ଚାନ୍ଦା ଆଦାୟ, ଦରଦାମ ବୃଦ୍ଧି, ସତ୍ୟାଗ୍ରହୀଙ୍କ ପରିବାର ଉପରେ ନାହିଁ ନଥିବା ଅତ୍ୟାଚାର ଯୋଗୁଁ ପ୍ରତିବାଦ କରି ଗାନ୍ଧୀ ଜେଲରେ ୨୧ ଦିନିଆଁ ଅନଶନ ଆରମ୍ଭ କଲେ ।

ସମଗ୍ର ଦେଶରେ ଚହଳ ପଡ଼ିଗଲା । କର୍ମୀ ଓ ବୁଦ୍ଧିଜୀବୀମାନେ ତତ୍ପର ହୋଇ ଉଠିଲେ । ସ୍ୱତଃପ୍ରଣୋଦିତ ଭାବରେ ସଭା, ସମିତ, ବିକ୍ଷୋଭର ଜୁଆର ଉଠିଲା । ଗାନ୍ଧୀ ଓ ଅନ୍ୟାନ୍ୟ ନେତାଙ୍କ ମୁକ୍ତି ଦାବି କରାଗଲା ।

ଆଉ ଏକ ବିପ୍ଳବର ସୂତ୍ରପାତ ହେଲା । ବ୍ରିଟିଶ ସରକାରକୁ ଏହି ବିପ୍ଳବ ଛାନିଆ କରିଦେଲା । ବିଲାତରେ ଆତଙ୍କ ଖେଳିଗଲା । ସରକାର ଏକ ସ୍ଥାୟୀ ସମାଧାନ ପାଇଁ ଚିନ୍ତା କରିବାକୁ ବାଧ୍ୟ ହେଲେ ।

ଜୁନ ୧୦, ୧୯୪୫ରେ ଗାନ୍ଧୀଙ୍କ ସମେତ କଂଗ୍ରେସ କାର୍ଯ୍ୟକାରିଣୀ ସଭ୍ୟମାନେ ମୁକ୍ତ ହେଲେ । ଦେଶର ସର୍ବତ୍ର ବିଜୟ ପାଳନ ହେଲା । ତ୍ରିରଙ୍ଗ ପତାକା ଉଡ଼ିଲା । ବ୍ରିଟିଶ ସରକାର ସମସ୍ତ କଟକଣା ପ୍ରତ୍ୟାହାର କଲେ । ଦଳ ଦଳ କରି ସତ୍ୟାଗ୍ରହୀମାନଙ୍କୁ ଛାଡ଼ି ଦିଆଗଲା ।

ସମାଧାନର ସୂତ୍ର ସ୍ୱରୂପ ବଡ଼ଲାଟ ୱାଭେଲ ପୁଣି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଓ ସମ୍ବିଧାନ ପ୍ରସ୍ତୁତି ଘୋଷଣା କଲେ । କଂଗ୍ରେସ ଏହାକୁ ଗ୍ରହଣ କରି ନିର୍ବାଚନ ଲଢ଼େଇ ଆରମ୍ଭ କରିଦେଲା ।

ଭାଗୀରଥି, ଲକ୍ଷ୍ମୀନାରାୟଣ, ରାଜେନ୍ଦ୍ର ପଣ୍ଡା ସମ୍ବଲପୁର, ଝାରସୁଗୁଡ଼ା, ବରଗଡ଼, ବରପାଲି, ସୋହଲୋ, ପାଣିମୋରା, କେନ୍ଦୁପାଟଣା ପ୍ରଭୃତି ବୁଲି ସାରି ସଭା, ସମିତିମାନ ଆରମ୍ଭ କରିଦେଲେ ।

ଅକ୍ଟୋବର ୨୬, ୧୯୪୫ରେ ବରଗଡ଼ଠାରେ ଏକ ବିରାଟ ଜନସମାବେଶ ହେଲା । ସେଥିରେ ଡ.ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଲକ୍ଷ୍ମୀନାରାୟଣ, ଘନଶ୍ୟାମ, ଭାଗୀରଥି, ପ୍ରହ୍ଲାଦରାୟ ଲାଠ, ଶିବନାରାୟଣ ପାଢ଼ୀ ପ୍ରମୁଖ ଯୋଗ ଦେଲେ ।

ଦେଶର ସବୁ ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ବିପ୍ଳବ ବେଳେ ଦେଖା ଦେଇଥିବା ଜାତୀୟ ସମସ୍ୟାର ସମାଧାନ ଦିଗରେ ପ୍ରାଦେଶିକ ସରକାରମାନେ ଦୃଷ୍ଟି ଦେଲେ ନାହିଁ । ଛାତ୍ର ସମସ୍ୟାର ସମାଧାନ ହେଲା ନାହିଁ । ସୂତା ଓ ଲୁଗା ଉପରେ ନିୟନ୍ତ୍ରଣ ବଳବତ୍ତର ରହିଲା । ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଅଭାବ ସରକାର ଦୂର କରି ପାରିଲେନାହିଁ ।

ଏ ସବୁ ସମସ୍ୟା ନେଇ ଡିସେମ୍ବର ୩, ୧୯୪୫ ଦିନ ସମ୍ବଲପୁର ଧର୍ମଶାଳାଠାରେ ଭାଗୀରଥିଙ୍କ ଅଧ୍ୟକ୍ଷତାରେ ଏକ ବିରାଟ ସାଧାରଣ ସଭା ହେଲା । ଏଥିରେ ଅନେକଗୁଡ଼ିଏ ପ୍ରସ୍ତାବ ସହ ବନ୍ଦୀ ରହିଥିବା ଆଜାଦ ହିନ୍ଦ ଫୌଜର ସମସ୍ତ ସୈନିକମାନଙ୍କୁ ଅବିଳମ୍ବେ ମୁକ୍ତ କରିବାକୁ ଦାବି କରାଯାଇଥିଲା । ଏହି ଦାବିରେ ଦେଶର ଚାରିଆଡ଼େ ଛାତ୍ର ଆନ୍ଦୋଳନ ବ୍ୟାପିଥିଲା । କଲିକତାର ଛାତ୍ର ଆନ୍ଦୋଳନରେ ପୋଲିସ ସହ ସଂଘର୍ଷ ଫଳରେ ଅନ୍ୟୂନ ୩୩ଜଣ ଛାତ୍ର ପ୍ରାଣ ହରାଇଥିଲେ । ୧୯୪୫ ଅକ୍ଟୋବରରେ ଜିଲା ବୋର୍ଡ ପୁନର୍ଗଠିତ ହେଲା । କଂଗ୍ରେସକର୍ମୀ ବିଜୟୀ ହେଲେ ।

ସମ୍ବଲପୁରରେ ମଧ୍ୟ ଛାତ୍ର ଆନ୍ଦୋଳନ ତେଜି ଉଠିଲା । ବରପାଲି ଓ ବରଗଡ଼ରେ ମଧ୍ୟ ଛାତ୍ର ସଙ୍ଗଠନ ହୋଇଥିଲା । ଛାତ୍ରମାନେ ମଧ୍ୟବର୍ତ୍ତୀକାଳୀନ ସରକାରଙ୍କ ପତନ ଓ ପୂର୍ଣ୍ଣ ସ୍ୱାଧୀନତା ଦାବି କରିଥିଲେ ।

କେନ୍ଦ୍ରରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ପାଇଁ ମସୁଧା କରି ବ୍ରିଟିଶ ସରକାର ଏକ ଦିଗରେ କଂଗ୍ରେସ ସହ ଆଲୋଚ଼ନା ଚଳାଇଥିଲା ବେଳେ ଅନ୍ୟ ଦିଗରେ ଜିନ୍ନା ଓ ମୁସଲିମ ଲିଗ୍ ସହ ଦୂରଭିସନ୍ଧି ରଖିଥାନ୍ତି ।

ଇଂରେଜ ସରକାରଙ୍କ ପ୍ରରୋଚ଼ନାରେ ଜିନ୍ନା କଂଗ୍ରେସ ସହ ମିଶି ମଧ୍ୟବର୍ତ୍ତୀକାଳୀନ କେନ୍ଦ୍ର ସରକାର ଗଠନ ପ୍ରସ୍ତାବ ଅଗ୍ରାହ୍ୟ କରି 'ଡାଇରେକ୍ଟ ଏକସନ୍' ନାମରେ ହିନ୍ଦୁ ମୁସଲମାନ ଦଙ୍ଗା ଆରମ୍ଭ କରିଦେଲେ ।

ଏ ଭିତରେ ମେରଠ କଂଗ୍ରେସ ଅନୁଷ୍ଠିତ ହେଲା । ବିଶ୍ୱଯୁଦ୍ଧର ଅବସାନ ପରେ ଦେଶରେ ଶାନ୍ତିର ବାତାବରଣ ଫେରି ଆସିଥିଲା । ଜୁନ୍ ୧୪, ୧୯୪୫ରେ କଂଗ୍ରେସ କାର୍ଯ୍ୟକାରିଣୀ ସଭ୍ୟମାନେ ମୁକ୍ତ ହୋଇ ସାରିଥିଲେ ।

ଡିସେମ୍ବର ୧୨,୧୯୪୬ରେ ଶାସନ ବିଧାୟିକା ସଭା ବସି କେନ୍ଦ୍ର ମନ୍ତ୍ରୀମଣ୍ଡଳ ଗଠନ କରାଗଲା । ସେଥିରେ ମୁସଲିମ ଲିଗ୍‌ର ୫ଜଣ ନେତା ସ୍ଥାନ ପାଇଲେ । ଡ.ରାଜେନ୍ଦ୍ର ପ୍ରସାଦ ଦେଶର ପ୍ରଥମ ରାଷ୍ଟ୍ରପତି ହେଲେ । ମଧ୍ୟବର୍ତ୍ତୀ ସରକାରର ପତନ ଘଟିଲା ।

ଡ. ମହତାବ ଅହମଦନଗର ଦୁର୍ଗରୁ ମୁକ୍ତ ହୋଇ କଂଗ୍ରେସର ବିଶେଷ ଅଧିବେଶନରେ ଯୋଗ ଦେଇ ଓଡ଼ିଶା ଫେରିଲେ । ଛୋଟଲାଟ ହଥର୍ଣ୍ଣ ଲୁଇସଙ୍କୁ ଭେଟି ପୋଲିସ ଅଧିକାରରୁ କଟକର ସ୍ୱରାଜ ଆଶ୍ରମକୁ ମୁକ୍ତ କଲେ । ଏହା ପରେ କଂଗ୍ରେସ ଅନୁଷ୍ଠାନମାନ ଜୀବନ୍ତ ହୋଇ ଉଠିଲା ।

ମାର୍ଚ୍ଚ ୧୯୪୬ର ପ୍ରାଦେଶିକ ବିଧାନସଭା ନିର୍ବାଚନରେ କଂଗ୍ରେସର ବିପୁଳ ବିଜୟ ଘଟିଲା । ସମ୍ବଲପୁର ଜିଲାର ବୋଧରାମ ଦୁବେ, ଲକ୍ଷ୍ମୀନାରାୟଣ ମିଶ୍ର, ଲାଲ ରାଜିତ ସିଂହ, ମୋହନ ସିଂହ ବିଜୟୀ ହୋଇଥିଲେ । ଭାରତର ଇତିହାସରେ ଏକ ନୂଆ ଅଧ୍ୟାୟ ଖୋଲୁଥିଲା ।

ଲକ୍ଷ୍ମୀନାରାୟଣ ମିଶ୍ର, ଶଙ୍କର ବାବୁ ପ୍ରମୁଖ ପଶ୍ଚିମ ଓଡ଼ିଶାକୁ ନେଇ ଏକ ସ୍ୱତନ୍ତ୍ର 'ହୀରାଖଣ୍ଡ କୋଶଳ ପ୍ରଦେଶ' ଗଠନ ପାଇଁ ସଭା, ସମିତି ଆନ୍ଦୋଳନ ଆରମ୍ଭ କରିଦେଲେ । ହେଲେ ଉପସ୍ଥିତ ଘଡ଼ିସନ୍ଧି ମୁହୂର୍ତ୍ତରେ ଏହାକୁ ସେ ଟାଳି ଦେଲେ ।

ମାର୍ଚ୍ଚ'୪୬ରେ ଇଂଲଣ୍ଡର କେବିନେଟ୍ ମିଶନ ଭାରତକୁ ଆସି ବିଭିନ୍ନ ଦଳର ନେତାମାନଙ୍କ ସହ ଭାରତର ସ୍ୱାଧୀନତା ପାଇଁ ଘନଘନ ଆଲୋଚନା କଲେ । ସେମାନଙ୍କ ପ୍ରସ୍ତାବ ଅନୁସାରେ ବଡ଼ଲାଟ ଲର୍ଡ ଊଆଭେଲ ଭାରତୀୟ ନେତାମାନଙ୍କୁ ନେଇ 'ଏକ୍ସିକ୍ୟୁଟିଭ କାଉନସିଲ' ବା କେନ୍ଦ୍ର ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ ।

୧୯୪୬ରେ ଓଡ଼ିଶା ଆସେମ୍ବ୍ଲି ପୁନର୍ଗଠିତ ହେଲା । ଏଥିରେ କଂଗ୍ରେସ-୪୭, ମୁସଲିମ ଲିଗ୍-୪, କମ୍ୟୁନିଷ୍ଟ-୧ ଓ ସ୍ୱାଧୀନ-୪ଟି ଆସନ ପାଇଲା । ଛୋଟ ଲାଟ୍ ୪ଜଣ ସଭ୍ୟଙ୍କୁ ମନୋନୀତ କଲେ । ଏପ୍ରିଲ ୨୩ରେ ଡ.ମହତାବ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ ।

ଶେଷରେ ଅଗଷ୍ଟ ୧୫,୧୯୪୭ ଦିନ ଦୀର୍ଘ ୧୨୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଚାଲିଥିବା ଅବିଭକ୍ତ ସମ୍ବଲପୁର ଜିଲାର ସ୍ୱାଧୀନତା ସଂଗ୍ରାମ ସଫଳ ହେଲା । ଦେଶରେ ମୁକ୍ତିର ସୂର୍ଯ୍ୟ ଉଇଁଲା ।

❑❑❑

# ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମ

୮,୦୦,୦୦୦ ଏକର ଜଳସେଚନ, ୫୦,୦୦୦ କିଲୋୱାଟ ଜଳବିଦ୍ୟୁତ ଉତ୍ପାଦନ, ନାବିକରଣ, ବନ୍ୟା, ମରୁଡ଼ି ନିୟନ୍ତ୍ରଣ, ରାଜ୍ୟର ଶିଳ୍ପବିକାଶ ଆଦି ଲକ୍ଷ୍ୟ ନେଇ ୭୫.୫୦ କୋଟି ଟଙ୍କା ବ୍ୟୟ ଅଟକଳରେ ଭାରତ ସରକାରଙ୍କ ବହୁମୁଖୀ ହୀରାକୁଦ ନଦୀବନ୍ଧ ଯୋଜନାକୁ ଓଡ଼ିଶାର ତଦାନିନ୍ତନ ରାଜ୍ୟପାଳ ସାର ହଥର୍ଣ୍ଣ ଲୁଇସ ମାର୍ଚ୍ଚ ୧୫, ୧୯୪୬ରେ ପ୍ରଥମ ଶୁଭ ଦେଲେ । ଦ୍ୱିତୀୟ ଥର ପାଇଁ ପଣ୍ଡିତ ନେହେରୁ ଏପ୍ରିଲ ୧୨, ୧୯୪୮ରେ ପୁନଶ୍ଚ ଶୁଭ ଦେଲେ ।

ଏହାର ୯୦ବର୍ଷ ପୂର୍ବରୁ ଭୟଙ୍କରୀ ମହାନଦୀରେ ବନ୍ଧ କରିବାର ପ୍ରସ୍ତାବ ଇଂରେଜ ଅମଳରେ ହୋଇଥିଲା । ମାତ୍ର ଅତ୍ୟଧିକ ବ୍ୟୟ କାରଣରୁ ସବୁ ଆଲମିରାରେ ପକାଇ ରଖିଦିଆ ଯାଇଥିଲା ବୋଲି ଓଡ଼ିଶାକୁ ପ୍ରେରିତ ଗାନ୍ଧୀଙ୍କ ପ୍ରତିନିଧି ହୋରେସ ଆଲେକଜାଣ୍ଡର ତା୧।୯।୧୯୪୭ରେ ଲେଖିଥିଲେ : ଏହା 'ଓଡ଼ିଶା-ଆଶା ଓ ପ୍ରତିଶ୍ରୁତିର ଭୂମି' ଶୀର୍ଷକ ପ୍ରବନ୍ଧରେ 'ହରିଜନ'ର ଅକ୍ଟୋବର ୨୬,୧୯୪୭ ସଂଖ୍ୟାରେ ପ୍ରକାଶ ପାଇଥିଲା । ମହାନଦୀ ବନ୍ଧ ଯୋଜନା କେତେକ ଦିଗରୁ ଟେନିସିଭେଲି ଅଥରିଟି ନମୂନା ଅନୁସାରେ ତିଆରି ହେବା କଥା ସେ ଉଲ୍ଲେଖ କରିଥିଲେ । ସେ ଆହୁରି ମଧ୍ୟ ଲେଖିଥିଲେ :

''ଶୁଭ ଦିଆଗଲା ବେଳେ ସ୍ଥାନୀୟ ଲୋକଙ୍କ ମତାମତ ଭଲକରି ବିଚାର କରା ହୋଇ ନଥିଲା । କେତେକ ସ୍ଥାନୀୟ ଜମିଦାର ଯେଉଁମାନଙ୍କୁ ଜମି, ଘର ଛାଡ଼ି ଦେବାକୁ ହେବ, ସେମାନଙ୍କୁ ବିରୋଧ କରିବା ପାଇଁ ମତାଇଥିଲେ ।     ବ୍ୟବସ୍ଥା ସଭାର ସଭ୍ୟମାନଙ୍କୁ ଏ (ହୀରାକୁଦ ବନ୍ଧର) ରିପୋର୍ଟ ଅଧ୍ୟୟନ କରିବା ପାଇଁ ସମୟ ଦିଆହୋଇଛି । ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନଙ୍କ ମଧ୍ୟରେ ତଥା ଏ ଯୋଜନାର ସମାଲୋଚକମାନଙ୍କ ମଧ୍ୟରେ ବହୁବାର ଦୀର୍ଘ ଆଲୋଚନା ପରେ ବ୍ୟବସ୍ଥା ସଭା ଅଗଷ୍ଟ ମାସ ଶେଷରେ ସର୍ବସମ୍ମତି କ୍ରମେ ଏ ଯୋଜନାକୁ ସମର୍ଥନ କଲେ । ଏହାର ଆଲୋଚନାରେ ସ୍ଥାନୀୟ ମୋସ୍ଲେମ ଲିଗ୍‌ର ନେତା ଏହାର ଜଣେ ଦୃଢ଼ ସମର୍ଥକ ଥିଲେ ।

ସବୁ ଯଦି ଠିକ୍ ଚାଲେ , ବନ୍ଧ ତିଆରି ଓ କେନାଲ ଖୋଳା ପାଞ୍ଚବର୍ଷରେ ଶେଷ ହେବ । ତା'ପରେ ବନ୍ୟା ଓ ଅନାବୃଷ୍ଟି ଓଡ଼ିଶାରୁ ଚିରକାଳ ପାଇଁ ନିର୍ବାସିତ ହେବ । xxx

ସମ୍ବଲପୁର ଓଡ଼ିଶାର 'ପିଟସବର୍ଗ' ହେବ ବୋଲି ଯାହା କୁହାଯାଉଛି, ତାହା ପିଟସବର୍ଗକୁ ଜାଣିଥିବା ଲୋକଙ୍କ ମନକୁ ଘେନିବ ନାହିଁ । xxx ଶିଳ୍ପ ଓ ଖଣି ସେମାନଙ୍କ ସୁନ୍ଦର ଭୂମିରେ ଚାରିଆଡ଼େ ପ୍ରସାର ଲାଭ କଲେ ସମସ୍ତେ ଯେ ସୁଖୀ ହେବେ ଏ ପ୍ରକାର ଭ୍ରାନ୍ତିରେ ଓ ନୂତନ ସରକାର ପଡ଼ୁନାହାନ୍ତି । ସେମାନେ ଜାଣନ୍ତି ଯେ ସେମାନଙ୍କ ପ୍ରଥମ କର୍ତ୍ତବ୍ୟ ହେଉଛି ନିରୀହ ଗ୍ରାମବାସୀଙ୍କ ଯତ୍ନ ନେବା । ତେଣୁ ହୀରାକୁଦର ବୁଡ଼ି ଅଞ୍ଚଳର ଗ୍ରାମବାସୀଙ୍କ ପାଇଁ ଭଲ ଘର ଓ ଭଲ ଜମି ଯୋଗାଇବାକୁ ଅଗ୍ରାଧିକାର ଦିଆ ଯାଉଛି ।''

ପ୍ରଥମେ ବନ୍ଧର ଉଚ୍ଚତା କମ୍ ରଖି ୯୫ଖଣ୍ଡ ଗାଁ ବୁଡ଼ାଇବା ପ୍ରସ୍ତାବ ୧୯୪୭ରେ ୧୬୩ଟି ଓ ପରେ ୨୦୦ ଗ୍ରାମରେ ପରିଣତ ହେଲା । ଫଳରେ ୨୦୦ଗ୍ରାମର ଲକ୍ଷାଧିକ ଜନସାଧାରଣ ଘରଡିହ, ଭିଟାମାଟି, ବାଡ଼ିବଗିଚା, ଶ୍ମଶାନ ଆଦି ହରାଇ ବିସ୍ଥାପିତ ହେଲେ ।

ବନ୍ଧର ମୁଖ୍ୟଯନ୍ତ୍ରୀ ଅଯୋଧ୍ୟାନାଥ ଖୋସଲାଙ୍କ ରିପୋର୍ଟ ଅନୁସାରେ :

''ଏଥିରେ ୧୦,୭୬୭ ଏକର ବାହାଲ, ୧୪,୨୬୯ ଏକର ବେର୍ଣା, ୩୦,୨୧୭ ଏକର ମାଳ, ୨୦,୭୭୪ ଏକର ଆଟ, ୨୫,୫୭୩ ଏକର ଭୋଗରା ସମେତ ୭୬,୦୭୩ ଏକର ଚାଷଜମି, ୭୧,୨୯୦ଏକର ଚାଷଯୋଗ୍ୟ ଜମି, ୧୭,୧୬୯ଏକର ପୋଖରୀ ରାସ୍ତା, ଗାଁ ବସ୍ତି ଚିରକାଳ ପାଇଁ ଜଳମଗ୍ନ ହେଲା । ବାର୍ଷିକ ୩୦,୯୩୬ ଟନ୍ ଖାଦ୍ୟଶସ୍ୟ, ଆଖୁ, ମୁଗ ଆଦି ଆୟ ରାଜ୍ୟ ଅର୍ଥନୀତିରୁ ବାଦ୍ ପଡ଼ିଲା ।''

ଘର ବଦଳରେ ଘର, ଜମି ବଦଳରେ ଜମି, ଉଦାର କ୍ଷତିପୂରଣ ଦେବାର ଘୋଷଣା ମିଥ୍ୟା ପ୍ରମାଣିତ ହେଲା । ୫୦,୦୦୦ ଲୋକ କିଛି ପାଇଲେ ନାହିଁ। ଘରଦ୍ୱାର ଜମିବାଡ଼ିରୁ କପର୍ଦ୍ଦକଶୂନ୍ୟ ହୋଇ ତଡ଼ା ଖାଇଲେ ।

ବନ୍ଧ ନିର୍ମାଣ ପାଇଁ ଶହଶହ ଲୋକ ପଞ୍ଜାବରୁ ଆସିଲେ । ସମ୍ବଲପୁର-ହୀରାକୁଦ ରେଳ ଲାଇନ ପାଇଁ ପଞ୍ଜାବରୁ ଚଢ଼ାମୂଲ୍ୟରେ କାଠ ସ୍ଲିପର ଆସିଲା । ହୀରାକୁଦରେ ହାଇସ୍କୁଲ ଖୋଲିଲା ମାତ୍ରେ ଶିକ୍ଷକ, ଶିକ୍ଷୟତ୍ରୀ ପଞ୍ଜାବରୁ ଆସିଲେ । ସେଠାରେ ଓଡ଼ିଆ ପଢ଼ା ହେଲା ନାହିଁ।

ବନ୍ଧରେ ଅନେକ ଯନ୍ତ୍ରପାତି ରହିଥିବା ସତ୍ତ୍ୱେ ରୋଲର୍ ସାହାଯ୍ୟରେ ମାଟି ଶକ୍ତ କରିବା ପାଇଁ ପଞ୍ଜାବରୁ ବଳଦ ଅଣାଗଲା । ମାସକୁ ଭଡ଼ା ପଡ଼ିଲା ଆଠ ହଜାର ଟଙ୍କା । ଏ ଟଙ୍କା ପ୍ରତିମାସରେ ବଢ଼ି ଚାଲିଲା । ଏହି ବଳଦବାଲାମାନେସବୁ ବନ୍ଧରେ କାର୍ଯ୍ୟରତ ଅଧିକାରୀମାନଙ୍କ ଆତ୍ମୀୟ ଥିଲେ । ସ୍ଥାନୀୟ ଜନଶକ୍ତି ଓ ବଳଦମାନଙ୍କ ସେବା ଗ୍ରହଣ କରା ଗଲା ନାହିଁ ।

ପଞ୍ଜାବୀ ବଳଦ ପାଇଁ ମାସକୁ ଭଡ଼ା ତିନି ଶତାଧିକ ଟଙ୍କା ହୋଇଥିଲା ବେଳେ ବନ୍ଧରେ ବିସ୍ଥାପିତ ଆଦିବାସୀ, ହରିଜନ, ପ୍ରଜାଙ୍କ ପାଇଁ ଡେସିମିଲକୁ କ୍ଷତିପୂରଣ ମାତ୍ର ତିନି ଅଣା । ସେହିପରି ବନ୍ଧ କାର୍ଯ୍ୟରେ ଓଡ଼ିଆ ଠିକାଦାରଙ୍କ ସଂଖ୍ୟା ଥିଲା ଅତି ନଗଣ୍ୟ । ନାମକୁ ମାତ୍ର । ପୁଣି ଏମାନଙ୍କୁ ବଡ଼ବଡ଼ କାମ ଦିଆ ଯାଉନଥିଲା । ସବୁ ବଡ଼ କାମ ଥିଲା ପଞ୍ଜାବୀ ଓ ବହିରାଗତ ଠିକାଦାରଙ୍କ ହାତରେ । ସ୍ଥାନୀୟ ଲୋକଙ୍କ ପ୍ରତି ଉପେକ୍ଷା ଥିଲା ଚରମ ସୀମାରେ ।

୧୯୪୬ରେ ଓଡ଼ିଶା ରାଜ୍ୟ ସରକାର ଜମି ଦଖଲ କ୍ଷତିପୂରଣ ଆଇନ-୧୮୯୪ର ସଂଶୋଧନ କଲେ । ଏହା ଫଳରେ ଅଧିଗୃହୀତ ଜମିର ୧୬ବର୍ଷର ବାର୍ଷିକ ଫସଲ, ଆୟର ମୂଲ୍ୟ କ୍ଷତିପୂରଣ ଆକାରରେ ପ୍ରଦାନ କରାଯିବାର ଯାହା ବ୍ୟବସ୍ଥା ଥିଲା, ତାହା ଉଠାଇ ଦିଆଗଲା । ନୂତନ ବ୍ୟବସ୍ଥାରେ ଅମିନ, ପଟୁଆରୀ ଆଦି ସରକାରୀ କର୍ମଚାରୀ ଜନସାଧାରଣଙ୍କ ସହ ଆଲୋଚନା କରି ଜମି, ଘର, ମାଛ, ବୃକ୍ଷ ଆଦିର ଯାହା ମୂଲ୍ୟ ହେବ, ତାହା କ୍ଷତିପୂରଣ ହେବାର ନିୟମ କରାଗଲା ।

୧୯୨୪-୨୫ର ହମିଦ ବନ୍ଦୋବସ୍ତରେ ଧାର୍ଯ୍ୟ ଖଜଣାକୁ ଭିତ୍ତି କରି କ୍ଷତିପୂରଣ ଧାର୍ଯ୍ୟ କରିବାକୁ ସରକାର ନିଷ୍ପତ୍ତି ନେଲେ । ହମିଦ ବନ୍ଦୋବସ୍ତ ପରେ ଯେଉଁ ଗରୀବ, ପ୍ରଜାଗଣ ପତିତ, ଆଟ ଜମି ପଟ୍ଟା ନେଇ ବା ଖରିଦ କରି ଅଓ୍ୱଲ ବାହାଲରେ ପରିଣତ କରିଥିଲେ, ନୂଆ ବନ୍ଦୋବସ୍ତ ହୋଇ ନଥିବାରୁ ତାହା ପତିତ ଜମି ଭାବେ ପଂଜିକୃତ ହୋଇ ରହିଥିଲା । ଏହା ନୂଆ କିସମର ମାନ୍ୟତା ପାଇଲା ନାହିଁ । ପୁରୁଣା ଖଜଣା ଉପରେ ୨୦୦ରୁ ୪୦୦ଗୁଣ ଏ ଗୁଡ଼ିକର କ୍ଷତିପୂରଣ ଧାର୍ଯ୍ୟ ହେବା ଫଳରେ ପ୍ରଜାମାନେ ବ୍ୟାପକ ଭାବେ କ୍ଷତିଗ୍ରସ୍ତ ହେଲେ । ଅଓ୍ୱଲ ବାହାଲର କ୍ଷତିପୂରଣ ସେତେବେଳ ଏକର ପିଛା ୧୦/୧୫ ଟଙ୍କା ଧାର୍ଯ୍ୟ ହେଲା । ଏହି ଊଣା କ୍ଷତିପୂରଣ, ପୁନର୍ଥଇଥାନ ପୂର୍ବରୁ ବିସ୍ଥାପନ ବିରୁଦ୍ଧରେ ବ୍ୟାପକ ଆପତ୍ତି ହେଲା ।

ଏ ସବୁ ଫଳରେ ଲୋକଙ୍କ ମନରେ ବନ୍ଧ ବିରୋଧୀ ଆନ୍ଦୋଳନ ଜଳି ଉଠିଲା । ଏତେବେଳକୁ ସ୍ୱାଧୀନତା ସଂଗ୍ରାମ ଲୋକଙ୍କ ଭିତରେ ଜାଗ୍ରତ କରିଥିବା ଜାତିୟତାବାଦ, ସଚେତନତା ଆନ୍ଦୋଳନକୁ ପ୍ରଗାଢ଼ କଲା । ଦଳମତ ନିର୍ବିଶେଷରେ କଂଗ୍ରେସ, କମ୍ୟୁନିଷ୍ଟ ନେତାମାନେ ଆନ୍ଦୋଳନକୁ ସମର୍ଥନ କଲେ । ଡା. ଜନାର୍ଦ୍ଦନ ପୂଜାରୀଙ୍କ ଦ୍ୱାରା ବାଲିବନ୍ଧା ସୋମନାଥ ମନ୍ଦିରଠାରେ ଏକ ବଡ଼ ଧରଣର ସଭା ଆହୂତ ହେଲା । ଡ.ଶ୍ରଦ୍ଧାକର ସୂପକାର ଲୋକଙ୍କ ସପକ୍ଷରେ ଠିଆ ହେଲାବେଳେ ଭିକ୍ଟୋରିଆ ହଲଠାରେ ଡ.ମହତାବଙ୍କ ଦ୍ୱାରା

ଅପଦସ୍ତ ହେଲେ । ରାମାଧିନ ଦୁବେ, ରାଜାରାମ ଦୁବେ ପ୍ରମୁଖ ଅଣ୍ଟା ଭିଡ଼ିଲେ । କେତେକ ଅପବାଦ ସରକାରୀ କର୍ମଚାରୀଙ୍କୁ ଛାଡ଼ି ଜିଲାରେ ଜଣେ ହେଲେ ବନ୍ଧ ସପକ୍ଷରେ ନଥିଲେ ।

ସମ୍ବଲପୁର ଜିଲା କୃଷକ ସଂଘ ପକ୍ଷରୁ ସଭାପତି ଫକୀର ବେହେରା, ସଂପାଦକ ମାୟାଧର ପୁରୋହିତଙ୍କ ନେତୃତ୍ୱରେ ସରକାରଙ୍କୁ ଉପଯୁକ୍ତ ଥଇଥାନ ବ୍ୟବସ୍ଥା, କ୍ଷତିପୂରଣ ଦେଲା ପରେ ବିସ୍ଥାପନ କରିବାକୁ ଓ ବଳପ୍ରୟୋଗ ନ କରିବାକୁ ଦାବି କରାଗଲା । ପ୍ରସନ୍ନ କୁମାର ପଣ୍ଡା ମଧ୍ୟ ଲୋକଙ୍କ ସପକ୍ଷରେ ଠିଆ ହୋଇ ସଂଗ୍ରାମ ଡାକରା ଦେଲେ ।

ସେତେବେଳେ ବନ୍ଧ ଦ୍ୱାରା ଜଗମଗ୍ନ ହେବାକୁଥିବା ଅଞ୍ଚଳବାସୀ ରାଜ୍ୟପାଳଙ୍କୁ ଏକ ସ୍ମାରକପତ୍ର ଦେଇ ପୁନର୍ବସତୀ କାର୍ଯ୍ୟ ସଂପୂର୍ଣ୍ଣ ଶେଷ ନ ହେବା ପୂର୍ବରୁ ସେମାନଙ୍କୁ ବାସଚ୍ୟୁତ କରାନଯିବାକୁ ଦାବି କଲେ । ଏହି ନ୍ୟାଯ୍ୟ ଦାବି ନିର୍ମମ ଭାବରେ ପ୍ରତ୍ୟାଖ୍ୟାତ ହେଲା ।

ଫଳରେ ସମ୍ବଲପୁରର ନେତୃବର୍ଗ ମହିଶୁର ପୂର୍ତ୍ତ ବିଭାଗର ଅବସରପ୍ରାପ୍ତ ମୁଖ୍ୟଯନ୍ତ୍ରୀ ତଥା ସଚୀବ ରାଜସେବାସକ୍ତ ଏମ.ଜି.ରାଙ୍ଗାଇୟାଙ୍କୁ ହୀରାକୁଦ ବନ୍ଧ ସଂକ୍ରାନ୍ତରେ କେନ୍ଦ୍ର ସରକାରଙ୍କ ରିପୋର୍ଟ ଅନୁଧ୍ୟାନ କରିବାକୁ ନିମନ୍ତ୍ରଣ କଲେ । ରାଙ୍ଗାଇୟା ନଭେମ୍ବର ୨, ୧୯୪୬ରେ ସମ୍ବଲପୁର ଆସି ବନ୍ଧ ଅଞ୍ଚଳ ପରିଦର୍ଶନ କଲେ । ସେ ୧୯୪୭ରେ ତିନୋଟି ରିପୋର୍ଟ ଦେଲେ :

Note on the Hirakud project Across the Mahanadi Near Sambalpur - Orissa.

2. Note on the Hirakud Project Across the Mahanadi Near Sambalpur - Orissa (supplementary copy)
3. Mahanadi Valey Development : Hirakud Dam project. Comments on latest proposal of the Project Report, Central Waterways, Irrigation and Navigation Commision.

ରାଙ୍ଗାଇୟା ସରକାରୀ ରିପୋର୍ଟ ଅନୁଧ୍ୟାନ କରି ହୀରାକୁଦଠାରେ ବନ୍ଧ ନିର୍ମାଣର ବିରୋଧ କଲେ । ଭୁଲ ଜାଗାରେ ବନ୍ଧ ନିର୍ମାଣ କରାଯାଉଥିବା ଦର୍ଶାଇ ବନ୍ଧର ସ୍ଥାୟିତ୍ୱ ଉପରେ ଅବିଶ୍ୱାସ ପ୍ରକାଶ କରି ଏହା କଦାପି ବହୁମୁଖୀ ଯୋଜନା ହୋଇ ନପାରି ଏହାର ଲକ୍ଷ୍ୟ ସବୁକ୍ଷେତ୍ରରେ ବିଫଳ ହେବ ବୋଲି ପ୍ରାମାଣିତ ତଥ୍ୟ ଦର୍ଶାଇଥିଲେ । ସେ ଟିକରପଡ଼ାକୁ ବିଶ୍ୱର ସର୍ବଶ୍ରେଷ୍ଠ ନଦୀ ବନ୍ଧ ପାଇଁ ଚମତ୍କାର ଜାଗା ବୋଲି ଦର୍ଶାଇଲେ ।

ଏଥିରେ ସେ ଜନସାଧାରଣଙ୍କ ପ୍ରତିରୋଧର ନ୍ୟାଯ୍ୟ କାରଣର ସୂଚନା ଦେଇ କହିଲେ ଯେ :

''୧.	ଏହା ଫଳରେ ଜିଲାର ସବୁଠୁ ଉର୍ବର ଓ ଜନବହୁଳ ଅଞ୍ଚଳ ଜଳମଗ୍ନ ହେବ । ଖୋସଲାଙ୍କ ଭାଷଣ ଅନୁସାରେ ୭୧,୦୦୦ ଏକର ଚାଷଜମି ଓ ୯୩ଟି ଗାଁ ଜଳମଗ୍ନ ହେବ । ଏହାର ଅଧିକାଂଶ ଅଞ୍ଚଳ ହେଉଛି ଧାନ ଉତ୍ପାଦକ ଅଞ୍ଚଳ, ଯେଉଁଠି ବାର୍ଷିକ ଏକ ନିୟୁତ ମହଣ ଚାଉଳ ଉତ୍ପାଦନ ହେଉଛି । ଯାହାର ବର୍ତ୍ତମାନର ମୂଲ୍ୟ ନବେ ଲକ୍ଷ ଟଙ୍କା, ଯୁଦ୍ଧ ପୂର୍ବରୁ ଏହାର ମୂଲ୍ୟ ଥିଲା ୩୦ଲକ୍ଷ ଟଙ୍କା । ଏହା ବାହାରେ ଅଞ୍ଚଳରେ ୧୦ଲକ୍ଷ ଟଙ୍କା ମୂଲ୍ୟର ଅନ୍ୟାନ୍ୟ ଫସଲ ଉତ୍ପାଦନ ହେଉଛି ।

୨.	ଏହା ଫଳରେ କୋଇଲା, ଚୂନପଥର, ରୂପା, ଶିଶା ଏପରିକି ହୀରା ଭଳି ଖଣିଜଦ୍ରବ୍ୟ ଭଣ୍ଡାର ମଧ୍ୟ ଜଳମଗ୍ନ ହୋଇ ନଷ୍ଟ ହେବ ।

୩.	ସମ୍ବଲପୁର ଚାଉଳ ଉତ୍ପାଦନ କ୍ଷେତ୍ରରେ ଏକ ଉଦ୍‌ବୃତ୍ତ ଜିଲା ଭାବରେ ପ୍ରାୟ ୫ ରୁ ୧୦ ଲକ୍ଷ ମହଣ ଚାଉଳ ରପ୍ତାନୀ କରୁଛି । ବନ୍ଧ ଫଳରେ ଏହା ଚାଉଳ କ୍ଷେତ୍ରରେ ନିଅଣ୍ଟିଆ ଅଞ୍ଚଳ ହୋଇ ଭବିଷ୍ୟତରେ ଚାଉଳ ବାହାରୁ ଆମଦାନି କରିବାକୁ ବାଧ୍ୟ ହେବ ।

୪.	ଓଡ଼ିଶା ରାଜ୍ୟ ସରକାର ନିର୍ମାଣାଧୀନ ଡୁଡୁମା ପ୍ରକଳ୍ପର ସଂପୂର୍ଣ୍ଣ ବିଦ୍ୟୁତ ବ୍ୟବହାର କରିବା ଅବସ୍ଥାରେ ନାହାନ୍ତି । ଏହାର ଦୁଇ ପଞ୍ଚମାଂଶ ୯୯ ବର୍ଷ ପାଇଁ ମାନ୍ଦ୍ରାଜ ସରକାରକୁ ଲିଜରେ ଦେଇଛନ୍ତି । ଅବଶିଷ୍ଟ ତିନି ପଞ୍ଚମାଂଶ (୧୦,୦୦୦ କିଲୋୱାଟ) ବାହାରର ପୁଞ୍ଜିପତିମାନଙ୍କୁ ଲିଜ୍‌ରେ ଦେବା କଥା ଚିନ୍ତା କରୁଥିବା ମଧ୍ୟ ଜଣାଯାଇଛି । ତେଣୁ ହୀରାକୁଦ ବନ୍ଧରେ ପୁଣି ୫୦,୦୦୦ କିଲୋୱାଟ ଜଳବିଦ୍ୟୁତ ଉତ୍ପାଦନର କୌଣସି ଆବଶ୍ୟକତା ନାହିଁ ବୋଲି ବନ୍ଧ ବିରୋଧୀମାନେ ଯୁକ୍ତି କରୁଛନ୍ତି ।

୫.	ଓଡ଼ିଶାବାସୀ ଯେହେତୁ ବିଦ୍ୟୁତ୍‌ଶକ୍ତି ଉପଯୋଗ କରିବା ଅବସ୍ଥାରେ ନାହାନ୍ତି, ତେଣୁ ବ୍ୟାପକ ପରିମାଣର ଅତିରିକ୍ତ ବିଦ୍ୟୁତ ଉତ୍ପାଦନ ରାଜ୍ୟ ବାହାରର ଶିଳ୍ପପତି, ପୁଞ୍ଜିପତିମାନଙ୍କୁ ଲୁଗାକଳ, ଚାଉଳ କଳ ଆଦି ପ୍ରତିଷ୍ଠା ପାଇଁ ସୁଯୋଗ ଦେବ । ଫଳରେ ସ୍ଥାନୀୟ ବୁଣାକାର ଓ

ଗ୍ରାମବାସୀଙ୍କ ବୃତ୍ତି ନଷ୍ଟ ହେବ ।

୬. ପ୍ରସ୍ତାବିତ ଜଳଭଣ୍ଡାର ଦ୍ୱାରା ୮୦୦୦୦୦ ଏକର ଜମିରେ ଜଳସେଚନ ହୋଇ ଚାଷ ହୋଇପାରିବ ବୋଲି ସେମାନେ ରାଜୀ ହେଉ ନାହାନ୍ତି । ଏଭଳି ସଘନ ଜଳସେଚନ ପାଇଁ ଦେଶ ଓ ଗ୍ରାମାଞ୍ଚଳ ଉପଯୋଗୀ ନୁହେଁ ବୋଲି ବନ୍ଧ ବିରୋଧୀମାନେ ମତ ଦେଇଛନ୍ତି ।

୭. ବନ୍ଧର ଆୟୁ ମାତ୍ର ୧୦୦ବର୍ଷ ହେବା ସ୍ଥଳେ ଏକଥା ସର୍ବମାନ୍ୟ ଯେ ଏହା ଚିରକାଳ ପାଇଁ ବନ୍ୟା ଦାଉରୁ ରାଜ୍ୟକୁ ରକ୍ଷା କରି ପାରିବ ନାହିଁ । ଏହା କେବଳ ଏକ ଆଂଶିକ ସୁରକ୍ଷା ବ୍ୟବସ୍ଥା ।

୮. ଲୋକମାନଙ୍କୁ ସେମାନଙ୍କ ମୁଖ୍ୟ ଖାଦ୍ୟଶସ୍ୟ ଧାନ, ଚାଉଳରୁ ବଂଚିତ କରିବା ଅମାନୁଷିକ, ନିର୍ମମ ହୃଦୟହୀନତା । ଧାନ ଚାଷ ବଦଳରେ ଜଳଭଣ୍ଡାରରେ ମାଛଚାଷ କରି ଭାତ ବଦଳରେ ମାଛ ଖାଇବାକୁ ବାଧ୍ୟ କରିବାଠୁ ବଳି ଆଉ ନିଷ୍ଠୁରତା କଣ ଥାଇପାରେ ।''

ଏହାଛଡ଼ା ଆହୁରି ଅନେକ ସାଧାରଣ ଆପତ୍ତି ମଧ୍ୟ ଲୋକମାନେ ଉଠାଉଛନ୍ତି । ସେ ଏହାକୁ ଅବାସ୍ତବ ଓ ଅନ୍ଧକାର ଗର୍ଭକୁ ଲମ୍ଫ ଦେଲା ଭଳି ହେବ ବୋଲି ସତର୍କ କରାଇ ଦେଲେ । ରାଙ୍ଗାଇୟା ସରକାରୀ ରିପୋର୍ଟ ଅନୁଧ୍ୟାନ କରି ବନ୍ଧ ନିର୍ମାଣର ବିରୋଧ କଲେ । ଏହା ବନ୍ଧ ବିରୋଧୀଙ୍କ ହାତରେ ଏକ ଅମୋଘ ଅସ୍ତ୍ର ହେଲା । ତାଙ୍କ ମତାମତକୁ ଭିତ୍ତି କରି ବନ୍ଧନିର୍ମାଣ ପ୍ରସ୍ତାବର ପୁନର୍ବିଚାର ଲାଗି ଗଣ ଆନ୍ଦୋଳନ ହେଲା ।

ମହାନଦୀ ଓ ଇବ୍ ନଦୀ କୂଳଡ଼ାର ସମୃଦ୍ଧ ରଂପେଲା, ମୁରା, ବଣ୍ଡଲା, ରଂପାଲୁଗା, ଅତାପରା, କୁର୍ଲା, ସାଁପଳହରା ଆଦି ଗ୍ରାମ ଜଳମଗ୍ନ ହେବା ବିରୁଦ୍ଧରେ ଜନମତ ସୃଷ୍ଟି ପାଇଁ ପୂର୍ବରୁ ହୀରାକୁଦ ବନ୍ଧ ବିରୋଧୀ କମିଟି ୧୯୪୫ରେ ଗଠିତ ହୋଇ ସାରିଥିଲା । ଶ୍ରଦ୍ଧାକର ସୂପକାର ସଂପାଦକ ଓ ବ୍ରଜମୋହନ ପଣ୍ଡା, ଶଙ୍କର ପ୍ରସାଦ ମିଶ୍ର, ଦୁର୍ଗାପ୍ରସାଦ ମିଶ୍ର, ଅଚ୍ୟୁତାନନ୍ଦ ପୁରୋହିତ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ବୋଧରାମ ଦୁବେ, ଡା. ଜନାର୍ଦ୍ଦନ ପୂଜାରୀ, ଅନନ୍ତରାମ, ଈଶ୍ୱର ପ୍ରାସଦ ମିଶ୍ର ଆଦି ଏହାର ସଭ୍ୟ ଥିଲେ ।

୧୯୪୫ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେଲା ପରେ ହୀରାକୁଦଠାରେ ଏକ ବନ୍ଧ ଯୋଜନାର ପ୍ରାଥମିକ ରିପୋର୍ଟ ଇଂଜିନିୟର ଅଯୋଧ୍ୟାନାଥ ଖୋସଲା ଦେଇଥିଲେ । ପ୍ରାଥମିକ ଭାବରେ ୯୫ଖଣ୍ଡ ସମୃଦ୍ଧ ଗାଁ ବୁଡୁଥିବାର ଜଣାଗଲା । ଲୋକଙ୍କୁ ବାସଚ୍ୟୁତ

ହେବାକୁ ପଡ଼ିବ ବୋଲ ପ୍ରବଳ ଉତ୍ତେଜନା ପ୍ରକାଶ ପାଇ ହୀରାକୁଦ ବନ୍ଧ ବିରୋଧୀ କମିଟି ଗଠିତ ହେଲା ।

ଓଡ଼ିଶା ରାଜ୍ୟପାଳ ଚନ୍ଦୁଲାଲ ତ୍ରିବେଦୀଙ୍କ ସମ୍ବଲପୁର ଆଗମନ ବେଳେ ଏକ ବିରାଟ ଶୋଭାଯାତ୍ରା ହୋଇ ସର୍କିଟ ହାଉସଠାରେ ଏହି ବନ୍ଧ ନିର୍ମାଣ ବନ୍ଦ କରିବାକୁ ଦାବିପତ୍ର ଦିଆଗଲା । ୧୯୪୬ ମସିହା ଜୁନରୁ ଏ ଆନ୍ଦୋଳନ ତୀବ୍ରତର ହେଲା । ସହରରେ ପ୍ରାୟ ପ୍ରତ୍ୟହ ସଭା, ଶୋଭାଯାତ୍ରା ହୁଏ । ସରକାରୀ ନିଷେଧାଜ୍ଞା ସତ୍ୱେ ଏ ସବୁ ଚାଲିଥାଏ ।

ଏ ଆନ୍ଦୋଳନରେ କେତେକ ପ୍ରମୁଖ ନେତା ସମ୍ବଲପୁରକୁ ଓଡ଼ିଶାରୁ ବିଚ୍ଛିନ୍ନ କରିବାକୁ ଚାହୁଁଥିଲେ । ବନ୍ଧ ବିରୋଧୀ ଆନ୍ଦୋଳନ ସହ ତାହାକୁ ମଧ୍ୟ ଯୋଡ଼ି ଦିଆଗଲା । ଫଳରେ ଏ ଆନ୍ଦୋଳନ ଅନ୍ୟାନ୍ୟ ଅଞ୍ଚଳର ସହାନୁଭୂତି ହରାଇଲା ।

ବନ୍ଧ ବିରୋଧୀ ଆନ୍ଦୋଳନରେ ବ୍ରଜମୋହନ ପଣ୍ଡା ଓ ହରିଚରଣ ପାଢ଼ୀଙ୍କ ନାମ ମଧ୍ୟ ଉଲ୍ଲେଖନୀୟ ।

ସେତେବେଳେ ବୋଧରାମ ଦୁବେ ବିଧାନସଭା ସଦସ୍ୟ ଥିଲେ । ହୀରାକୁଦ ବନ୍ଧ ଯୋଜନା ଉପରେ ଡ.ଖୋସଲାଙ୍କ ରିପୋର୍ଟ ଆଲୋଚନା ବେଳେ ବୋଧରାମ ରିପୋର୍ଟର ବିରୋଧ କରିଥିଲେ । ହେଲେ ସରକାର ତାହା ଶୁଣି ନଥିଲା । ଫଳରେ ବୋଧରାମ ବିଧାନସଭାରୁ ଇସ୍ତଫା ଦେଇଥିଲେ ।

ହୀରାକୁଦ ଯୋଜନାକୁ ମୁଦ୍ଦା କରି ସେ ପୁଣି ବିଧାନସଭାକୁ ନିର୍ବାଚିତ ହେଲେ । ତଥାପି ସରକାର କ୍ଷତିଗ୍ରସ୍ତ ଲୋକଙ୍କ ପ୍ରତି ସହୃଦୟ ନହୋଇ ହିଂସାର ଆଶ୍ରୟ ନେଲେ । ବୋଧରାମ ପୁଣି ବିଧାନସଭାରୁ ଇସ୍ତଫା ଦେଲେ ।

ଏତିକି ବେଳେ ପ୍ରସନ୍ନ କୁମାର ପଣ୍ଡା ଘୋଷଣା କଲେ - ଓଡ଼ିଶାର ସ୍ୱାର୍ଥ ପାଇଁ ହୀରାକୁଦ ବନ୍ଧ ହେଉ । କିନ୍ତୁ ଲକ୍ଷ ଲକ୍ଷ ଚାଷୀ, ପରିବାରକୁ ସର୍ବସ୍ୱାନ୍ତ କରି ସେମାନଙ୍କ ମଡ଼ା ଉପରେ ନୁହେଁ । କ୍ଷତିପୂରଣ ନାମରେ ଗୌନ୍ତିଆ, ଧନୀ ଚାଷୀ ହରିଲୁଟ କରିବେ କିନ୍ତୁ ଘର ଭିଟା, ଜମିବାଡ଼ି ହରାଇଥିବା ଗରିବ ଚାଷୀ, ସୁଖବାସୀ, ଗ୍ରାମ୍ୟ କାରିଗର, ଝାଙ୍କର, ଚୌକିଦାର, ପୂଜାରୀ, ସେବାୟତ ଆଦି ବାସଚ୍ୟୁତମାନଙ୍କ ଦାୟିତ୍ୱ ସରକାରଙ୍କର । ପୁନର୍ଥଇଥାନ ଆଗ ହେଉ । କ୍ଷତିପୂରଣ ଆଗ ଦିଆଯାଉ । ମିଲିଟାରୀ ମାଧ୍ୟମରେ ଦମନ ଲୀଳା ବନ୍ଦ କରାଯାଉ ।

ହୀରାକୁଦ ବନ୍ଧ ନିର୍ମାଣର ପୁନର୍ବିଚାର ଲାଗି ଗଣ ଆନ୍ଦୋଳନ ଚାଲିଲା । ଆନ୍ଦୋଳନକାରୀଙ୍କ ଉପରେ ସମ୍ବଲପୁର କଚେରି ମଇଦାନରେ କଂଗ୍ରେସ ସରକାରଙ୍କ

ପକ୍ଷରୁ ଅମାନୁଷିକ ଆକ୍ରମଣ ହେଲା । ଶହ ଶହ ଲୋକଙ୍କ ମୁଣ୍ଡ ଫାଟିଲା । ହାତଗୋଡ଼ ଭାଙ୍ଗିଲା । ମଇଦାନ ରକ୍ତରେ ରଞ୍ଜିତ ହେଲା ।

ବୋଧରାମ ଦୁବେଙ୍କ ଇସ୍ତଫା ପରେ ପରେ ୧୯୪୭ରେ ଆନ୍ଦୋଳନ ତେଜିଲା । ସକାଳେ ସନ୍ଧ୍ୟାରେ ନାରୀମାନଙ୍କ ଶୋଭାଯାତ୍ରା ବାହାରିଲା । ମଇ ମାସ ଶେଷ ବେଳକୁ କୋର୍ଟରେ ସତ୍ୟାଗ୍ରହ ଆରମ୍ଭ ହେଲା । ପ୍ରଥମ ଦିନ ଜନାର୍ଦ୍ଦନ ପୂଜାରୀ ଓ ତାଙ୍କ ପତ୍ନୀ କମଳାଙ୍କ ନେତୃତ୍ୱରେ ସତ୍ୟାଗ୍ରହ ହେଲା । ସେମାନଙ୍କୁ ଗିରଫ କରି ତିନିମାସ କାରାଦଣ୍ଡାଦେଶ ହେଲା । ବାକିମାନଙ୍କୁ ଜେଲ୍ ଭେନ୍‌ରେ ନେଇ ସହରରୁ କୋଡ଼ିଏ ମାଇଲ୍ ଦୂରରେ ଛାଡ଼ି ଦିଆଗଲା ।

ଆନ୍ଦୋଳନ, ଗିରଫଦାରି, ଲାଠିମାଡ଼, ପ୍ରେସ୍ ଫଟୋଗ୍ରାଫରଙ୍କ କ୍ୟାମେରା ଭଙ୍ଗା ଅଭିଯାନ ଚାଲିଲା । ସତ୍ୟାଗ୍ରହରେ ଶ୍ରଦ୍ଧାକର ସୂପକାର ନେତୃତ୍ୱ ନେଇ ପରିଚାଳନାରେ ସାହାଯ୍ୟ କରୁଥିଲେ । ସେ ପ୍ରସନ୍ନ କୁମାର ପଣ୍ଡା, ଶତ୍ରୁଘ୍ନ ପଣ୍ଡା, ଚିନ୍ତାମଣି ହୋତା, ପୁରନ୍ଦର ପଣ୍ଡା, ଶ୍ରୀନିବାସ ଆଦିଙ୍କ ସହ ବନ୍ଧ ବିରୋଧୀ ଆନ୍ଦୋଳନରେ କାରାବରଣ କରିଥିଲେ ।

ବୁଡ଼ି ଅଞ୍ଚଳର କେତେକ ବିଶିଷ୍ଟ ଗୌନ୍ତିଆ, ଜମିଦାର ଆଦି ସରକାରୀ ଗୁପ୍ତଚର ଭାବେ ଆନ୍ଦୋଳନରେ ରହି ଆନ୍ଦୋଳନକୁ ଭଣ୍ଡୁର କରିବାକୁ ଚେଷ୍ଟା କରିଥିଲେ । କେତେକ ସହରୀ ଲୋକ ମଧ୍ୟ ଏଥିରେ ସାମିଲ ଥିଲେ । ଆନ୍ଦୋଳନରେ ଯୋଗଦେଇ ନେତୃତ୍ୱ ନେଇଥିବା କେତେକ ପୁରୁଖା ଓକିଲ ଶେଷରେ ବ୍ୟକ୍ତିଗତ ସ୍ୱାର୍ଥରୁ ସତ୍ୟାଗ୍ରହରେ ଯୋଗଦେଇ ନଥିଲେ । ଲକ୍ଷ୍ମୀନାରାୟଣ ପ୍ରାରମ୍ଭରେ ଏହି ଆନ୍ଦୋଳନକୁ ଆପ୍ରାଣ ସମର୍ଥନ କରି ଶେଷରେ ଆନ୍ଦୋଳନ ବିରୋଧୀ ହୋଇଗଲେ । ଅଚ୍ୟୁତାନନ୍ଦ ପୁରୋହିତ, ବୋଧରାମ ଦୁବେ, ଭରତଚନ୍ଦ୍ର ନାୟକଙ୍କ ଭୂମିକା ମଧ୍ୟ ନିଷେଧାତ୍ମକ ହୋଇଗଲା ।

ଓଡ଼ିଶା ବିଧାନସଭା ଓ କେନ୍ଦ୍ର ସମ୍ବିଧାନ ସଭା ସଭ୍ୟ ଲକ୍ଷ୍ମୀନାରାୟଣ ସାହୁ, ଆସାମ-ବେଙ୍ଗଲ ରେଳପଥର ପୂର୍ବତନ ମୁଖ୍ୟଯନ୍ତ୍ରୀ କୁମୁଦ ଭୂଷଣ ରାୟ ସମ୍ବଲପୁର ଆସି ବନ୍ଧ ବିରୋଧରେ ବକ୍ତୃତା ଦେଇଥିଲେ । ରାଙ୍ଗାଇୟାଙ୍କ ସହିତ ଏମାନଙ୍କ ଲେଖାମାନ ବନ୍ଧ ବିରୋଧୀ ସମିତି ତରଫରୁ ପ୍ରକାଶ ପାଇ କେନ୍ଦ୍ର ଓ ପ୍ରଦେଶ ସରକାରଙ୍କୁ ପଠା ହୋଇଥିଲା । ଲକ୍ଷ୍ମୀନାରାୟଣ ପତ୍ରପତ୍ରିକାରେ ଆନ୍ଦୋଳନ ସପକ୍ଷରେ ଲେଖାମାନ ଦେଲେ ।

ସମ୍ବଲପୁରର ରାଜନୈତିକ ଇତିହାସର ଏ ଏକ ବିଡ଼ମ୍ବନା ଯେ, ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆପ୍ରାଣ ମାତି ଦେଶ ସ୍ୱାଧୀନ କଲେ, ସେହି କଂଗ୍ରେସୀ ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିଦେଶୀ ସରକାର ଦ୍ୱାରା ପ୍ରାୟୋଜିତ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନରେ ଭୂମିକା ବିବାଦିତ ହୋଇପଡ଼ିଲା । ଗୋଟାଏ ପଟେ ସ୍ୱାଧୀନତାର ସୂର୍ଯ୍ୟ ଉଠିଲା ବେଳକୁ ଅନ୍ୟ ପଟେ ଜିଲ୍ଲାର ଭାତହାଣ୍ଡି ବୋଲାଉଥିବା ଏକ ଅତ୍ୟନ୍ତ ସମୃଦ୍ଧ, ଖଣିଜ, ବନ, ପ୍ରକୃ ସଂପଦପୂର୍ଣ୍ଣ ପ୍ରାଚୀନ ଅଞ୍ଚଳ ତା'ର ଦୁଇ ଶତାଧିକ ଗାଁ ସହ ସ୍ୱାଧୀନ ଦେଶର କଂଗ୍ରେସ ସରକାର ଦ୍ୱାରା ଚିରଦିନ ପାଇଁ ଜଳ ସମାଧି ନେଲା ।

ହୀରାକୁଦ ବନ୍ଧ ଅନ୍ଦୋଳନ ବେଳେ ଇଂପେଲା ମାଇନର୍ ସ୍କୁଲ୍‌ର ଶିକ୍ଷକ କମଲୁ ମାଷ୍ଟ୍ରେ (କମଳ ଲୋଚନ ମିଶ୍ର) ଏକ ଗୀତ ଲେଖିଥିଲେ । ତାକୁ ଦେବଦତ୍ତ ପତି ଗାଉଥିଲେ ।

''ହମ୍‌ଲୋଗ୍ ହୀରାଖଣ୍ଡ କେ ଭୂତ୍ ।
ଗଣତନ୍ତ୍ର ନାହିଁ ଷଡ଼ଯନ୍ତ୍ର ହୈ
ଚୋରୋଁକା ଯେ ମହାମନ୍ତ୍ର ହୈ
ଛୋଡ଼ୋ ତୋ ନ ମିଲେ ଛୁଟ୍
ହମ୍‌ଲୋଗ୍ ହୀରାଖଣ୍ଡ କେ ଭୂତ ।
ମହତାବ ନହିଁ ମହାତାପ ହୈ
ନରତନଧାରୀ ମହାଶାପ ହୈ
ବାତ୍ ବୋଲେ ବଡ଼ା ଝୁଟ୍
ହମ୍ ଲୋଗ୍ ହୀରାଖଣ୍ଡ କେ ଭୂତ୍ ।

❑❑❑

# ସମ୍ବଲପୁର ଜିଲ୍ଲାରେ ଗଡ଼ଜାତ ଆନ୍ଦୋଳନ

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ବିକ୍ଷିପ୍ତ ଭାବରେ କୃଷକ ଆନ୍ଦୋଳନ ଦେଖାଯାଇଥିଲା । ଓଡ଼ିଶାର ରାଜାମାନେ କୃଷକ ଅତ୍ୟାଚାର ପାଇଁ କୁଖ୍ୟାତ ଥିଲେ ।

ନିତ୍ୟ ବର୍ଦ୍ଧମାନ ଦାରିଦ୍ର୍ୟ, ମନମୁଖୀ କର, କର ବୃଦ୍ଧି, କର ଆଦାୟରେ ଜୋରଜୁଲମ୍, ଜମି ବାଜ୍ୟାପ୍ତି, ବିଷମ ଜମି ମାଲିକାନା ସ୍ୱତ୍ୱ, ବହିରାଗତ ଚାଷୀ, ସାହୁକାରମାନଙ୍କ ଅବାଧ ଅନୁପ୍ରବେଶ, ରାଜ କର୍ମଚାରୀମାନଙ୍କ ଅତ୍ୟାଚାର, ଲୋଲୁପତା, ରାଜା ରାଜୁଡ଼ାମାନଙ୍କ ପ୍ରଜା ସ୍ୱାର୍ଥ ବିମୁଖିନତା ଆଦି ହେଉଛି କେତେକ ମୁଖ୍ୟ କାରକ, ଯାହାଫଳରେ ପ୍ରଜାମାନଙ୍କ ଅର୍ଥନୈତିକ, ସାମାଜିକ ଅବସ୍ଥା ଦିନକୁ ଦିନ ତଳିତଳାନ୍ତ ହୋଇ ଚାଲିଥିଲା ।

ଏହାର ପରିଣାମ ସ୍ୱରୂପ ସାମନ୍ତ ମୁଖ୍ୟମାନଙ୍କ ବିରୋଧରେ ବିଭିନ୍ନ ସ୍ଥାନରେ ବିଦ୍ରୋହ ଦେଖା ଯାଇଥିଲା । ଏଗୁଡ଼ିକ ମଧ୍ୟରେ ୧୮୪୯-୫୨ର ନୟାଗଡ଼ ବିଦ୍ରୋହ; ୧୮୯୧-୯୩ର କେଉଁଝର ବିଦ୍ରୋହ; ପୁଣି ୧୮୯୩-୯୪ର ନୟାଗଡ଼ ବିଦ୍ରୋହ, ୧୮୯୪ର ରଣପୁର ମେଳି, ଦଶପଲ୍ଲା ବିଦ୍ରୋହ, କଳାହାଣ୍ଡିର କନ୍ଧ ବିଦ୍ରୋହ ଅନ୍ୟତମ । ଏ ସବୁ ବିଦ୍ରୋହରେ ଜନସାଧାରଣଙ୍କ କୃଷିଜନିତ ଅସନ୍ତୋଷ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

ଚାଷୀମାନେ ଥିଲେ ଏ ସବୁ ବିଦ୍ରୋହର ମେରୁଦଣ୍ଡ । ବ୍ରିଟିଶ୍ ଅଧିକାରୀମାନଙ୍କ ରାଜତୋଷଣ ନୀତି, ସାମନ୍ତ ମୁଖ୍ୟମାନଙ୍କ ଅସମ୍ବେଦନଶୀଳ ଓ ନିରାସକ୍ତ ପ୍ରଶାସନ ହିଁ ଏ ଅସନ୍ତୋଷର ମୂଳରେ ରହିଥିଲା ।

ଓଡ଼ିଶାର ୧୯ଟି ଯାକ ଗଡ଼ଜାତ ବ୍ରିଟିଶ୍ ଆଧିପତ୍ୟ ସ୍ୱୀକାର କରି ସରକାରଙ୍କୁ ବାର୍ଷିକ ପେଶକିସ୍ ଦେବାକୁ ଚୁକ୍ତିବଦ୍ଧ ହୋଇଥିଲେ । ପାହାଡ଼ ଅଞ୍ଚଳର ରାଜାମାନଙ୍କୁ ଓ ସେମାନଙ୍କ ''ବର୍ବର'' ପ୍ରଜାମାନଙ୍କୁ ଏ ନୀତି ସୁହାଇବ ବୋଲି ସେମାନେ ଚିନ୍ତା କରିଥିଲେ । ଆଉ ମଧ୍ୟ 'ରାଜାମାନଙ୍କ ଗୌରବ'ଓ 'ପ୍ରଜାମାନଙ୍କ ସ୍ୱାଭିମାନ' ରକ୍ଷା ମାଧ୍ୟମରେ ସେମାନଙ୍କୁ ବ୍ରିଟିଶ୍ ସରକାରଙ୍କ ବନ୍ଧୁ ରେ ପରିଣତ କରିବାକୁ ସେମାନେ ଏ ତଥାକଥିତ ''ଉଦାର ନୀତି'' ଗ୍ରହଣ କରିଥିଲେ । ତେଣୁ ସେତେବେଳେ ରାଜାମାନଙ୍କ ପ୍ରତି ବ୍ରିଟିଶ୍ ଓଡ଼ିଶାର ସାଧାରଣ ନୀତିନିୟମ ଓ ନିୟନ୍ତ୍ରଣ ଲାଗୁ କରାଯାଇ ନଥିଲା ।

ସ୍ଥାନୀୟ କର୍ତ୍ତୃପକ୍ଷ ବ୍ରିଟିଶ୍ ନୀତିନିୟମ ଲାଗୁ କରିବାକୁ ଟ୍ରିବୁଟାରୀ ମହଲଗୁଡ଼ିକୁ ପରାମର୍ଶ ଦେଉଥିଲେ । ସେମାନଙ୍କ ତର୍କ ଥିଲା ଯେ, ଏହା ଦ୍ୱାରା କେବଳ ଯେ, ରାଜ୍ୟଗୁଡ଼ିକର ପ୍ରଶାସନିକ କ୍ଷେତ୍ରରେ ଉନ୍ନତି ଘଟିବ ତା' ନୁହେଁ ଉକ୍ତ ଅଞ୍ଚଳର ଅଧିବାସୀମାନଙ୍କୁ ସଭ୍ୟ କରେଇବା ଦିଗରେ ମଧ୍ୟ ଏହା ବିଶେଷ ସହାୟକ ହେବ ବୋଲି ସେମାନେ ଯୁକ୍ତି ବାଢୁଥିଲେ ।

ସରକାର ଏ କଥା ମଧ୍ୟ ଜାଣିଥିଲେ ଯେ, ଦେଶର ଦୁର୍ଗମ ପ୍ରକୃତି, ଲୋକଙ୍କ ବଣ୍ୟ ଓ ହିଂସ୍ର ଚରିତ୍ର ସେତେବେଳେ ବ୍ରିଟିଶ୍ ଆଇନ ଲାଗୁ କରିବା ଦିଗରେ ଉପଯୁକ୍ତ ନଥିଲା । ଏହାଦ୍ୱାରା ଆଭ୍ୟନ୍ତରୀଣ ଗଣ୍ଡଗୋଳର ଆଶଙ୍କା ମଧ୍ୟ ରହିଥିଲା ।

ଏକ ସର୍ବୋଚ୍ଚ ରାଜଶକ୍ତି ଭାବରେ ବ୍ରିଟିଶ୍ ସରକାର ରାଜ୍ୟଗୁଡ଼ିକର ଆଭ୍ୟନ୍ତରୀଣ ପ୍ରଶାସନ ପରିଦର୍ଶନ କରିବାର ନିଷ୍ପତ୍ତି ନେଇଥିଲେ ହେଁ ତାହା ଅପର୍ଯ୍ୟାପ୍ତ ଓ ପ୍ରଭାବହୀନ ଥିଲା । ଏହା ଥିଲା ଗଡ଼ଜାତବାସୀଙ୍କ ସ୍ୱାର୍ଥର ସର୍ବଥା ପରିପନ୍ଥୀ । ତଥାପି ଅଧିକାଂଶ ରାଜାମାନଙ୍କ ବ୍ରିଟିଶ୍ ନୀତିନିୟମ ପ୍ରତି ଆନୁଗତ୍ୟ ଓ ଅନୁରକ୍ତି ମଧ୍ୟ ସେମାନଙ୍କ ପକ୍ଷରେ ଏକ ଶୁଭ ସୂଚନା ଥିଲା ।

ହେନରୀ ରିକେଟସ୍, ଏ.ଜେ.ଏମ୍. ମିଲ୍ସ ଭଳି କେତେକ ବ୍ରିଟିଶ୍ ଉଚ୍ଚାଧିକାରୀ ଅଧିକାଂଶ ରାଜ୍ୟରେ ବ୍ୟାପିଥିବା ଅବ୍ୟବସ୍ଥା ଦେଖି ମର୍ମାହତ ହୋଇଥିଲେ । ସେଠାରେ ସେମାନେ ନିୟମିତ ବ୍ୟବସ୍ଥା ପ୍ରଣାଳୀ ପ୍ରବର୍ତ୍ତନ କରିବାର ଆବଶ୍ୟକତା ଅନୁଭବ କରିଥିଲେ । ହେଲେ ସେମାନଙ୍କ ଏହି ପ୍ରସ୍ତାବ ଗ୍ରହଣ କରାଗଲା ନାହିଁ । ବଙ୍ଗ ସରକାରଙ୍କ କୌଣସି ସ୍ଥାୟୀ ନିୟମ ପ୍ରବର୍ତ୍ତନ ରାଜା ଓ ରାଜ୍ୟମାନଙ୍କୁ ସରକାର ବିରୋଧରେ ଉସ୍କାଇବାର ଭୟ ରହିଥିଲା ।

୧୮୦୪ରେ ରାଜାଙ୍କ ଅତ୍ୟାଚାର ଯୋଗୁଁ ବାଙ୍କିକୁ ବ୍ରିଟିଶ୍ ସାମ୍ରାଜ୍ୟରେ ମିଶାଇ ଦିଆଗଲା । ୧୮୪୮ରେ ରାଜାଙ୍କ ଆନୁଗତ୍ୟହୀନତା ଅଭିଯୋଗରେ ଅନୁଗୁଳ କବଳିତ ହେଲା । ଏହା ରାଜାମାନଙ୍କୁ ସୁହାଇ ନଥିଲା । ଏ ଘଟଣା ସେମାନଙ୍କ ମଧ୍ୟରେ ନିରାଶା ଓ ଅସ୍ୱସ୍ତି ସଂଚାର କଲା ।

୧୮୫୭ର ଦେଶବ୍ୟାପୀ ବିଦ୍ରୋହ ପରେ ଏହି ସଂଯୋଗକାରୀ ନୀତିକୁ ପ୍ରତ୍ୟାହାର କରି ନିଆଗଲା । ଏହି ବିଦ୍ରୋହ ସମୟରେ ଅଧିକାଂଶ ରାଜାରାଜୁଡ଼ା ବ୍ରିଟିଶ୍ ସରକାରକୁ ସମର୍ଥନ କରିଥିଲେ ।

ମୟୂରଭଞ୍ଜ ଓ କେଉଁଝର ରାଜା ବିଦ୍ରୋହ ଦମନ କରିବାରେ ବ୍ରିଟିଶ୍ ସରକାରଙ୍କୁ ସକ୍ରିୟ ସହଯୋଗ ମଧ କରିଥିଲେ । ଏମାନଙ୍କୁ ଏକ ସାହାଯ୍ୟକାରୀ ଶକ୍ତି ମନେ କରି ବ୍ରିଟିଶ୍ ସରକାର ସେମାନଙ୍କୁ ମୁଖ୍ୟ ଆଧାର ଭାବେ ବ୍ୟବହାର କରିଥିଲା ।

ଏଭଳି ପରିସ୍ଥିତିରେ ଗମ୍ଭୀର କୃଷକ ଅସନ୍ତୋଷ, ରାଜାରାଜୁଡ଼ାଙ୍କ ପ୍ରଶାସନିକ ଅପାରଗତା, ଗଡ଼ଜାତ ମହଲର ପ୍ରାୟ ସଂପୂର୍ଣ୍ଣ ଅପଶାସନ ସତ୍ତ୍ୱେ ୧୮୫୭ ପରେ ଗୋଟାଏ ହେଲେ ରାଜ୍ୟ ବ୍ରିଟିଶ୍ ସାମ୍ରାଜ୍ୟରେ ମିଶାଯାଇ ନଥିଲା ।

ବ୍ରିଟିଶ୍ ସରକାରଙ୍କୁ ଲକ୍ଷ୍ୟ ରଖି ରାଜାରାଜୁଡ଼ାଙ୍କ ବିରୋଧରେ ହେଉଥିବା ଲୋକପ୍ରିୟ ବିଦ୍ରୋହ ଦମନ ପାଇଁ ବରଂ ବ୍ରିଟିଶ୍ ସରକାର ରାଜାମାନଙ୍କୁ ସହଯୋଗ କରୁଥିଲେ ।

ଏଭଳି ଅବସ୍ଥାରେ ରାଜାମାନେ ପ୍ରଜାଙ୍କ ସ୍ୱାର୍ଥ ପ୍ରତି ଗୁରୁତର ଅବହେଳା କଲେ । ସେମାନଙ୍କ ଉପରେ ଅତ୍ୟାଚାର ଚଳାଇଲେ । ପ୍ରଜାମାନଙ୍କ ପ୍ରତି ରାଜାମାନଙ୍କ ଭୟ ଆଉ ରହିଲା ନାହିଁ । ପ୍ରଜାମାନଙ୍କ ମଧ୍ୟରେ ଅସୁରକ୍ଷାର ଆତଙ୍କ ପ୍ରବଳତର ହେଲା ।

ରାଜାରାଜୁଡ଼ାଙ୍କ ବିରୋଧରେ ହେଉଥିବା ସାର୍ବଜନୀନ ଅସନ୍ତୋଷର ମୂଳ କାରଣ ବୁଝିବାକୁ ଇଂରେଜ ସରକାର କେବେହେଲେ ଚେଷ୍ଟା କରି ନଥିଲେ । ତେଣୁ ରାଜ୍ୟର ପ୍ରଶାସନିକ ଉନ୍ନୟନ ପାଇଁ ସେମାନେ ଯେଉଁ ପଦକ୍ଷେପମାନ ନେଲେ ତାହା ସେମାନଙ୍କ ଲାଗି କେବଳ ସମସ୍ୟା ହିଁ ସୃଷ୍ଟି କଲା ।

ବ୍ରିଟିଶ୍ ସରକାର କେବଳ ରାଜସ୍ୱାର୍ଥକୁ ଜଗିଲେ ପ୍ରଜାସ୍ୱାର୍ଥକୁ ନୁହେଁ । ବ୍ରିଟିଶ୍ ସରକାର ଦ୍ୱାରା ସୁରକ୍ଷିତ ରାଜାରାଜୁଡ଼ା ବେଶୀ ଏକଛତ୍ରବାଦୀ ହୋଇପଡ଼ିଲେ । ପ୍ରଜାବିରୋଧୀ ହୋଇ କେବଳ ନିଜର ଭଣ୍ଡାର ବୃଦ୍ଧି ପାଇଁ ଯାବତୀୟ ଅତ୍ୟାଚାରରେ ଲିପ୍ତ ରହିଲେ । ଗଡ଼ଜାତରେ ନ୍ୟାୟ, ଶାସନ ପରିବର୍ତ୍ତେ ରାଜାରାଜୁଡ଼ାଙ୍କ ମେରୀରାୟ ଶାସନର ପ୍ରବର୍ତ୍ତନ ହେଲା ।

କେବଳ ଏତିକି ନୁହେଁ ଅସନ୍ତୁଷ୍ଟ ପ୍ରଜାମାନଙ୍କ ମାଲିମକଦ୍ଦମା ମଧ ରାଜାଙ୍କ ସ୍ୱାର୍ଥ ଅନୁସାରେ ପରିଚାଳିତ ହେଲା । ନ୍ୟାୟ, ବିଚାରର ପବିତ୍ରତା ରହିଲା ନାହିଁ । କେତେକ ରାଜା ନିଜେ ବିଭିନ୍ନ ଅପରାଧିକ କର୍ମରେ ଲିପ୍ତ ହେଲେ । ପ୍ରଜାମାନଙ୍କ ଉପରେ ଅତ୍ୟଧିକ ଖଜଣା ବୃଦ୍ଧି ଘଟିଲା । ବହୁ ବେଆଇନ କର ବସାଗଲା । ପ୍ରଜାମାନଙ୍କ ଜୀବନ ବିପନ୍ନ ହେଲା ବେଳେ ସେମାନଙ୍କ ଜୀବନ ଓ ଶ୍ରମ ବିନିମୟରେ ରାଜାମାନେ ବିଳାସବ୍ୟସନପୂର୍ଣ୍ଣ ଜୀବନ ବିତାଇଲେ ।

ବହୁ ଅକ୍ଷମ ଅଯୋଗ୍ୟ ରାଜା ସେମାନଙ୍କ ଦେଓ୍ୱାନ, ବେବର୍ତ୍ତା, ଏପରିକି ଅତ୍ୟାଚାର ପାଇଁ କୁଖ୍ୟାତ ଅମଲାମାନଙ୍କ ହାତରେ ପ୍ରଶାସନିକ ଦାୟିତ୍ୱ ଛାଡ଼ିଦେଇ ନିଶ୍ଚିନ୍ତ ହେଲେ । ଏହି ଅମଲା ଅଧିକାରୀମାନେ ଉତ୍କୋଚକୁ ଜୀବନ ସୂତ୍ର କରି ନେଲେ । ସେମାନେ ପ୍ରଜାମାନଙ୍କ ଉପରେ ବିଭିନ୍ନ ଉପାୟରେ ଅତ୍ୟାଚାର କଲେ । ଅନେକ ସମୟରେ ସେମାନେ ଯାହା ଚାହୁଁଥିଲେ ପ୍ରଜାମାନଙ୍କ ଠାରୁ ବିନା ମୂଲ୍ୟରେ ନେଇ ଯାଉଥିଲେ । ବଳପୂର୍ବକ ଆଦାୟ କରୁଥିଲେ । ପ୍ରଜାମାନଙ୍କ ଧନ ସଂପତି, ଝିଅ ବୋହୂ, ଜୀବନ ମଧ୍ୟ ସୁରକ୍ଷିତ ନଥିଲା । ଏମାନଙ୍କ ଉପରେ କୌଣସି ରକମ ନିୟନ୍ତ୍ରଣ ନଥିଲା । ହାରିଗୁହାରି ଶୁଣିବାକୁ କେହି ନଥିଲେ । ଲୋକଙ୍କ ଦୁଃଖର ସୀମା ନଥିଲା ।

ଗାଁମାନଙ୍କରେ ପୋଲିସ୍ ଅତ୍ୟାଚାର ଦୁର୍ବିସହ ଥିଲା । ଗାଁର ନିରୀହ ପ୍ରଜାକୁଳ ଠାରୁ ସେମାନେ ବେଆଇନ ଉତ୍କୋଚ ଅସୁଲ କରି ନେଉଥିଲେ । କେହି ମନା କଲେ ନିସ୍ତୁକ ମାଡ଼ ଦେଉଥିଲେ । ପୋଲିସ୍ ଆସିବା ଖବର ପାଇଲେ ପ୍ରଜାମାନେ ତାଟିକବାଟ ଦେଇ ଜଙ୍ଗଲକୁ ପଳାୟନ କରି ଆତ୍ମଗୋପନ କରୁଥିଲେ ।



ସ୍ୱାଧୀନତା ଆନ୍ଦୋଳନ ସମୟରେ ସମ୍ବଲପୁର ବ୍ୟତିରେକେ ବାମଣ୍ଡା ଓ ରେଢ଼ାଖୋଲ ଗଡ଼ଜାତ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ସମ୍ବଲପୁରର କଂଗ୍ରେସ ଆନ୍ଦୋଳନ ୧୯୪୬ରେ ଏଠାରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଜନ୍ମ ଦେଇଥିଲା । ଏହା ଥିଲା ପୂର୍ବରୁ ଘଟିତ ଛୋଟବଡ଼ ବିଦ୍ରୋହ, ପ୍ରଜା ଅସନ୍ତୋଷର ଭୟାବହ ବିସ୍ଫୋରଣ ।

ସୂଚନାଯୋଗ୍ୟ ଯେ, ଇଂରେଜ ସରକାର ଅମଳରେ ଦେଶୀୟ ରାଜାମାନଙ୍କୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ସେଗୁଡ଼ିକ ହେଲା -

୧. ଟ୍ରିବ୍ୟୁଟାରୀ ମହଲ୍‌ସ ବା କରଦ ରାଜ୍ୟ

୨. ସମ୍ବଲପୁର ଗଡ଼ଜାତ

୩. ସିଂହଭୂମ

ଦେଶୀୟ ରାଜାମାନଙ୍କ ଏହି ଦ୍ୱିତୀୟ ଗଡ଼ଜାତ ଅଧୀନରେ ସମ୍ବଲପୁର, ବାମଣ୍ଡା, ବଣାଇ, ଗାଙ୍ଗପୁର, ପାଟଣା, ରେଢ଼ାଖୋଲ ଓ ସୋନପୁର ରାଜ୍ୟ ଥିଲା । ଶଂସିତ ଅଧ୍ୟୟନଟି ଯେହେତୁ କେବଳ ଅବିଭକ୍ତ ସମ୍ବଲପୁର ଜିଲ୍ଲା ଭିତରେ ସୀମିତ ତେଣୁ ଏଥିରେ କେବଳ ବାମଣ୍ଡା ଓ ରେଢ଼ାଖୋଲକୁ ନିଆଯାଇଛି ।

୧୮୦୪ରେ ମେଜର ବ୍ରାଉଟନ୍ ସମ୍ବଲପୁର ଅଞ୍ଚଳ ଜୟ କରି ଏହି ରାଜ୍ୟମାନଙ୍କୁ ସନ୍ଧି ଚୁକ୍ତିରେ ଆବଦ୍ଧ କରିଥିଲେ । ୧୮୦୩ରେ ଇଂରେଜ ଓ ମରହଟ୍ଟା ମଧ୍ୟରେ ସଂପାଦିତ ଦେଓଗାଁ ଚୁକ୍ତି ଅନୁସାରେ ଇଂରେଜମାନେ ସମ୍ବଲପୁର ଗଡ଼ଜାତ ଅଞ୍ଚଳରେ ମରହଟ୍ଟା ଆଧିପତ୍ୟ ସ୍ୱୀକାର କରିବାକୁ ବାଧ ହୋଇଥିଲେ ।

ଏହାପରେ ଉଭୟ ଶକ୍ତି ମଧ୍ୟରେ ଅନେକ ଦିନ ଯାଏଁ କୂଟନୈତିକ ଯୁଦ୍ଧ ଚାଲିଥିଲା । ୧୮୧୮ରେ ଏ ଅଞ୍ଚଳରୁ ନାଗପୁର ଭୋନ୍‌ସଲା ଆଧିପତ୍ୟର ଅବସାନ ହୋଇ ୧୮୨୬ରୁ ଏହା ଇଂରେଜମାନଙ୍କ ପୂର୍ଣ୍ଣ ପ୍ରଭାବାଧୀନ ହେଲା ।

ଏହା ପୂର୍ବରୁ ଏ ଅଞ୍ଚଳର ରାଜା ଜମିଦାରମାନେ ସମ୍ବଲପୁର ମହାରାଜାଙ୍କ ସାମନ୍ତ ଥିଲେ । ହେଲେ ଏହା ପରେ ସମ୍ବଲପୁର ମହାରାଜାଙ୍କ ଠାରୁ ଏହି ଅଧିକାର କାଢ଼ି ନେଇ ସବୁ ରାଜାମାନଙ୍କୁ ସ୍ୱତନ୍ତ୍ର ସନନ୍ଦ ପ୍ରଦାନ କରାଗଲା । ୧୮୪୯ରେ ସମ୍ବଲପୁରର ଶେଷ ରାଜା ନାରାୟଣ ସିଂହ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲା ପରେ ରାଜ୍ୟସ୍ୱତ୍ୱଲୋପ ନୀତି ବଳରେ ଏହା ସାଧାରଣ ଶାସନର ଅନ୍ତର୍ଗତ ହେଲା ।

ସମ୍ବଲପୁର ଗଡ଼ଜାତ ରାଜ୍ୟମାନ ଇଂରେଜ ସରକାରଙ୍କ କରଦ ରାଜ୍ୟ ହେଲା ପରେ ଏହା ଗଭର୍ଣ୍ଣର ଜେନେରାଲ୍‌ଙ୍କ ସାଉଥ-ୱେଷ୍ଟ ଫ୍ରଣ୍ଟିୟର ଏଜେଣ୍ଟ, ରାଞ୍ଚିଙ୍କ ଅଧୀନରେ ଅବସ୍ଥାପିତ ହେଲା । ୧୮୬୩ରେ ପାଟଣା, କଳାହାଣ୍ଡି, ସୋନପୁର, ବାମଣ୍ଡା ଓ ରେଢ଼ାଖୋଲ. ସି.ପି.ରେ ଓ ଗାଙ୍ଗପୁର, ବଣାଇ, ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ଛୋଟ ନାଗପୁରରେ ମିଶିଲା । ୧୯୦୫ରେ ସି.ପି.ରୁ ପାଞ୍ଚଟି ଦେଶୀୟ ରାଜ୍ୟ ଗାଙ୍ଗପୁର, ବଣାଇକୁ ଅଣାଯାଇ ଓଡ଼ିଶା ଡିଭିଜନ୍‌ରେ ମିଶାଇ ଏମାନଙ୍କ ପରିଚାଳନା ନିମନ୍ତେ ୧୯୦୬ରେ ଓଡ଼ିଶା କମିଶନର (ସୁପରିଣ୍ଟେଣ୍ଡେଣ୍ଟ)ଙ୍କ ତଳେ ପଲିଟିକାଲ୍ ଏଜେଣ୍ଟ ନିଯୁକ୍ତ ହେଲେ । ସମ୍ବଲପୁରରେ ତାଙ୍କ କାର୍ଯ୍ୟାଳୟ ଅବସ୍ଥାପିତ ହେଲା ।

୧୯୨୨ରେ କମିଶନରଙ୍କୁ ଦେଶୀୟ ରାଜ୍ୟମାନଙ୍କ ଦାୟିତ୍ୱରୁ ମୁକ୍ତ କରାଯାଇ ପଲିଟିକାଲ୍ ଏଜେଣ୍ଟଙ୍କୁ କମିଶନର ପଦବୀ ଓ କ୍ଷମତାକୁ ଉନ୍ନୀତ କରାଗଲା । ତାଙ୍କ ଅଧୀନରେ ଜଣେ ସହାୟକ ପଲିଟିକାଲ୍ ଏଜେଣ୍ଟ ରହିଲେ । ୧୯୩୩ରେ ଓଡ଼ିଶାର ୨୬ଟି ଓ କେନ୍ଦ୍ରପ୍ରଦେଶର ୧୪ଟି ଗଡ଼ଜାତକୁ ନେଇ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସି ଗଠିତ ହେଲା । ଏହି ରାଜ୍ୟଗୁଡ଼ିକରେ ପ୍ରାଦେଶିକ ସରକାରଙ୍କ କର୍ତ୍ତୃତ୍ୱ ରହିଲା ନାହିଁ । ଗଭର୍ଣ୍ଣର ଜେନେରାଲ୍ ଭାଇସରାୟ ରୂପେ ଏମାନଙ୍କର ମୁଖ୍ୟ ହେଲେ ଓ ତାଙ୍କ ତଳେ ଜଣେ ଏଜେଣ୍ଟ (ଏ.ଜି.ଜି.)

ରହିଲେ । ଗଭର୍ଣ୍ଣର ଜେନେରାଲ୍‌ଙ୍କ ଏହି ଏଜେଣ୍ଟ ଅଧୀନରେ ଜଣେ ପଲିଟିକାଲ୍ ଏଜେଣ୍ଟ ରହିଲେ ।

୧୯୩୭ରେ ଗଡ଼ଜାତ ରାଜାମାନଙ୍କ ପଦମର୍ଯ୍ୟାଦା ଓ ପ୍ରତିଷ୍ଠା ଅନୁସାରେ ଏ.ବି.ସି.ଡି. ଅର୍ଥାତ୍ ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶ୍ରେଣୀରେ ବିଭକ୍ତ କରାଗଲା । ସେ ଅନୁସାରେ ନୂତନ ସନନ୍ଦ ପ୍ରଦାନ କରାଗଲା । ବାମଣ୍ଡା ପ୍ରଥମ ଶ୍ରେଣୀ ଓ ରେଢ଼ାଖୋଲ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ ହେଲା ।

ଗଡ଼ଜାତ ରାଜାମାନଙ୍କର ଅତ୍ୟାଚାର ଓ ସ୍ୱେଚ୍ଛାଚାରିତାର ସୀମା ନଥିଲା । ଇଂରେଜ ସରକାରଙ୍କ ଛତ୍ରଛାୟା ତଳେ ରାଜାମାନଙ୍କ ଦ୍ୱାରା ପ୍ରଜାମାନେ ନିଷ୍ପେସିତ ଓ ଭୟଭିତ ରହୁଥିଲେ । ରାଜାଙ୍କ ବିରୁଦ୍ଧରେ ଇଂରେଜ ସରକାରଙ୍କ ପାଖରେ ପ୍ରଜାମାନଙ୍କ ଆପତ୍ତି ଅଭିଯୋଗ ଶୁଣା ଯାଉନଥିଲା । ଇଂରେଜ ଶାସକଙ୍କୁ ସଂତୁଷ୍ଟ କରିବାକୁ ରାଜାମାନଙ୍କୁ ବାର୍ଷିକ ଦେୟ ବାହାରେ ବି ଅନେକ ଖର୍ଚ୍ଚ କରିବାକୁ ପଡୁଥିଲା ।

ଏତଦ୍‌ଭିନ୍ନ ସେମାନଙ୍କ ବିଳାସବ୍ୟସନ, ଆତ୍ମିୟ ପରିଜନଙ୍କ ଭରଣପୋଷଣ, ପୃଷ୍ଠପୋଷକତା, ଧର୍ମ କାର୍ଯ୍ୟରେ ହେଉଥିବା ଖର୍ଚ୍ଚ ପ୍ରଜାମାନଙ୍କ ଠାରୁ ଆଦାୟ କରାଯାଉଥିଲା । ଭୂ-ରାଜସ୍ୱ ହାର ଅତ୍ୟନ୍ତ ବେଶୀ ଥିଲା ଓ ତାହା କ୍ରମାଗତ ଭାବରେ ବୃଦ୍ଧି ପାଉଥିଲା । ଡାକ୍ତରଖାନା, ଜଙ୍ଗଲ, ରାସ୍ତା, ଗୋଚର, ଯାନବାହନ ବ୍ୟବହାର, ଯୋଡ଼ିକବାଟ, ପୋଷ୍ୟପୁତ୍ର ଗ୍ରହଣ, ଗହଣା ଅଳଙ୍କାର ଧାରଣ, ଲୁଣ, କିରାସିନି, ବିଡ଼ି, ତମାଖୁ, ପାନ, ନଡ଼ିଆ ଆଦି ଉପରେ କର ବସୁଥିଲା । ଏହା ବାହାରେ ବାଜେକର ମାନ ରହୁଥିଲା । ତା'ସହିତ ରସଦ, ମାଗଣ, ବେଠି, ବେଗାରୀ ସହିତ ରାଜକର୍ମଚାରୀଙ୍କ ଅତ୍ୟାଚାର ଥିଲା । ଧନଜୀବନର ସୁରକ୍ଷା ନଥିଲା । ବହୁ ଲୋକ ଗଡ଼ଜାତ ଛାଡ଼ି ମୋଗଲବନ୍ଦୀ, ଖାସମାହାଲକୁ ପଳାୟନ କରୁଥିଲେ ।

ଏହି ସମୟରେ ଇଂରେଜ ସରକାର ବିରୋଧୀ ଜନଜାଗରଣ ଗଡ଼ଜାତ ରାଜ୍ୟମାନଙ୍କୁ ବ୍ୟାପୀଗଲା ।

୧୯୦୮ରୁ ୧୯୨୮ ମଧ୍ୟରେ ବାମଣ୍ଡା ରାଜ୍ୟରେ କର ବୃଦ୍ଧି ବିରୋଧରେ ଚାରୋଟି ପ୍ରଜା ଆନ୍ଦୋଳନ ହୋଇଥିଲା । ପ୍ରଥମ ଆନ୍ଦୋଳନରେ ହର ପ୍ରଧାନ, ଦ୍ୱିତୀୟରେ ଭାଗବତ ପ୍ରଧାନ, ତୃତୀୟରେ ଜଗନ୍ନାଥ ଗଡ଼ନାୟକ, ଚତୁର୍ଥରେ ଦଇତାରୀ ହୋତା ନେତୃତ୍ୱ ନେଇ ବହୁ ପ୍ରଜାଙ୍କ ସହ ଜେଲ୍ ବରଣ କରିଥିଲେ । ୧୯୨୮ରେ ଏଚ୍.ମେକଫରସନ ବନ୍ଦୋବସ୍ତ

ଫଳରେ ଦରବୃଦ୍ଧି ଘଟି ପଞ୍ଚମ ପ୍ରଜା ଆନ୍ଦୋଳନର ସୂତ୍ରପାତ ହେଲା । ପ୍ରାୟ ବାମଣ୍ଡାର ଚାରି ହଜାର ପ୍ରଜା ଏହା ବିରୁଦ୍ଧରେ ସମ୍ବଲପୁର ଠାରେ ପଲିଟିକାଲ୍ ଏଜେଣ୍ଟଙ୍କୁ ସାକ୍ଷାତ୍ କରି ରାଜ୍ୟବାସୀଙ୍କ ଦୁରାବସ୍ଥା ଅଭିହିତ କରାଇଥିଲେ ।

ଏହି ପ୍ରତିନିଧିମାନେ ବାମଣ୍ଡାକୁ ଫେରିଲା ପରେ ରାଜାଙ୍କ ଆଦେଶରେ ଅଶେଷ ଯନ୍ତ୍ରଣା ଓ ନିର୍ଯ୍ୟାତନା ଭୋଗ କରିଥିଲେ । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଦୟାନନ୍ଦ ଶତପଥୀ, ଦାଶରଥି ମିଶ୍ର, ହର ପ୍ରଧାନ, ଭାଗୀରଥି ପ୍ରଧାନ, ଜଗନ୍ନାଥ ଗଡ଼ନାୟକ ଓ ଭଗବାନ ପଟେଲ । ଦୟାନନ୍ଦଙ୍କୁ ଶିକ୍ଷକତାରୁ ବହିଷ୍କାର କରି ୧୯୨୯ରେ ଦେବଗଡ଼ ରାଜ୍ୟରୁ ତଡ଼ି ଦିଆଯାଇଥିଲା ।

୧୯୩୮ରୁ ବାମଣ୍ଡାରେ ପ୍ରଜାମଣ୍ଡଳ ଆନ୍ଦୋଳନର ପ୍ରକ୍ରିୟା ଆରମ୍ଭ ହେଲା । ବାମଣ୍ଡା, କୁଚିଣ୍ଡା ଆଦି ଅଞ୍ଚଳରେ ଏହା ବ୍ୟାପକ ରୂପ ଗ୍ରହଣ କରିଥିଲା । ଦାଶରଥୀ ମିଶ୍ର, ଗୌରୀଶଙ୍କର ମହାପାତ୍ର, ବୈଷ୍ଣବ ଚରଣ ନାୟକ, ଶ୍ରୀଧର ବେହେରା, ଦିବାକର ବେହେରା, ବିଲ ନାୟକ, ସହଦେବ ସାହୁ, କାଭିକିଆ ବେହେରା, ନେତ୍ରାନନ୍ଦ ବେହେରା, ଗୋପାଳ ପ୍ରଧାନ, କୃଷ୍ଣଚନ୍ଦ୍ର ପ୍ରଧାନ, ବିଦ୍ୟାଧର ସାହୁ, ବଳଭଦ୍ର ସାହୁ, କନ୍ଦର୍ପ ପ୍ରଧାନ, ମାନଗୋବିନ୍ଦ ଦାସ, ଦାଶରଥୀ ମହାପାତ୍ର, ମହାଦେବ ପ୍ରଧାନ, ଗୁଣନିଧି ଗୌନ୍ତିଆ, ରାମଚନ୍ଦ୍ର ନାୟକ ପ୍ରମୁଖ ଏଥିରେ ମୁଖ୍ୟ ଭୂମିକା ନେଇଥିଲେ ।

ବାମଣ୍ଡା ରାଜ୍ୟର ଶାସନ ଓ ରାଜସ୍ୱ ନୀତି ଏ ଆଦିବାସୀ ଅଧ୍ୟୁଷିତ ଅରଣ୍ୟଘେରା ପାହାଡ଼ି ରାଜ୍ୟବାସୀଙ୍କୁ ଏକ ବିଡ଼ମ୍ବିତ ସାମାଜିକ ଜୀବନ ଦେଇଥିଲା । ଏହା ଥିଲା ବହୁ ବିରୋଧାଭାସରେ ପରିପୂର୍ଣ୍ଣ ।

୧୮୭୨ରେ ବାମଣ୍ଡା ସିଂହାସନ ଆରୋହଣ କରି ରାଜା ବାସୁଦେବ ସୁଢ଼ଳଦେବ ଦେବଗଡ଼ରେ ଯେଉଁ ସୁବର୍ଣ୍ଣ ଯୁଗ ସୃଷ୍ଟି କରିଥିଲେ,ତା'ପଛରେ ବି ଗଡ଼ଜାତ ଶାସନର ବେଠି ବେଗାରୀର ଅନ୍ଧାରୀ କଳାଛାଇ ରହିଥିଲା । ଏହି ସଂସ୍କୃତବନ୍ତ ସାହିତ୍ୟିକ ରାଜପୁରୁଷଙ୍କ ବିଜ୍ଞାନ, ପ୍ରଯୁକ୍ତି ପ୍ରେମ ଓଡ଼ିଶାରେ ପ୍ରଥମ କରି ପାଣିକଳ, ଜଳବିଦ୍ୟୁତ୍ କାଠଜାଳେଣୀ ବିଦ୍ୟୁତ୍‌ବତୀ, ବୈଦ୍ୟୁତିକ ଛାପାଖାନା, ଟେଲିଫୋନ୍ ଲାଇନ୍ ପ୍ରଚଳନ କରିବାର ଗୌରବ ଅର୍ଜନ କରିଥିଲେ । ହେଲେ ଏଥିରେ ମଧ୍ୟ ଦେବଗଡ଼ ବାହାରର ପ୍ରଜାମାନଙ୍କୁ ବେଠି ଖଟା ଯାଇଥିଲା । ରାଜାଙ୍କ ଖମାରରେ ପ୍ରଜାମାନଙ୍କୁ ବେଠି ଖଟାଇବାର ପରମ୍ପରାର ଅବସାନ ଘଟି ନଥିଲା ।

ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଦିବ୍ୟଶଙ୍କର ସୁଦ୍ଦଳ ଦେବଙ୍କଠୁ ଆରମ୍ଭ କରି ଭାନୁଗଙ୍ଗ ଦେବଙ୍କ ପର୍ଯ୍ୟନ୍ତ ବାମଣ୍ଡାରେ ଚୁକ୍ତାପିଟା ଗଡ଼ଜାତୀ ଶାସନର ବିଭିନ୍ନ ବେଠି, ମାଗଣ, ବେଗାରୀ, ପାସ, ଟିକା, ପଞ୍ଚାର ନିନ୍ଦନୀୟ ସଂସ୍କୃତି ରହି ଆସିଥିଲା । ଯାହା ପେଟ ଭିତରକୁ ଯାଉଥିଲା ତାକୁ ଛାଡ଼ି ବାକି ସବୁ ରାଜା ବା ସରକାରଙ୍କର ଥିଲା ।

| | | |
|---|---|---|
| ଖରା ବେଠି | | ପ୍ରଜାମାନେ ବିନା ମଜୁରୀରେ ରାଜ କର୍ମଚାରୀ ବା ସରକାରୀ କର୍ମଚାରୀମାନଙ୍କ ନୂତନ ଗୃହ ନିର୍ମାଣ, ପୁରାତନ ଗୃହ ମରାମତି କରୁଥିଲେ । ଜେଲ୍‌ଖାନା, ଡାକ୍ତରଖାନା ଓ କର୍ମଚାରୀମାନଙ୍କୁ ମାଗଣାରେ ଜାଳେଣି କାଠ ଯୋଗାଣ । ଦେବଗଡ଼ର ଇଲେକ୍‌ଟ୍ରିକ୍ ମେସିନ୍ ପାଇଁ ମାଗଣାରେ କାଠ ଯୋଗାଣ । |
| ସଡ଼କ ବେଠି | : | ବର୍ଷା ଋତୁ ପରେ ପ୍ରତିବର୍ଷ ରାଜଧାନୀରୁ ବାମରା ରେଳଷ୍ଟେସନ୍ ଯାଏଁ କେବଳ ରାଜାଙ୍କ ବ୍ୟବହାର ପାଇଁ ମଟର ସଡ଼କ ଓ ବଳଦ ଗାଡ଼ି ସଡ଼କ ମରାମତି, ନୂତନ ସଡ଼କ, କାଠପୋଲ ନିର୍ମାଣ, ମରାମତି, ଗ୍ରାମ୍ୟ ରାସ୍ତା ମରାମତି । |
| ବାଡ଼ବନ୍ଦି ବେଠି | : | ଦେବଗଡ଼, କୁଚିଣ୍ଡା, ଗୋବିନ୍ଦପୁର, ବାରକୋଟର ସରକାରୀ ବଗିଚାରେ ମାଗଣରେ ବାଡ଼ବନ୍ଦି । ରାଜା, ପଲିଟିକାଲ୍ ଏଜେଣ୍ଟ, ରାଜପରିବାର ଓ ରାଜକର୍ମଚାରୀମାନଙ୍କ ଘର, ଥାନା, ଫାଣ୍ଡି, ଜଙ୍ଗଲ ବିଭାଗର ଘର ଚାରିଆଡ଼େ ମାଗଣରେ ବାଡ଼ଦେବା ବେଠି । |
| ହାତୀଖେଦା ବେଠି | : | ଜଙ୍ଗଲରେ ହାତୀ ସଂଖ୍ୟା ଓ ସେମାନଙ୍କ ଉତ୍ପାତ ବଢ଼ିଗଲେ ରାଜା ହାତୀ ଧରିବାକୁ ଖେଦା କରାଉଥିଲେ । ଏହି ବେଠି ଥିଲା ବାଧ୍ୟତାମୂଳକ । ଫସଲ ଅମଳ ସମୟରେ ପ୍ରଜାମାନେ କାଠଗଣ୍ଡିରେ 'ଜଗତବେଢ଼ା' ନିର୍ମାଣ କରି ପ୍ରତ୍ୟେକ ଗ୍ରାମର |

ଜଣେ ଲେଖାଏଁ ପୁରୁଷ ପ୍ରତ୍ୟେକ ପରିବାରରୁ ୩୦/୪୫ ଦିନ ପାଇଁ ହାତରୁ ଖାଇ ଦିନରାତି ହାତୀ ଖେଦା କରୁଥିଲେ । ଏଥିରେ ଏକ ସମୟରେ ପ୍ରାୟ ୫/୬ ହଜାର ଲୋକ କାମ କରୁଥିଲେ । ସେମାନେ ରାତିରେ ଯେପରି ନ ଶୋଇବେ ସେଥିପାଇଁ ବିଟ୍ ବ୍ୟବସ୍ଥା ଥିଲା । ସେମାନଙ୍କ ପ୍ରତି ରାଜକର୍ମଚାରୀମାନେ ପଶୁ ଭଳି ବ୍ୟବହାର କରୁଥିଲେ ।

ହାକା ବେଠି — ରାଜା, ପଲିଟିକାଲ୍ ଏଜେଣ୍ଟ, ରାଜପରିବାର, ସେମାନଙ୍କ ବନ୍ଧୁବାନ୍ଧବ, ସୁପରିଣ୍ଟେଣ୍ଡେଣ୍ଟ, ଦେଓ୍ୱାନ ଓ ତାଙ୍କ ବନ୍ଧୁମାନଙ୍କ ମନୋରଂଜନ ପାଇଁ ହାକା ବେଠି କରାଯାଉଥିଲା । ପୁଲିସ୍ ଓ ଜଙ୍ଗଲ ବିଭାଗ କର୍ମଚାରୀମାନେ ୧୫/୨୦ଟି ଗ୍ରାମରୁ ୫୦୦ରୁ ୧୦୦୦ ପର୍ଯ୍ୟନ୍ତ ପ୍ରଜାଙ୍କୁ ମାଗଣାରେ ଧରି ଆଣି ବଡ଼ ବଡ଼ ଗଛ ଉପରେ ମଞ୍ଚା ବାନ୍ଧୁ ଥିଲେ । ତା'ପରେ ୨/୩ ମାଇଲ ଦୂରରୁ ଜନ୍ତୁକୁ ଘେରାଉ କରି ଟିଣ, ମାଦଳ, ଢ଼ୋଲ ଆଦି ବଜାଇ ମଞ୍ଚା ତଳକୁ ହୁରୁଡାଇ ଆଣୁଥିଲେ ।

ଗାରାବନ୍ଧା ବେଠି — ବାଘ ଶିକାର ପାଇଁ ଗଛରେ ମଞ୍ଚା ବନ୍ଧାଯାଏ । ବାଘକୁ ଆକର୍ଷିତ କରିବାକୁ ଗାଇ, ବଳଦ, ମଇଁଷି ଗଛ ତଳେ ବନ୍ଧାଯାଏ । ଏହି ପଶୁସଂପଦ ପାଇଁ ତା' ମାଲିକ ମୂଲ୍ୟ ପାଏ ନାହିଁ । ମଣିଷଖିଆ ବାଘ ଶିକାର ପାଇଁ ବାଧତାମୂଳକ ଭାବରେ ମଣିଷ ମଧ ବନ୍ଧା ଯାଉଥିଲା । ଅନେକ ଥର ସେ କ୍ଷତାହତ ହେଉଥିଲା ବା ପ୍ରାଣ ହରାଉଥିଲା ।

ଶିକାର୍ ବେଠି : ଅନ୍ୟାନ୍ୟ ବନ୍ୟ ଜନ୍ତୁ ଶିକାର ପାଇଁ ମଧ ପ୍ରଜାମାନେ ମାଗଣାରେ ହାକା କରିବାକୁ ବାଧ ଥିଲେ ।

ବେଗାରୀ ବା ବିଗାଡ଼ି : ବାମଣ୍ଡା ରାଜସ୍ୱ ଆଇନ ଅନୁସାରେ ଏଜେନ୍ସି ଅଫିସର, ସରକାରୀ କାର୍ଯ୍ୟରେ ଥିବା ଅଧିକାରୀ, ରାଜାଙ୍କର ଏକ ପୁରୁଷ ଅନ୍ତରରେଥିବା ରାଜପରିବାର, ସାଧାରଣ କାର୍ଯ୍ୟରେ ଗସ୍ତ କରୁଥିବା ଷ୍ଟେଟ୍ କର୍ମଚାରୀମାନେ ଏହି ବ୍ୟବସ୍ଥା ଉପଭୋଗ କରୁଥିଲେ ।

ଏହି ବେଗାରୀ ପାଇଁ ସରକାରୀ ଭାବରେ ଜଣ ପ୍ରତି ୧୦ ମାଇଲ ପର୍ଯ୍ୟନ୍ତ ମଜୁରୀ ଚାରିଅଣା ଓ ୧୫ ମାଇଲ ପର୍ଯ୍ୟନ୍ତ ୬ ଅଣା ପଇସା ଥିଲା । ୧୦ ମାଇଲ ପର୍ଯ୍ୟନ୍ତ ବଳଦ ଗାଡ଼ି ମଜୁରୀ ଏକ ଟଙ୍କା ଓ ୧୫ ମାଇଲ ପର୍ଯ୍ୟନ୍ତ ଦେଢ଼ ଟଙ୍କା ଥିଲା ।

ହେଲେ ଏହି ମଜୁରୀ ପ୍ରାୟତଃ ଦିଆଯାଉ ନଥିଲା । ଯେଉଁ ପ୍ରଜାମାନେ ବେଠି, ବେଗାରୀ, ହାକା, ହାତୀ ଧରି ଆଦି ନିମନ୍ତେ ଯାଉଥିଲେ ସେମାନଙ୍କ ସହ ପାଶବିକ ବ୍ୟବହାର କରାଯାଉଥିଲା । ଅନେକେ ମାଡ଼ ସହି ନ ପାରି ପ୍ରାଣ ହରାଉଥିଲେ । ପ୍ରଚଳିତ ଭାଷାରେ ଏମିତି ଘଟଣାକୁ ''ବିଲେଇ କାମୁଡ଼ାରେ ମୃତ୍ୟୁ'' ହେବାର ପ୍ରଚାରିତ ହେଉଥିଲା ।

ଏହାଛଡ଼ା ରାଜାଙ୍କ ଏକ ପୁରୁଷ ଅନ୍ତର୍ଗତ ରାଜ ପରିବାରର ସଦସ୍ୟ, ସରକାରୀ କାର୍ଯ୍ୟରେ ଥିବା ଏଜେନ୍‌ସି ଅଫିସର, ସରକାରୀ ଅଫିସରଙ୍କ ପାଇଁ ରସଦ ନାମକୁ ମାତ୍ର ମୂଲ୍ୟରେ ଗୌନ୍ତିଆ ପ୍ରଜାମାନଙ୍କଠୁ ନେଇ ଦେଉଥିଲେ । କାଠ ଓ ପାଣି ବିନା ମୂଲ୍ୟରେ ଯୋଗାଣ ହେଉଥିଲା ।

ସେତେବେଳେ ରସଦ ଏବର ମୂଲ୍ୟ ଓ ଓଜନରେ ହେଲା- ସାରୁ ଅରୁଆ ଚାଉଳ ୫୦୦ ଗ୍ରାମ, ମୁଗଡାଲି-୧୨୫ ଗ୍ରାମ, ଗୁଆ ଘିଅ-୨୫୦ଗ୍ରା, ତେଲ-୬୨ଗ୍ରାମ, କୁକୁଡ଼ା-୨, ଅଣ୍ଡା-୬, ମଇଦା-୫୦୦ଗ୍ରା, ଚିନି-୧୨୫ଗ୍ରା, ଲୁଣ, ହାଣ୍ଡି, ଡିବି ଆଦିର ଓଳିକର ରସଦର ମୂଲ୍ୟ ୧ଟଙ୍କା ୨୯ ପଇସା ଥିଲା । ଷ୍ଟେଟ କର୍ମଚାରୀ, ନୌକରମାନଙ୍କ ରସଦର ଓଳିକର ମୂଲ୍ୟ ଥିଲା ୫୪ ପଇସା । ଏହା ଧାର୍ଯ୍ୟ ହୋଇଥିଲେ ମଧ୍ୟ ଏଥିପାଇଁ ପଇସା ପଇଠ କରାଯାଉ ନଥିଲା ।

ମାଗଣ ରାଜାଙ୍କର ପୁଅ ବିବାହ, ଝିଅ ବିବାହ, ଅନ୍ତ୍ୟେଷ୍ଟି କ୍ରିୟା ଆଦିରେ ପ୍ରଜାମାନେ ସରୁ ବାସ୍ନା ଚାଉଳ, ଅରୁଆ ଚାଉଳ, ଉସୁନା ଚାଉଳ, ମୁଗ, ମୁଗଡ଼ାଲି, ବିରି, ବିରି ଡାଲି, କୋଳଥ, ଅଟା, ମଇଦା, ଗୁଆ ଘିଅ,

| | |
|---|---|
| | ସୋରିଷ ତେଲ, ରାଶି ତେଲ, ଜଡ଼ା ତେଲ, ବୋଦା, ଖାସି, ଖଲି, ଚଉତି, ପତ୍ର, ହାଣ୍ଡି, ସରାଇ, ମାଠିଆ, ଦୁହାଁଳିଆ ଗାଈ, ଖଟ, ପଲଙ୍କ ଆଦି ପ୍ରଜାମାନେ ପ୍ରତ୍ୟେକ ଗ୍ରାମରୁ ନାମକୁ ମାତ୍ର ମୂଲ୍ୟରେ ଯୋଗାଉ ଥିଲେ । |
| ରାଜାଟିକା<br>ରାଣୀଟିକା | କେବଳ ଗୌନ୍ତିଆ ବା ଗ୍ରାମ ମୁଖିଆମାନଙ୍କ ରାଜ ପରିବାର ବିବାହ, ବ୍ରତ ସମୟରେ ଏହି ମାଗଣା ଟିକା କରୁଥିଲେ । କେଉଁ ଗ୍ରାମର ଗୌନ୍ତିଆ କେତେ ପରିମାଣର ଟୀକା କରିବେ ତାହା ସରକାରୀ କର୍ମଚାରୀଙ୍କ ଦ୍ୱାରା ଧାର୍ଯ୍ୟ କରାଯାଉଥିଲା ।<br>ଏହା ବ୍ୟତୀତ ରାଜା ବା ରାଣୀ ରାଜ୍ୟର ବିଭିନ୍ନ ସ୍ଥାନକୁ ଦଶହରା, ନବାନ୍ନ, ପୌଷ ମାସରେ ବିଜେ କରୁଥିଲା ବେଳେ ଗୌନ୍ତିଆ, ଗୌନ୍ତିଆଣୀମାନେ ରାଜା, ରାଣୀଙ୍କ ଟୀକା କରୁଥିଲେ । |
| ଚୂଳି ପଞ୍ଚା | ବାମଣ୍ଡାରେ ଜମିବାଡ଼ି ନଥିବା ସୁଖବାସୀ ପ୍ରଜାମାନେ ରାଜ୍ୟର ବିଭିନ୍ନ କର, କରତଳି, ବେଠି, ବେଗାରୀ, ବିଗାଡ଼ି, ମାଗଣ, ରସଦ ଆଦିରୁ ମୁକ୍ତ ଥିଲେ । ହେଲେ ସେମାନଙ୍କୁ ଜାଳେଣି କାଠ ବାବଦରେ ଏକ ବାର୍ଷିକ କର ଚୂଳି ପଞ୍ଚା ଦେବାକୁ ପଡୁଥିଲା । |
| ଶାଳ ପଞ୍ଚା | କମାର, ଖାତି, କୁମ୍ଭାର, ଧୋବା, ମୁଢ଼ୀ ଭାଜୁଥିବା ଓ ଚୁଡା କୁଟୁଥିବା କେଉଁଟମାନଙ୍କୁ 'ଶାଳ ପଞ୍ଚା' ନାମକ ବାର୍ଷିକ କର ଦେବାକୁ ପଡୁଥିଲା । |

ଯେଉଁମାନେ ଆତ୍ମରକ୍ଷା ପାଇଁ ଖଣ୍ଡା, ଧନୁଶର, ଟାଙ୍ଗିଆ ଆଦି ରଖୁଥିଲେ, ସେମାନଙ୍କୁ ବାର୍ଷିକ କର 'ପାସ୍' ସେ ବାବଦରେ ଦେବାକୁ ପଡୁଥିଲା ।

| | | |
|---|---|---|
| ଖଳଚରି | : | ଗାଈ, ବଳଦ, ଛେଳି, ଘୋଡ଼ା, ମଇଷ ଆଦି ସରକାରୀ ଜମି ବା ଜଙ୍ଗଲରେ ଚରିବା ବାବଦରେ 'ଖଳଚରି' ବାର୍ଷିକ କର ଦେବାକୁ ପଡୁଥିଲା । |

ବାମଣ୍ଡା ରାଜ୍ୟର ରାଜସ୍ୱ ଆଇନ -୧୯୨୯ ଅତି କଠୋର ଥିଲା । ଗୌନ୍ତିଆମାନେ ରାଜ୍ୟର ଜଣେ କର୍ମଚାରୀ ବିବେଚିତ ହେଉଥିଲେ । ତାଙ୍କ କାର୍ଯ୍ୟ ପାଇଁ ନିସ୍କର 'ଭୋଗରା ଜମି' ଭୋଗ କରୁଥିଲେ । ଭୂରାଜସ୍ୱ ଅସୁଲ ଦାୟିତ୍ୱ ସେମାନଙ୍କର ଥିଲା ଓ ଏଥିପାଇଁ ସେମାନେ କମିଶନ ପାଉଥିଲେ ।

ପ୍ରଜାମାନଙ୍କର ଜମି ବିକ୍ରୀ, ଦାନ ବା ବନ୍ଧକ କରିବା ଅଧିକାର ନଥିଲା । ରାଜାଙ୍କ ଅନୁମତିରେ ପରବର୍ତ୍ତୀ ବନ୍ଦୋବସ୍ତ ପର୍ଯ୍ୟନ୍ତ ପେଟି ପ୍ରଜା ବସାଇ ପାରୁଥିଲେ । ଅଦାଲତର କୌଣସି ରକମ ଅନୁମତି ପାଇଁ ଗୌନ୍ତିଆଙ୍କ ସୁପାରିଶ ଆବଶ୍ୟକ ହେଉଥିଲା । ଗୌନ୍ତିଆମାନେ ଅଖଣ୍ଡ କ୍ଷମତାର ଅଧିକାରୀ ହୋଇ ମେରୀ ରାୟ ଶାସନ ଚଳାଉଥିଲେ । ପ୍ରଜାଙ୍କୁ ଜମିରୁ ବେଦଖଲ କରି ଗାଁରୁ ତଡ଼ିବା ଅଧିକାର ସେମାନଙ୍କର ଥିଲା । କୌଣସି ଅପରାଧୀକୁ ହକିୟତ ଗୌନ୍ତିପଟ୍ଟା, ଅନୁସାରେ ଗୌନ୍ତିଆଙ୍କ ଗ୍ରାମରେ ଆଶ୍ରୟ ଦେବାର ନିୟମ ନଥିଲା ।

ବାମଣ୍ଡା ରାଜସ୍ୱ ନିୟମାବଳିରେ ପ୍ରଜାମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରା ଯାଇଥିଲା -

ପ୍ରଥମ ଶ୍ରେଣୀ : ମାରୱାଡ଼ି, ବଣିକ

ଦ୍ୱିତୀୟ ଶ୍ରେଣୀ : କ୍ଷତ୍ରିୟ, ବ୍ରାହ୍ମଣ, ଚଷା, କୁଲତା, ଅଗରିଆ

ତୃତୀୟ ଶ୍ରେଣୀ : କନ୍ଧ, ଗଣ୍ଡ, କୋଲ୍ହ, ମୁଣ୍ଡା, ଓରାମ, ଭୂୟାଁ, ଖଡ଼ିଆ, ଝରା, ଲୋଧା, ତୁରି, ବିଂଝାଲ, ତନ୍ତୀ, କିଶାନ, ପାଣ, ଘାସି, ଭାଟ

ସେହିପରି ଗ୍ରାମମାନଙ୍କୁ ମଧ୍ୟ ୬ଟି ପର୍ଯ୍ୟାୟରେ ବିଭକ୍ତ କରା ଯାଇଥିଲା :

୧. ରାଜାଙ୍କର ଖମାର ଗ୍ରାମ
୨. ଖରପୋଷ ଗ୍ରାମ
୩. ଦାନ ଗ୍ରାମ
୪. ବ୍ରହ୍ମୋତ୍ତର, ଦେବୋତ୍ତର ଗ୍ରାମ
୫. ଗୌନ୍ତି ଗ୍ରାମ
୬. ପଟ୍ଟୁଆରୀ ଗ୍ରାମ



୧୯୨୨ରେ ମେକ୍ ଫରସନ ଇଂରେଜ ସରକାରଙ୍କ ଦ୍ୱାରା ବାମଣ୍ଡାର ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହୋଇ ୧୯୨୯ରେ ଜମିଜମା ବନ୍ଦୋବସ୍ତ କରାଇଥିଲେ । ଏହି ବନ୍ଦୋବସ୍ତରେ ଭୂରାଜସ୍ୱ ଚାରିଗୁଣ ବୃଦ୍ଧି କରାଯାଇଥିଲା । ସରକାର ଆଇନ କଲେ ଯେ ପ୍ରଜାମାନେ ଟଙ୍କାକୁ ୩୨ ସେରରୁ କମ୍ ଚାଉଳ ବିକ୍ରୀ କରି ପାରିବେ ନାହିଁ । ସେତେବେଳେ ମୋଗଲବନ୍ଦୀରେ ଟଙ୍କାକୁ ଆଠ ସେର ଚାଉଳ ବିକ୍ରୀ ହେଉଥିଲା । ପ୍ରଜାମାନେ ବିଭିନ୍ନ କରରେ ଅତିଷ୍ଠ ହୋଇ ମୋଗଲବନ୍ଦୀକୁ ଚାଉଳ ଚୋରାଚାଲାଣ କରି ଦୁଇ ପଇସା ରୋଜଗାର କରିବାକୁ ଚାହିଁଲେ । ଏଥିପାଇଁ ସୀମାନ୍ତରେ କଠୋର ନିୟନ୍ତ୍ରଣ ବ୍ୟବସ୍ଥା କରାଯିବା ସହିତ ଏଭଳି ପ୍ରଜାଙ୍କ ପାଇଁ କଠୋର ଦଣ୍ଡ ବିଧାନ କରାଗଲା ।

ବନ୍ଦୋବସ୍ତ ପରେ ଜଙ୍ଗଲ ସେସ କରତଳି, ସ୍କୁଲ ସେସ୍, ବସାଣ, ଚୌକିଦାରୀ ଟେକ୍ସ ବୃଦ୍ଧି ହେଲା ।

୧୯୩୦ର ମରୁଡ଼ି ପରେ ଧାନଚାଉଳ ରପ୍ତାନୀ ଉପରେ କଠୋର କଟକଣା ହେଲା । ରାଜସ୍ୱ ବିଭାଗ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ସଂଘବଦ୍ଧ ଖଜଣା ଅସୁଲ ଅଭିଯାନଜନିତ ଘୋର ଜୁଲମ, ଖଜଣା ଦେଇ ପାରୁ ନଥିବା ଗୌନ୍ତିଆମାନଙ୍କର ଅସ୍ଥାବର ସଂପତ୍ତି, ସ୍ତ୍ରୀ, ଝିଅ, ପୁଅପିଂଧା ଗହଣା, ବାସନକୁସନ, ବାକ୍ସ, ଆଲମାରି, କବାଟ, ଦ୍ୱାରବନ୍ଧ, ଶଗଡ଼, ଗାଈ, ବଳଦ, ମଇଷ, ଧାନ, ଚାଉଳ ଜବ୍ଦ କରାଯାଉଥିଲା । କିଛି ଘରୁ ନ ବାହାରିଲେ ଅନ୍ୟତ୍ର ଲୁଚାଇ ଦେବାର ସନ୍ଦେହ କରି ''ବୁଧବାରୀ-ଗୁରୁବାରୀ'' ନାମକ ପ୍ରାୟ ୧୦-୧୦ କି.ଗ୍ରା. ଓଜନର ଦୁଇଟା ପଥର ଦୁଇହାତରେ ଥୋଇ ଖରାରେ ଛିଡ଼ା କରାଯାଉଥିଲା । 'ବୁଧବାରୀ-ଗୁରୁବାରୀ' ଦଣ୍ଡ ପରେ ଥିଲା 'କାଇଝରା ଦଣ୍ଡ' । ଏଥିରେ ଖଜଣା ଖିଲାଫକାରୀକୁ ପୋଲୁଅ ଭିତରେ ଖରାରେ ଢାଙ୍କି ତା'ଉପରେ ପଥର ଚାପି 'କାଇ' ବା ବଣୁଆ ନାଲି ଯନ୍ଦାର ଘର ଛାଡ଼ି ଦିଆ ଯାଉଥିଲା । ଅଣ୍ଡକୋଷରେ ପଥର ଝୁଲା ଦଣ୍ଡ, ବେତ୍ରାଘାତ ଆଦି ସାଧାରଣ ଦଣ୍ଡରେ ପରିଣତ ହୋଇଥିଲା । ପ୍ରଜାମାନେ ଜଙ୍ଗଲକୁ ପଳାଇ ରାତିରେ ଗଛ ଉପରେ ଲୁଚି ରହୁଥିଲେ ।

ଏଭଳି ଅବସ୍ଥାରେ ପ୍ରଜା ଓ ଗୌନ୍ତିଆଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ବୃଦ୍ଧି ପାଇଲା । ଗୌନ୍ତିଆମାନେ ସଂଘବଦ୍ଧ ଭାବେ ରାଜସ୍ୱ ବୃଦ୍ଧିର ବିରୋଧ କଲେ । ଏମାନଙ୍କ ପଛରେ ଥିଲେ ସଂଗ୍ରାମୀ ଦୟାନନ୍ଦ ଶତପଥୀ । ଏଭଳି ଘଟଣା ବାମଣ୍ଡା ରାଜ୍ୟର ଇତିହାସର ଥିଲା ଅଭୂତପୂର୍ବ ।

୧୯୩୧ ରେ ଖଜଣା ପଇଠ ନ କରିବା ଅପରାଧରେ ରାଜା ଜମନନିରା, ଲାଡ଼, ରାମ ତିଲେଇମାଲ, ପାରୁଆଭାଡ଼ି, ମହୁଲପାଲି, ସାତକମା ଆଦି ୮ଟି ଗାଁର ଗୌନ୍ତିଆଙ୍କୁ

ଗିରଫ କରି ନାଜିରବେଡ଼ାରେ ଭୋକ ଓପାସରେ ଅଟକ କରି ରଖିଲେ । ଏହା ବିରୁଦ୍ଧରେ ଭାଗୀରଥି, ବୁଦ୍ଧରାୟ, ଇରାଦତ ହୁସେନ, ଦୟାନନ୍ଦ ଶତପଥୀ, ଦାଶରଥି ମିଶ୍ର, ପଦ୍ମନାଭ ମିଶ୍ର, ଚୁନେଲାଲ ପ୍ରମୁଖ ଏକ ଗୁପ୍ତ ବୈଠକ କରି ବିହାର-ଓଡ଼ିଶା ଗଭର୍ନରଙ୍କୁ ଟେଲିଗ୍ରାମ ପଠାଇଥିଲେ । ଦୈନିକ 'ଆଶା'କୁ ମଧ୍ୟ ଦୟାନନ୍ଦ ଏ ସମ୍ବାଦ ପଠାଇଥିଲେ ।

ଏହି ସମ୍ବାଦକୁ ଆଧାର କରି ଭୁବନାନନ୍ଦ ଦାସ କେନ୍ଦ୍ରୀୟ ବିଧାନସଭାରେ ବାମଣ୍ଡା ରାଜଦରବାରର ଅତ୍ୟାଚାରର ପ୍ରଶ୍ନ ଉତ୍‌ଥାପନ କରିଥିଲେ । ତା'ପରେ ଏ ବିଷୟରେ ଏକ ତଦନ୍ତ କରାଯାଇଥିଲା । ତଦନ୍ତ ବେଳେ ଦୟାନନ୍ଦଙ୍କ ନିର୍ଭିକତାପୂର୍ଣ୍ଣ ସାକ୍ଷ୍ୟ ଯୋଗୁଁ ତାଙ୍କୁ ଦେଶଦ୍ରୋହୀ ଘୋଷଣା କରାଯାଇଥିଲା । ଶିକ୍ଷକତା ଚାକିରୀରୁ ତାଙ୍କୁ ଅନ୍ତର କରାଯିବା ସହ ତାଙ୍କର ସ୍ଥାବର ଅସ୍ଥାବର ସଂପତ୍ତି ଜବତ କରି ରାଜ୍ୟରୁ ନିର୍ବାସନ ଦଣ୍ଡ ଦିଆଯାଇଥିଲା । ସେ ସମ୍ବଲପୁର ଆସି କଂଗ୍ରେସର ସକ୍ରିୟ ସଭ୍ୟ ହେଲେ । ବାମଣ୍ଡାକୁ ବାରମ୍ବାର ଗୋପନରେ ଯାଇ ସେ ଜନସଙ୍ଗଠନ କରି ଅତ୍ୟାଚାର ବିରୁଦ୍ଧରେ ଲଢ଼େଇ କରିବାର ପ୍ରେରଣା ଦେଲେ । ଗାନ୍ଧୀଙ୍କ ଗଠନମୂଳକ କାର୍ଯ୍ୟକ୍ରମ ପାଇଁ ବାମଣ୍ଡାର ଗ୍ରାମେ ଗ୍ରାମେ 'ବାସୁଦେବ ସେବାଦଳ' ଗଢ଼ି ଗ୍ରାମ ସଫେଇ ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ ଆଦି କାମରେ ଲାଗିଲେ ।

ବାମଣ୍ଡାରେ ଥିଲା ବେଳେ ଦୟାନନ୍ଦ ଶତପଥୀ, ଦୟାନିଧି ପାଣିଗ୍ରାହୀ, ଭାଗୀରଥି ଗୁପ୍ତରେ ରାଜ ଅତ୍ୟାଚାରର ଖବର 'ସମାଜ', 'ଆଶା' ଆଦିକୁ ପଠାଉଥିବା ଫଳରେ ବ୍ୟାପକ ଜନଜାଗରଣ ସୃଷ୍ଟି ହୋଇଥିଲା । ଫଳରେ ବାମଣ୍ଡା ରାଜ୍ୟରେ ଏହି ଖବରକାଗଜ ସବୁ ନିଷିଦ୍ଧ କରି ଦିଆଯାଇଥିଲା ।

ଦୟାନନ୍ଦ, ଲମ୍ବୋଦର, ଦାଶରଥୀ, ପଦ୍ମନାଭ ପଣ୍ଡା ପ୍ରମୁଖ ରାଜସ୍ୱ ନ ଦେବାକୁ ପ୍ରଜାମାନଙ୍କୁ ପ୍ରବର୍ତ୍ତାଉଥିଲେ । ସେମାନଙ୍କ ବିରୁଦ୍ଧରେ ରାଜଦ୍ରୋହ ଅଭିଯୋଗ ହୋଇଥିଲା । ଦାଶରଥି ଓ ପଦ୍ମନାଭ ସରକାରୀ ଚାକିରୀ ଓ ପ୍ରଭିଡେଣ୍ଟ ଫଣ୍ଡ ଜମା ଟଙ୍କା ହରାଇଥିଲେ ।

ବିଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନ ଡାକରାରେ ଧ୍ରୁବଚରଣ ମହାନ୍ତି, ବାଳମୁକୁନ୍ଦ ନାୟକ, ବୃନ୍ଦାବନ ପଟେଲ, ଗୁଣସାଗର ପଟେଲ, ଯୋଗୀନ୍ଦ୍ର ପଟେଲ ପ୍ରମୁଖଙ୍କୁ ଗୋବିନ୍ଦପୁର ହାଜତରେ ଅଟକବନ୍ଦୀ ରଖା ଯାଇଥିଲା ।

ଦୟାନନ୍ଦଙ୍କ ନେତୃତ୍ୱରେ ବିନିକା ବାଟେ ପୁରୀ କଂଗ୍ରେସରେ ଯୋଗ ଦେବାକୁ ଯାଇ କଟକର ମଦ, ଅଫିମ, ଗଞ୍ଜା ଦୋକାନରେ ପିକେଟିଂ କରି ୫ମାସ ଲେଖାଏଁ କଟକ ଓ ପାଟନା କେଂପ ଜେଲରେ ଦଣ୍ଡ ଭୋଗ କରିଥିବା ବାମଣ୍ଡାର ଗୋପାଳଚନ୍ଦ୍ର ପାଣିଗ୍ରାହୀ, ଚନ୍ଦ୍ରଶେଖର ପାଣିଗ୍ରାହୀ, ରାଜୀବଲୋଚନ ପଟେଲ, ଦଶରଥ ନାୟକ ଓ ଅରକ୍ଷିତ ପଟେଲ ଫେରିଲା ପରେ ସେମାନଙ୍କ ଉପରେ ଗାଁ ଛାଡ଼ି ବାହାରକୁ ଯାତାୟାତ କରିବା ଉପରେ

ନିଷେଧାଜ୍ଞା ଲାଗୁ କରାଯାଇଥିଲା । ସେମାନେ ପୁଲିସ ପହରା ଭିତରେ ନଜରବନ୍ଦୀ ହୋଇ ରହିଥିଲେ ।

ଏ କଟକଣା ସତ୍ୱେ ସେମାନେ ଗୁପ୍ତରେ କଂଗ୍ରେସ ପ୍ରଚାର କାର୍ଯ୍ୟ ଚଳାଇଥାନ୍ତି । ବାରମ୍ବାର ଏମାନଙ୍କ ନାମରେ ମିଥ୍ୟା ମୋକଦ୍ଦମା କରି ହଇରାଣ ହରକତ କରାଯାଇଥିଲା ।

କଂଗ୍ରେସ କର୍ମୀ କାଶୀରାମଙ୍କ ଉପରେ କଠୋର କଟକଣା ଯୋଗୁଁ ସେ ସମ୍ବଲପୁର ଜିଲାର ଲଇକେରା, ଝିର୍ଲାପାଲିରେ ରହି ଗାନ୍ଧୀଙ୍କ କଂଗ୍ରେସ ସଙ୍ଗଠନ କାର୍ଯ୍ୟରେ ଲାଗିଥିଲେ । ରାଜୀବ ପଟେଲ କଟକ, ଅରକ୍ଷିତ ପଟେଲ, ରେଢ଼ାଖୋଲ, ଚନ୍ଦ୍ରଶେଖର ପାଣିଗ୍ରାହୀ, ରଂପେଲା ପଳାୟନ କରି କଂଗ୍ରେସ ସଙ୍ଗଠନରେ ଲାଗିଥିଲେ ।

ଦାଶରଥି ତାଙ୍କ ଗାଁ ରାମଝାଲିରେ 'ବାସୁଦେବ ସେବାସଂଘ' ମାଧ୍ୟମରେ ଗାନ୍ଧୀବାର୍ତ୍ତା ପ୍ରଚାର କରିଥିଲେ । କଂଗ୍ରେସ ସଙ୍ଗଠନ ଯୋଗୁଁ କୁଚିଣ୍ଡାର ଧ୍ରୁବଚରଣ ମହାନ୍ତି, ଅନନ୍ତ ଚରଣ ମହାନ୍ତି, କୁଲୁଣ୍ଡିର ଲକ୍ଷ୍ମଣ ପୂଜାରୀ ଶିକ୍ଷକତା ହରାଇଥିଲେ ଓ ବାମଣ୍ଡା ରାଜ୍ୟ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ ।

୧୯୩୭ରେ ଡ.ପଟ୍ଟାଭିସୀତାରମୟା ଓ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ 'ପ୍ରଜାମଣ୍ଡଳ ଆନ୍ଦୋଳନ' ସଙ୍ଗଠିତ ହେଲା । କଂଗ୍ରେସର ବରିଷ୍ଠ ନେତାମାନଙ୍କୁ ବିଭିନ୍ନ ଗଡ଼ଜାତ ସଙ୍ଗଠନ ଦାୟିତ୍ୱ ଦିଆଗଲା । ବାମଣ୍ଡା ଦାୟିତ୍ୱ ଦୟାନନ୍ଦଙ୍କ ଉପରେ ନ୍ୟସ୍ତ କରାଗଲା ।

ସମ୍ବଲପୁରରେ ବସବାସ କରି କଂଗ୍ରେସ ଆନ୍ଦୋଳନର ନେତୃତ୍ୱ ନେବା ସହ ଦୟାନନ୍ଦ ଲୁଚିଲୁଚି ବାମଣ୍ଡା ସୀମାରେ ପ୍ରବେଶ କରି ଗ୍ରାମ ଓ ସବ୍‌ଡିଭିଜନ ସ୍ତରର କମିଟିମାନ ଗଠନ କଲେ । ପୋଲିସ ଖବର ପାଇ ଥରେ ତାଙ୍କୁ ଗିରଫ କରିବାରେ ସଫଳ ହୋଇଥିଲା । ତାଙ୍କୁ ୬ମାସ କାରାବାସ ହୋଇଥିଲା ।

ଦୟାନିଧି ପାଣିଗ୍ରାହୀଙ୍କ ନେତୃତ୍ୱରେ ବାମଣ୍ଡାର ପ୍ରଜାମଣ୍ଡଳ ଆନ୍ଦୋଳନ ଘନୀଭୂତ ହେଲା । ଡ.ମହତାବ ସେତେବେଳେ ମୁଖ୍ୟମନ୍ତ୍ରୀ ଥାନ୍ତି । ସେ ଦୟାନିଧିଙ୍କ ସହ ଘନିଷ୍ଠ ସଂପର୍କ ରଖିଲେ । ଅନ୍ୟ ଦିଗରେ ପ୍ରଜାମଣ୍ଡଳ ଓ କଂଗ୍ରେସୀ ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିବାକୁ ରାଜ୍ୟ ପୋଲିସ ବାହିନୀ ପକ୍ଷରୁ ଖୋଲା ଆତଙ୍କରାଜ ଚାଲିଲା ।

୧୯୩୫ରେ ଭାନୁଗଙ୍ଗ ତ୍ରିଭୁବନ ଦେବ ରାଜ୍ୟ ସିଂହାସନ ଆରୋହଣ ପରେ ମଧ ଜଙ୍ଗଲ, ମଦଭାଟି, ହାଣ୍ଡିଆ, ତାଡ଼ି, କେନ୍ଦୁପତ୍ର, ଲୁଣ, ଦିଆସିଲି, ବିଡ଼ିର ଠିକା ବ୍ୟବସ୍ଥା ପ୍ରବର୍ତ୍ତନ କରୁଥିବା ଶୋଷଣ ବଳବତ୍ତର ରହିଥିଲା ।

୧୯୩୭ରେ ଡ.ମହତାବଙ୍କ ନେତୃତ୍ୱରେ ଗଡ଼ଜାତ ତଦନ୍ତ କମିଟି ସମ୍ବଲପୁର ଆସିଥିଲା । ଦୟାନନ୍ଦ ଓ ଦାଶରଥି କମିଟି ଆଗରେ ବାମଣ୍ଡା ସରକାରଙ୍କ ଅତ୍ୟାଚାରର ଲୋମହର୍ଷକ ସାକ୍ଷ୍ୟ ଦେଇଥିଲେ ।

ସେହି ବର୍ଷ ସମଗ୍ର ଦେବଗଡ଼ ସବ୍‌ଡିଭିଜନ, ନିଖୋଜ ବାମଣ୍ଡାର ପ୍ରଜା ଆନ୍ଦୋଳନ ତେଜି ଉଠିଲା । ଅନୁଗୁଳରୁ କେତେକ କର୍ମି ଆସି ସେତେବେଳେ ବାମଣ୍ଡାର ମାନଗୋବିନ୍ଦ ଦାସ, ସହଦେବ ସାହୁ ପ୍ରମୁଖ ୨୦ଜଣଙ୍କୁ କଂଗ୍ରେସ ସଭ୍ୟ କରିଥିଲେ । ଏମାନେ ଗୁପ୍ତ ବୈଠକ ଜରିଆରେ ପ୍ରଜାମାନଙ୍କୁ ରାଜ ଅତ୍ୟାଚାର କଥା ବୁଝାଇ ଏଭଳି ଅନ୍ୟାୟର ପ୍ରବଳ ବିରୋଧ କରିବାକୁ ଆହ୍ୱାନ ଦେଉଥିଲେ ।

ଏଥିରେ ଉତକ୍ଷିପ୍ତ ହୋଇ ଥାନା ଅଧିକାରୀ ଏହି ସଙ୍ଗଠନ ମାନଗୋବିନ୍ଦ ଦାସ (ମେଦିନିପୁର) ବିଳ ନାୟକ (ଟୀଙ୍କବୀର), କନ୍ଦର୍ପ ପ୍ରଧାନ (ବୁଢ଼ାପାଳ), ସହଦେବ ସାହୁ (ତାଳବାହାଲୀ), କାର୍ତ୍ତିକିଆ ବେହେରା (କରଲଗା) ଓ ନେତ୍ରାନନ୍ଦ ବେହେରାଙ୍କୁ ଥାନାକୁ ଧରିଆଣି ନିଷ୍ଠୁକ ମାଡ଼ ଦେଇ ରାଜ୍ୟ ଭିତରେ କଂଗ୍ରେସ କାର୍ଯ୍ୟକ୍ରମରେ ଲିପ୍ତ ରହିଲେ ଜୀବନରୁ ମାରି ଦେବାକୁ ଧମକ ଦେଇଥିଲେ । ଫଳରେ ଏମାନେ ଅନୁଗୁଳ ଯାଇ ସେଠାରେ କଂଗ୍ରେସ ସଙ୍ଗଠନରେ ଲାଗିଥିଲେ । ହେଲେ ବାମଣ୍ଡାର ରାଜ ଅତ୍ୟାଚାରରେ ଅତିଷ୍ଠ ପ୍ରଜାଙ୍କ ହାହାକାର କିଛି ଦିନ ପାରେ ପୁଣି ସେମାନଙ୍କୁ ବାମଣ୍ଡା ଫେରାଇ ଆଣିଲା ।

ସେମାନେ ଦ୍ୱିଗୁଣ ଉତ୍ସାହ ନେଇ ଟୀଙ୍କବୀରରେ ଏକ ସଭାର ଆୟୋଜନ କଲେ । ବେଠି, ବେଗାରୀ, ବିଗାଡ଼ି, ହାତୀଧରା, ଶିକାର, ହାକା ନ କରିବାକୁ; ରସଦ, ମାଗଣ, ଅନ୍ୟାୟ ଟିକସ, ପଞ୍ଝା, ବର୍ଦ୍ଧିତ ରାଜସ୍ୱ ନ ଦେବାକୁ ସଙ୍ଗଠିତ ହେବାର ଆହ୍ୱାନ ସଭାରେ ଦିଆଗଲା ।

ପୁଣି ସେମାନଙ୍କୁ କଡ଼ି, ବେଡ଼ି ଦେଇ ରାଜ୍ୟ ଓ ରାଜାବିରୋଧୀ ଷଡ଼ଯନ୍ତ୍ର ଅପରାଧରେ ରାଜଧାନୀ ଦେବଗଡ଼କୁ ଚାଲାଣ କରାଗଲା । ପ୍ରତ୍ୟେକଙ୍କୁ ୩ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ହେଲା ।

ଜେଲରେ ମାନଗୋବିନ୍ଦ ଦାସ, ସହଦେବ ସାହୁ, ବିଳ ନାୟକ, କାର୍ତ୍ତିକିଆ ବେହେରା, କଦର୍ପ ପ୍ରଧାନ, ନେତ୍ରାନନ୍ଦ ବେହେରା,ମହାଦେବ ପ୍ରଧାନ, ଗୋପାଳ ପ୍ରଧାନ, ସୁଦର୍ଶନ ପ୍ରଧାନ, ଭଗବାନ ପ୍ରଧାନ, ବିଦ୍ୟାଧର ସାହୁ, ବଲଭଦ୍ର ସାହୁ, ବ୍ରଜବନ୍ଧୁ ପ୍ରଧାନ, ଦିବାକର ବେହେରା, ଶ୍ରୀଧର ସାହୁ, ଡମ୍ବରୁଧର ନାୟକ, ବୈଷ୍ଣବ ପ୍ରଧାନ, କୃଷ୍ଣଚନ୍ଦ୍ର ପ୍ରଧାନ, ବୈଷ୍ଣବ ନାୟକ, ଧର୍ମୁ ଭୁକ୍ତା ଆଦି ଅକଥନୀୟ ଅତ୍ୟାଚାର ଭୋଗ କଲେ ।

ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଚଷା । ଏମାନେ ଥିଲେ ଯେତେ ରକ୍ଷଣଶୀଳ, ସେତେ ସ୍ୱାଭିମାନୀ, ଅନ୍ୟାୟ ବିରୋଧୀ, ସଙ୍ଗଠିତ । ତେଣୁ ସେମାନଙ୍କୁ 'ମେଳିଆ ଚଷା' ବୋଲି କୁହାଯାଉଥିଲା । ରାଜଶାସନରେ ଚଷା ଅଞ୍ଚଳ ପ୍ରତି ସର୍ବଦା ଭୟ ରହିଥିଲା ।

ଏ ଘଟଣା ପରେ ପରେ ପୋଲିସ ଅତ୍ୟାଚାର ଅତ୍ୟଧିକ ବୃଦ୍ଧି ପାଇବାରୁ ଦିବାକର ମିଶ୍ର ଓ ଦାଶରଥି ମହାପାତ୍ର ଅନୁଗୁଳ ଚାଲି ଯାଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବାମଣ୍ଡା ରାଜ ସରକାର ଯୁଦ୍ଧ ନିମନ୍ତେ ଲୋକ ପଠାଇବାକୁ ଗୌନ୍ତିଆମାନଙ୍କ ଉପରେ ଚାପ ପକାଇବାକୁ ଲାଗିଲେ । ଗୌନ୍ତିଆମାନେ ଟଙ୍କା, ଧାନ, ଜମି ଦେଇ ଲୋକଙ୍କୁ ଯୁଦ୍ଧକୁ ଯିବାକୁ ପ୍ରବର୍ତ୍ତାଇଲେ ଓ ଯୁଦ୍ଧରେ ନିହତ ପ୍ରଜାର ପରିବାର ପାଳନର ଦାୟିତ୍ୱ ନେଲେ । ରାଜ କର୍ମଚାରୀମାନେ ଜୋରଜବରଦସ୍ତ କରି ଯୁଦ୍ଧ ଚାନ୍ଦା ଅସୁଲ କରିବାକୁ ଲାଗିଲେ ।

ଜାତୀୟ କଂଗ୍ରେସ ଆହ୍ୱାନରେ ଦାଶରଥି ମିଶ୍ର 'ଯୁଦ୍ଧ ପଞ୍ଚାମାଗଣ'ର ତୀବ୍ର ପ୍ରତିରୋଧ କଲେ । ତାଙ୍କ ବିରୁଦ୍ଧରେ ଭାରତରକ୍ଷା ଆଇନ ବଳରେ ମକଦ୍ଦମା ହେଲା । ସେ ୨ ବର୍ଷ ସଶ୍ରମ କାରାଦଣ୍ଡ ପାଇଲେ । ୨୦ ଟଙ୍କା ଜୋରିମାନା ମଧ ହେଲା । ଜୋରିମାନା ଟଙ୍କା ଦୁଇଥର ଘର କୋରଖ କରି ଅସୁଲ କରାଯାଇଥିଲା । କଂଗ୍ରେସ କର୍ମୀମାନେ ଗାଁ ଗାଁ ବୁଲି ''ଯୁଦ୍ଧ ପଞ୍ଚା'' ନ ଦେବାକୁ ଲୋକଙ୍କୁ ପ୍ରବର୍ତ୍ତାଉ ଥିଲେ । ଯେଉଁମାନେ 'ଯୁଦ୍ଧ ପଞ୍ଚା' ଦେଉ ନ ଥିଲେ ସେମାନଙ୍କୁ ଏସ.ଡି.ଓ.କୋର୍ଟ ବା ଥାନାକୁ ଧରିଆଣି ଦିନଦିନ ଭୋକ ଓପାସରେ ରଖି ଜମିବାଡ଼ି, କଂସାବାସନ, ଗହଣା ବିକି ଚାନ୍ଦା ଦେବାକୁ ବାଧ୍ୟ କରାଯାଉଥିଲା ।

ଭାରତଛାଡ଼ ଆନ୍ଦୋଳନ ସମୟରେ ବାମଣ୍ଡା ଆନ୍ଦୋଳନ ପ୍ରବଳ ରୂପ ନେଲା । ଏଥିରେ ନେତୃତ୍ୱ ନେଇ ଦୟାନନ୍ଦ ଦେଶଦ୍ରୋହ ଦଫାରେ ଗିରଫ ହେଲେ । ଦାଶରଥି ମିଶ୍ର, ରାମଚନ୍ଦ୍ର ନାୟକ, ଗୌରୀଶଙ୍କର ମହାପାତ୍ର ପ୍ରମୁଖ ଅଟକବନ୍ଦୀ ଆଇନ ଅନୁସାରେ ୧୯୪୫ ସାଲ ଯାଏଁ ଜେଲରେ ରହିଲେ ।

ଗୋପାଳ ପାଣିଗ୍ରାହୀ, ଚନ୍ଦ୍ରଶେଖର ପାଣିଗ୍ରାହୀ, ରାଜୀବଲୋଚନ ପଟେଲ ସମ୍ବଲପୁରଠାରେ ସତ୍ୟାଗ୍ରହ କରି ଜେଲ ଗଲେ । ସେହି ସମୟରେ ଦିବାକର ମିଶ୍ର ଓ ଦାଶରଥି ମହାପାତ୍ର ଅନୁଗୁଳରେ ଜେଲ ଗଲେ ।

ବଙ୍ଗର ଦୁର୍ଭିକ୍ଷ ସମୟରେ ସେଠାରେ ଚଢ଼ାମୂଲ୍ୟରେ ବିକ୍ରୟ କରିବା ପାଇଁ ବାମଣ୍ଡା ରାଣୀ ଜ୍ୟୋତିର୍ମଂଜରୀ ପ୍ରଜାଙ୍କଠାରୁ ବାଧ୍ୟବାଧକତା କରି ଶସ୍ତାରେ ଚାଉଳ କିଣିଲେ । ଗ୍ରୁପ ପଞ୍ଚାୟତ ସଭ୍ୟ ମନୋନୟନରେ ମଧ୍ୟ ପ୍ରଜାଙ୍କ ଯଥାର୍ଥ ପ୍ରତିନିଧିତ୍ୱ ରହି ନଥିଲା ।

କଂଗ୍ରେସ ପକ୍ଷରୁ ଏ ଦୁଇ ଘଟଣାର ପ୍ରବଳ ବରୋଧ କରାଗଲା । ପ୍ରକାଶ୍ୟ ବିରୋଧ କରି ଦାଶରଥି ମିଶ୍ର ଓ ଅନ୍ୟମାନେ ମିଥ୍ୟା ମକଦମାର ସମ୍ମୁଖୀନ ହେଲେ ।

୧୯୪୪-୪୫ରେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ତୀବ୍ର ରୂପ ଧାରଣ କଲାବେଳେ ବାମଣ୍ଡାରେ ତାହା ପ୍ରବଳତର ହୋଇଥିଲା । ପ୍ରତି ଗ୍ରାମରେ ଗ୍ରାମ କମିଟିମାନ ଗଠନ କରାଗଲା । ପାରୁଆଭାଡ଼ି ଅଞ୍ଚଳରେ ବିଶ୍ୱନାଥ କର ଓ ତାଙ୍କ ପତ୍ନୀ ଲବଙ୍ଗଲତା ପୁରୁଷ ଓ ସ୍ତ୍ରୀମାନଙ୍କ ସଙ୍ଗଠନରେ ଲାଗି ପଡ଼ିଲେ । ଗାଁ-ଗାଁରେ ପ୍ରତିଦିନ ସଭା ସମିତି ଚାଲିଥିଲା । କଟକରୁ ପ୍ରକାଶିତ 'ଗଡ଼ଜାତ ତାର' ସମ୍ବାଦପତ୍ର ଲୋକଙ୍କ ମଧ୍ୟରେ ସରକାର ଓ ରାଜତନ୍ତ୍ର ବିରୁଦ୍ଧରେ ଉତ୍ତେଜନା ସୃଷ୍ଟି କରୁଥିଲା ।

୧୯୪୬ରେ ସମ୍ବଲପୁରର ଜିଲା କଂଗ୍ରେସ କାର୍ଯ୍ୟାଳୟଠାରେ ଦୟାନନ୍ଦ ଶତପଥୀ ପଶ୍ଚିମ ଓଡ଼ିଶା ଗଡ଼ଜାତ କର୍ମୀ ସମ୍ମିଳନୀ ଆହ୍ୱାନ କରିଥିଲେ । ଏଥିରେ ବଲାଙ୍ଗୀର, ବଣାଇ, ରେଢ଼ାଖୋଲ, ସୋନପୁର, ସୁନ୍ଦରଗଡ଼, ଆଠମଲ୍ଲିକ ଆଦିର ପ୍ରଜାନେତାଗଣ ଯୋଗ ଦେଇଥିଲେ । ଏଥିରେ ବାମଣ୍ଡାରୁ ରତ୍ନାକର ପଟେଲ, ହୃଷିକେଶ ପଟେଲ ଆଦି ଯୋଗ ଦେଇ ଗଡ଼ଜାତମାନଙ୍କର ହୁକାପିଟା ଶାସନ ଓ ପ୍ରଜାପୀଡ଼ନ ନୀତିର ତୀବ୍ର ସମାଲୋଚନା କରିଥିଲେ । ସ୍ୱାଧୀନତା ଓ ରାଜତନ୍ତ୍ର ବିଲୋପ ବିନା ସମସ୍ୟାର ସମାଧାନ ଅସମ୍ଭବ ପ୍ରାୟ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା ।

ସମ୍ମିଳନୀରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗ୍ରହଣ କରାଯାଇ ଓଡ଼ିଶା ସରକାର, ଭାରତ ସରକାର, ଉତ୍କଳ କଂଗ୍ରେସ ଓ ଜାତୀୟ କଂଗ୍ରେସ କମିଟିକୁ ପଠା ଯାଇଥିଲା ।

ସେହି ବର୍ଷ ଡ.ମହତାବ, ରାଧାନାଥ ରଥ, ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ପବିତ୍ର ମୋହନ ପ୍ରଧାନ, ମାଳତୀ ଚୌଧୁରୀ ପ୍ରମୁଖ ଓଡ଼ିଶା ଗଡ଼ଜାତ ସମ୍ମିଳନୀ ଡାକିଲେ । ଏହି ସମ୍ମିଳନୀରେ ମଧ୍ୟ ବହୁ ପ୍ରସ୍ତାବ ଗୃହୀତ ହେଲା ।

ଏହା ଫଳରେ ଗଡ଼ଜାତର ରାଜାମାନଙ୍କ ମଧ୍ୟରେ ଭୟର ସଂଚାର ହେଲା । ସେମାନେ ପ୍ରଜାମାନଙ୍କ ପ୍ରତି ସାମାନ୍ୟ ଉଦାର ହୋଇ ସେମାନଙ୍କ ସଙ୍ଗଠନ 'ଦି ଚାନସେଲର ଅଫ୍ ଦି ପ୍ରିନ୍ସେସ୍' ପକ୍ଷରୁ କେତେକ ଘୋଷଣା କଲେ । ସେ ଅନୁସାରେ ବାମଣ୍ଡା ଦରବାର ପକ୍ଷରୁ ବାମଣ୍ଡା ଗେଜେଟ୍‌ରେ ଏକ ଇସ୍ତାହାର ନଂ ୨୩।୪୬ ପ୍ରକାଶ ପାଇଲା ।

'' କାହାକୁ ସ୍ୱାତନ୍ତ୍ର୍ୟଚ୍ୟୁତ କରାଯିବ ନାହିଁ । କାହାରି ଡିହବାଡ଼ି, ଧନସଂପତ୍ତିରେ ବେଆଇନ ପ୍ରବେଶ, ତହିଁରୁ ବିତାଡ଼ିତ ବା ଚ୍ୟୁତ କରାଯାଇ ପାରିବ ନାହିଁ । ସମସ୍ତଙ୍କର କୋର୍ଟ, ହାଇକୋର୍ଟରେ ଦରଖାସ୍ତ କରିବାର ଅଧିକାର ରହିବ । ଯୁଦ୍ଧ, ବିଦ୍ରୋହ ବା ଗୁରୁତର

ଆଭ୍ୟନ୍ତରୀଣ ବିଶୃଙ୍ଖଳା ସମୟରେ ଏହା ରଦ୍ଦ କରାଯାଇପାରିବ । ସମସ୍ତେ ସ୍ୱାଧୀନ ମତ ପ୍ରକାଶ କରି ପାରିବେ । ସ୍ୱାଧୀନ ଭାବରେ ଅନୁଷ୍ଠାନ, ଦଳ ଗଠନ କରିପାରିବେ । ଆଇନ, ନୀତିବିରୁଦ୍ଧ ହୋଇ ନଥିବା ଅସ୍ତ୍ରଶସ୍ତ୍ର ଆଦି ନ ଘେନି କୌଣସିଠାରେ ଶାନ୍ତିପୂର୍ଣ୍ଣ ଭାବରେ ସମବେତ ହୋଇ ପାରିବେ । ପ୍ରତ୍ୟେକଙ୍କ ବିବେକ ସ୍ୱାତନ୍ତ୍ର୍ୟ ଓ ଧର୍ମ ଅବଲମ୍ବନ କରି ଚଳିବା ଅଧିକାର ରହିବ । ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ ଆଇନତଃ ସମାନ । ବିଗାଡ଼ି ପ୍ରଥା ରହିବ ନାହିଁ । ଜୋର ଜବରଦସ୍ତ କୌଣସି କାର୍ଯ୍ୟ ବା ଅର୍ଥ, ରସଦ ଆଦି ଅସୁଲ ହୋଇ ପାରିବ ନାହିଁ ।

- ଆଦେଶ ମତେ

ବି.କେ.କର, ଦେୱାନ, ଷ୍ଟେଟ୍

ହେଲେ ଏହା ଥିଲା କେବଳ ଧର୍ମକୁ ଆଖିଠାର । ଗେଜେଟ୍ ଘୋଷଣା କେବଳ ଘୋଷଣାରେ ହିଁ ରହିଗଲା । କର୍ମଚାରୀମାନଙ୍କ ଅଭ୍ୟାସ ବଦଳିଲା ନାହିଁ କି ସର୍ବସାଧାରଣରେ ଘୋଷଣାର ପ୍ରଚାର କରାଗଲା ନାହିଁ ।

ଏହି ସମୟରେ ସେପ୍ଟେମ୍ବର ମାସରେ ଗଡ଼ଜାତର ଗାନ୍ଧୀ ସାରଙ୍ଗଧର ଦାସ ବାମଣ୍ଡା ଆସି ଗୋବିନ୍ଦପୁର ଓ ଅନ୍ୟାନ୍ୟ ସ୍ଥାନରେ ସଭାମାନ ଆୟୋଜନ କରିବାକୁ ଲାଗିଲେ । କୁଚିଣ୍ଡାରେ ମଧ୍ୟ ସଭା ହେଲା । ସେ ଗଡ଼ଜାତଗୁଡ଼ିକରେ ମଧ୍ୟ ଅନ୍ୟାନ୍ୟ ଅଞ୍ଚଳ ପରି ଲୋକପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠାର ଆହ୍ୱାନ ଦେଲେ । ବାମଣ୍ଡା, ବଣାଇ ଓ କେନ୍ଦୁଝର ରାଜ୍ୟର ପ୍ରଜାମଣ୍ଡଳ ସଂଗଠନ ଦାୟିତ୍ୱ ବିଜୟକୁମାର ମିଶ୍ରଙ୍କ ଉପରେ ନ୍ୟସ୍ତ କରାଗଲା ।

ନଭେମ୍ବର ୧୧,୧୯୪୬ରେ ରାମତିଳେଇମାଳଠାରେ ବାମଣ୍ଡା ଷ୍ଟେଟ୍ ପ୍ରଜାମଣ୍ଡଳର ଏକ ଏଡହକ୍ କମିଟି ଗଠନ କରାଗଲା । ଏଥିରେ ରାଜୀବ ଲୋଚନ ପଟେଲ, ସଭାପତି; ରତ୍ନାକର ପଟେଲ,ସଂପାଦକ; ହୃଷିକେଶ ପଟେଲ, କୋଷାଧ୍ୟକ୍ଷ ରହିଲେ । ଏହାର ମୁଖ୍ୟ କାର୍ଯ୍ୟାଳୟ ଗୋବିନ୍ଦପୁରଠାରେ ରହିଲା । ସମ୍ବଲପୁରର ଜଗଦୀଶ ଲାଠ ଏହାର ପୃଷ୍ଠପୋଷକତା କଲେ ।

ଜାନୁୟାରୀ ୧,୧୯୪୭ରେ ଏକ ସଭା ହେଲା । ଏହି ସଭାକୁ ଯାଉଥିଲାବେଳେ ପୋଲିସ ଛଦ୍ମବେଶରେ ରାମଚନ୍ଦ୍ର ନାୟକଙ୍କଠାରୁ କାଗଜପତ୍ର ଛଡ଼ାଇ ନେଲା । ଏହା ବିରୁଦ୍ଧରେ ପ୍ରଜାମଣ୍ଡଳ ପକ୍ଷରୁ ବାମଣ୍ଡା ଦେୱାନ, ପୋଲିସ ସୁପରିଣ୍ଟେଣ୍ଡେଣ୍ଟ, କୁଚିଣ୍ଡା, ଏସ.ଡ଼ି.ଓ.ଙ୍କଠାରେ ଅଭିଯୋଗ କରାଗଲା ।

ଏ ସମସ୍ତ ଘଟଣାରେ ଅନନ୍ୟୋପାୟ ହୋଇ ବାମଣ୍ଡା ଦରବାର ତିନି ଜଣ ଅର୍ଜିନବୀସଙ୍କ ଜରିଆରେ ସେହି ମାସ 'ବାମଣ୍ଡାରେ ପ୍ରଜାମଣ୍ଡଳର ଅନାବଶ୍ୟକତା' ଶୀର୍ଷକ

ଏକ ପୁସ୍ତିକା ବାମଣ୍ଡା ଗ୍ରାମ ପଞ୍ଚାୟତ ସଂଘ ପକ୍ଷରୁ ପ୍ରକାଶ କଲା । ଏହା ବାମଣ୍ଡା ଷ୍ଟେଟ୍‌ର ସରକାରୀ ଇଲେକଟ୍ରିକ ପ୍ରେସରେ ପ୍ରକାଶ ପାଇଲା ।

'ବାମଣ୍ଡା ପ୍ରଜାମଣ୍ଡଳ' ଅପପ୍ରଚାର ନିରୋଧ ଉଦ୍ଦେଶ୍ୟରେ ଲିଖିତ ଏହି ପୁସ୍ତିକା ଜାନୁୟାରୀ ୧୪,୧୯୪୭ରେ ବାହାରିଥିଲା ଓ ଏଥିରେ ୧୧୭ଜଣ ଗ୍ରାମ୍ୟ ପଞ୍ଚାୟତଗ୍ରୁପ ସଦସ୍ୟ ସ୍ୱାକ୍ଷର କରିଥିଲେ । ଏମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ଗୌନ୍ତିଆ ।

ଠିକ୍ ସେହିଦିନ ଗୋବିନ୍ଦପୁରଠାରେ ବାମଣ୍ଡା ପ୍ରଜାମଣ୍ଡଳ ପକ୍ଷରୁ ଏକ ସ୍ଥାୟୀ ପ୍ରଜାମଣ୍ଡଳ ପୁନର୍ଗଠନ ହେଲା । ଏହାର କର୍ମକର୍ତ୍ତା ହେଲେ :

ସଭାପତି : **ଦାଶରଥି ମିଶ୍ର**

ସହକାରୀ ସଭାପତି : **ରାଜୀବଲୋଚନ ପଟେଲ**

ସଂପାଦକ : **ରତ୍ନାକର ପଟେଲ**

କୋଷାଧ୍ୟକ୍ଷ : **ହୃଷିକେଶ ପଟେଲ**

ସଭ୍ୟ : **ରାମଚନ୍ଦ୍ର ନାୟକ, ଦଶରଥ ନାୟକ, ରାଧାନାଥ ଶର୍ମା**

ପରେ ସଭ୍ୟଭାବେ ଉଦେଚନ୍ଦ୍ର ଚୌଧୁରୀ ପ୍ରମୁଖ ଯୋଗ ଦେଇଥିଲେ ।

ବାମଣ୍ଡା ଷ୍ଟେଟ ପ୍ରଜାମଣ୍ଡଳ ପକ୍ଷରୁ ଗ୍ରାମ୍ୟପଞ୍ଚାୟତ ସଭାର ପୁସ୍ତିକାର ଜବାବରେ 'ବାମଣ୍ଡା ଷ୍ଟେଟରେ ପ୍ରଜାମଣ୍ଡଳର ଆବଶ୍ୟକତା' ଶୀର୍ଷକ ଏକ ପୁସ୍ତିକ 'ଦି ଉତ୍କଳ ପ୍ରିଂଟିଂ ପ୍ରେସ, ସମ୍ବଲପୁରରୁ ପ୍ରକାଶ ପାଇଲା । ବାମଣ୍ଡା ପ୍ରଜାମଣ୍ଡଳ 'ଅଖିଳ ଭାରତୀୟ ଗଡ଼ଜାତ କାଉନସିଲ ବା 'ଲୋକ ପରିଷଦ' ସହ ଏଫିଲିଏଟେଡ୍ ହେବା ଫଳରେ ଆନ୍ଦୋଳନ ଆହୁରି ଜୋରରେ ଆଗେଇଲା ।

ଜାନୁୟାରୀ ୧୯ରେ କୁଚିଣ୍ଡାଠାରେ ଏକ ବିରାଟ ସଭା କରାଯାଇ ଏସ.ଡି.ଓ. ଓ ପୋଲିସ ଅଧିକାରୀଙ୍କ ସମ୍ମୁଖରେ ରାଜସରକାର ଓ କର୍ମଚାରୀମାନଙ୍କ ଅନ୍ୟାୟର ପ୍ରତିବାଦ କରାଗଲା । ଏଥିରେ ଦୀନବନ୍ଧୁ ଚୌଧୁରୀ ଅଧ୍ୟକ୍ଷତା କରିଥିଲେ ।

ଫେବୃଆରୀ ୧ ତାରିଖ ଦିନ ସାତକମାଠାରେ ଦାଶରଥି ମିଶ୍ରଙ୍କ ଅଧ୍ୟକ୍ଷତାରେ ପ୍ରଜାମଣ୍ଡଳର ବିରାଟ ସଭା ସଙ୍ଗଠିତ ହେଲା । କିଛି ରାଜଭକ୍ତ ଏ ସଭାର ପ୍ରତିବାଦ କଲେ । ମିଥ୍ୟା ମକଦ୍ଦମା କରି ଦାଶରଥି ମିଶ୍ର ଓ ରାମଚନ୍ଦ୍ର ନାୟକ ଗିରଫ ହେଲେ । ସେମାନଙ୍କୁ ୨ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ହେଲା ।

ଗୌରୀଶଙ୍କର ମହାପାତ୍ର ଓ ଗୁଣନିଧି ଗୌନ୍ତିଆ ଲଇଡା, କିନାଲୋଏ, ଗୁଛାପାଲି, ଝିର୍ଲାପାଲି, ମାଲିଡିହି ଆଦି ଅଞ୍ଚଳରେ କଂଗ୍ରେସ କାର୍ଯ୍ୟ କରୁଥିଲେ । କୁଡ଼ାପଡ଼ାରେ

ପ୍ରଜାମଣ୍ଡଳ ସଭା କରୁଥିଲାବେଳେ ଗୌରୀ ମହାପାତ୍ର ଗିରଫ ହେଲେ ଓ ତାଙ୍କୁ ୨ବର୍ଷ ସଶ୍ରମ କାରାଦଣ୍ଡ ହୋଇଥିଲା ।

ଦୟାନନ୍ଦ ଏହି ସମୟରେ ଗୁପ୍ତରେ ସାତକମାକୁ ଆସି ଲୋକଙ୍କୁ ଖୋଲା ସଭା ନ କରି ଘରୋଇ ବୈଠକ ମାଧ୍ୟମରେ 'ସେବାଦଳ' ଗଠନ କରି ଗାନ୍ଧୀଙ୍କ କାର୍ଯ୍ୟକ୍ରମ ଆଗେଇ ନେଇ ସଙ୍ଗଠିତ ହେବାର ଆହ୍ୱାନ ଦେଲେ । ଏହିପରି ଭାବରେ ଗ୍ରାମେ ଗ୍ରାମେ ପ୍ରଜାମଣ୍ଡଳ କମିଟିମାନ ଗଠିତ ହେଲା ।

କୁଚିଣ୍ଡାରେ ଦୀନବନ୍ଧୁ ଚୌଧୁରୀଙ୍କ ଅଧ୍ୟକ୍ଷତାରେ ସବ୍‌ଡିଭିଜନାଲ ସ୍ତରୀୟ ପ୍ରଜାମଣ୍ଡଳ କମିଟି ଗଠିତ ହେଲା । ଗୁଣନିଧି ସଂପାଦକ ଓ ଶ୍ରଦ୍ଧାକର ପଟେଲ କୋଷାଧ୍ୟକ୍ଷ ଦାୟିତ୍ୱରେ ରହିଲେ ।

ଏହା ପରେ ପରେ ଗଡ଼ପୋଷ, ମହୁଲପାଲି, କୁସୁମି, ପାରୁଆଭାଡ଼ି, ଖଣ୍ଡୋକଟା, ସାହାଜବାହାଲୀ, କତରକଲା, କେନାଡ଼ିପା, ଜମନକିରା, କୁଲୁଣ୍ଡି, ଭୋଜପୁର, କୁଚିଣ୍ଡା ସବ୍‌ଡିଭିଜନ୍‌ର ପ୍ରତ୍ୟେକ ଥାନା, ଫାଣ୍ଡି, ବଡ଼ବଡ଼ ଗ୍ରାମମାନଙ୍କରେ ଶାଖା ଓ ପ୍ରାଥମିକ ଗ୍ରାମ୍ୟ ପ୍ରଜାମଣ୍ଡଳ କମିଟିମାନ ଗଠିତ ହେଲା ।

ଏଗୁଡ଼ିକର ପ୍ରମୁଖ କର୍ମକର୍ତ୍ତା ଥିଲେ :

ଲାଲପ୍ରତାପ ସିଂହ, ହାଜରା ସିଂହ, ଚୈତନ୍ୟ ପଟେଲ, ମିତ୍ରଭାନୁ ପଟେଲ, ରାଜୀବ ଲୋଚନ ପଟେଲ, ପରମାନନ୍ଦ ପଟେଲ, ଡିଳେଶ୍ୱର ଗୌନ୍ତିଆ, ପ୍ରଫୁଲ୍ଲଚନ୍ଦ୍ର ପଟେଲ, ହୀରାଧର ମହାନାୟକ, ଦାଶରଥୀ ପଟେଲ, ଛାଲ ଚୌଧୁରୀ, ମଦନ ପଟେଲ, ବିଶ୍ୱନାଥ କର, ଶରତଚନ୍ଦ୍ର ନାୟକ, ହଳଧର ଶର୍ମା, ରମଣୀରଂଜନ ପଟେଲ, ଗଙ୍ଗାରାମ ପଟେଲ, ଦୈତାରୀ ପଟେଲ, ଭରତଚନ୍ଦ୍ର ଚୌଧୁରୀ, ମନବୋଧ ପାଣିଗ୍ରାହୀ, ହାଡ଼ିବନ୍ଧୁ ସରାଫ, ବୃନ୍ଦାବନ ପଟେଲ, ବିଦ୍ୟାଧର ରାଉତ, ଗୁଲବଦନ ପଟେଲ, ବାଣେଶ୍ୱର ମାଝି, କୃଷ୍ଣଚନ୍ଦ୍ର ପଟ୍ଟନାୟକ, କୁଳମଣି ପଟ୍ଟନାୟକ, ଲକ୍ଷ୍ମଣ ପୂଜାରୀ, ବାଳମକୁନ୍ଦ ରାୟ, ବୁଧରାୟ ଗୌନ୍ତିଆ,ଧରଣୀଧର ପଟେଲ, ଲୋକନାଥ ଶର୍ମା ଓ ଅନ୍ୟମାନେ ।

ଖୋଲା ସାଧାରଣ ସଭା ହେଉ ନଥିବାରୁ ପ୍ରଜାମଣ୍ଡଳ କର୍ମୀଙ୍କ ମଧ୍ୟରେ ଅସନ୍ତୋଷ ରହୁଥିଲା । ଏ ବିଷୟରେ ଅଭିଯୋଗ ହେଲା । ସାରଙ୍ଗଧର ଦାସ ଲକ୍ଷ୍ମଣ ଶତପଥୀଙ୍କୁ ଖୋଲା ସଭା କରିବାର ନିର୍ଦ୍ଦେଶ ଦେଇ ପଠାଇଲେ ।

ସାହାଜବାହାଲୀ, ଉଲୁଣ୍ଡା ଆଦିରେ ଖୋଲା ସଭାମାନ ଅନୁଷ୍ଠିତ ହେଲା । ଶତପଥୀଙ୍କ ଗିରଫ ୱାରେଣ୍ଟ ବାହାରିଲା । ଗଡ଼ଜାତ କର୍ମୀମାନେ ତାଙ୍କୁ ରାତାରାତି ବାମଣ୍ଡା ସୀମା ପାର କରାଇ ଝାରସୁଗୁଡ଼ା ପହଞ୍ଚାଇ ଦେଲେ । ରାଜୀବଙ୍କ ଗୌନ୍ତି ସ୍ୱତ୍ୱ ଉଚ୍ଛେଦ କରି ଭୋଗରା ଜମି ନିଲାମ କରାଗଲା ।

ପ୍ରଜାମଣ୍ଡଳ ଆନ୍ଦୋଳନକୁ ଦବାଇବା ଲାଗି ଫଉଜ, ଗୋଳାବରୁଦ, ମେସିନଗନ୍ ଆଦି ବିନିଯୋଗ କରାଗଲା । ନେପାଳୀ ଗୂର୍ଖା ଫୌଜ ଆଣି ଗାଁଗାଁରେ ମାର୍ଚ୍ଚ କରାଗଲା ।

ହେଲେ ପ୍ରଜାମଣ୍ଡଳ କାର୍ଯ୍ୟକ୍ରମ ଅହିଂସା ନୀତିରେ ଚାଲିଥିଲା । ଟିକିଲିପଡ଼ାରେ ବାଣେଶ୍ୱର ମାଝୀ, କୃଷ୍ଣଚନ୍ଦ୍ର ପଟ୍ଟନାୟକ, ଲକ୍ଷ୍ମଣ ପୂଜାରୀ ଏକ ବିରାଟ ସଭା କଲେ । କଂଶରରେ ସଭା ହୋଇ ବହୁ ଆଦିବାସୀ ସଭ୍ୟ ହେଲେ । ଯେଉଁଠି ସଭା ହେଲା ସେଠାରେ ପ୍ରଜାମଣ୍ଡଳ ଗଠିତ ହେଲା

ଇତିମଧ୍ୟରେ ଦେଶ ସ୍ୱାଧୀନ ହେଲା । ୧୯୪୭ ଅକ୍ଟୋବର ୧୦ ତାରିଖ ଥିଲା ବାମଣ୍ଡା ପ୍ରଜାମଣ୍ଡଳ ଆନ୍ଦୋଳନର ଏକ ସ୍ମରଣୀୟ ଦିବସ । ଦେଶ ସ୍ୱାଧୀନ ହୋଇଥିଲେ ମଧ୍ୟ ଗଡ଼ଜାତ ଗୁଡ଼ିକୁ ସାର୍ବଭୌମ କ୍ଷମତା ଦିଆଯାଇଥାଏ ।

ଏତେବେଳକୁ ବାମଣ୍ଡାରେ ଧିମେଇ ଯାଇଥିବା ପ୍ରଜାମଣ୍ଡଳ ଆନ୍ଦୋଳନକୁ ତେଜାଇବା ନିମନ୍ତେ ଗୁଣନିଧି ଗୌନ୍ତିଆଙ୍କ ନେତୃତ୍ୱରେ ଏକ କର୍ମୀ ଦଳ ଦେବଗଡ଼ ପଠାଗଲା । ଏହି ଦଳରେ ଥିଲେ ରମଣୀରଂଜନ ପଟେଲ, ଦାଶରଥି ପଟେଲ, ଛାଲ ଚୌଧୁରୀ, ଭାରତଚନ୍ଦ୍ର ଚୌଧୁରୀ, ବୃନ୍ଦାବନ ପଟେଲ, ମଦନ ପଟେଲ ଓ ପୂର୍ଣ୍ଣଚନ୍ଦ୍ର ବାଗ ।

ଗୁଣନିଧି ଦେବଗଡ଼ ଗଲାବେଳେ ଅନ୍ୟମାନେ ଟାଇସର ଗ୍ରାମରେ ରାତ୍ରୀଯାପନ ପାଇଁ ରହିଲେ । ସ୍କୁଲଘରେ ଚୌକିଦାର ଜାଗା ନ ଦେବାରୁ ଗାଁ ବାହାରେ ଏକ ପଟାଭାଡ଼ିରେ ଶୋଇଲେ । ଏ ଖବର ପାଇ ଅଧରାତିରେ ସବ୍‌ଇନ୍‌ସପେକ୍ଟର ପଞ୍ଚାନନ ବେହେରା ପୋଲିସ ଭେନରେ ଦଳେ ଗୁଣ୍ଡାଙ୍କୁ ଧରି ଆଲୋଚନା କରିବାକୁ ରାଜା ଓ ଗୁଣନିଧି ଡକାଇଥିବା ବାହାନା କରି ଗାଡ଼ିରେ ବସାଇ ଦେବଗଡ଼ ନ ଯାଇ ତିଲେଇବଣି ଡ୍ରିଛକୀରେ ଘନ ଜଙ୍ଗଲ ମଧ୍ୟରେ ଓହ୍ଲାଇ ନିସ୍ତୁକ ମାଡ଼ ଦେଲେ । କାହାର ଦାନ୍ତ ଭାଙ୍ଗିଲା ତ କିଏ ଅନ୍ଧ ହେଲା । କେତେକ ଆତ୍ମରକ୍ଷା ପାଇଁ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲକୁ ପଳାଇଲେ । ଅବଶିଷ୍ଟ ସଜ୍ଞାହୀନ କର୍ମୀଙ୍କୁ ମୃତ ମନେ କରି ପୋଲିସ ଓ ମଦ୍ୟପ ଗୁଣ୍ଡାମାନେ ଭେନରେ ବୋଝେଇକରି ତୁଡ଼ିଖୋଲ ଜଙ୍ଗଲରେ ପକାଇ ଦେଇ ଆସିଲେ ।

ଗୁଣନିଧିଙ୍କୁ ଦେବଗଡ଼ରେ ଅଟକ ରଖାଗଲା । ପ୍ରଜାମଣ୍ଡଳ କର୍ମୀ ଆହତମାନଙ୍କୁ ଉଦ୍ଧାର କଲେ । ଦୟାନନ୍ଦ ଘଟଣାର ଅନୁସନ୍ଧାନ କରି କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ଜଣାଇଲେ ।

ଏତେବେଳେ ବାମଣ୍ଡାରେ ଲକ୍ଷ୍ମୀନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୂଜାରୀଙ୍କ ଗତିବିଧି ବୃଦ୍ଧିପାଇଲା ।

ରାଜକୁମାର ହାଇସ୍କୁଲରେ ଛାତ୍ର ସଂଘର୍ଷ ବାହିନୀ ଗଠିତ ହେଲା । ସବୁ ଛାତ୍ର ଖଦଡ଼ କପଡ଼ା ଓ ଟୋପି ପିନ୍ଧିବାର ସଂକଳ୍ପ କଲେ । ଶୋଭାଯାତ୍ରା ବାହାରିଲା । ଏ ବାହିନୀର ସଭାପତି ରମଣୀ ରଂଜନ ନାଏକ ଓ ସଂପାଦକ ବାଳକୃଷ୍ଣ କର ହେଲେ । ଛାତ୍ରମାନେ ବିଦ୍ୟାଳୟ ତ୍ୟାଗ କରି ପ୍ରଜାମଣ୍ଡଳରେ ଯୋଗ ଦେବାକୁ ସ୍ଥିର କଲେ ।

୧୯୪୭ ଅଗଷ୍ଟ ୬ରେ ରାମତିଲାଇମାଲରେ ଏକ ବିରାଟ ସଭା ହେଲା ପରେ ତା' ପରଦିନ ଦୟାନନ୍ଦଙ୍କୁ ବାମଣ୍ଡା ଛାଡ଼ି ଚାଲିଯିବାକୁ ୧୪୪ଧାରା ନୋଟିସ୍ ଦିଆଗଲା । ଏହାର ପ୍ରତିବାଦରେ କୁଚିଣ୍ଡାରେ ଏକ ବିରାଟ ସଭାକୁ ହଜାର ହଜାର କର୍ମି ଗହଣରେ ଦୟାନନ୍ଦ ଯାଉଥିଲା ବେଳେ ବାଟରୁ ତାଙ୍କୁ ଗିରଫ କରି ସମ୍ବଲପୁର ପାଖ ଧନୁପାଲିରେ ଛାଡ଼ି ଦେଲେ । କୁଚିଣ୍ଡା ପୁରୁଣା କଚେରୀ ସମ୍ମୁଖରେ ବିରାଟ ପ୍ରତିବାଦ ସଭା ହେଲା ।

ଦୟାନନ୍ଦ ଲଇଡ଼ାରେ ରହି ଆନ୍ଦୋଳନ ପରିଚାଳନା କଲେ । ନନ୍ଦରାମ ପଟେଲଙ୍କ ଘରେ ସେ, ଦୀନବନ୍ଧୁ ଚୌଧୁରୀ ଓ ବାମଣ୍ଡାର କର୍ମିମାନେ ମିଶି ଏକ ପ୍ରସ୍ତାବ କରି ରାଜଦରବାରକୁ ପଠାଇଲେ । ଗୁଣନିଧିଙ୍କୁ ଷ୍ଟେଟ ପ୍ରଜାମଣ୍ଡଳ ସଂପାଦକ ଭାବେ ଦୟାନନ୍ଦ ମନୋନୀତ କଲେ ।

ସେପ୍ଟେମ୍ବର ୧୩ ତାରିଖ ଦିନ ସାତକମାର ଧନେଶ୍ୱର ପଟେଲଙ୍କ ଘରେ ସାତକତା ଶାଖା, ବାମଣ୍ଡା ଷ୍ଟେଟ ପ୍ରଜା ପରିଷଦ ଗଠିତ ହେଲା ଓ ପ୍ରଜାମଣ୍ଡଳ ବୈଠକ ଅନୁଷ୍ଠିତ ହେଲା । ଏଥିରେ ଦୟାନନ୍ଦ କର୍ମିମାନଙ୍କୁ ସଙ୍ଗଠିତ କଲେ ।

ଏ ଭିତରେ ହାଡ଼ିପାଲି, ଖଣ୍ଡୋକଟା, ରାମତିଲେଇମାଲ, କୁଟୁରାଚୂଆଁ, ଭାଲୁ ବାହାଲ, କୁଚିଣ୍ଡା, ବକ୍‌ସମା, କୁସୁମି, କେଶାଇବାହାଲ ଆଦିର କମିଟିମାନ ଗଠିତ ହେଲା । ଅକ୍ଟୋବର ୪,୪୭ରେ ଝାରସୁଗୁଡ଼ାଠରେ ବାମଣ୍ଡା ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ବୈଠକ ବସିଲା ।

ବାମଣ୍ଡା ପ୍ରଜାମଣ୍ଡଳ ନେତୃବୃନ୍ଦ ଆଠମଲ୍ଲିକ, ବଲାଙ୍ଗୀର ପ୍ରଜାମଣ୍ଡଳ ସଭାରେ ପ୍ରତିନିଧିତ୍ୱ କରିଥିଲେ । ରାୟଗଡ଼ରେ ମଧ୍ୟପ୍ରଦେଶ, ବିହାର ଓ ଓଡ଼ିଶାର ଗଡ଼ଜାତ ସମୂହର ଆଞ୍ଚଳିକ ପରିଷଦ ବୈଠକରେ ଯୋଗ ଦେଇଥିଲେ ।

ନଭେମ୍ବର ୨୭ ତାରିଖ ଦିନ କୁଚିଣ୍ଡା ସଭାରେ ସମ୍ବଲପୁର ଜିଲା କଂଗ୍ରେସ ସଂପାଦକ ମିତ୍ରଭାନୁ ପାଣିଗ୍ରାହୀ ଅଧ୍ୟକ୍ଷତା କରିଥିଲେ । ଝାରସୁଗୁଡ଼ା କଂଗ୍ରେସ ସଂପାଦକ ଓ ବ୍ରଜରାଜନଗର ଶ୍ରମିକ ସଙ୍ଗଠକ ଫକୀର ମୋହନ ଶତପଥୀ ମୁଖ୍ୟବକ୍ତା ଥିଲେ । ସମ୍ବଲପୁର ଜିଲା କଂଗ୍ରେସ ସଭାପତି ବୀରେନ ସରକାର, ଓକିଲ ପ୍ରଶନ୍ନ କୁମାର ରାୟଗୁରୁ ଯୋଗ ଦେଇଥିଲେ । ଏହି ସଭାରେ ଦଶହଜାର ଜନ ସାମାଗମ ହୋଇଥିଲା ।

ଡିସେମ୍ବର ୧୦ ତାରିଖ ଦେବଗଡ଼ ନିକଟସ୍ଥ ବସାଳୋଇ ଉଡ଼ାଜାହାଜ ପଡ଼ିଆରେ ଏକ ବିରାଟ ପ୍ରଜାମଣ୍ଡଳ ସମ୍ମିଳନୀ ହେଲା । କୁଚିଣ୍ଡା ସବ-ଡିଭିଜନର କର୍ମିମାନେ ଚାରିଟା ଦଳରେ ସେଠାରେ ପହଞ୍ଚିଲେ । ବାଟରେ କତରକେଲାର ଜମିଦାର ତିଳେଶ୍ୱର ଦେହୁରୀକୁ ଜବତ କରାଗଲା । ମେଣ୍ଡାବାହାଲ ସଭାରେ ଗୌଡ଼ପାଲି ଏ.ଏସ.ଆଇ. ଦୟାନିଧି ପାଣିଗ୍ରାହୀ ପୋଲିସରୁ ଇସ୍ତଫା ଦେଇ ପ୍ରଜାମଣ୍ଡଳ ସଭ୍ୟ ହେଲେ ।

ବଳମର ମଦ ଭାଟି ଭଙ୍ଗାଗଲା । ରାଜବାଟୀର ଚତୁର୍ଦ୍ଦିଗ ସ୍ଲୋଗାନ୍ ଦେଇ ପରିକ୍ରମା କଲାବେଳେ ରାଜ କର୍ମଚାରୀ ଡା. ମହେଶ୍ୱର ପ୍ରଧାନ ଯୋଗ ଦେଲେ । ଏହି ସଭାରେ ଲକ୍ଷାଧିକ କର୍ମି, ଜନସାଧାରଣଙ୍କ ସମାବେଶ ହୋଇଥିଲା । ଶାନ୍ତିରକ୍ଷା ନିମନ୍ତେ ପ୍ରାୟ ଏକ ହଜାର ଠେଙ୍ଗାଧାରୀ ଶାନ୍ତିସେନା ମୃତୟନ ହୋଇଥିଲେ । ଏଥିରେ କେନ୍ଦୁଝର, ତାଳଚେ଼ର, ପାଲଲହଡ଼ା, ରେଢ଼ାଖୋଲ, ଆଠମଲ୍ଲିକ ଆଦିର ପ୍ରଜା ନେତା ଯୋଗ ଦେଲେ । ଦେବଗଡ଼ ମନସଫ ଦୁର୍ଗା ଶର୍ମା ମଧ୍ୟ ପ୍ରଜାମଣ୍ଡଳରେ ଯୋଗ ଦେଇ ସାରିଥିଲେ ।

ଗଦାଧର ବେହେରା ପ୍ରଧାନଙ୍କ ପୌରହିତ୍ୟରେ ସଭା ହେଲା । ରାଜା ଭାନୁଗଙ୍ଗଙ୍କୁ ବ୍ୟକ୍ତିଗତ ଜୀବନ ଓ ପ୍ରଜାପୀଡ଼ନ ନୀତି ଉପରେ କଠୋର ସମାଲୋଚ଼ନା ହେଲା । ଏଠାରେ ରାଜାଙ୍କ ଦମନ କାମ୍ଚୁ କଲା ନାହିଁ ।

ଏହା ପରେ ରାଜ୍ୟବ୍ୟାପୀ ପ୍ରଜାମଣ୍ଡଳର ଥାନା କମିଟି, ଫାଣ୍ଡି କମିଟି, ଖମାରବାଡ଼ ଥାନା କମିଟି ଗଠନ କରାଗଲା । ପ୍ରଜାମଣ୍ଡଳ ସଭାପତି ଦାଶରଥି ମିଶ୍ର, ରାମଚନ୍ଦ୍ର ନାୟକ ଜେଲରୁ ମୁକ୍ତ ହେଲେ ।

ଡିସେମ୍ବର ୧୩ରେ ଭାରତର ଘରୋଇ ବିଭାଗ ମନ୍ତ୍ରୀ ସରଦାର ପଟେଲ କଟକରେ ପହଞ୍ଚିଲା । ପୂର୍ବରୁ ଡକାଯାଇଥିବା ରାଜାମାନଙ୍କୁ ସେମାନଙ୍କ ରାଜ୍ୟ ଭାରତ ସରକାରଙ୍କ ଠାରେ ସମର୍ପଣ କରି ଭତ୍ତା ନେଇ ଶାନ୍ତି ଓ ସମ୍ମାନର ଜୀବନ ବିତାଇବାକୁ ଆହ୍ୱାନ ଦେଲେ । ସର୍ତ୍ତ ଖିଲାପକାରୀ ରାଜାମାନେ ନିଜ ରାଜ୍ୟ ନିଜେ ସମ୍ଭାଳନ୍ତୁ ଏଥିରେ ସରକାର କୌଣସି ସାହାଯ୍ୟ କରିବେ ନାହିଁ ବୋଲି ସତର୍କ କରିଦେଲେ । ସେ କହିଲେ ଆବଶ୍ୟକ ହେଲେ ସେମାନଙ୍କ ରାଜ୍ୟରେ ସାମରିକ ହସ୍ତକ୍ଷେପ ମଧ୍ୟ କରାଯିବ ।

ବହୁ ରାଜା ତାଙ୍କ ରାଜ୍ୟ ସମର୍ପଣ କଲେ । ବାମଣ୍ଡା ରାଜା ସମର୍ପଣ ନ କରି ଫେରି ଆସିଲେ ।

ହେଲେ ରାଜ୍ୟର ରାଜନୈତିକ ପରିସ୍ଥିତି ଓ ଅସ୍ଥିରତା ଲକ୍ଷ୍ୟ କରି ଡିସେମ୍ବର ୧୮ ତାରିଖ ଦିନ ଟେଲିଗ୍ରାମ ଯୋଗେ କ୍ଷମତା ହସ୍ତାନ୍ତର କରିବା କଥା ଓଡ଼ିଶା ସରକାରଙ୍କୁ ଜଣାଇ ଦେଲେ । ଡିସେମ୍ବର ୩୧ ତାରିଖ ରାତି ୧୨ଟା ମଧ୍ୟରେ ରାଜା ଭାନୁଗଙ୍ଗ ଦେବ

ବାମଣ୍ଡା ଏଡମିନିଷ୍ଟ୍ରେଟର କେ.ସି.ଦାସଙ୍କୁ ଶାସନ ଭାର ଅର୍ପଣ କଲେ । ୧୯୪୮ ଜାନୁୟାରୀ ପହିଲାରେ ଗଡ଼ଜାତ ମିଶ୍ରଣ ଘୋଷିତ ହେଲା ।

ଗଡ଼ଜାତ ମିଶ୍ରଣ ପରେ ରାଜା ତଥା ରାଜବଂଶ ପ୍ରରୋଚନାରେ 'ଆଦିବାସୀ ଆନ୍ଦୋଳନ' ତେଜି ଉଠିଲା ।

ବାମଣ୍ଡାର ଆଦିବାସୀମାନେ ଦାବି କଲେ ଯେ ସେମାନଙ୍କ ପୂର୍ବପୁରୁଷ ସୁନାକନ୍ଧ ଓ କନ୍ତାରୁ ଭୂୟାଁ ପାଟଣା ରାଜପୁତ୍ରଙ୍କୁ ଆଣି ବାମଣ୍ଡାର ରାଜବଂଶ ପ୍ରତିଷ୍ଠା କରିଥିଲେ । ତେଣୁ ସେମାନଙ୍କ ପରାମର୍ଶ ନ ନେଇ ବାମଣ୍ଡା ରାଜଶାସନ ଲୋପ କରାଗଲା କାହିଁକି ?

ଜୁଲାଇ ୨୬,୧୯୪୮ର ବର୍ଷଣମୂଖର ଦିନରେ ଆଦିବାସୀମାନେ ସେମାନଙ୍କ ପାରମ୍ପରିକ ଅସ୍ତ୍ରଶସ୍ତ୍ର, ଧନୁ, ଶର, ବର୍ଚ୍ଛା ଧରି; ଢ଼ୋଲ, ମହୁରୀ ବଜାଇ ବିଭିନ୍ନ ସ୍ଲୋଗାନ ଶୋଭାଯାତ୍ରାରେ ବାହାରି ରାଜ୍ୟ ଫେରାଇ ଦେବାଲାଗି ଏଡ୍‌ମିନିଷ୍ଟ୍ରେଟରଙ୍କ କାର୍ଯ୍ୟାଳୟ ଦଖଲ କରିବାର ଉଦ୍ୟମ କଲେ ।

ମିଲିଟାରୀ ଦ୍ୱାରା ଶୋଭାଯାତ୍ରା ଅଟକ କରାଗଲା । ଅବସ୍ଥା ଆୟତ୍ତାଧୀନ ନ ହେବାରୁ ଗୁଳି ଚାଳନା ହେଲା । ଆଦିବାସୀ ନେତାମାନେ ଗିରଫ ହେଲେ । କେତେଜଣ ମୃତାହତ ମଧ୍ୟ ହେଲେ । ସେ ସବୁ ଗୋପନ ରଖାଗଲା । ପ୍ରାୟ ପନ୍ଦରଦିନ ଧରି ଦେବଗଡ଼ ସୈନ୍ୟ ଛାଉଣିରେ ପରିଣତ ହୋଇଥିଲା । ପରେ ସ୍ୱାଭାବିକ ସ୍ଥିତି ଫେରି ଆସିଥିଲା ।

ସମ୍ବଲପୁରର ସଂଗ୍ରାମୀମାନେ କେବଳ ଯେ ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମ ଓ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେଇଥିଲେ ତା'ନୁହେଁ, ତା' ସହିତ ଅନ୍ୟାନ୍ୟ ଗଡ଼ଜାତର ଆନ୍ଦୋଳନରେ ମଧ୍ୟ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଭେଡ଼େନର ପ୍ରଭାକର ପ୍ରାଣିଗ୍ରହୀ ଭାରତଛାଡ଼ ଆନ୍ଦୋଳନ ବେଳେ ରେଢ଼ାଖୋଲ ଯାଇ ପ୍ରଜାମଣ୍ଡଳ ସଙ୍ଗଠିତ କରିବାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

ରେଢ଼ାଖୋଲର ସାମୁଏଲ ଦେଓ୍ୱାନଙ୍କ ଅତ୍ୟାଚାରରେ ପ୍ରଜାମାନେ ଅତିଷ୍ଠ ହୋଇ ପଡ଼ିଥିଲେ । ରାଜାଙ୍କ ପ୍ରରୋଚନାରେ ଏ ଅତ୍ୟାଚାର ଚାଲିଥାଏ । ପ୍ରଭାକର ରାତିରେ ଗାଁ ଗାଁ ବୁଲି ସଙ୍ଗଠନ କାମ କରୁଥିଲେ । ଦିନବେଳେ ସେ ପାଲଗଦାମାନଙ୍କରେ ଲୁଚି ରହୁଥିଲେ । ରାଜ ସିପାହୀ ତାଙ୍କୁ ପାଗଳ ପରି ଖୋଜୁଥାନ୍ତି ଧରିବାକୁ । ଏ ସଂଗଠନ କାର୍ଯ୍ୟରେ ସେ ୬ବର୍ଷ ୩ମାସ ଅକ୍ଲାନ୍ତ ପରିଶ୍ରମ କରିଥିଲେ ।

ରେଢ଼ାଖୋଲ ପ୍ରଜାମଣ୍ଡଳ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିବା ଫଳରେ ରେଢ଼ାଖୋଲ ରାଜ ସରକାର ପରମେଶ୍ୱର ପ୍ରଧାନଙ୍କୁ ଏକ ବର୍ଷକାଳ ପୋଡ଼ାବଲଣ୍ଡାରେ

ଅଟକବନ୍ଦୀ କରି ରଖିଥିଲା । ସାମୟିକ ଭାବରେ ତାଙ୍କ ଚାକିରୀ ମଧ୍ୟ ବ୍ୟାହତ କରି ଦିଆଯାଇଥିଲା ।

ସତ୍ୟନାରାୟଣ ତିୱାରୀଙ୍କୁ ମଧ୍ୟ ତାଙ୍କ ରାମପୁର ଓ ସାଧୁମୁଣ୍ଡା ଗ୍ରାମରେ ଗୃହବନ୍ଦୀ କରି ରଖାଯାଇଥିଲା । ରାମପୁରରେ ମଧୁ ଭିତିରିଆ, ରାଧାକୃଷ୍ଣ ମାରୱାଡ଼ି, ବଂଶୀଧର ସାମନ୍ତ, ମଧୁସୂଦନ ସାହୁ, ରଙ୍ଗାମାଟିଆର ମୁରଲିଧର ପ୍ରଧାନ, ଧଳପୁରର ଭଞ୍ଜମନ ପଟ୍ଟା, ପୋଡ଼ାବଳଣ୍ଡାର ପରମେଶ୍ୱର ପ୍ରଧାନ, ଚାରମାଳର ଶଶୀଭୂଷଣ ପ୍ରଧାନ, ରେଢ଼ାଖୋଲର ପୂର୍ବତନ ଫରେଷ୍ଟର ଜଗନ୍ନାଥ ମାଝି, ରଂପେଲାର ଶଶୀଭୂଷଣ ପାଣିଗ୍ରାହୀ, ମୟୂରଭଞ୍ଜର ଡା. ସୁଧୀର କୁମାର କବିଙ୍କ ସହ କୌଣସି ରକମ ସଂପର୍କ ନ ରଖିବା ପାଇଁ ସତ୍ୟନାରାୟଣଙ୍କୁ ବାରଣ କରାଯାଇଥିଲା । ରେଢ଼ାଖୋଲ ରାଜ୍ୟର ଦେୱାନ ଓ ଜିଲା ମାଜିଷ୍ଟ୍ରେଟ୍ କେ.ସି.ସାମଲ ନଭେମ୍ବର ୩, ୧୯୪୨ରେ ଏଥିପାଇଁ କୋର୍ଟ ଆଦେଶ ପ୍ରଦାନ କରିଥିଲେ ।

ପିଲାବେଳେ ସେ ସୋନପୁର ରାଜର ଭବାନୀପାଲିରେ ପ୍ରଜାମଣ୍ଡଳ ସଙ୍ଗଠନ କରିଥିଲେ । ୧୯୪୫ରେ ସେ ବିନିକାରେ 'ନାକା ଆନ୍ଦୋଳନ' ସଙ୍ଗଠିତ କରିଥିଲେ । ସେଠାରେ ଗଡ଼ଜାତ କର୍ମଚାରୀମାନେ ଗାଁଗହଳରେ ପ୍ରଜାମାନଙ୍କ ଉପରେ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଅକଥନୀୟ ଅତ୍ୟାଚାର ଚଳାଇଥାନ୍ତି । ପ୍ରଜାଙ୍କ ସଙ୍ଗଠିତ ମେଳିର ଦମନ ପାଇଁ ଗଡ଼ଜାତରୁ ଜଏଣ୍ଟ ଫୋର୍ସ ଆସିଥିଲା । ପ୍ରବଳ ଆନ୍ଦୋଳନ ଫଳରେ ବିନିକା ନାକା ଉଠିଗଲା ।

ବୀରମହାରାଜପୁର ବଲେନପାଲିର ଜମିଦାରୀରେ ପ୍ରଜାମାନେ କେନ୍ଦୁପତ୍ର ତୋଳିବା ବନ୍ଦ କରି ଦେଇଥାନ୍ତି । ସୋନପୁର ରାଜାଙ୍କ ଠିକାଦାରମାନଙ୍କ ପ୍ରରୋଚନାରେ ପୋଲିସ ଅକଥନୀୟ ଅତ୍ୟାଚାର ଚଳାଇଥାଏ । ଜଏଣ୍ଟ ଫୋର୍ସ ପୋଲିସକୁ ସାହାଯ୍ୟ କରୁଥାଏ ।

ଲକ୍ଷ୍ମୀନାରାୟଣ ମିଶ୍ର ରାଜ ଅତ୍ୟାଚାରରେ ତାଳଚେରର ପ୍ରଜାମାନେ ରାଜ୍ୟ ତ୍ୟାଗ କରି ଅନୁଗୁଳ ସୀମାନ୍ତବର୍ତ୍ତୀ କୋସଲା, କଂପାଶାଳା, ପାନିଓଲା ଆଦି ଗାଁରେ ଶରଣ ନେଇଥିବା ଖବର ପାଇ ଦଳେ ସତ୍ୟାଗ୍ରହୀ ନେଇ ସେଠାରେ ସତ୍ୟାଗ୍ରହ କରିଥିଲେ ।

ପଦ୍ମପୁର ଜମିଦାରଙ୍କ ଅନ୍ୟାୟ, ଅତ୍ୟାଚାର ଓ କରବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ କରି ସଫଳ ହୋଇଥିଲେ । ଲକ୍ଷ୍ମୀନାରାୟଣଙ୍କ ନେତୃତ୍ୱରେ କଂଗ୍ରେସୀ ପ୍ରଜାମାନେ ଖଡ଼ିଆର ଜମିଦାରଙ୍କ ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ କରି, ବେଗାରୀ, 'ରସଦ' ବନ୍ଦ କରିଥିଲେ । ଚୌକିଦାରମାନଙ୍କୁ ଅଧିକାରୀମାନଙ୍କ ନିର୍ଦ୍ଦେଶ ନ ମାନିବାକୁ ନିର୍ଦ୍ଦେଶ ଦିଆଗଲା । ଲୋକେ ସରକାରୀ କର୍ମଚାରୀଙ୍କୁ ଅସହଯୋଗ କଲେ । ଶେଷରେ ଜମିଦାର ପ୍ରଜାଙ୍କ ସହ ସନ୍ଧି କଲେ ।

ଏପ୍ରିଲ ୨, ୧୯୩୯ରେ ପାଇକମାଲର ପଲସଦାଠାରେ ବରଗଡ଼ର ରାଜନୈତିକ ସମ୍ମିଳନୀ ହେଲା । ଏଥିରେ ଲକ୍ଷ୍ମୀନାରାୟଣ ଅଧ୍ୟକ୍ଷତା କରିଥିଲେ । ବିଭିନ୍ନ ଗଡ଼ଜାତର

ସ୍ଥିତି ସମୀକ୍ଷା କରି ଲୋକଙ୍କୁ ଇଂରେଜ ସରକାର ବିରୁଦ୍ଧରେ ଐକ୍ୟବଦ୍ଧ ହେବାକୁ ଆହ୍ୱାନ ଦିଆଗଲା । ଢେଙ୍କାନାଳ ଓ ରାଜକୋଟଠାରେ ସତ୍ୟାଗ୍ରହରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିଥିବାରୁ ଲକ୍ଷ୍ମୀନାରାୟଣ ଓ ବି.ଏମ.ଯୋଷିଙ୍କୁ ଅଭିନନ୍ଦନ ଦିଆ ଯାଇଥିଲା ସଭାରେ ।

ପ୍ରଭାକର ଲୋକଙ୍କୁ ସଙ୍ଗଠିତ କରି କେପଟେନ୍ ଉଇଲସନଙ୍କ ନେତୃତ୍ୱରେ ଚାଲିଥିବା ଅତ୍ୟାଚାରର ପ୍ରତିରୋଧ କରି ପୋଲିସ ଲାଠିରେ ଆହତ ହୋଇ ଧରାପଡ଼ିଲେ ।

ସେ ସୋନପୁର ଜେଲରେ ଥାଇ କଏଦୀମାନଙ୍କ ସହଯୋଗରେ ୱାର୍ଡରମାନଙ୍କ ଠାରୁ ୮/୧୦ଟି ବନ୍ଧୁକ ଲୁଟି ଜେଲଖାନା, ଟ୍ରେଜରୀ ଓ ଭଣ୍ଡାର ଦଖଲ କରିଥିଲେ ।

ଡ.ମହତାବ ଓ ସରକାରଙ୍କ ଚାପ ସତ୍ତ୍ୱେ ସେ ଜାମିନରେ ଖଲାସ ହେଉଥିଲେ କିନ୍ତୁ ଜେଲ ଗେଟ୍‌ରେ ପୁଣି ତାଙ୍କୁ ଅନ୍ୟ ଅଭିଯୋଗରେ ଗିରଫକରି ଜେଲକୁ ପଠାଇ ଦିଆ ଯାଉଥିଲା । ଏଭଳି ଖେଳ ତିନି ମାସ ଧରି ଚାଲିଥିଲା । ସେତେବେଳେ ସେ ପ୍ରଜାମଣ୍ଡଳର ସଂପାଦକ ଥିଲେ ।

କୁଲୁଣ୍ଡାର ହୃଷିକେଶ ନାୟକ ୧୯୩୯ରେ ମଙ୍ଗଳୁ ପ୍ରଧାନଙ୍କ ସହ ସୋନପୁର ଗଡ଼ଜାତ ସୀମାରେ ମହାନଦୀ ପାପକ୍ଷୟ ଉତ୍ସବରେ ଇଂରେଜ ଓ ସୋନପୁର ରାଜାଙ୍କ ଅନ୍ୟାୟ କର ବିରୁଦ୍ଧରେ ଏକ ବିକ୍ଷୋଭର ନେତୃତ୍ୱ ନେଇଥିଲେ । ଏହି କର ବ୍ୟବସାୟୀ ଓ କୃଷକମାନଙ୍କଠାରୁ ଆଦାୟ କରାଯାଉଥିଲା । ସେଥିଯୋଗୁଁ ସେ ସୋନପୁର ପୁଲିସଦ୍ୱାରା ଗିରଫ ହୋଇ ଜେଲରେ ଅଟକବନ୍ଦୀ ରହିଥିଲେ ।

ପାଣିମୋରାର ବିରଂଚି ନାରାୟଣ ପ୍ରଧାନ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେଇଥିଲେ। ।

□□□

# ସ୍ୱାଧୀନତା ସଂଗ୍ରାମର ଗାଁ : ପାଣିମୋରା

ଭାରତୀୟ ସ୍ୱାଧୀନତା ସଂଗ୍ରାମ ପରି ସମ୍ବଲପୁର ସ୍ୱଧୀନତା ସଂଗ୍ରାମକୁ ମଧ୍ୟ ଦୁଇ ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ-ସହିଂସ ଓ ଅହିଂସା ସଂଗ୍ରାମ । ଏଥି ମଧ୍ୟରେ ୧୮୨୭ରୁ ୧୮୬୪ ପର୍ଯ୍ୟନ୍ତ ଅବଧୂତ ସିଂହ, ମାଧୋ ସିଂହ, ଗୋବିନ୍ଦ ସିଂହ ଓ ସୁରେନ୍ଦ୍ର ସାଏଙ୍କ ସଂଗ୍ରାମ ଥିଲା ହିଂସାତ୍ମକ । ଏହି ସମୟରେ ରକ୍ତତୀର୍ଥ ଭାବରେ ଘେଁଷ, ସିଂଘୋଡ଼ାଘାଟି, ଝାରଘାଟି, ପାହାଡ଼ ଶ୍ରୀଗିଡ଼ା, ପପଙ୍ଗା ପାହାଡ଼, ମୌଲାଭଣଂଜା, ଝରଘାଟି, ଲଖନପୁର, ଡେବ୍ରୀଗଡ଼, ବାରପାହାଡ଼ ଇତିହାସରେ ଅମର ହୋଇ ଯାଇଥିଲା ବେଳେ ଅସହଯୋଗ ଓ ଭାରତ ଛାଡ଼ ଆନ୍ଦୋଳନ ସମୟରେ ବରଗଡ଼ର ଏକ ଛୋଟିଆ ଗାଁ ପାଣିମୋରା ଅହିଂସା ତୀର୍ଥ ଭାବେ ଦେଶରେ ସ୍ୱତନ୍ତ୍ର ସମ୍ମାନର ଅପେକ୍ଷା ରଖେ ।

ଗାଁରେ ଯେ କେବଳ ଦେଶର ରାଜନୈତିକ ସ୍ୱାଧୀନତା ଲାଗି ସଂଗ୍ରାମ ହୋଇଛି ତାହା ନୁହଁ, ନୈତିକ ପ୍ରଗତି, ସାମାଜିକ ନ୍ୟାୟ, କୁସଂସ୍କାର ବିରୋଧିତା, ସ୍ୱାବଲମ୍ବନଶୀଳତା,ସ୍ୱଦେଶୀ ଦ୍ରବ୍ୟ ଓ ଲୁଗା ବ୍ୟବହାର, ଖଦଡ଼ ପରିଧାନ, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ସତ୍ୟସାଧନା ଆଦି ପାଇଁ ମଧ୍ୟ ଏ ଗାଁବାସୀ ନିଜକୁ ସମର୍ପିତ କରିଥିଲେ ।

୧୯୪୦ରୁ ୧୯୪୨ରେ ଗାଁର ୩୨ଜଣ ଯୁବକ ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ, ପରିବାରକୁ ପଛରେ ପକାଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସ୍ୱାଧୀନତା ସଂଗ୍ରାମ ପରେ ଗାନ୍ଧୀଜିଙ୍କ ଆଦର୍ଶ ଓ ରଚନାତ୍ମକ କାର୍ଯ୍ୟ ଗ୍ରହଣ କରିଥିଲେ । ଏମାନେ ଥିଲେ ସାଧାରଣ ପରିବାରର କୃଷି ଓ ଶ୍ରମଜୀବୀ । ଏମାନେ ଛାଡ଼ିଥିଲେ ଘର, ବୃତ୍ତି, ଶିକ୍ଷା । ଏମାନଙ୍କ ଆଗରେ ଥିଲା ଖାଲି ଜେଲ, ଜୋରିମାନା, ଲାଠି, ନିର୍ଯ୍ୟାତନାର ଅନିଶ୍ଚିତ ଭବିଷ୍ୟତ ।

କାରାଦଣ୍ଡ ଭୋଗ ସମୟରେ କେତେକ ସଂଗ୍ରାମୀ ନିଜ ପତ୍ନୀ, ପରିଜନଙ୍କୁ ହରାଇଥିଲେ ମଧ୍ୟ ସେମାନଙ୍କ ବ୍ରତ ଭାଙ୍ଗି ନଥିଲା । କୁସଂସ୍କାର ଦୂରିକରଣ, ହରିଜନଙ୍କ ମନ୍ଦିର ପ୍ରବେଶ, ନିଶାନିବାରଣ କ୍ଷେତ୍ରରେ ଅଗ୍ରଣୀ ଏ ସଂଗ୍ରାମୀମାନେ ଗାଁକୁ ଗାନ୍ଧୀଙ୍କ ଆଦର୍ଶରେ ପୁନର୍ଗଠନ କରିଥିଲେ । ଆଜି ମଧ୍ୟ ପ୍ରତି ଶୁକ୍ରବାର ଦିନ, ଗାନ୍ଧୀଙ୍କ ମହାପ୍ରୟାଣ ଦିବସ ଉପଲକ୍ଷ୍ୟେ ଗାଁରେ ସମୂହ ପ୍ରାର୍ଥନା, ବ୍ୟକ୍ତିଗତ ଉପବାସ, ସୂତାକଟା ଅନେକ ସଂଗ୍ରାମୀଙ୍କ ଦିନଚର୍ଯ୍ୟା ହୋଇ ରହିଛି ।

ପଣମୋରାର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ଅପ୍ରତ୍ୟାସିତ ନ..୍ଲା । ଏଭଳି ଏକ ସଂଗ୍ରାମ ପାଇଁ ଗାଁର ଏକ ସୁଦୃଢ଼ ଭିତ୍ତିଭୂମି ବହୁ ଆଗରୁ ରହିଥିଲା ।

ଗାଁର କବି ଦିବ୍ୟକିଶୋର ସାହୁ (୧୮୯୧) ଗାଁରୁ ଅନ୍ଧବିଶ୍ୱାସ କୁସଂସ୍କାର ଦୂର କରିବା ଉଦ୍ଦେଶ୍ୟରେ ସଂଗ୍ରାମୀ ଅଭିମନ୍ୟୁ ଭୋଇଙ୍କ ସାହାଯ୍ୟରେ 'ଆର୍ଯ୍ୟ ସମାଜ' ସ୍ଥାପନ କରିଥିଲେ ।

ଦୟାନନ୍ଦ ସରସ୍ୱତୀଙ୍କ ରଚନାବଳି ପଠନପାଠନ ସହ ସଦ୍‌ ଙ୍ଘ ଗଢ଼ି ଗ୍ରାମ ସୁଧାର କାର୍ଯ୍ୟ ଚାଲିଲା । ଯୁବକମାନଙ୍କୁ କବି ଜାତୀୟ ଚିନ୍ତାଧାରାରେ ଦୀକ୍ଷିତ କରାଉଥାନ୍ତି । ସେ ସଙ୍କର୍ଷଣ ସରାଫ, କନ୍ଦର୍ପ ସରାଫ, ମୋହନ ସା ପ୍ରମୁଖ ୫ଜଣଙ୍କୁ ନେଇ ଏକ ପ୍ରାଇମେରୀ କଂଗ୍ରେସ କମିଟି ଗଠନ କରିଥିଲେ । ସେ ଏହାର ସଭାପତି ହୋଇ ସଙ୍ଗଠନ ନେତୃତ୍ୱ ନେଇଥିଲେ ।

କମିଟିର ବିଧିବଦ୍ଧ ଶାଖା ୧୯୩୭ରେ ଗଠିତ ହୋଇଥିଲା । ଏଥିରେ ଶ୍ୟାମସୁନ୍ଦର ସାହୁ, ସଭାପତି ଓ ଧନପତି ସରାଫ ସଂପାଦକ ରହିଲେ । କମିଟିରେ ୫୦ଜଣ ଚାରିଅଣିଆ ସଦସ୍ୟ ରହିଥିଲେ ।

ପ୍ରସିଦ୍ଧ କଂଗ୍ରେସ କର୍ମୀ ଭାଗୀରଥୀ ପଟ୍ଟନାୟକ, ଫକୀର ବେହେରା, ଦୟାନନ୍ଦ ଶତପଥୀ, ପ୍ରହଲ୍ଲାଦରାୟ ଲାଠ, ଘନଶ୍ୟାମ ପାଣିଗ୍ରାହୀ, ଲକ୍ଷ୍ମୀନାରାୟଣ ମିଶ୍ର ପ୍ରମୁଖ ଗାଁକୁ ବାରମ୍ବାର ଆସିବା ଫଳରେ ସଙ୍ଗଠନ ବୃଦ୍ଧି ହେଲା । ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ଖଦୀ ସଙ୍ଗଠନ, ଗ୍ରାମ ସଫେଇ ଆଦି ଗ୍ରାମ ସଙ୍ଗଠନ କାର୍ଯ୍ୟ ଚାଲିଲା ।

ଗାଁ ଗୌନ୍ତିଆଙ୍କ ଦ୍ୱିତୀୟ ପୁତ୍ର ଧନେଶ୍ୱର ପ୍ରଧାନ ଯୁବଗୋଷ୍ଠୀର ନେତୃତ୍ୱ ନେଇଥିଲେ । ସମସ୍ତ କର୍ମି ଚମରୁ ପରିଡ଼ାଙ୍କ ଘରେ ଜମା ହୋଇ କାର୍ଯ୍ୟକ୍ରମ ଗ୍ରହଣ କରୁଥିଲେ ।

ଅହିଂସା, ସତ୍ୟାଗ୍ରହ, ଲାଠିମାଡ଼ର ଅହିଂସ ମୁକାବିଲା ପାଇଁ ଚମରୁ ପରିଡ଼ା, କବି ଖଗେଶ୍ୱର ସେଠ, ଚନ୍ଦ୍ରଶେଖର ସାହୁ, ଯଶୋବନ୍ତ ଭୋଇ, ରାଘବ ପ୍ରଧାନ ୧୯୪୦ରେ ସମ୍ବଲପୁରରୁ ସେବା ଦଳ ପ୍ରଶିକ୍ଷଣ ଗ୍ରହଣ କରି ଫେରିଲେ । ପୂର୍ବରୁ ୧୯୩୮ରେ ଚମରୁ ପରିଡ଼ା ଓ ଧନୁର୍ଜୟ ପ୍ରଧାନ ରମାଦେବୀଙ୍କ ଦ୍ୱାରା ପରିଚାଳିତ 'ବରଗାଁ ଧନୁଷ୍କଳୀ ଚରଖା କେନ୍ଦ୍ର'ରୁ ତାଲିମ ନେଇ ଫେରିଥିଲେ ।

ମଝିମଝିରେ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ଯୋଗୁଁ ବ୍ୟଥିତ ହୋଇ ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ଘୋଷଣା କରିଥିଲେ । ସତ୍ୟାଗ୍ରହୀମାନେ ପୁରପଲ୍ଲୀରୁ ବଛା ହୋଇ ନିଜ ନିଜ ଦାୟିତ୍ୱରେ ଏକାକୀ ଅସହଯୋଗ ଯୁଦ୍ଧରେ ଡାକରା ଦେବାକୁ ସ୍ଥିର କଲେ ।

ମନମୋହନ ଚୌଧୁରୀ ଓ ଦୟାନନ୍ଦ ଶତପଥୀ ପାଣିମୋରା ଯାଇ ୯ଜଣ ସତ୍ୟାଗ୍ରହୀଙ୍କୁ ନିର୍ବାଚନ କରିଥିଲେ । ସେମାନେ ହେଲେ :

୧. ଶ୍ୟାମସୁନ୍ଦର ସାହୁ : ପଣିମୋରା

୨. ଯଶୋବନ୍ତ ଭୋଇ

୩. ରାଘବଚରଣ ପ୍ରଧାନ

୪. ରକ୍ଷୀସରାଫ : ଶରଣ୍ଡାପାଲି

୫. ଚମରୁ ପରିଡ଼ା

୬. ଧନୁର୍ଯ୍ୟ ପ୍ରଧାନ : ଖରମୁଣ୍ଡା

୭. ଚନ୍ଦ୍ରଶେଖର ସାହୁ : ସୋହେଲା

୮. ଚୈତନ୍ୟ ସରାଫ : ଗର୍ଭଣା

୯. ଡମ୍ବରୁଧର ଦେଓ୍ୱାନ : କନ୍‌ଗାଁ

ଏମାନେ ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ଜେଲ ଯାଇଥିଲେ- ''ବ୍ରିଟିଶର ଯୁଦ୍ଧ ଉଦ୍ୟମରେ ଧନ ବା ଜନ ଦେଇ ସାହାଜ୍ୟ କରିବା ପାପ । ସବୁ ଯୁଦ୍ଧର ଅହିଂସା ପ୍ରତିରୋଧ ଏକମାତ୍ର କର୍ତ୍ତବ୍ୟ'' । ଗିରଫ ହୋଇ ୭ ସପ୍ତାହ ଜେଲ ଓ ପଚିଶ ଟଙ୍କା ଜୋରିମାନା ଦେବା ପାଇଁ ମୁଖରେ ଏତିକି ଉଚ୍ଚାରଣ କରିବା ହିଁ ଯଥେଷ୍ଟ ଥିଲା ।

ସେତେବେଳେ ସତ୍ୟାଗ୍ରହୀମାନଙ୍କ ଚିଠିପତ୍ର ଯାଞ୍ଚ କରାଯିବାର ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା । ସେମାନଙ୍କ ପାଖକୁ ଯେମିତି କୌଣସି ଆପତ୍ତିଜନକ ଖବର, ପତ୍ରପତ୍ରିକା, ଚିଠି ପହଞ୍ଚି ନପାରିବ ସେଥିଲାଗି କଠୋର ବ୍ୟବସ୍ଥା କରାଯାଇଥିଲା ।

ସରକାରୀ ଶିକ୍ଷକ ଫୁଲଶର ପ୍ରଧାନ, ଫକୀର ମୋହନ ପରଡ଼ିଆ ଓ ହଜାରୁ ନାୟକ ସଂଗ୍ରାମୀମାନଙ୍କୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରୁଥିଲେ । ସରକାରୀ ଯାଞ୍ଚ ନୀତିକୁ ବିଭ୍ରାନ୍ତ କରିବାକୁ ଫକୀର ପରଡ଼ିଆଙ୍କ ପାଖକୁ 'ଲୋଚନ ପ୍ରସାଦ ପାଣ୍ଡେ' ଛଦ୍ମ ନାମରେ ଚିଠିପତ୍ର ଆସୁଥିଲା । ଶେଷରେ ଫୁଲଶର ସରକାରୀ ଚାକିରୀରୁ ଇସ୍ତଫା ଦେଇ ପ୍ରକାଶ୍ୟ ଭାବରେ ଆନ୍ଦୋଳନରେ ଯୋଗଦାନ କରିଥିଲେ ।

ଭାରତଛାଡ଼ ଆନ୍ଦୋଳନରେ ଯୋଗଦାନ ପାଇଁ ଭାଗୀରଥି ଓ ଚମରୁ ପରିଡ଼ାଙ୍କ ଦ୍ୱାରା ରାତାରାତି ୪୨ଜଣ ସଂଗ୍ରାମୀ ନିର୍ବାଚନ ହୋଇଥିଲେ ।

ବୟସର ସ୍ୱଳ୍ପତା ଦୃଷ୍ଟିରୁ ୧୦ଜଣଙ୍କୁ ଏମାନଙ୍କ ଭିତରୁ ବାଦ୍ ଦିଆ ଯାଇଥିଲା । ବାକୀ ୩୨ଜଣ ଦଳକୁଦଳ ବିକ୍ଷୋଭ କରି ଜେଲ ଯିବାକୁ ବାହାରିଲେ ।

ଚମର ପରିଡ଼ା ବରଗଡ଼ ସିଭିଲ ଏସ୍.ଡ଼ି.ଓ. ଆସନ ଦଖଲ କଲେ । ମୀନକେତନ ସରାଫ ପୁଲିସ ବନ୍ଧୁକ ଆଗରେ ଛାତିଖୋଲି ଦେଖାଇ ଦେଲେ । ବରଗଡ଼ ବଜାରରେ ବିଦେଶୀ ଜିନିଷପତ୍ର ନଷ୍ଟ କରି ଚନ୍ଦ୍ରଶେଖର ସାହୁ, ଦୟାନିଧି ନାୟକ ଗିରଫ ହେଲେ । ଧନସିଂ ପ୍ରଧାନ, ଫକୀର ବେହେରା ଜବତ କରାଯାଇଥିବା କଂଗ୍ରେସ ଅଫିସ ତାଲା ଭାଙ୍ଗି ଦଖଲ କଲେ ।

ଗାନ୍ଧୀ ଓ ଗାନ୍ଧୀ ଦର୍ଶନ ଆଜି ସମଗ୍ର ଦେଶରେ ଅପାଂକ୍ତେୟ ହୋଇ ଉଠିଥିଲା ବେଳେ ସମ୍ଭବତଃ ଦେଶରେ ପାଣିଗୋରା ହିଁ ଏମିତି ଏକମାତ୍ର ଗାଁ, ଯେଉଁ ଗାଁରେ ଗାନ୍ଧୀଜୀ ଓ ତାଙ୍କ ଦର୍ଶନ ଏବେ ବି ଜୀବିତ । ଗାଁର ସମସ୍ତେ ଯେପରି ତାଙ୍କ ଆଦର୍ଶର ଏକ-ଏକ ଅବତାରରେ ପରିଣତ ହୋଇଛନ୍ତି ।

୧୯୪୦ରେ ଦିବ୍ୟ କିଶୋର ସାହୁ, ଅଭିମନ୍ୟୁ ଭୋଇ ଗିରଫ ହୋଇଥିଲେ ହେଁ ସେମାନେ ନାବାଳକ ଥିବାରୁ ୧୫/୨୦ ଦିନ ପରେ ଛାଡ଼ ପାଇଥିଲେ ।

୧୯୪୦-୪୧ର ବ୍ୟକ୍ତିଗତ ସତ୍ୟାଗ୍ରହରେ ଶ୍ୟାମସୁନ୍ଦର ସାହୁ, ଋଷି ସରାଫ, ଯଶୋବନ୍ତ ଭୋଇ, ଚମରୁ ପରିଡ଼ା, ଦିବ୍ୟସୁନ୍ଦର ସାହୁ, ଧନଞ୍ଜୟ ପ୍ରଧାନ, ରାଘବ ଚରଣ ପ୍ରଧାନ, ଡମ୍ବରୁଧର ଦେଓ୍ୱାନ, ଚୈତନ୍ୟ ସରାଫ ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ଗିରଫ ହୋଇଥିଲେ ।

ସେହିପରି ୧୯୪୨ର ଭାରତଛାଡ଼ ଆନ୍ଦୋଳନରେ ଉପରୋକ୍ତ ସଂଗ୍ରାମୀମାନଙ୍କ ସମେତ ଫୁଲଶର ପ୍ରଧାନ, ଶଙ୍କର ପ୍ରଧାନ,ଫକୀର ବେହେରା, ଧନସିଂହ ପ୍ରଧାନ, ଧନୁ ସାହୁ, ଚନ୍ଦ୍ରଭାନୁ ପରଡ଼ିଆ, ଶ୍ରୀବସ୍ତ ନାୟକ, ଦୟାନିଧି ନାୟକ, ପ୍ରଭାକର ସାହୁ, ଚୈତନ୍ୟ ସାହୁ, ପ୍ରଭାକର ପ୍ରଧାନ, ମୀନକେତନ ସରାଫ, ଜୀତେନ୍ଦ୍ର ପ୍ରଧାନ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, କହ୍ନାଇଲାଲ ସାହୁ, ମଦନ ଭୁଏ, ସୁନାଧର ସାହୁ, ଗୋକୁଳଚନ୍ଦ୍ର ନାୟକ, ମଦନମୋହନ ପ୍ରଧାନ, ହରିହର ଭୋଇ, ଦଶରଥ ନାୟକ, କଏରା ସାହୁ,ଶୁକସାରଣ ଭୋଇ କାରାବରଣ କରିଥିଲେ ।

୧୯୪୨ରେ ପୁରେନାର ମାୟାଧର ପୁରୋହିତ ସୋଢ଼ା ଅମଠି, ଛେଳିଆମାଲ, କୁତନା, ଝାରବନ୍ଧ, ଶକ୍ତିଠାରେ ପ୍ରଚାର ସଭାମାନ କରିଥିଲେ । ସୋଢ଼ା, ଅମଠିରେ ମଦଭାଟି ଭାଙ୍ଗି ଗିରଫ ହୋଇଥିଲେ । ତାଙ୍କୁ ୧ବର୍ଷ ୯ମାସ ଜେଲ ହୋଇଥିଲା ।

ଘଟଣାର ମାର୍ମିକ ବିବରଣୀ ଦେଇ ମୁକ୍ତେଶ୍ୱର ପ୍ରଧାନ ଲେଖିଛନ୍ତି :

"- ଏଇ ମଫସଲ ଗାଁରୁ ୩୨ଜଣ ଚାଲିଗଲା ପରେ ଶୂନ୍ୟତା ପ୍ରକାଶ ପାଇବା ସ୍ୱଭାବିକ । କିଏ ୧୦।୧୨ ବର୍ଷର ଛୁଆକୁ ଛାଡ଼ି ଦେଇ ଗଲା ତ କିଏ ନବବିବାହିତା ପତ୍ନୀକୁ

ଛାଡ଼ିଲା । କାହାର ବିବାହ ସ୍ଥଗିତ ରହିଲାଣି ତ କାହାରି ରୋଜଗାରିଆ ପୁଅ ବିନା ରୋଷେଇ ବନ୍ଦ ହେଲା । ତା' ସାଙ୍ଗକୁ ପୋଲିସ ନିର୍ଯ୍ୟାତନା ଓ ବଦମାସୀ ବଢ଼ିବା ଆଶଙ୍କାରେ ଗାଁରେ ଥିବା ବାକୀ ଯୁବକମାନେ ରାତ୍ରୀ ପହରାର ବ୍ୟବସ୍ଥା କରିଥିଲେ ।''

ସହରରୁ ଅନେକ ଦୂରରେ ଥିବା ଏକ ନିହାତି ସାଧାରଣ ମଫସଲ ଗାଁରୁ ଏକା ସହିତ ୩୨ ଜଣ ଜେଲ ଯିବା ସାମାନ୍ୟ ଘଟଣା ନଥିଲା । ପୋଲିସ ଏଥିରେ ଆତଙ୍କିତ ହୋଇ ପାଣିମୋରା ଉପକଣ୍ଠ ସ୍ଥିତ କୁଲୁଥିଆ ଟିକିରାରେ ପ୍ରାୟ ୨୦୦ ବନ୍ଧୁକଧାରୀ ଯବାନ ମୃତୟନ କରିଥିଲେ । ଲୋକଙ୍କୁ ଆତଙ୍କିତ କରିବାକୁ ଥରକୁ ଥର ଫ୍ଲାଗ୍‌ମାର୍ଚ୍ଚ ଓ ଫାଙ୍କା ଗୁଳି ଆଓ୍ୱାଜ କରାଯାଇଥିଲା ।

୧୯୪୩ରେ ପାଣିମୋରାଠାରେ ସମ୍ବଲପୁର ଜିଲ୍ଲାର ରାଜନୈତିକ ସମ୍ମିଳନୀ ଅନୁଷ୍ଠିତ ହେଲା । ବହୁ ଜନ ସମାବେଶ ମଧ୍ୟରେ କବି ଖଗେଶ୍ୱର ସେଠଙ୍କ ରଚିତ 'ଆମେ ଏଇଥି ପାଇଁ ତ ଗରିବ' ଉଦ୍‌ବୋଧନ ଗୀତି ଗାନ କରି ତୁଳସୀରାମ ଗିରି ସମ୍ମିଳନୀରୁ ଗିରଫ ହୋଇଥିଲେ । ସେହି ବର୍ଷ ପାଣିମୋରାରେ ଖଦୀ ସେବା ସଂଘ ଓ ନଇ ତାଲିମ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା ।

୧୯୪୫ରେ ସମ୍ବଲପୁର ଜିଲା କଂଗ୍ରେସ କମିଟିର ନିର୍ଦ୍ଦେଶକ୍ରମେ ଭାଗୀରଥିଙ୍କ ନେତୃତ୍ୱରେ ବଲାଙ୍ଗୀର ଗଡ଼ଜାତରେ ଷ୍ଟେଟ କଷ୍ଟମ ବିରୋଧୀ ଆନ୍ଦୋଳନରେ ଗାଁର ଶ୍ୟାମସୁନ୍ଦର ସାହୁ ଯୋଗଦାନ କରିଥିଲେ ।

ସୋନପୁରର ବିନିକାଠାରେ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେଇ ଚମରୁ ପରିଡ଼ା ସେ ବର୍ଷ ଗିରଫ ହୋଇଥିଲେ । ବିରଞ୍ଚି ନାରାୟଣ ପ୍ରଧାନ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ପୁରୀ ଜଗନ୍ନାଥ ମନ୍ଦିରକୁ ହରିଜନ ପ୍ରବେଶ ପାଇଁ ଓଡ଼ିଶା କଂଗ୍ରେସ ନିସ୍ପତ୍ତି ନେଇଥାଏ । ତା'ଆଗରୁ ପାଣିମୋରା ଜଗନ୍ନାଥ ମନ୍ଦିରରେ ହରିଜନ ପ୍ରବେଶର ଯୋଜନା ହେଲା । ବରଗଡ଼ର ହରିଜନ ନେତା ବିଶି ବିଭାରଙ୍କ ନେତୃତ୍ୱରେ ହରିଜନମାନେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ହିନ୍ଦୁମାନଙ୍କୁ ଫୁଲମାଳ, ଚନ୍ଦନ ମଖାଇଥିଲେ । ଏ ଘଟଣାର ପ୍ରତିବାଦ କରି ଗାଁର ରକ୍ଷଣଶୀଳ ଗୌନ୍ତିଆ ନୃପରାଜ ପ୍ରଧାନ ଗାଁ ଛାଡ଼ି ଘନାପାଲି ଚାଲିଯାଇ ସେଠି ବସବାସ କରିଥିଲେ ।

ଅଗଷ୍ଟ ୧୫, ୧୯୪୭ ଦିନ ଫୁଲଶର ପ୍ରଧାନଙ୍କ ହାତରେ ନିର୍ମିତ ଭାରତମାତାର ପ୍ରତିକୃତିକୁ ଗ୍ରାମବାସୀ ଏକ ଶୋଭାଯାତ୍ରାରେ ନେଇ ସ୍ୱାଧୀନତା ଉତ୍ସବରେ ପ୍ରାଣଭରି ମାତି ଥିଲେ ।

ଗାନ୍ଧୀଙ୍କ ନିର୍ମମ ହତ୍ୟାରେ ଶୋକ ବିହ୍ୱଳ ହୋଇଥିଲା ପାଣିମୋରା । ଗାନ୍ଧୀଙ୍କ ଏକ ଫଟୋକୁ ଶୋଭାଯାତ୍ରାରେ ନିଆଯାଇ ଗାଁର ବଡ଼ ପୋଖରୀ କୂଳରେ ଦାହ ସଂସ୍କାର କରାଯାଇଥିଲା । ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ସମସ୍ତେ ମିଶ ରାନ୍ଧି, ଖାଇ ଜାତିପିତାଙ୍କ ଦଶାହ କାର୍ଯ୍ୟ ସଂପନ୍ନ କରାଯାଇଥିଲା ।

ସେହି ଦିନଠୁ ଅନେକ ଗ୍ରାମବାସୀ ଗାନ୍ଧୀଙ୍କ ହତ୍ୟା ହୋଇଥିବା ଶୁକ୍ରବାର ଦିନ ସନ୍ଧ୍ୟାରେ ଉପବାସ ରଖି ପ୍ରାର୍ଥନା କରନ୍ତି । ଏହା ଆଜି ବି ଚାଲିଛି ।

ସ୍ୱାଧୀନତା ପରେ ମଧ୍ୟ ଗାଁ ନିରବ ରହି ନଥିଲା । ଗାନ୍ଧୀ ଶୁଦ୍ଧକ୍ରିୟାର ବିଶିଷ୍ଟ ସ୍ମାରକୀ ରୂପେ ୧୯୫୮ରେ ଗାଁର ହରିଜନମାନଙ୍କ ମନ୍ଦିର ପ୍ରବେଶ ହୋଇଥିଲା । ଗାଁରେ ଭାରତୀୟ ସ୍ୱାଧୀନତା ସଂଗ୍ରାମୀ ସ୍ମୃତିପୀଠ ପ୍ରତିଷ୍ଠିତ ହେଲା । ସେଠାରେ ଏକ ଫଳକରେ ୩୨ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ନାମ ଖୋଦିତ ହେଲା ।

ଗାଁକୁ ବିଭିନ୍ନ ସମୟରେ ଆସିଥିବା ବରିଷ୍ଠ କଂଗ୍ରେସ ନେତାଙ୍କ ସ୍ମୃତିରେ ତା'ପାଖରେ ଏକ 'ସ୍ମରଣ ପଥେ' ଫଳକ ଲାଗିଲା । ସେଥିରେ ମାର୍ବଲ ପଥରରେ ଲକ୍ଷ୍ମୀନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ଫକୀର ବେହେରା, ଭାଗୀରଥି ପଟ୍ଟନାୟକ, ଘନଶ୍ୟାମ ପାଣିଗ୍ରାହୀ ଓ ପ୍ରହଲ୍ଲାଦରାୟ ଲାଠଙ୍କ ନାମ ଖୋଦିତ ହୋଇଛି ।

ବିଭିନ୍ନ ଜାତୀୟ ପର୍ବରେ ସ୍ମୃତିପୀଠରେ ସ୍ୱାଧୀନତା ସଂଗ୍ରାମୀ, ଗ୍ରାମବାସୀମାନେ ଛାତ୍ରଛାତ୍ରୀଙ୍କ ସହଯୋଗରେ ଜାତୀୟ ପତାକା ଉତ୍ତୋଳନ କରି ସ୍ମୃତିଫଳକରେ ପୁଷ୍ପମାଲ୍ୟ ପ୍ରଦାନ ପୂର୍ବକ ଶ୍ରଦ୍ଧାଞ୍ଜଳି ଅର୍ପଣ କରନ୍ତି ।

୧୯୪୯ରେ ଧନଂଜୟ ପ୍ରଧାନ ସେବାଗ୍ରାମକୁ ଯାଇ ତାଲିମ ନେଇଥିଲେ । ତାଙ୍କୁ 'ସ୍ୱାବଲମ୍ବନ ଶ୍ରେଣୀ' ଭୁକ୍ତ କରାଯାଇ ତାଲିମ ଦିଆଯାଇଥିଲା । ଏହି ଶ୍ରେଣୀର କାର୍ଯ୍ୟକ୍ରମରେ ସମଗ୍ର ଦେଶରୁ ମାତ୍ର ୫ଜଣ କର୍ମି ମନୋନୀତ ହୋଇଥିଲେ । ଧନଂଜୟ ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ଏମାନଙ୍କୁ ନିଜେ ଚାଷକରି, ରାନ୍ଧି, ସୂତାକାଟି ଲୁଗାବୁଣି ଚଳିବାକୁ ହୋଇଥିଲା ।

୧୯୬୩ରେ ତାଳପଟିଆଠାରେ ସର୍ବୋଦୟ ନେତା ବିନୋବାଙ୍କୁ ପାଣିମୋରାକୁ ଗ୍ରାମଦାନ କରାଯାଇ ତାଙ୍କ ହାତରେ କାଗଜପତ୍ର ଅର୍ପଣ କରାଯାଇଥିଲା । ଗାଁରେ ଉତ୍କଳ ଖଦୀମଣ୍ଡଳର ସ୍ଥାୟୀ ଶାଖା ପ୍ରତିଷ୍ଠିତ ହୋଇଥିଲା ।

ଗାଁକୁ ବିନୋବା, ଶଙ୍କରରାଓ ଦେବ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ନବ ବାବୁ, ମାଲତୀ ଦେବୀ, ଆଚାର୍ଯ୍ୟ ହରିହର ଦାସ, ହରେକୃଷ୍ଣ ମହତାବ, ଅନ୍ନପୂର୍ଣ୍ଣା ମହାରଣା, ଶରତ ମହାରଣା, ମନମୋହନ ଚୌଧୁରୀ ପ୍ରମୁଖ ଆସିଥିଲେ ।

ଗ୍ରାମବାସୀ ସଂଗ୍ରାମୀଗଣ ନିଜକୁ ଜାତୀୟ ସାଙ୍ଗଠନିକ କାର୍ଯ୍ୟ, ସର୍ବୋଦୟ ଭୂଦାନ, ଶାନ୍ତି ସେନା ଆଦି କାର୍ଯ୍ୟରେ ନିୟୋଜିତ କରିଥିଲେ ।

ଜାତୀୟ ପୀଠ ପାଣିମେରାର ସଂଗ୍ରାମୀ ତାଲିକାରେ କେବଳ ସାମନ୍ତ ପରିବାରର ପୂର୍ଣ୍ଣଚନ୍ଦ୍ର ପ୍ରଧାନ ଗୌନ୍ତିଆ ରହିଥିଲେ ତା'ନୁହେଁ, ତା'ସାଙ୍ଗକୁ ଗରୀବ ଚାଷୀ, ରାଜମିସ୍ତ୍ରୀ ଧନ ସିଂହ ପ୍ରଧାନ, ଗୋରୁ ଚ଼ରାଳୀ ଶ୍ରୀବସ୍ତ ନାୟକ, ଜମିହୀନ ପ୍ରଭାକର ସାହୁ, ଚାଷୀମୂଲିଆ ଦୟାନିଧି ନାୟକ, ମୂଲିଆ ଶୁକସାରଣ ଭୋଇ ଆଦି ଯୋଗ ଦେଇ କାରାବରଣ କରିଥିଲେ ।

ଅଧିକାଂଶ ସଂଗ୍ରାମୀ ସାମାନ୍ୟ ସାକ୍ଷର ରହିଥିଲା ବେଳେ ଆଉ କେତେକ ପ୍ରାଥମିକ ଯାଏଁ ଶିକ୍ଷା ଗ୍ରହଣ କରିଥିଲେ । ମାତ୍ର କେଇ ଜଣ ମଧ୍ୟ ଇଂରାଜୀ ଓ ଉଚ୍ଚ ବିଦ୍ୟାଳୟରେ ପଢ଼ିଥିଲେ ।

ପାଣିମୋରାର ନାରୀମାନେ ମଧ୍ୟ ପଛରେ ନ ଥିଲେ । ଚ଼ମରୁ ପରିଡ଼ାଙ୍କ ମାତା କେତକୀ ପରିଡ଼ା ସଂଗ୍ରାମୀମାନଙ୍କୁ ସ୍ନେହ, ସହଯୋଗ ଦେଉଥିଲେ । ସମସ୍ତଙ୍କ ମନରେ ଇଂରେଜ ବିରୋଧୀ ଭାବ ଜାଗ୍ରତ ହୋଇଥିଲା । ଥରେ ତାଙ୍କ ଘରେ ପୋଲିସର ଅନଧିକାର ପ୍ରବେଶ ବେଳେ ସେ ପୋଲିସ ଉପରକୁ ତତଲା ପେଜ ଫୋପାଡ଼ିଥିଲେ । ଇନ୍ଦୁ ପ୍ରଧାନ, ଯଶୋବତୀ ସାହୁ, ସେବତୀ ପ୍ରଧାନ, ଲୀଳାବତୀ ପ୍ରଧାନ ଆଦି ନାରୀ ସଙ୍ଗଠନ ଦାୟିତ୍ୱ ନେଇଥିଲେ ।

ସମ୍ଭବତଃ ସ୍ୱାଧୀନତା ସଂଗ୍ରାମରେ ଗୋଟିଏ ସମଗ୍ର ଗାଁ ପାଣିମୋରା ଝାସ ଦେଇଥିବା ଭଳି ଘଟଣା ଭାରତ ଭୂଗୋଳରେ ବିରଳ ।

❑❑❑

# ଓଡ଼ିଶା ବାହାରେ ସମ୍ବଲପୁରର ସତ୍ୟାଗ୍ରହୀ

ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମୀମାନଙ୍କ କାର୍ଯ୍ୟକ୍ରମ କେବଳ ଓଡ଼ିଶା ଭିତରେ ସୀମିତ ନଥିଲା । ସେମାନଙ୍କ ମଧ୍ୟରେ କେତେ ଜଣ ମଧ୍ୟପ୍ରଦେଶ, ମହାରାଷ୍ଟ୍ର, ବିହାର ଆଦିରେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାର ଗୌରବ ଲାଭ କରିଛନ୍ତି । ଏ ଅଧ୍ୟାୟ ମଧ୍ୟ ୧୮୫୭ରୁ ଆରମ୍ଭ ହୋଇଛି ।

ସୋନାଖାନ,ମଧ୍ୟପ୍ରଦେଶର ଜମିଦାର ନାରାୟଣ ସିଂହଙ୍କୁ ଇଂରେଜଙ୍କ ହାତରେ ଧରାଇ ଦେଇଥିବାରୁ ତାଙ୍କ ପୁଅ ଗୋବିନ୍ଦ ସିଂହ, ସମ୍ବଲପୁରର କମଳ ସିଂହ, ଶାଳେଗ୍ରାମ ସିଂହ କରିହା, ନୀଳାମ୍ବର ସିଂହ, ହାତୀ ସିଂହ ପ୍ରମୁଖଙ୍କ ସାହାଯ୍ୟ ନେଇ ମଧ୍ୟପ୍ରଦେଶର ଦେଓରୀ ଜମିଦାର ମହାରାଜ ସାଏଙ୍କୁ ଦିନ ଦ୍ୱିପ୍ରହରେ ଆକ୍ରମଣ କରିଥିଲେ । ଜମିଦାର ମହାରାଜ ସାଏଙ୍କୁ ତାଙ୍କ ଘର ଆଗରେ ଉଲଗ୍ନ କରି ହତ୍ୟା କରି ତାଙ୍କର ଦୁଇ ପୁତ୍ର ଓ କନ୍ୟା ଏବଂ ସ୍ତ୍ରୀଙ୍କୁ ହରଣ କରି ଜଙ୍ଗଲ ଭିତରେ ବନ୍ଦୀ କରି ରଖିଥିଲେ ।

୧୮୫୭ର ବିଦ୍ରୋହୀ ସିପାହୀମାନେ ହଜାରୀବାଗ ଜେଲ ଆକ୍ରମଣ କରି ବନ୍ଦୀମାନଙ୍କୁ ମୁକ୍ତ କରି ଦେଇଥିଲେ । ସୁରେନ୍ଦ୍ର ସାଏ ଓ ତାଙ୍କ ଭାଇ ଉଦନ୍ତ ସାଏ ମୁକ୍ତ ହୋଇ କିଛି ଦିନ ସିପାହୀ ବିଦ୍ରୋହରେ ସାମିଲ ହୋଇଥିଲେ । ହେଲେ ବିଦ୍ରୋହର ରୂପରେଖ ତାଙ୍କ ମନକୁ ଘେନିଲା ନାହିଁ । ସେ ଅନ୍ୟ ଭାବରେ ସମ୍ବଲପୁରର ଆଦିବାସୀମାନଙ୍କୁ ଇଂରେଜ ବିରୁଦ୍ଧରେ ସଙ୍ଗଠିତ କରିବା ଉଦ୍ଦେଶ୍ୟରେ ସମ୍ବଲପୁର ଫେରି ଆସି ପୂର୍ଣ୍ଣପ୍ରାଣରେ ବିଦ୍ରୋହ ଆରମ୍ଭ କରିଦେଲେ । ସୁରେନ୍ଦ୍ର ସାଏଙ୍କ ବିପ୍ଳବ ସମ୍ବଲପୁରଠୁ ରାୟପୁର ଦେଇ ବିଲାସପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ବିଶିଷ୍ଟ ସତ୍ୟାଗ୍ରହୀ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ନାଗପୁର ପତାକା ସତ୍ୟାଗ୍ରହ, ତାରକେଶ୍ୱର କୃଷକ ସତ୍ୟାଗ୍ରହ ଆଦିରେ ଯୋଗ ଦେଇଥିଲେ । ୧୯୨୩ରେ କଂଗ୍ରେସର ନାଗପୁର ଅଧିବେଶନ ସମୟରେ ୧୪୪ଧାରା ଭଙ୍ଗ କରି ରେଳଲାଇନ ଅବରୋଧ କରିବା ଅପରାଧରେ ସେ ଓ ଝାରସୁଗୁଡ଼ାର କଷ୍ଟରାମ ତନ୍ତୀ ଗିରଫ ହୋଇଥିଲେ ।

ନାଗପୁର ଓ ବର୍ଦ୍ଦୋଲି ସତ୍ୟାଗ୍ରହରେ ଭାଗୀରଥି ପଟ୍ଟନାୟକ ଓ ଅନ୍ୟ କେତେଜଣ ସାଥୀ ଯାଉଥିଲାବେଳେ ସତ୍ୟାଗ୍ରହ ସ୍ଥଗିତ ହୋଇଥିଲା । ବଲ୍ଲଭ ଭାଇ ପଟେଲଙ୍କ ନେତୃତ୍ୱରେ ବର୍ଦ୍ଦୋଲି କୃଷକ ସତ୍ୟାଗ୍ରହର ବିଜୟ ହୋଇଥିଲା । ଏହି ବିଜୟର ସ୍ମାରକୀ ସ୍ୱରୂପ ପଟେଲଙ୍କୁ 'ସର୍ଦ୍ଦାର' ଉପାଧି ଦିଆଯାଇଥିଲା ।

ବରଗଡ଼ର ଗୌରୀଶଙ୍କର ଦାସ କଲିକତାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାବରଣ କରିଥିଲେ । ସମ୍ବଲପୁରର ଆନ୍ତଃପ୍ରଦେଶ ସ୍ୱାଧୀନତା ସଂଗ୍ରାମୀ ଭାବରେ ଭାଗୀରଥି ପଟ୍ଟନାୟକ, ଜମ୍ବୁବତୀ ଦେବୀ ଓ ପ୍ରଫୁଲ୍ଲ ପଟ୍ଟନାୟକଙ୍କ ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ବରଗଡ଼ଠାରେ ଆଇନ ଅମାନ୍ୟ ଆନ୍ଦୋଳନ କରି ସେପ୍ଟେମ୍ବର ୨୨, ୧୯୩୩ରେ ଏହି ତ୍ରିମୂର୍ତ୍ତି ଗିରଫ ହୋଇଥିଲେ । ଏଥିରେ ଭାଗୀରଥିଙ୍କୁ ୬ମାସ, ଜମ୍ବୁବତୀଙ୍କୁ ୫ମାସ ଓ ପ୍ରଫୁଲ୍ଲଙ୍କୁ ୪ମାସ ସଶ୍ରମ କାରାଦଣ୍ଡ ମିଳିଥିଲା । ଭାଗୀରଥି ଓ ପ୍ରଫୁଲ୍ଲଙ୍କୁ ପାଟଣା କେଂପ ଜେଲ ଓ ଜମ୍ବୁବତୀଙ୍କ ଭାଗଲପୁର ସେଣ୍ଟ୍ରାଲ ଜେଲ ପଠାଇ ଦିଆଯାଇଥିଲା ।

ସେତେବେଳ ପାଟଣା କେଂପ ଜେଲରେ ନୃସିଂହ ଗୁରୁ, ବୃନ୍ଦାବନ ଗୁରୁ, ମହାବୀର ସିଂହ ଆଦି ରହିଥାନ୍ତି । ସେଠାରେ ପ୍ରଫୁଲ୍ଲଙ୍କ ସମେତ ଅନ୍ୟାନ୍ୟ ଶତାଧିକ ତରୁଣ ସଂଗ୍ରାମୀଙ୍କୁ ଲାଠି, ଛୁରି ଚାଳନା, ସଂସ୍କୃତ, ସେବାଦଳ ପ୍ରଶିକ୍ଷଣ ଦିଆଯାଇଥିଲା ।

ଜାନୁୟାରୀ ୧୫, ୧୯୩୪ରେ ବିହାରର ପ୍ରଳୟଙ୍କରୀ ଭୂମିକମ୍ପ ଯୋଗୁଁ ବିହାର ଓ ଓଡ଼ିଶାର ସମସ୍ତ ରାଜନୈତିକ ବନ୍ଦୀଙ୍କୁ ମୁକ୍ତ କରି ଦିଆଯାଇଥିଲା । ପଟ୍ଟନାୟକ ପରିବାର ଏ ଦୁର୍ଦ୍ଦିନରେ ଓଡ଼ିଶାକୁ ନ ଫେରି ଭୂମିକମ୍ପ ପ୍ରପୀଡ଼ିତଙ୍କ ସେବାରେ ଲାଗିଗଲେ । ପରେ ପିତାମାତାଙ୍କ ସମ୍ବଲପୁର ପ୍ରତ୍ୟାବର୍ତ୍ତନ ପରେ ମଧ୍ୟ ପ୍ରଫୁଲ୍ଲ ସେଠାରେ ରହିଗଲେ ।

ପ୍ରଫୁଲ୍ଲ ମୁଙ୍ଗେର, ସହର୍ସା, ପାଞ୍ଚଗଛିଆ ଓ ବନଗାଉଁ ସେବା ଶିବିରରେ ଓ ଭାଗୀରଥି ଓ ଯଶୋବତୀ ମାଧୋପୁର ଓ ବାସୁଦେଓପୁର ସେବା ଶିବିରରେ ରହି ସେବା କଲେ । ଏହି କାର୍ଯ୍ୟ ତିନିମାସ ଧରି ଚାଲିଲା ।

ପ୍ରଫୁଲ୍ଲ ସେଠାକାର ଦେଓଘର ହିନ୍ଦୀ ବିଦ୍ୟାପୀଠରେ ଭର୍ତ୍ତି ହେବାପୂର୍ବରୁ 'କିଶୋର ସେନା'ର ସଙ୍ଗଠନ କରିଥିଲେ । ଗାନ୍ଧୀଙ୍କ ଦେଓଘର ଅସ୍ପୃଶ୍ୟତା ନିବାରଣ ଯାତ୍ରାରେ ସେ କିଶୋର ସେନାର କମାଣ୍ଡର ଭାବରେ ମହିଳା ସଭାର ସୁରକ୍ଷା ଦାୟିତ୍ୱ ନେଇଥିଲେ ।

୧୯୩୭ରେ ଜୟପ୍ରକାଶ ନାରାୟଣ ଓ ସ୍ୱାମୀ ସହଜାନନ୍ଦ ସରସ୍ୱତୀଙ୍କ କିଶାନ ଆନ୍ଦୋଳନରେ ସକ୍ରିୟ ଯୋଗଦାନ କରିଥିଲେ । ସେ ସମାଜବାଦୀ ପାର୍ଟିର ଜଣେ ସଦସ୍ୟ ହେଲେ । ପରେ ସେ ନିଖିଳ ଭାରତ ଛାତ୍ର ସଂଘର ଜିଲ୍ଲା ସଂପାଦକ ଓ ପ୍ରଦେଶ କାର୍ଯ୍ୟକାରୀ କମିଟି ସଭ୍ୟ ଭାବେ ଦାୟିତ୍ୱ ତୁଲାଇଥିଲେ ।

ପ୍ରଫୁଲ୍ଲ ନିଜ ସହପାଠୀ କେ.ଗୋପାଳନ୍, ଭଗବାନ ଦତ୍ତ ରାଜହଂସ, ଜୟେନ୍ଦ୍ର ବର୍ମା, ଆଦିଙ୍କୁ ନେଇ ଉଚ୍ଚସ୍ତରୀୟ ସମାଜବାଦୀ ଦଳ ଗଠନ କଲେ । ଏହି କମିଟି ପକ୍ଷରୁ ବିହାରର

ତତ୍‌କାଳୀନ ଅନ୍ତବର୍ତ୍ତୀ କଂଗ୍ରେସ ସରକାରଙ୍କ କୃଷକ ଓ ଶ୍ରମିକ ବିରୋଧୀ ନୀତିର ଦୃଢ଼ ବିରୋଧ କରାଗଲା ।

ସେହିପରି ସେମାନେ 'ଛୋଆଗୁଡ଼ କାଣ୍ଡ','ଲୋହାକାଣ୍ଡ' ଓ ଚଂପାରଣ ଜିଲ୍ଲାର 'ସାଠୀ ଧାନଜମି କାଣ୍ଡ'ର ଭୟଙ୍କର ପ୍ରତିରୋଧର ନେତୃତ୍ୱ ନେଲେ ।

ସାନ୍ତାଳ ପ୍ରଗଣାର ୬ଟି ସବ୍‌ଡିଭିଜନରେ ସମାଜବାଦୀ ଆନ୍ଦୋଳନର ନେତୃତ୍ୱ ନେଲେ ପ୍ରଫୁଲ୍ଲ ଓ ତାଙ୍କ ସାଥୀମାନେ । ଜମିଦାରୀ ପ୍ରଥା ଉଚ୍ଛେଦ ଲାଗି ସ୍ୱାମୀ ସହଜାନନ୍ଦ ସରସ୍ୱତୀଙ୍କ 'କିଷାନ ସଭା ଆନ୍ଦୋଳନ'ରେ ମଧ୍ୟ ପ୍ରଫୁଲ୍ଲ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ପରେ ସେ ଅମଡ଼ାପଡ଼ାଠାରେ ପାହାଡ଼ିଆ ଆଦିବାସୀମାନଙ୍କ ସର୍ବାଙ୍ଗୀନ ଉନ୍ନତି ଲାଗି ଗଠିତ 'ସାନ୍ତାଳ ପାହାଡ଼ିଆ ସଂଘ'ର ସଂପାଦକ ହେଲେ । ପଣ୍ଡିତ ବିନେଦାନନ୍ଦ ଝା ଏହାର ଅଧ୍ୟକ୍ଷ ଓ ଡ. ରାଜେନ୍ଦ୍ର ପ୍ରସାଦ ଓ ଠକ୍‌କର ବାପା ଏହାର ପରିଚାଳକ ଥିଲେ ।

ସେତେବେଳେ ଦେଶବ୍ୟାପୀ ବୈପ୍ଳବିକ ବାତାବରଣ ଦେଖି ପ୍ରଫୁଲ୍ଲ, ସତ୍ୟକାଳୀ ଭଟ୍ଟାଚାର୍ଯ୍ୟ ଓ ଶ୍ରୀକୃଷ୍ଣ ପ୍ରସାଦ ଗୋପନରେ ସାନ୍ତାଳ ଓ ପାହାଡ଼ିଆମାନଙ୍କୁ ସଙ୍ଗଠନ କରି ଆସନ୍ନ ବିପ୍ଳବ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ ।

ଦେଓଘରରେ ନେତାଜୀ ସୁଭାଷଙ୍କ ସହ ତାଙ୍କ ଦେଖା ହେଲା । ଏହା ତାଙ୍କ ଭିତରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ଦେଲା । ରାମଗଡ଼ କଂଗ୍ରେସରେ ହିନ୍ଦୀ ବିଦ୍ୟାପୀଠର ସ୍ୱେଚ୍ଛାସେବୀ ଦଳ ତାଙ୍କ ନେତୃତ୍ୱରେ ସେବାକାର୍ଯ୍ୟ କରିଥିଲେ ।

୧୯୪୨ରେ ପ୍ରଫୁଲ୍ଲ ଦେଓଘର ଜିଲାବୋର୍ଡ଼ ନିର୍ବାଚନରେ ସମସ୍ତ ଆଦିବାସୀ ଅଧ୍ୟୁସିତ ଅଞ୍ଚଳର ନିର୍ବାଚନ ଦାୟିତ୍ୱ ନେଇଥିଲେ । କଂଗ୍ରେସର ବିପୁଳ ବିଜୟ ହେଲା । ଜିଲାବୋର୍ଡର ବହୁ ଗୁରୁତ୍ୱପୂର୍ଣ୍ଣ ସବ୍-କମିଟିରେ ତାଙ୍କୁ ମୁଖ୍ୟ କରାଯାଇଥିଲା । ଜିଲା କଂଗ୍ରେସ କମିଟି, ଆଦିବାସୀ ଆଶ୍ରମ, ସତ୍ୟାଗ୍ରହ ଆଶ୍ରମ ସଙ୍ଗଠନ ଓ ପରିଚାଳନା କାର୍ଯ୍ୟ ମଧ୍ୟ ତାଙ୍କୁ କରିବାକୁ ପଡ଼ିଥିଲା ।

ତା'ପୂର୍ବ ବର୍ଷ ୧୯୪୧ର ବ୍ୟକ୍ତିଗତ ସତ୍ୟାଗ୍ରହରେ ଗାନ୍ଧୀଜୀ ଡ. ରାଜେନ୍ଦ୍ର ପ୍ରସାଦଙ୍କୁ ବିହାରର ଡିକ୍‌ଟେଟର ନିଯୁକ୍ତ କରିଥିଲେ । ଡ. ପ୍ରସାଦ ପ୍ରଫୁଲ୍ଲଙ୍କୁ ଓ ତାଙ୍କ ବନ୍ଧୁ ମୋତିଲାଲ କେଜରିୱାଲଙ୍କୁ ସାନ୍ତାଳ ପ୍ରଗଣାର ଡିକ୍‌ଟେଟର ନିଯୁକ୍ତ କରିଥିଲେ । ସାନ୍ତାଳ ପ୍ରଗଣାର ଗ୍ରାମେଗ୍ରାମେ ସଭା ସମ୍ମିଳନୀର ସୁଅ ଛୁଟିଲା । ତାଙ୍କ ନାମରେ ୱାରଣ୍ଟ ଘୂରିଲା ।

ଅଗଷ୍ଟ ୨୦,୧୯୪୨ରେ ଆଗ୍ନେୟଗିରି ଶୃଙ୍ଗ ଉପରେ ଆୟୋଜିତ ସଭାରେ ପାହାଡ଼ିଆ ଜାମା ସରଦାରଙ୍କ ନିର୍ଦ୍ଦେଶରେ ପାହାଡ଼ିଆ ସ୍ତ୍ରୀମାନେ ପ୍ରଫୁଲ୍ଲଙ୍କୁ 'ପାହାଡ଼ୀ ରାଜା'; ଗୋପାଳନଙ୍କୁ ମନ୍ତ୍ରୀ ଓ ଶ୍ରୀକୃଷ୍ଣଙ୍କୁ ସେନାପତି ନିଯୁକ୍ତ କଲେ ।

ପାହାଡ଼ିଆ ରମଣୀଗଣ ରାଣୀ ଭାବରେ ପ୍ରଫୁଲ୍ଲଙ୍କୁ ବରଣମାଳା ଦେଲେ । ଏ ସଭା ଆନ୍ଦୋଳନର ପ୍ରସ୍ତୁତି ପାଇଁ ହୋଇଥିଲା ।

ଏହାର ପର ଦିନ ଶହ-ଶହ ଯୁବକ ତାଙ୍କ ପାହାଡ଼ିଆ ବାହିନୀର ସୈନ୍ୟ ଭାବରେ ଯୋଗ ଦେଇଥିଲେ ।

ଏହା ପରେ ପ୍ରଫୁଲ୍ଲ ଦୁମ୍‌କା, ଗୋଡ୍‌ଡା, ରାଜମହଲ ଓ ପାକୁଡ଼ ଦାମିନ ମୁକ୍ତି ଅଭିଯାନରେ ଝାସ ଦେଲେ । ପାରମ୍ପରିକ ଅସ୍ତ୍ରଶସ୍ତ୍ରଧାରୀ ପାହାଡ଼ିଆ ବାହିନୀର ନେତୃତ୍ୱ ନେଇଥିଲେ ସେ ।

ଏ ଦାମିନ୍‌ମାନ ଏକ ସ୍ୱୟଂଶାସିତ ରାଜ୍ୟ ପରି ଥିଲା । ପାହାଡ଼ୀମାନେ ଦାମିନ୍‌କୁ ଦାନବ ପରି ଭୟ କରୁଥିଲେ । ୧୩,୩୩୯ ବର୍ଗ ମାଇଲ ବିଶିଷ୍ଟ ଦାମିନ୍ ଅଞ୍ଚଳ ସରକାରୀ କର୍ମକର୍ତ୍ତାଙ୍କ ପକ୍ଷେ ଥିଲା ଅଗମ୍ୟ ।

ପ୍ରଫୁଲ୍ଲ ଏ ଦାମିନ୍‌ମାନ ଅଧିକାର କଲେ । ତାଙ୍କ ପାହଡ଼ୀ ବାହିନୀ ନେଇ ଦାମିନ୍‌ର ବଙ୍ଗଳାମାନ ଦଖଲ କରି ପ୍ରଜାମାନଙ୍କୁ ଦାସତ୍ୱରୁ ମୁକ୍ତ କଲେ । ପାହାଡ଼ୀ ରଜା ପ୍ରଫୁଲ୍ଲଙ୍କ ତରଫରୁ ସମସ୍ତ ସରକାରୀ ଜଙ୍ଗଲ କାଟି ଚାଷ କରିବା, ଖଜଣା ଛାଡ଼, ଛୋଟ ଛୋଟ ଜଙ୍ଗଲ ଟିକସ ନ ଦେବା, ସମସ୍ତ ସରକାରୀ ଘର, କାର୍ଯ୍ୟାଳୟ ଦଖଲ କରିବା, ଚୌକୀଦାରଠୁ ପର୍ଗନାଏତ୍, ଫରେଷ୍ଟରଠୁ ରେଞ୍ଜର ପର୍ଯ୍ୟନ୍ତ ସମସ୍ତଙ୍କୁ ବରଖାସ୍ତ କରି ଦେବାର ହୁକୁମନାମା ଜାରି ହେଲା ।

ଅଗଷ୍ଟ ୨୨, ୧୯୪୨ ଦିନ ପ୍ରଫୁଲ୍ଲ ଓ ତାଙ୍କ ବାହିନୀ ଗୋଡ୍‌ଡାର ଡମରୁ ଗାଁ ହାଟରେ ସଭା କଲେ । ଭୟଭିତ ହୋଇ ମଦଭାଟି ମାଲିକ ମଦ ନ ବିକିବାକୁ ଶପଥ କରି ଡ୍ରମ୍ ଡମ୍ ମଦ ମାଟିରେ ଢାଳି ଦେଲେ । ମାଲିକ ଆଦେଶରେ ଚାକରମାନେ ମଦରନ୍ଧା ଯନ୍ତ୍ରପାତି ଭାଙ୍ଗିଦେଲେ ।

ତା'ପରେ ଗୋଡ୍‌ଡାର ଫରେଷ୍ଟ ଅଫିସ ଦଖଲ କରି ସିପାହୀମାନଙ୍କ ବ୍ୟକ୍ତିଗତ ଜିନିଷପତ୍ର ବାହାର କରି ଅଫିସ ପୋଡ଼ି ଦିଆଗଲା । ଫରେଷ୍ଟରମାନଙ୍କ ସରକାରୀ ଘର ପୋଡ଼ି ଦିଆଗଲା ।

ସରୌନୀର ମଦଭାଟି ପୋଡ଼ା ହେଲା । ପାହାଡ଼ିଆ ବାହିନୀ ଭାଟିର ମଦରେ ନିଜ ନିଜର ପାଦ ଧୋଇଲେ ।

ଅଗଷ୍ଟ ୨୩ ତାରିଖ ଥିଲା ପାହାଡ଼ିଆ ବାହିନୀର ଏକ ଐତିହାସିକ ଦିନ । ସେ ଦିନ ଶହଶହ ଚୌକୀଦାର ଓ ପର୍ଗନାଏତଙ୍କ ଗୁଳିଗୋଳାର ପ୍ରବଳ ପ୍ରତିରୋଧକୁ ଖାତର ନକରି ପାହାଡ଼ିଆ ବାହିନୀ ଚାନ୍ଦନା ଡାକବଙ୍ଗଳା, ରେଞ୍ଜର ଅଫିସ, କେନ୍ଦ୍ରୀୟ ମଦଭାଟି ଓ ଅନ୍ୟାନ୍ୟ କାର୍ଯ୍ୟାଳୟ ପୋଡ଼ିବାରେ ସକ୍ଷମ ହୋଇଥିଲେ ।

ପାହାଡ଼ିଆ ବାହିନୀକୁ ଜବତ କରିବାକୁ ଆସୁଥିବା ଆମେରିକାନ ଟମିବାହିନୀ ବିଦ୍ରୋହୀମାନଙ୍କ ଦ୍ୱାରା ଗଛକାଟି, ପୋଲ ଭାଙ୍ଗି, ରାସ୍ତାକାଟି ପଥ ଅବରୋଧ କରାଯାଇଥିବା ଦେଖି ଅନନ୍ୟୋପାୟ ହୋଇ ପଛଘୁଞ୍ଚା ଦେଇ ସଦର ମହକୁମା ଦୁମ୍‌କାକୁ ଫେରି ଯିବାକୁ ବାଧ୍ୟ ହୋଇଥିଲେ ।

ପାହାଡ଼ିଆ ବାହିନୀର ଆତଙ୍କ ଏମିତି ଥିଲା ଯେ ଇଂରେଜବାହିନୀ ସେମାନଙ୍କ ମୁକାବିଲା କରିବାର ସାହସ କରି ନପାରି ଆମେରିକାନ ଟମିବାହିନୀକୁ ଏ କାର୍ଯ୍ୟରେ ଲଗାଇଥିଲେ ।

ଅଗଷ୍ଟ ୨୪ରେ ପ୍ରଫୁଲ୍ଲଙ୍କ ନେତୃତ୍ୱରେ ପାହାଡ଼ିଆ ବାହିନୀ ଯେତେବେଳେ ବୋକଡ଼ାବନ୍ଧ ଡାକବଙ୍ଗଳା ଓ ଫରେଷ୍ଟ ଅଫିସ ଆକ୍ରମଣ କଲା; ସେତେବେଳେ ସରକାରୀ ସୁରକ୍ଷା ଦଳ ଭୟଭିତ ହୋଇ ଆତ୍ମସମର୍ପଣ କରିଥିଲେ । ଏପରିକି ସେମାନେ ବାହିନୀର ପୋଡ଼ାଜଳା, ଭଙ୍ଗାରୁଜା କାର୍ଯ୍ୟରେ ମଧ୍ୟ ସହଯୋଗ କରିଥିଲେ ।

ଏହା ପୂର୍ବରୁ ପାହାଡ଼ିଆ ବାହିନୀ ଦୁଇଟା ପୋଲ ଉଡ଼ାଇ ସାରି ବଡ଼ ବଡ଼ ଗଛ କାଟି ସାମରିକ ବାହିନୀର ପଥ ଅବରୋଧ କରି ଦେଇଥିଲେ । ସେହିଦିନ ସୁସନ୍‌ର ଫରେଷ୍ଟ ଅଫିସ ଓ ବୋକଡ଼ାବନ୍ଧର ମଦଭାଟି ମଧ୍ୟ ପୋଡ଼ି ଦିଆଯାଇଥିଲା ।

ଅଗଷ୍ଟ ୨୫ରେ ପ୍ରଫୁଲ୍ଲ ଓ ଶ୍ରୀକୃଷ୍ଣ ପ୍ରସାଦଙ୍କ ନେତୃତ୍ୱରେ ପାହାଡ଼ିଆ ବାହିନୀ ପକ୍ଷରୁ ଆଲୁବେଡ଼ାର ଡାକବଙ୍ଗଳା, ଜଙ୍ଗଲ ଅଫିସ ଓ ମଦଭାଟି ପୋଡ଼ି ପାଉଁସ କରି ଦିଆଯାଇଥିଲା । ଡୁମରଚିର ଡାକବଙ୍ଗଳା, ଫରେଷ୍ଟ ଅଫିସ,ମଦଭାଟିରେ ଅଗ୍ନିସଂଯୋଗ କରି ଦିଆଯାଇଥିଲା ।

ସେତେବେଳେ ଇଂରେଜ ଓ ଆମେରିକାନ ଟମି ବାହିନୀ ପାହାଡ଼ୀ ବାହିନୀର ଗତିବିଧି ଠାବ କରିବାକୁ ଘନ ଜଙ୍ଗଲରେ ପ୍ରବେଶ କରିବାକୁ ଭୟ କରି ଉଡ଼ାଜାହାଜରେ ପଇନ୍ତରା ମାରିବାକୁ ଆରମ୍ଭ କରି ଦେଇଥିଲେ । ହେଲେ ସାନ୍ତାଳ ପ୍ରଗଣାର ନିଘଞ୍ଚ ଅରଣ୍ୟ ସେମାନଙ୍କୁ ବାହିନୀର ଗୁପ୍ତ ଆଡ୍‌ଡାର ସନ୍ଧାନ ଦେଇ ନଥିଲା । ପାହାଡ଼ିଆ ବାହିନୀ ଅଚାନକ ଘନ ଜଙ୍ଗଲ ଭିତରୁ ଭୂତ ପରି ବାହାରି, ନିଜ କାମ ସାରି ପୁଣି ନିଖୋଜ ଅନ୍ଧାରୀ ଜଙ୍ଗଲ ଭିତରେ ଭୂତ ପରି ମିଳେଇ ଯାଉଥିଲେ ।

ଅଗଷ୍ଟ ୨୬ ତାରିଖ ଦିନ ଜିଲା ସଦର ଫରେଷ୍ଟ କାର୍ଯ୍ୟାଳୟ ଓ ଅମଡ଼ାପଡ଼ାରୁ ସିଲିଙ୍ଗୀ ଯାଉଥିବା ରାସ୍ତା ଅବରୋଧ କରି ୨୭ ତାରିଖ ଦିନ ପ୍ରଫୁଲ୍ଲଙ୍କ ବାହିନୀ ସିଲିଙ୍ଗୀ ସର୍କିଟ ହାଉସ୍ ଉପରେ ପ୍ରଚଣ୍ଡ ଆକ୍ରମଣ କଲେ । ଏହି ବିଶାଳ ବଙ୍ଗଳାଟି ଇଂରେଜ ଗଭର୍ଣ୍ଣର, ଚିଫ୍ ସେକ୍ରେଟାରୀ ଓ ଅନ୍ୟାନ୍ୟ ବରିଷ୍ଠ ସରକାରୀ ଅଧିକାରୀମାନଙ୍କ ପିକନିକ୍ ସ୍ପଟ୍ ଥିଲା ।

ସେଦିନ ସିଲିଙ୍ଗୀ ସର୍କିଟ ହାଉସ୍ ମୁଠାଏ ପାଉଁଷରେ ପରିଣତ ହେଲା । ସେଠାରେ ଅନ୍ୟାନ୍ୟ ସରକାରୀ ଅଫିସ ମଧ୍ୟ ଭାଙ୍ଗିରୁଜି ସ୍ୱାହା କରି ଦିଆଗଲା ।

ତା'ପର ଦିନ ଗୋଟିଏ ପୋଲ ଉଡ଼ାଇ, ରାସ୍ତା ଅବରୋଧ କରି ବଡ଼ପାହାଡ଼ୀ ଫରେଷ୍ଟ ଅଫିସ, କେନ୍ଦୱା ମଦଭାଟି, ଲାଲଗଞ୍ଜ ଡାକବଙ୍ଗଳା ଧ୍ୱଂସ କରାଗଲା ।

ଏଥିରେ ଅତିଷ୍ଠ ଇଂରେଜ ସରକାର ପ୍ରଫୁଲ୍ଲ, ଶ୍ରୀକୃଷ୍ଣ ପ୍ରସାଦ, କେ.ଗୋପାଳନ, ଲାଲ ହେଂବ୍ରମ୍, ବଳିଆର ହେଂବ୍ରମ୍ ଆଦିଙ୍କୁ ମୃତ ବା ଜୀବୀତ ଧରାଇ ଦେବାକୁ ପାଞ୍ଚଶହ ଟଙ୍କା ନଗଦ ପୁରସ୍କାର ଓ ଅନ୍ୟାନ୍ୟ ସୁବିଧା ସୁଯୋଗ କଥା ଘୋଷଣା କରିସାରିଥାନ୍ତି ।

ପ୍ରଫୁଲ୍ଲଙ୍କ ନିର୍ଦ୍ଦେଶରେ କୋରେୟା ପାହାଡ଼ ଉପରେ ପାହାଡ଼ିଆ ବାହିନୀର ହଜାରେ ଜବାନ ଦୁମ୍‌କା ଅସ୍ତ୍ରାଗାର ଲୁଣ୍ଠନ ପାଇଁ ସମବେତ ହୋଇଥିଲେ । ଏଥିପାଇଁ ଆବଶ୍ୟକ ୧୦ ହଜାର ଟଙ୍କା ପାଣ୍ଠି ସଂଗ୍ରହ କରିବାକୁ ଯାଇଥିବା ପାହାଡ଼ୀ ରଜା ପ୍ରଫୁଲ୍ଲ, ତାଙ୍କ ମନ୍ତ୍ରୀ, ସେନାପତି ଓ ଅନ୍ୟମାନେ ପୁଲିସ ଆଖିରେ ବାରମ୍ବାର ଧୂଳି ଦେଇ ଠିକଣା ସମୟରେ ସେଠାରେ ଉପସ୍ଥିତ ହୋଇ ନପାରିବାରୁ ଏ ଯୋଜନାଟି ପଣ୍ଡ ହୋଇ ଯାଇଥିଲା ।

ଏଥିରେ ବ୍ୟଥିତ ହୋଇ ପ୍ରଫୁଲ୍ଲ ଆଉ ଏକ ନୂତନ ପ୍ରଶିକ୍ଷିତ ଗରିଲା ବାହିନୀ ନେଇ ଗମ୍ଭରିଆ ମଦଭାଟି ପୋଡ଼ି ବରହେଟ୍ ଥାନା ଆକ୍ରମଣ କରିବାକୁ ଯାଇଥିଲେ । ବାଟରେ ଲେଙ୍ଗାଉର ଭାଟି ପୋଡ଼ି ନଷ୍ଟ କଲେ ।

ନଭେମ୍ବର ୬, ୧୯୪୨ରେ ତାଙ୍କ ଗରିଲା ବାହିନୀ ରକ୍‌ସି ଦାମିନ୍ ବଙ୍ଗଳା ପୋଡ଼ି ଦେଲେ । ହେଲେ ବଙ୍ଗଳାରକ୍ଷୀ ଏମାନଙ୍କ କବଳରୁ କୌଣସି ମତେ ଖସି ଯାଇ ପର୍ଗନାଏତଙ୍କୁ ଖବର କରି ଦେଇଥିଲା ।

ପୋଲିସ ଓ ପର୍ଗନାଏତ୍ ସଦଳବଳ ଆସି ପାହାଡ଼ିଆ ବାହିନୀର ରାସ୍ତା ଅବରୋଧ କଲେ । ୪୫ ମିନିଟ୍ ଧରି ପ୍ରବଳ ସମ୍ମୁଖ ସମର ହେଲା । ଦଳେ ଗରିଲା ପଳାୟନ କଲେ । ବହୁ ସଂଗ୍ରାମୀ ଆହତ ହେଲେ । ପ୍ରଫୁଲ୍ଲ , ଶ୍ରୀକୃଷ୍ଣ ଓ ଲାଲ ହେଂବ୍ରମ ପ୍ରମୁଖ ଦୀର୍ଘ ୨ ମାଇଲ ଯାଏଁ ଲାଠିଚାଳନା କରି ଆତ୍ମରକ୍ଷା କରି ଏକ ସାନ୍ତାଳ ପରେ ଖସି ଆତ୍ମଗୋପନ କଲେ ।

ପରେ ସେମାନେ ଧରାପଡ଼ି ନଭେମ୍ବର ୮ ତାରିଖ ଦିନ ରାଜମହଲ ଜେଲରେ ବନ୍ଦୀ ହେଲେ । ଦାମନେ କୋହର ୧୧ଲକ୍ଷ ସାନ୍ତାଳ ଓ ପାହାଡ଼ିଆମାନଙ୍କ ସ୍ୱାଧୀନତା ସଂଗ୍ରାମର ଏକ ରକମ ପୂର୍ଣ୍ଣାହୂତୀ ପଡ଼ିଲା ।

ପ୍ରଫୁଲ୍ଲଙ୍କୁ କେଂପ କୋର୍ଟରେ ୧୩ ବର୍ଷର ସଶ୍ରମ କାରାଦଣ୍ଡାଦେଶ ହେଲା । ତାଙ୍କୁ ଏକ ସ୍ୱତନ୍ତ୍ର ରେଳ ବଗିରେ ସଶସ୍ତ୍ର ପ୍ରହରୀ ଘେରରେ ଗୋଡ୍‌ଡା ଜେଲକୁ ନିଆଯାଇ ସେଲ୍‌ରେ ରଖାଗଲା । ସେଠାରେ ସେ ଜେଲର ଅଭାବ ଅସୁବିଧା ବିରୁଦ୍ଧରେ ଅନଶନ କଲେ ।

ପରେ ତାଙ୍କୁ ଏଗାରଟି ସଶସ୍ତ୍ର ମିଲିଟାରୀ ଗାଡ଼ି ଘେରରେ ଦୁମ୍‌କା ଜେଲକୁ ନିଆଗଲା । ସେଠାରେ ତାଙ୍କୁ ଆହୁରି ୮ ବର୍ଷ ଅଧିକା କାରାଦଣ୍ଡାଦେଶ ହେଲା । ଏତେବେଳକୁ ତାଙ୍କ ବିରୁଦ୍ଧରେ କରାଯାଇଥିବା ଅର୍ଦ୍ଧେକ କେଶ୍‌ର ବିଚାର ସରିଥାଏ ।

ସେ ଜେଲରେ ଥିଲାବେଳେ ଜୁଲାଇ ୧୫ରେ ଦେଓଘରଠାରେ ତାଙ୍କର ମାତୃହାନୀ ହୋଇଥିଲା ।

ଦୁମ୍‌କାରୁ ପ୍ରଫୁଲ୍ଲ ଭାଗଲପୁର କେଂପ ଜେଲକୁ ଓ ପରେ ଭାଗଲପୁର ସେଣ୍ଟ୍ରାଲ ଜେଲକୁ ସ୍ଥାନାନ୍ତରିତ ହେଲେ ।

୧୯୪୫-୪୬ରେ ଦେଶର ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମୀଗଣ ଜେଲରୁ ମୁକ୍ତି ପାଇଥିଲେ ମଧ୍ୟ ତାଙ୍କୁ ଛଡ଼ା ଯାଇ ନଥିଲା । ତାଙ୍କୁ ସୁଭାଷ ବୋଷଙ୍କ ମୁକ୍ତିବାହିନୀର ଜଣେ ସେନାପତି ଭାବେ ସନ୍ଦେହ କରି ଫାଶୀ ଦେବାକୁ ସ୍ଥିର କରାଯାଇ ଅଟକ ରଖା ଯାଇଥିଲା ।

ବିହାରର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଡ.କୃଷ୍ଣ ସିଂହ 'ପ୍ରଫୁଲ୍ଲ ଜେଲରୁ ମୁକ୍ତି ନହେଲେ ତାଙ୍କର ଇସ୍ତଫା' ଦାବି କରିବା ଫଳରେ ଜାନୁୟାରୀ ୨୯,୧୯୪୬ ଦିନ ସେ ମୁକ୍ତ ହୋଇ ବରପାଲି ଫେରିଲେ । ଜେଲର ଅତ୍ୟାଚାର ଫଳରେ ସଂପୂର୍ଣ୍ଣ ଦୃଷ୍ଟିଶକ୍ତି ହରାଇଥିବା ଏ ମହାସଂଗ୍ରାମୀ, କବି, ସମାଜବାଦୀ, ସାନ୍ତାଳୀଭାଷା ଲିପିକାର,ଆଦିବାସୀ ଉନ୍ନୟନ ଯୋଜନାବିତ୍‌ଙ୍କ ଓଡ଼ିଶାକୁ ରାଜ୍ୟ ବାହାରେ ମଧ୍ୟ ପ୍ରତିଷ୍ଠା ଆଣି ଦେଇଛି ।

କଲିକତାର ଡେଲହାଉସି ଛକ ପାଖରେ ବ୍ଲେକହୋଲ ଗଣହତ୍ୟାର ସ୍ମାରକୀ ରୂପରେ ଇଂରେଜ ସେନାପତି ହୋଲୱେଲଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଥିଲା । ବଙ୍ଗର ନବାବ ସିରାଜ ଉଦୌଲା ତାଙ୍କ ଦୁର୍ଗର ଏକ ଅନ୍ଧାରୀ କକ୍ଷ ମଧ୍ୟରେ ଶତାଧିକ ଇଂରେଜ ବନ୍ଦୀମାନଙ୍କୁ ଶ୍ୱାସରୁଦ୍ଧ କରି ହତ୍ୟା କରିଥିଲେ ବୋଲି ଏକ ମିଥ୍ୟା ଅପବାଦ କରାଯାଇଥିଲା । ଇଂରେଜମାନଙ୍କ ଏହି ପ୍ରଚାର ମୂଳରେ ସେନାପତି ହୋଲୱେଲଙ୍କ ମୁଖ୍ୟ ଭୂମିକା ଥିଲା । ସେ ଏହି ହତ୍ୟାକାଣ୍ଡର ପ୍ରତ୍ୟକ୍ଷଦର୍ଶୀ ଭାବେ ନିଜକୁ ଉପସ୍ଥାପିତ କରିଥିଲେ । ଏହା ଲୋକପ୍ରିୟ ନବାବଙ୍କୁ ଭାରତୀୟଙ୍କ ମଧ୍ୟରେ ବଦନାମ କରିବାକୁ ଉଦ୍ଦିଷ୍ଟ ଥିଲା ।

ହେଲେ ଏହା ମିଥ୍ୟାପ୍ରଚାର ବୋଲି ପ୍ରମାଣିତ ହୋଇଥିଲା । ତା'ପରେ କଲିକତା ନଗରୀର ହୃତ୍‌ପିଣ୍ଡରୁ ଏହି ହୋଲୱେଲ ମୂର୍ତ୍ତି ଅପସାରଣ ପାଇଁ ନେତାଜୀ ସୁବାସଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ତୀବ୍ର ଆନ୍ଦୋଳନ ହୋଇଥିଲା । ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମ୍ବଲପୁରର ବୀରେନ ସରକାର ସକ୍ରିୟ ଅଂଶ ନେଇ ଜୁନ୍ ୨୦,୧୯୪୦ରୁ ଫେବୃୟାରୀ ୨୧,୧୯୪୧ ପର୍ଯ୍ୟନ୍ତ ପ୍ରେସିଡେନ୍‌ସି ଜେଲରେ କାରାରୁଦ୍ଧ ହୋଇଥିଲେ ।

୧୯୪୨ରେ ସେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେବାରୁ ତାଙ୍କ ନାମରେ ୱାରେଣ୍ଟ ବାହାରିଲା । ସେ ଆତ୍ମଗୋପନ କରି ସଂଗ୍ରାମ ଚଳାଇଲେ । ଶେଷରେ ଫେବୃୟାରୀ ୨୩, ୧୯୪୩ରେ ସେ କଲିକତାରେ ଗିରଫ ହୋଇ ଲର୍ଡ ସିହ୍ନା ରୋଡ଼ରେ ସି.ଆଇ.ଡି. ଲକ୍‌ଅପ୍‌ରେ ବର୍ଷେ କାଳ ବିଚାରାଧୀନ ବନ୍ଦୀ ହୋଇ ରହିଥିଲେ ।

୧୯୪୨-୪୩ରେ ସେ ଓଡ଼ିଶାରେ ଆତ୍ମଗୋପନ କରି ଆନ୍ଦୋଳନକୁ ତେଜାଇଲେ । ପରେ ସେ ସମ୍ବଲପୁରର ଜିଲା କଂଗ୍ରେସ କମିଟି ଅଧ୍ୟକ୍ଷ ହୋଇଥିଲେ । ଭାରତଛାଡ଼ ଆନ୍ଦୋଳନ ସହ ବାମଣ୍ଡା ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାର ନେତାଜୀଙ୍କ ତିନି ପ୍ରମୁଖ ସହଯୋଗୀ ୰ବିବୁଧେନ୍ଦ୍ର ମିଶ୍ର, ୰ ବିଜୟ ପାଣିଙ୍କ ମଧ୍ୟରେ ସେ ଅନ୍ୟତମ । ସେ ଅଖିଳ ଭାରତୀୟ ଫରୱାଡ଼ ବ୍ଲକ, ଓଡ଼ିଶା ରାଜ୍ୟ ଶାଖାର ସାଧାରଣ ସଂପାଦକ ମଧ୍ୟ ଥିଲେ । ପରିଣତ ବୟସର ଏହି ଚିରକୁମାର ସଂପ୍ରତି ସମ୍ବଲପୁରରେ ଅବସ୍ଥାନ କରୁଛନ୍ତି ।

ସେହିପରି ଲକ୍ଷ୍ମୀନାରାୟଣ ବାବୁ ସ୍ୱାଧୀନତା ସଂଗ୍ରାମରେ ଅଣ୍ଡରଗ୍ରାଉଣ୍ଡ କାର୍ଯ୍ୟ କରି ବ୍ରହ୍ମପୁର ଓ କଟକ ଜେଲରେ କାରାବରଣ କରିଥିଲେ ।

❑❑❑

# ସମ୍ବଲପୁରର ପ୍ରତିରୋଧ, ସ୍ୱାଧୀନତା ସଂଗ୍ରାମରେ ନାରୀ

ସମ୍ବଲପୁରର ଶେଷ ଚୌହାଣ ରାଜା ଜୟନ୍ତ ସିଂହ, ଜାତୀୟ ବୀର ଶହୀଦ, ମାଧୋ ସିଂହ, ସୁରେନ୍ଦ୍ର ସାଏଙ୍କ ସମୟରୁ ୧୯୪୭ ଅଗଷ୍ଟ ପନ୍ଦର, ଭାରତର ସ୍ୱାଧୀନତା ପର୍ଯ୍ୟନ୍ତ ସମ୍ବଲପୁରର ମୁକ୍ତି ସଂଗ୍ରାମରେ ନାରୀମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଆସିଛି ।

ରାଜତନ୍ତ୍ର ଓ ବ୍ରିଟିଶ ସରକାର ବିରୋଧୀ ଆଦିବାସୀ ପ୍ରତିରୋଧ ସଂଗ୍ରାମରେ ନାରୀମାନେ ଯେ କେବଳ କାନ୍ଧକୁ କାନ୍ଧ ମିଳାଇ ସଂଗ୍ରାମ କରିଛନ୍ତି ସେତିକି ନୁହେଁ; ବିଦ୍ରୋହୀମାନଙ୍କ କ୍ରମାଗତ ଘରେ ଅନୁପସ୍ଥିତିରେ ସେମାନଙ୍କର ଘର, ପରିବାର ସଂସାର ସୁଚାରୁ ରୂପରେ ଚଳାଇ ସେମାନଙ୍କୁ ଦାୟିତ୍ୱମୁକ୍ତ କରିଥିଛନ୍ତି । ବିଦ୍ରୋହୀମାନଙ୍କୁ ଖାଦ୍ୟ ଓ ସମ୍ବାଦ ସରବରାହ କରିଛନ୍ତି । ସେମାନଙ୍କ ପ୍ରେରଣା, ସେମାନଙ୍କର ତ୍ୟାଗ ବିନା କୌଣସି ବିପ୍ଳବ କି ବିଦ୍ରୋହ ସଫଳ ହୋଇ ପାରି ନଥାନ୍ତା । ଇତିହାସର ଆଗୋଚରରେ ଏହି ବନ୍ଦିତା ସାଧାରଣ ନାରୀମାନଙ୍କ ସ୍ଥିତି । ତେବେ ଯେଉଁ କେତେଜଣ ଇତିହାସର ଗୌରବମୟ ପୃଷ୍ଠା ମଣ୍ଡନ କରିଛନ୍ତି ସେମାନଙ୍କ ମଧ୍ୟରେ ଜୟନ୍ତ ସିଂହଙ୍କ ମହାରାଣୀ ରତ୍ନ କୁମାରୀ ଓ ତାଙ୍କ ଆଜୀବନ ପ୍ରତିରୋଧ ସଂଗ୍ରାମ ଅନ୍ୟତମ । ଅନ୍ୟତମ ଏଥିପାଇଁ ଯେ ସମ୍ବଲପୁର ମାଟିରେ ବିଦେଶୀ ମରହଟ୍ଟା ଓ ଏପରିକି ବ୍ରିଟିଶ ଶକ୍ତି ବିରୁଦ୍ଧରେ ପ୍ରତିରୋଧ ସଂଗ୍ରାମୀ ଚେତନା ପ୍ରଜ୍ୱଳିତ କରିବାରେ ତାଙ୍କର ଭୂମିକା ଥିଲା ଅନନ୍ୟ । ସେ ଥିଲେ ସମ୍ବଲପୁରୀ ପ୍ରତିରୋଧ ଚେତନାର ଆଦ୍ୟ ସ୍ଫୁଲିଙ୍ଗ ଓ ତାର ମହାନାୟିକା ।

ଉନବିଂଶ ଶତାବ୍ଦୀ ପ୍ରାରମ୍ଭରେ ରାଣୀ ରତ୍ନ କୁମାରୀଙ୍କ ଏକ ରାଜନୈତିକ ଶକ୍ତି ଭାବରେ ଆବିର୍ଭାବ ଘଟିଥିଲା । ସମ୍ବଲପୁରର ଶେଷ ଚୌହାଣ ରାଜା ଜୟନ୍ତ ସିଂହଙ୍କ ପାଟରାଣୀ ରତ୍ନକୁମାରୀ ମରାଠାମାନଙ୍କ ବିରୁଦ୍ଧରେ ପ୍ରବଳ ଯୁଦ୍ଧ ଚଳାଇଥିଲେ । ସେତେବେଳେ ଗୃହବିବାଦ ଯୋଗୁଁ ସମ୍ବଲପୁରର ରାଜନୈତିକ ପରିସ୍ଥିତି ବିପର୍ଯ୍ୟସ୍ତ ଥିଲା । ମରହଟ୍ଟାମାନେ ନିଜର ସାମ୍ରାଜ୍ୟ ବିସ୍ତାର ପାଇଁ ସମ୍ବଲପୁର ବିଜୟ କରିବାକୁ ଅପ୍ରାଣ ଚେଷ୍ଟା ଚଳାଇଥିଲେ ।

୧୮୦୦ରେ ସମ୍ବଲପୁର ମରହଟ୍ଟା ଅଧୀନକୁ ଆସିଲା ପରେ ଭୂପ ସିଂହ ରଘୁଜୀ-ରାୟଙ୍କ ତରଫରୁ ଶାସନ ଚଳାଇଲେ । ଜୟନ୍ତ ସିଂହ ଓ ତାଙ୍କ ପୁଅ ମହାରାଜା ସାଏଙ୍କୁ ବନ୍ଦୀ

କରି ଚାନ୍ଦାକୁ ପଠାଇ ଦିଆଗଲା । ଭୂପ ସିଂହ ଭୋନ୍‌ସଲାଙ୍କୁ ଭୟ ନକରି ବେଖାତିର ଭାବରେ ଆତଙ୍କରାଜ ଚଳାଇଲେ । ଏହା ଫଳରେ ଗୌନ୍ତିଆ, ଜମିଦାରମାନଙ୍କ ଭିତରେ ଗଭୀର ଅସନ୍ତୋଷ ବ୍ୟାପିଲା । ପ୍ରଜା,ଗୌନ୍ତିଆ, ଜମିଦାରମାନଙ୍କ ଭିତରେ ପାଟରାଣୀ ରତ୍ନ କୁମାରୀଙ୍କ ଗଭୀର ପ୍ରଭାବ ଥିଲା । ସେ ବାମଣ୍ଡା ରାଜା ଚନ୍ଦ୍ରଶେଖର ଦେଓଙ୍କ କନ୍ୟା ଥିଲେ । ତାଙ୍କର ପୁତ୍ର ନ ଥିବାରୁ ଅନ୍ୟ ଦୁଇ ରାଣୀ ମୁକ୍ତା କୁମାରୀ ଓ ରହସ୍ୟ କୁମାରୀଙ୍କ ମଧ୍ୟରୁ ଦ୍ୱିତୀୟ ରାଣୀଙ୍କ ପୁଅ ମହାରାଜା ସାଏଙ୍କୁ ପୁତ୍ର ଓ ରାଜକୁମାର ଭାବେ ଗ୍ରହଣ କରିଥିଲେ । ରତ୍ନ କୁମାରୀଙ୍କ ପ୍ରଭାବ ଦେଖି ଭୂପ ସିଂହ ତାଙ୍କ ସହ ସନ୍ଧି କରିବାକୁ ଚାହିଁଲେ । ଭୂପ ସିଂହଙ୍କ ବେରାର ଦରବାରରେ ଶତ୍ରୁ ଥିଲେ । ସେ ଭୋଁଷଲାଙ୍କ ଅନୁଗତ ନ ହୋଇ ରତ୍ନ କୁମାରୀଙ୍କ ପରାମର୍ଶରେ ସମ୍ବଲପୁର ଶାସନ ଚଳାଇଲେ । ଏଥିରେ ରଘୁଜୀ ଭୋଁଷଲା କ୍ଷୁବ୍ଧ ହୋଇ ତାନ୍ତିଆ ଫର୍ଣାବିସଙ୍କୁ ସମ୍ବଲପୁର ଆକ୍ରମଣ କରିବାକୁ ପଠାଇଲେ । ପ୍ରଥମ ଥର ଭୋଁଷଲାଙ୍କ ପରାଜୟ ପରେ ଦ୍ୱିତୀୟ ଥର ତାନ୍ତିଆ ବିଜୟୀ ହେଲେ ଓ ସମ୍ବଲପୁରର ପ୍ରଶାସକ ହେଲେ ୧୮୦୨ରେ । ଭୂପ ସିଂହ, ରତ୍ନ କୁମାରୀ, ମୁକ୍ତା କୁମାରୀ କୋଲାବିରା ଜମିଦାରୀରେ ଆଶ୍ରୟ ନେଲେ । ରାଣୀଙ୍କ ସେନାପତି ଫତେ ନାରାୟଣ ସିଂ ଓ ଭୂପ ସିଂ ପରେ ତାନ୍ତିଆଙ୍କ ବିରୁଦ୍ଧରେ ଯୁଦ୍ଧ କଲେ ।

ସମ୍ବଲପୁରରେ ମରହଟ୍ଟା ଶାସନ ବେଶୀ ଦିନର ନଥିଲା । ୧୮୦୩ରେ କଟକ ଦଖଲ ପରେ ଇଂରେଜମାନେ ସମ୍ବଲପୁର ପ୍ରତି ଦୃଷ୍ଟି ଦେଲେ । କଟକ, ରାଞ୍ଚି ଓ ନାଗପୁର ଆକ୍ରମଣ ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସାମରିକ ଓ ବ୍ୟବସାୟ ପୀଠ ଥିଲା । ପ୍ରାରମ୍ଭିକ ଅବସ୍ଥାରେ ଇଂରେଜମାନେ ପଶ୍ଚିମାଞ୍ଚଳର ମୁଖିଆମାନଙ୍କ ସହ ମିତ୍ରତା ଚାହିଁଲେ । ଓଡ଼ିଶା କମିଶନର ଜନ୍ ମେଲଭିଲ ଡିସେମ୍ବର ୧୮୦୩ରେ ରତ୍ନ କୁମାରୀ, ସୋନପୁରର ଲକ୍ଷ୍ମୀପ୍ରିୟା, ବୌଦର ଜଗଦୀଶ୍ୱର ରାଓଙ୍କୁ ନାମକୁ ମାତ୍ର ବାର୍ଷିକ ୫ଟି ସୁନାମୋହର ଦେଇ ବ୍ରିଟିଶ ସୁରକ୍ଷାରେ ରହିବାକୁ ପରାମର୍ଶ ଦେଲେ । ରାଣୀ ରତ୍ନ କୁମାରୀ ଅତ୍ୟାଚାରୀ ଭୋଁଷଲା ଶାସନରୁ ସମ୍ବଲପୁରର ମୁକ୍ତି ପାଇଁ ଏବଂ ଚୌହାଣ ଶାସନର ପୁନରାୟନ ନିମନ୍ତେ ବ୍ରିଟିଶମାନଙ୍କ ସାହାଯ୍ୟ ଲୋଡ଼ିଲେ । ମେଜର ବ୍ରାଉଟନଙ୍କ ଅଧିନାୟକତ୍ୱରେ ଦଳେ ଇଂରେଜସେନା ସମ୍ବଲପୁର ଆଗେଇଲା ବେଳେ ଭୂପ ସିଂ ଓ ଫତେ ନାରାୟଣ ସିଂ ସେମାନଙ୍କୁ ସାହାଯ୍ୟ କଲେ । ଜାନୁୟାରୀ ୨,୧୮୦୪ରେ ସମ୍ବଲପୁର ବ୍ରିଟିଶମାନଙ୍କ ଦ୍ୱାରା ଅଧିକୃତ ହେଲା । ହେଲେ ଦେଗାଁ ସନ୍ଧି ଅନୁସାରେ ସମ୍ବଲପୁର ପୁଣି ମରହଟ୍ଟା ହାତକୁ ଚାଲିଗଲା ।

ଇଷ୍ଟ ଇଣ୍ଡିଆ କଂପାନୀ, କମିଶନର ମେଲଭିଲ ଓ ସେନାପତି ବ୍ରାଉଟନ ମଧ୍ୟ ସମ୍ବଲପୁର ଛାଡ଼ିବା ସପକ୍ଷରେ ନ ଥିଲେ । ରତ୍ନ କୁମାରୀ ଓ ସମ୍ବଲପୁର ଜମିଦାରମାନେ

ମଧ୍ୟ ଏହାର ବିରୋଧରେ ଥିଲେ । ରାଣୀ ରତ୍ନ କୁମାରୀ, ବରଗଡ଼, ରାୟଗଡ଼, ସୋନପୁର, ଗାଙ୍ଗପୁର, ରେଢ଼ାଖୋଲ, ବଣାଇ, ବାମଣ୍ଡା ଓ ଶକ୍ତିର ରାଜାଗଣ ମେଜର ବ୍ରାଉଟନଙ୍କୁ ଯେ କୌଣସି ରାଜସ୍ୱ ବିନିମୟରେ ବ୍ରିଟିଶ ସୁରକ୍ଷା ଲାଭ କରିବାକୁ ନିବେଦନ କଲେ ।

ଲର୍ଡ ୱେଲେସଲିଙ୍କ ଆଦେଶକ୍ରମେ ନାଗପୁର ରେସିଡେଣ୍ଟ କମିଶନର ସମ୍ବଲପୁର ବ୍ରିଟିଶ ସୁରକ୍ଷାଧିନ ହୋଇଥିବା କଥା ରଘୁଜୀ-୨ୟଙ୍କୁ ସୂଚିତ କରି ୨୪ଘଣ୍ଟା ମଧ୍ୟରେ ଏ କଥାର ସ୍ୱୀକୃତି ଚାହିଁଲେ । ନଭେମ୍ବର ୧୮୦୪ରେ ଭବିଷ୍ୟତ ଆକ୍ରମଣ ପ୍ରତିହତ କରିବା ଉଦ୍ଦେଶ୍ୟରେ ଅତିରିକ୍ତ ବାହିନୀ ସମ୍ବଲପୁରକୁ ପ୍ରେରଣ କରାଗଲା । ଡିସେମ୍ବର ୧୮୦୪ରେ ରତ୍ନ କୁମାରୀ ବ୍ରିଟିଶ ସରକାରର ଅଧିନତା ସ୍ୱୀକାର କଲେ ।

ରତ୍ନ କୁମାରୀ ସମ୍ବଲପୁରର ଆଭ୍ୟନ୍ତରୀଣ ଶାସନର ମୁଖ୍ୟ କ୍ଷମତା ଉପଭୋଗ କଲେ । ସାମରିକ ଦାୟିତ୍ୱ ଇଂରେଜମାନଙ୍କ ହାତରେ ରହିଲା ଓ ଏହାର ଖର୍ଚ୍ଚ ରାଣୀ ବହନ କଲେ । ରାଣୀ ପ୍ରଜା, ମନ୍ତ୍ରୀ ଓ ମୁଖିଆମାନଙ୍କ ଉଚ୍ଚ ସମ୍ମାନ ଲାଭ କରିଥିଲେ ।

ୱେଲସେଲିଙ୍କ ପରେ ସମ୍ବଲପୁରର ଏ ଅବସ୍ଥା ବଦଳିଗଲା । ଇଂରେଜମାନେ ସମ୍ବଲପୁରକୁ ପୁଣି ମରହଟ୍ଟାମାନଙ୍କ ହାତକୁ ଦେବା ବିଷୟ ଚିନ୍ତା କଲେ । ରାମଗଡ଼ ବଟାଲିୟନର ସେନାପତି କେପଟେନ୍ ରଫସିଜ ଜାନୁୟାରୀ ୧୮୦୬ରେ ସମ୍ବଲପୁର ଅବସ୍ଥା ଅନୁଧ୍ୟାନ କରିବାକୁ ସମ୍ବଲପୁର ଆସିଲେ । ସମ୍ବଲପୁର ମରହଟ୍ଟା ଶାସନକୁ ଯିବାକୁ ପ୍ରସ୍ତୁତ ନଥିଲା । ରାୟଗଡ଼ ରାଜା ଜୌଜର ସିଂହ ମରହଟ୍ଟାଙ୍କ ବିରୁଦ୍ଧରେ ଲଢ଼େଇ କରିବାକୁ ସଂକଳ୍ପବଦ୍ଧ ଥିଲେ । ବ୍ରିଟିଶମାନେ ରତ୍ନ କୁମାରୀଙ୍କୁ ପ୍ରତିଶ୍ରୁତି ଦେଲେ ଯେ ସମ୍ବଲପୁର ମରହଟ୍ଟାଙ୍କ ହାତକୁ ଗଲା ପରେ ତାଙ୍କ ପତି ଓ ପୁତ୍ରଙ୍କୁ ମୁକ୍ତ କରାଯିବ ଓ ତା'ସହ ରାଣୀଙ୍କୁ କ୍ଷତିପୂରଣ ଆକାରରେ କେତେକ ଅଞ୍ଚଳ ବା ନଗଦ ଅର୍ଥ ଦିଆଯିବ ।

ସୁବେଦାର କେଶବ ଗୋବିନ୍ଦ (ରତ୍ନପୁର) ଅଗଷ୍ଟ ୧୮୦୬ରେ ସମ୍ବଲପୁରକୁ ମରହଟ୍ଟା ଅଧୀନକୁ କରିବାକୁ ଆସିଲେ । ଜୌଜର ସିଂ ଓ ପଦ୍ମପୁରର ଭଗତ ବରିହାଙ୍କ ଅଞ୍ଚଳ ମଧ ଦେଇ ନ ଯିବାକୁ ତାଙ୍କୁ ବାରଣ କରାଗଲା । ମୀର ଖାନ୍‌ଙ୍କ ନେତୃତ୍ୱରେ ପିଣ୍ଡାରୀମାନେ ଅଞ୍ଚଳରେ ଆତଙ୍କରାଜ ଚଳାଇଥିବାରୁ ରଘୁଜୀ ଭୌଁଷଲା ବେଶୀ ସୈନ୍ୟ ପଠାଇବା ଅବସ୍ଥାରେ ନଥିଲେ । ଭୌଁଷଲା ମହାରାଣୀ ରତ୍ନ କୁମାରୀଙ୍କ ସହ କଥାବାର୍ତ୍ତା ପାଇଁ ନିଜର ତିନି ଜଣ ଦୂତ ଜାନୋଜୀ ବନଶର, ଅନ୍ତଜୀ ନାୟକ ଓ ନରହରି ନାଗଙ୍କୁ ପଠାଇଲେ । ମହାରାଣୀ ସମ୍ବଲପୁର ଉପରେ ନିଜେ ପ୍ରଶାସନିକ ନିୟନ୍ତ୍ରଣ ଚାହିଁଲେ । ପୂର୍ବରୁ କେଶବ ରାଣୀଙ୍କୁ ମର୍ଯ୍ୟାଦା ପାଟଶାଢ଼ୀ ହରକରାମାନଙ୍କ ହାତରେ ପଠାଇଥିଲେ । ସେମାନେ

ଫେରିଯାଇ କେଶବ ଗୋବିନ୍ଦଙ୍କୁ କହିଲେ ଯେ ସମ୍ବଲପୁରର ଜମିଦାରମାନେ ମିଳିତ ହୋଇ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଛନ୍ତି । ସମସ୍ତ ଘାଟ ଓ ଘାଟିମାନ ସେନାବାହିନୀ ନେଇ ଜଗି ରାସ୍ତା ଅବରୋଧ କରି ରହିଛନ୍ତି । ରତ୍ନକୁମାରୀ ଜୟନ୍ତ ଓ ମହାରାଜାଙ୍କ ମୁକ୍ତି ଚାହୁଁଛନ୍ତି । ସମ୍ବଲପୁରରୁ ପଦ୍ମନାଥ ବକ୍ସୀ ଓ ଛୋଟଗୁରୁ ରାଣୀଙ୍କ ପକ୍ଷରୁ ନାଗପୁର ଯାଇ କହିଲେ ଯେ କ୍ଷତିପୂରଣ ଟଙ୍କା ପରିମାଣ ନିର୍ଦ୍ଧାରିତ ନହେଲା ଯାଏଁ ସମ୍ବଲପୁର ଦୁର୍ଗ ସମର୍ପଣ କରାଯିବ ନାହିଁ । ନାନା ସାହେବ ସମ୍ବଲପୁର ଆସି ସମଲେଶ୍ୱରୀ ମନ୍ଦିରରେ ସନ୍ଧି କଲେ । ହେଲେ ସେହି ରାତିରେ ବିଶ୍ୱାସଘାତକତା କରି ରାମଚନ୍ଦ୍ର ବାଘଙ୍କ ନେତୃତ୍ୱରେ ମରହଟ୍ଟାବାହିନୀ ମହାନଦୀ ଅତିକ୍ରମ କରି ସମ୍ବଲପୁର ଗଡ଼ ଅଧିକାର କରିନେଲେ ।

ରାଣୀ ରତ୍ନ କୁମାରୀ ଦୁର୍ଗରୁ ପଳାୟନ କରି ଛୋଟନାଗପୁରର ଜଣେ ବିଶ୍ୱାସୀ ଜମିଦାରଙ୍କଠାରେ ଆଶ୍ରୟ ନେଇ ମେ ୧୮୦୯ରେ ହଜାରୀବାଗ ପହଞ୍ଚି ଇଂରେଜମାନଙ୍କ ସୁରକ୍ଷା ଚାହିଁଲେ । ନାନା ସାହେବ ନାଗପୁର ରେସିଡେଣ୍ଟ କମିଶନର ଆର.ଜେନ୍‌କିନସଙ୍କ ମାଧ୍ୟମରେ ମହାରାଣୀଙ୍କ ଆତ୍ମସମର୍ପଣ ଚାହିଁଲେ ହେଲେ ଇଂରେଜମାନେ ଜୟନ୍ତ ସିଂ ଓ ମହାରାଜା ସାଏଙ୍କ ମୁକ୍ତି ପାଇଁ ଜିଦ୍ କଲେ । ରତ୍ନ କୁମାରୀ ବ୍ରିଟିଶ ସୁରକ୍ଷାରେ ରହି ମାସକୁ ୬୦୦ଟଙ୍କା ପେନସନ ପାଇଲେ । ରତ୍ନକୁମାରୀଙ୍କ ପରବର୍ତ୍ତୀ ଜୀବନ ଗଭୀର ମାନସିକ ନିର୍ଯ୍ୟାତନା ମଧ୍ୟରେ ବିତିଥିଲା । ପତି, ରାଜ୍ୟରୁ ବାହାରେ, ନିର୍ବାସନର ଜୀବନ ଥିଲା ବଡ଼ ଦୁଃଖଭରା । ତୀର୍ଥଯାତ୍ରା ବେଳେ ସେ ୧୮୧୭ରେ କାଶୀରେ ନିଃସଙ୍ଗ ଭାବରେ ପ୍ରାଣତ୍ୟାଗ କରିଥିଲେ ।

ସମ୍ବଲପୁରରେ ୯ବର୍ଷ ମରହଟ୍ଟା ଶାସନ ପରେ ୧୮୧୭ରେ ତାହା ଇଂରେଜ ଅଧୀନକୁ ଆସିଲା । ଆର.ଜେନକିନ୍ସ ଜୟନ୍ତ ଓ ମହାରାଜାଙ୍କୁ ଚାନ୍ଦାରୁ ମୁକ୍ତ କରି ମହାରାଜାଙ୍କୁ ସିଂହାସନରେ ବସାଇଲେ । ୧୮୧୮ରେ ତାଙ୍କ ମୃତ୍ୟୁ ପରେ ୧୮୪୯ରେ ସମ୍ବଲପୁର ରାଜ୍ୟସ୍ୱତ୍ୱଲୋପ ନୀତି ବଳରେ ବ୍ରିଟିଶ ଶାସନଭୁକ୍ତ ହେଲା ।

ସାଂପ୍ରତିକ ଅବଧାରଣାରେ ରାଣୀ ରତ୍ନ କୁମାରୀଙ୍କ କାର୍ଯ୍ୟାକଳାପକୁ ଜାତିୟତାବାଦୀ ବୋଲି ହୁଏତ ଚିହ୍ନଟ କରାଯାଇ ନପାରେ । କିନ୍ତୁ ଯେତେବେଳେ 'ଜାତୀୟତାବାଦ' ଶବ୍ଦର ଓ ତାର ବ୍ୟାପକ ଅର୍ଥର ଅୟମାରମ୍ଭ ମଧ୍ୟ ହୋଇ ନଥିଲା, ସେତେବେଳେ ସେ ମରହଟ୍ଟାମାନଙ୍କ କବଳରୁ ସମ୍ବଲପୁରର ମୁକ୍ତି ପାଇଁ ବ୍ରିଟିଶମାନଙ୍କ ସହାୟତା ନେଇଥିଲେ । ମରହଟ୍ଟାମାନଙ୍କ ବିରୁଦ୍ଧରେ ପ୍ରତିରୋଧ ସଂଗ୍ରାମ ପାଇଁ ସମ୍ବଲପୁର ଇତିହାସରେ ତାଙ୍କ ସ୍ଥାନ ମହତ୍ୱପୂର୍ଣ୍ଣ । ପ୍ରତିରୋଧ ଚେତନାର ଆଦ୍ୟ ପ୍ରବକ୍ତା ଥିଲେ ପାଟରାଣୀ ରତ୍ନକୁମାରୀ । ସମ୍ବଲପୁରର ପ୍ରତିରୋଧ ସଂଗ୍ରାମରେ ସେ ଥିଲେ ଆଦ୍ୟ ନାୟିକା ।

ଘେଁଷ ଜମିଦାର ସହୀଦ ମାଧୋ ସିଂହଙ୍କର ଦ୍ୱିତୀୟ ପୁତ୍ର ସହୀଦ କୁଂଜଳ ସିଂହଙ୍କ ଏକମାତ୍ର କନ୍ୟା ପୂନିମା ସୋନାଖାନ ଜମିଦାର ସହୀଦ ନାରାୟଣଙ୍କ ପୁତ୍ର ଗୋବିନ୍ଦ ସିଂହଙ୍କୁ ବିବାହ କରିଥିଲେ ।

ଗୋବିନ୍ଦ ସିଂହ ନିଜ ପିତାଙ୍କ ସହ ସୋନାଖାନ ବିଦ୍ରୋହରେ ସହଯୋଗ କରିଥିଲେ । ପରେ ଜମିଦାର ନାରାୟଣ ପୁତ୍ର ଓ ପୁତ୍ରବଧୂଙ୍କୁ ଅବସ୍ଥା ଚାପରେ ଘେଁଷ ପଠାଇ ଦେଇଥିଲେ ।

ଘେଁଷ ଜମିଦାର ପରିବାରର ସମସ୍ତେ ବିଦ୍ରୋହରେ ଯୋଗ ଦେଇଥିବାରୁ ସେମାନେ ଘେଁଷରେ ରହି ନପାରି ଘେଁଷ ନିକଟସ୍ଥ ବଡ଼ମାଲଠାରେ ଲୁଚି ବସବାସ କରୁଥିଲେ । ପୂନୀମା ସେତେବେଳେକୁ ଅନ୍ତଃସ୍ୱତ୍ତ୍ୱା ।

ସୋନାଖାନ ଜମିଦାରଙ୍କୁ ଇଂରେଜ ସରକାର ରାୟପୁରଠାରେ ସ୍ପଷ୍ଟ ଦିବାଲୋକରେ ଗୁଳି କରି ହତ୍ୟା କରିବା ପରେ ଗୋବିନ୍ଦ ପ୍ରତ୍ୟକ୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହେଲେ ।

ଏ ଭିତରେ ଇଂରେଜମାନେ ସୋନାଖାନକୁ ଓ ଜମିଦାରଙ୍କ ସମଗ୍ର ଫସଲରେ ନିଆଁ ଲଗାଇ ପୋଡ଼ିଦେଲେ । କେବଳ ଏତିକି ନୁହେଁ ଜମିଦାରୀକୁ ମଧ୍ୟ ଦେଓରୀ ଜମିଦାର ମହାରାଜ ସାଏଙ୍କୁ ହସ୍ତାନ୍ତର କରାଯାଇଥିଲା । ଦେଓରୀ ଜମିଦାରଙ୍କ ହତ୍ୟା ମାମଲାରେ ତାଙ୍କୁ ମିଥ୍ୟା ସାକ୍ଷ୍ୟବଳରେ ଅପରାଧୀ ସାବ୍ୟସ୍ତ କରି ପ୍ରାଣଦଣ୍ଡ ଦିଆଯାଇଥିଲା ।

ବୈବାହିକ ଜୀବନର ୨।୪ ବର୍ଷ ପରେ ପୂର୍ଣ୍ଣିମାଙ୍କ ସମସ୍ତ ସୁଖଶାନ୍ତି ନଷ୍ଟ ହୋଇଯାଇଥିଲା । ସେ ମାସ ମାସ ଧରି ସ୍ୱାମୀଙ୍କ ଦର୍ଶନ ପାଉ ନଥିଲେ । ଜଙ୍ଗଲ, ପାହାଡ଼ ଭିତରେ ଖାଦ୍ୟକଷ୍ଟ ସୀମା ଟପି ଯାଉଥିଲା । ଘେଁଷ ପୋଡ଼ି ଦିଆଯିବା ଘଟଣା ପରେ ସେ ଝାରବନ୍ଧ ଅଞ୍ଚଳର ଶିମୁଳୀଖୋଲକୁ ଯାଇ ଆତ୍ମଗୋପନ କରି ରହିଲେ ।

ଗୋବିନ୍ଦ ସିଂହ ଗିରଫ ହେଲାପରେ ପୂର୍ଣ୍ଣିମା ମାନସିକ ଭାରସାମ୍ୟ ହରାଇଥିଲେ । ପରେ ସେ ପାଗଳିନୀ ହୋଇ ସ୍ୱାମୀ, ଶ୍ୱଶୁର, ପିତା, ରାଜ୍ୟ ସବୁ ହରାଇ ଅତି ଦୟନୀୟ ଭାବରେ ପ୍ରାଣତ୍ୟାଗ କରିଥିଲେ ।

ସୁରେନ୍ଦ୍ର ସାଏଙ୍କ ଚିରକୁମାରୀ ଭଉଣୀ ଅଞ୍ଜନା ଛୋଟ ବେଳୁ ବିପ୍ଳବୀମାନଙ୍କୁ ସାହାଯ୍ୟ ସହଯୋଗ, ଖାଦ୍ୟପେୟ ଯୋଗାଣ, ଗୁପ୍ତସମ୍ବାଦ ସରବରାହ କ୍ଷେତ୍ରରେ ନିଜକୁ ଦକ୍ଷତାର ସହିତ ନିଯୁକ୍ତ କରିଥିଲେ । ଅଞ୍ଜନା ନିଜ ବ୍ୟକ୍ତିଗତ ଜୀବନକୁ ବଳି ଦେଇ ଶେଷ ପର୍ଯ୍ୟନ୍ତ ଦେଶପ୍ରତି ତାଙ୍କ କର୍ତ୍ତବ୍ୟ ନିଷ୍ଠାର ସହ ପାଳନ କରିଥିଲେ ।

ପଞ୍ଜାବ ନିବାସିନୀ କ୍ରିଷ୍ଣାଦେବୀ ଜଣେ ବିଡ଼ି ବ୍ୟବସାୟୀଙ୍କ ସ୍ତ୍ରୀ ହୋଇ ମଧ୍ୟ ନାଗପୁରରେ କଂଗ୍ରେସ ଆନ୍ଦୋଳନରେ ଯୋଗଦେଇ ଗିରଫ ହୋଇଥିଲେ । ସମ୍ବଲପୁର

ଆସି ସେ କଂଗ୍ରେସ ଆନ୍ଦୋଳନରେ ମାତିଥିଲେ । ୧୯୩୧ ମାର୍ଚ୍ଚ ମାସରେ ବୁଡ଼ାରଙ୍କା କୃଷକସଭାରେ ଉଦ୍‌ବୋଧନ ଦେଇ ସେ ଗିରଫ ହୋଇଥିଲେ ।

୧୯୨୮ରେ ଗାନ୍ଧୀ ସମ୍ବଲପୁର ଆସିଥିଲା ବେଳେ କ୍ରିଷ୍ଣାଦେବୀଙ୍କ ନେତୃତ୍ୱରେ ମହିଳାମାନେ ଏକ ସ୍ୱତନ୍ତ୍ର ସଭା କରି କସ୍ତୁରବା ଓ ଗାନ୍ଧୀଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ତା'ପରେ ସେ ବରଗଡ଼ ଯାଇଥିଲାବେଳେ ମହିଳାମାନେ ତାଙ୍କ ପାଇଁ ଏକ ବିରାଟ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ ।

ବରଗଡ଼ରେ ସେ କଂଗ୍ରେସର ପ୍ରଥମ କାର୍ଯ୍ୟାଳୟ ଉଦ୍‌ଘାଟନ କରିଥିଲେ । ଏହା ତାଙ୍କ ନାମାନୁସାରେ 'କ୍ରିଷ୍ଣା ଭବନ'ଭାବେ ନାମିତ ହୋଇଥିଲା । ମାର୍ଚ୍ଚ ୩୧, ୧୯୩୧ରେ ସମ୍ବଲପୁର ଗାନ୍ଧୀ ଘାଟଠାରେ ଅନୁଷ୍ଠିତ 'ଦାଣ୍ଡି ଦିବସ' ସଭାରେ ସେ ଅଧ୍ୟକ୍ଷତା କରିଥିଲେ ।

ଜମ୍ବୁବତୀ ଦେବୀ ଥିଲେ ପଶ୍ଚିମ ଓଡ଼ିଶାର ପ୍ରଥମ ନାରୀ ସତ୍ୟାଗ୍ରହୀ । ବିନିକାର ବରପୁତ୍ରୀ ଜମ୍ବୁବତୀ ଫେବୃଆରୀ ୧୯୩୧ରୁ ନିଜ ପତି ଭାଗୀରଥୀଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ନିଜ ପୁଅ ପ୍ରଫୁଲ୍ଲଙ୍କ ସହ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ।

ଆନ୍ଦୋଳନ ସହ ଖଦୀ ଆନ୍ଦୋଳନ, ନିଶା ନିବାରଣ ଆଦି ଗାନ୍ଧୀବାଦୀ ସମାଜ ସଙ୍ଗଠନରେ ଅଂଶଗ୍ରହଣ କରି ଓଡ଼ିଶା, ବିହାରରେ ବହୁବାର ଗିରଫ ଓ ଜେଲ ବରଣ କରିଥିଲେ ।

ତାଙ୍କ ନେତୃତ୍ୱରେ ସମ୍ବଲପୁରର ୧୦ଜଣ ମହିଳା ବାଲେଶ୍ୱର ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଅଞ୍ଚଳରେ ମହିଳାମାନଙ୍କ ସଙ୍ଗଠନ କରି ସତ୍ୟାଗ୍ରହ ପାଇଁ ଚାନ୍ଦା ଆଦାୟ କରିବାରେ ସେ ଥିଲେ ଅପାର ଦକ୍ଷତାର ଅଧିକାରିଣୀ । ନାରୀମାନଙ୍କ ଭିତରେ ସ୍ୱଦେଶବତ୍ସଳତା ସ୍ଫୁରଣ କରିବାରେ ତାଙ୍କ ଭୂମିକା ଅପ୍ରତିଦ୍ୱନ୍ଦ୍ୱୀ ଥିଲା ।

ଆଇନ ଅମାନ୍ୟ ଆନ୍ଦୋଳନ ବେଳେ ସେ କଂଗ୍ରେସ ପ୍ରଚାରପତ୍ର ବଣ୍ଟନରେ ଅଗ୍ରଣୀ ଥିଲା ବେଳେ ଅଗଷ୍ଟ ୧୯୩୩ର ବ୍ୟକ୍ତିଗତ ସତ୍ୟାଗ୍ରହ ବେଳେ ସମ୍ବଲପୁର ମାରୱାଡ଼ି ପଡ଼ାରେ ବିଦେଶୀ ଲୁଗା ଦୋକାନ ଓ ବରଗଡ଼ ମଦ ଦୋକାନରେ ପିକେଟିଂ କରି ୪ମାସ କଠିନ କାରାଦଣ୍ଡ ଭୋଗ କରିଥିଲେ ।

ମେ ୧୯୩୪ରୁ ୪୨ରେ ସେ ହରିଜନ ପଦଯାତ୍ରାରେ ଅଂଶ ନେଇଥିଲେ । ସମ୍ବଲପୁର ଜେଲ୍‌ରେ ୧୯୩୨ରେ ୬ ମାସ, ଭାଗଲପୁର ଜେଲ୍‌ରେ ୫ ମାସ କଟାଇଥିଲେ । ୧୯୩୪ରେ ବିହାରରେ ପତି, ପୁତ୍ରଙ୍କ ସହ ଭୂମିକମ୍ପ ପୀଡ଼ିତଙ୍କ ସେବା କରିଥିଲେ । ଭାରତଛାଡ଼ ଆନ୍ଦୋଳନରେ ବିହାରର ଦୁମକାରେ ଗିରଫ ହୋଇଥିଲେ ।

ବିହାରର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଭୂମିକା ଏତେ ଗୁରୁତ୍ୱପୂର୍ଣ୍ଣ ଥିଲା ଯେ, ସତ୍ୟାଗ୍ରହୀମାନେ ତାଙ୍କୁ ସେଠାରେ ମା' ବୋଲି ଡାକୁଥିଲେ । ବିହାର ମାଟିରେ ହିଁ ବରପାଲିର ଏହି ବୀରପୁତ୍ରୀ ଆଖି ବୁଜିଥିଲେ ।

ବରଗଡ଼ର ବରପୁତ୍ରୀ ପ୍ରଭାବତୀ ଦେବୀ ମାତ୍ର ୨୬ ବର୍ଷ ବୟସରେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ଦୁଇବର୍ଷ କାରାଦଣ୍ଡ ଭୋଗ କରିଥିଲେ । ସମ୍ବଲପୁର ଜେଲ୍‌ରେ ଦେଢ଼ବର୍ଷ ରହିଲା ପରେ ତାଙ୍କୁ କଟକ ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା ।

ପ୍ରଭାବତୀ ପଞ୍ଚମ ଶ୍ରେଣୀ ପଢୁଥିବା ବେଳେ ବାଲ୍ୟବିଧବା ହୋଇଥିଲେ ହେଁ ନୈଷ୍ଠିକ ବ୍ରାହ୍ମଣ ପରମ୍ପରା ତାଙ୍କୁ ଘରର ଚାରିକାନ୍ଥ ଭିତରେ ଆବଦ୍ଧକରି ରଖିପାରି ନଥିଲା ।

ମାଳତୀ ଚୌଧୁରୀ ବରଗଡ଼ର ଜୀରାନଦୀ ପଠାରେ ସଭା କଲାବେଳେ ପ୍ରଭାବତୀ ଏଥିରେ ଯୋଗ ଦେଇଥିବା ପ୍ରଥମ ମହିଳା ଥିଲେ । ମାଳତୀଙ୍କ ମାଧ୍ୟମରେ ସେ ବରୀ ଆଶ୍ରମରେ ପାର୍ବତୀ ଗିରିଙ୍କ ସହ ୧୯୩୮ରେ ଯୋଗ ଦେଇ ସତ୍ୟାଗ୍ରହ, ସୂତାକଟା, କୁଟୀର ଶିଳ୍ପ, ମୌଳିକ ଶିକ୍ଷା, ପୌଢ଼ ଶିକ୍ଷା, ନାରୀ ଉନ୍ନୟନ, ଖଦୀ, ପଶୁପାଳନ, ଜାତୀୟ ଭାଷା ଶିକ୍ଷାର ତାଲିମ ଗ୍ରହଣ କରିଥିଲେ । ଏ ଆଶ୍ରମଟି ଗୋପବନ୍ଧୁ ଚୌଧୁରୀ, ସୁରେନ୍ଦ୍ର ପଟ୍ଟନାୟକ, ରମା ଦେବୀ, ଗୋଦାବରୀ ଦେବୀ, ସୁଶୀଳା ଦେବୀ, ତୁଳସୀ ଦେବୀ, ମଙ୍ଗଳ ସେନଗୁପ୍ତ, ଅନ୍ନପୂର୍ଣ୍ଣା ଦେବୀଙ୍କୁ ନେଇ ପ୍ରତିଷ୍ଠିତ ହୋଇଥିଲା ।

ସମ୍ବଲପୁରରେ କଂଗ୍ରେସ କର୍ମୀଙ୍କ ଅଭାବ ବେଳେ ତାଙ୍କୁ ଓ ପାର୍ବତୀଙ୍କୁ ୧୯୪୦ରେ ବରୀ ଆଶ୍ରମରୁ ସମ୍ବଲପୁର ପଠାଯାଇଥିଲା ।

ସେ ୧୯୪୧ରେ ଜାତୀୟ କଂଗ୍ରେସର ଉତ୍ସର୍ଗୀକୃତ କର୍ମୀ ଭାବରେ ବିଦେଶୀ ଦ୍ରବ୍ୟ ବର୍ଜନ ଆହ୍ୱାନ ଦେଇ ଗାଁ ଗାଁ ବୁଲି ସ୍ୱଦେଶୀ ଆନ୍ଦୋଳନର ପ୍ରଚାର କରିଥିଲେ ।

ସେ ମଧ୍ୟ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ପାଣିମୋରାର ସଂଗ୍ରାମୀ ସଭାରେ ବହୁବାର -ଅଂଶଗ୍ରହଣ କରିଥିଲେ । ୱାର୍ଦ୍ଧା ଆଶ୍ରମରେ ଗାନ୍ଧୀଙ୍କ ସହ ୧୫ ଦିନ କାମ କରିଥିଲେ ।

ଜେଲ୍‌ରୁ ଫେରି ରମା ଦେବୀଙ୍କ ପରାମର୍ଶରେ ବରଗାଁରେ ଉପେନ୍ଦ୍ର ପାଣିଗ୍ରାହୀ, ଘନଶ୍ୟାମ ପାଣିଗ୍ରାହୀ, ନରସିଂହ ପାଣିଗ୍ରାହୀ, ଶିବନାରାୟଣ ପାଢ଼ୀଙ୍କ ସହଯୋଗରେ ଏକ ମାତୃମଙ୍ଗଳ କେନ୍ଦ୍ର ଖୋଲିଥିଲେ ।

ଭୂ-ଦାନ ଆନ୍ଦୋଳନରେ ଯୋଗଦେଇ ବିନୋବାଙ୍କ ସହ ପଦଯାତ୍ରା କରିଥିଲେ । ସ୍ୱାଧୀନତା ପରେ ଅନାଥ ପିଲାଙ୍କ ପାଇଁ ବରଗାଁରେ 'ରୁକ୍ମିଣୀ ଲାଠ ବାଳ ନିକେତନ' ପ୍ରତିଷ୍ଠା କରିଥିଲେ ।

ସମଲେଇ ପଦରର ପାର୍ବତୀ ଗିରି ୧୨ ବର୍ଷ ବୟସରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ପିତାମାତାଙ୍କ ସାମାନ୍ୟ ବିରୋଧରେ ଏହି ୧୨ ବର୍ଷୀୟା କନ୍ୟା କହିଥିଲେ-"ମୁଁ ବାବାଙ୍କୁ ଛାଡ଼ି ଦେଶ ସେବା କରିବି, ନହିଲେ କୂଅକୁ ଡେଇଁ ମରିବି ।" ଭାରତ କ'ଣ ବିଶ୍ୱ ଇତିହାସରେ ଏଭଳି ଦୃଷ୍ଟାନ୍ତ ବିରଳ ।

ସେ ଓ ପାର୍ବତୀ ଗିରି ଗ୍ରାମ୍ୟ ମହିଳାଙ୍କ ମଧ୍ୟରେ ଗାନ୍ଧୀ ନୀତି ଓ ଅସହଯୋଗର ପ୍ରଚାର ପ୍ରସାର କରି ଲୋକଙ୍କୁ ସ୍ୱାବଲମ୍ବନଶୀଳ ହେବାକୁ ଉଦ୍‌ବୁଦ୍ଧ କରୁଥିଲେ । ଖଦୀ, ହିନ୍ଦୁ-ମୁସଲିମ୍ ଏକତା, ଅସ୍ପୃଶ୍ୟତା ନିରୋଧ, ଦରିଦ୍ର ଉନ୍ନୟନ କାର୍ଯ୍ୟକ୍ରମ ନେଇ ବରଗଡ଼, ବୋଡ଼ାସମ୍ବର, ପାଣିମୋରା, ସରଣ୍ଡାପାଲି, ପଦ୍ମପୁର, ସମଲେଇପଦର ଆଦିରେ ପ୍ରଚାର କାର୍ଯ୍ୟ ଚଳାଇଥିଲେ ।

ଭାରତଚାଡ଼ ଆନ୍ଦୋଳନରେ ଗ୍ରାମ୍ୟ ମହିଳାମାନଙ୍କ ନେତୃତ୍ୱ ନେଇ ସେ ୨ ବର୍ଷ କାରାଦଣ୍ଡ ଭୋଗ କରିଥିଲେ । ପରେ ସେ ପାଇକମାଲଠାରେ ଅନାଥ ବାଳକ ବାଳିକା ଓ ଅସହାୟ ମହିଳାଙ୍କ ପାଇଁ 'କସ୍ତୁରବା ମାତୃ ନିକେତନ' ପ୍ରତିଷ୍ଠା କରିଥିଲେ ।

ସେ ବରୀରୁ ଫେରି ସରଦାପାଲି, ବରପାଲି, ପାଣିମୋରା ଆଦିର ମହିଳାମାନଙ୍କୁ ଖଦୀ, କୁଟୀର ଶିଳ୍ପ, ହରିଜନ ଉନ୍ନୟନ ଦିଗରେ ଉଦ୍‌ବୁଦ୍ଧ କଲେ ।

ସେ ଭାରତଛାଡ଼ ବେଳେ ବରଗଡ଼ ଏସ୍.ଡି.ଓ. ବି. ମୂଖାର୍ଜୀଙ୍କ କୋର୍ଟ ଦଖଲ କରି ଜେଲ୍ ଯାଇଥିଲେ । ସେ ଜେଲ୍‌ରେ ବ୍ରିଟିଶ୍ ବିରୋଧୀ କାର୍ଯ୍ୟକ୍ରମରେ ଅଂଶଗ୍ରହଣ ନକରିବାକୁ ବଣ୍ଡ ଲେଖିବାକୁ ମନା କରି ଦେଇଥିଲେ ।

ଜେଲ୍‌ରୁ ବାହାରି ବରଗଡ଼ ବଜାରରେ ବ୍ରିଟିଶ୍ ବିରୋଧୀ ପ୍ରଚାର ପତ୍ର ବଣ୍ଟନ କରି ୨ ବର୍ଷ କାରାବରଣ କରିଥିଲେ । ପ୍ରଥମେ ବରଗଡ଼ ଓ ପରେ ସମ୍ବଲପୁର ଜେଲ୍‌କୁ ସ୍ଥାନାନ୍ତରିତ ହୋଇ ଆସିଲେ ।

ସମ୍ବଲପୁର ଜେଲ୍‌ରେ ସେ ପ୍ରଭାବତୀଙ୍କ ସଙ୍ଗେ ରହିଲେ । ଏହି ଜେଲ୍‌ରେ ରକ୍ଷଣୀ ବାଈ, ଲୀଳା ବାଈ ଓ ରୂପା ବାଈ ମଧ୍ୟ ଥାନ୍ତି । ନୂଆପଡ଼ାର ଏହି ନିରକ୍ଷରା ସଂଗ୍ରାମୀମାନଙ୍କୁ ସେ ପାଠ ପଢ଼ାଇଥିଲେ ।

ଭାରତଛାଡ଼ ଆନ୍ଦୋଳନ ତେଜି ଉଠିଲା ବେଳେ ପ୍ରାୟ ସମସ୍ତ ନେତୃସ୍ଥାନୀୟ କର୍ମୀ ଜେଲ୍‌ରେ ଥାନ୍ତି । ଏହି ଘଡ଼ିସନ୍ଧି ସମୟରେ ପ୍ରଭାବତୀ, ଜମ୍ବୁବତୀ ଓ ପାର୍ବତୀ ମୁକ୍ତି ସଂଗ୍ରାମର ନିଆଁକୁ ଜଳାଇ ରଖିଲେ ।

ପ୍ରଭାବତୀ କଂଗ୍ରେସ ପ୍ରଚାରପତ୍ର ବାଣ୍ଟିବା ଅପରାଧରେ ଅଗଷ୍ଟ ୨୩, ୧୯୪୨ରେ ଗିରଫ ହୋଇ ସମ୍ବଲପୁର ଜେଲ୍‌କୁ ଆସିଥିଲେ । ଗୋଟାଏ ବର୍ଷ ପରେ ତାଙ୍କୁ କଟକ ଜେଲ୍‌କୁ ପଠାଇ ଦିଆଯାଇଥିଲା । ସେ ରମା ଦେବୀ, ମାଳତୀ ଦେବୀ ପ୍ରମୁଖଙ୍କ ସଙ୍ଗେ ରହି ୧୯୪୫ରେ ମୁକ୍ତି ପାଇଥିଲେ ।

ବରଗଡ଼ ନେତାମାନଙ୍କ ଗିରଫଦାରି ପରେ ସେ ବରଗଡ଼ ଆସି ସତ୍ୟାଗ୍ରହକୁ ଆଗେଇ ନେଇଥିଲେ ।

ବରଗଡ଼ ମାରଓ୍ୱାଡ଼ି ଧର୍ମଶାଳା ଆଗରେ ଏକ ସଭା ହେଲା । ଏଥିରେ ଜର୍ଜ ହାଇସ୍କୁଲ୍‌ର ଛାତ୍ରମାନେ ଯୋଗ ଦେଇଥିଲେ । ତା'ପରେ ଏକ ଶୋଭାଯାତ୍ରା ବାହାରିଥିଲା । ପାର୍ବତୀ ଦୟାଲାଲ୍ ଯୋଶୀଙ୍କ ସହ ଏହି ଶୋଭାଯାତ୍ରାର ନେତୃତ୍ୱ ନେଇଥିଲେ । ହାତରେ ଜାତୀୟ ପତାକା । ପୋଲିସ୍ ହାତରୁ ପତାକା ଟାଣିନେଇ ଲାଠିଚାଳନା କରିଥିଲା ।

ଏହାର ଦୁଇଦିନ ପରେ ସେ, ଦୟାଲାଲ୍ ଯୋଶୀ ଓ ପୂର୍ଣ୍ଣଚନ୍ଦ୍ର ଗିରିଙ୍କ ସହ ଜୀରା ନଦୀ କୂଳର ମଦଦୋକାନ ଆଗରେ ପିକେଟିଂ କରିଥିଲେ । ଏଠାରେ ପୋଲିସ୍ ସହ ମୁହାଁମୁହିଁ ହୋଇଥିଲା । ହେଲେ ମଦ ବିକ୍ରୟ ବନ୍ଦ ହେଲା ।

ଉଲ୍ଲେଖନୀୟ ସେବାକାର୍ଯ୍ୟ ପାଇଁ ପ୍ରଭାବତୀ ଭାରତୀୟ ସ୍ୱାଧୀନତା ସଂଗ୍ରାମୀ ପରିଷଦରୁ ''ରାଷ୍ଟ୍ରଗୌରବ ପତ୍ର' ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍.ମାନଦ ଉପାଧୀ ପାଇଥିଲେ ।

୧୯୩୪ରେ ଝାରସୁଗୁଡ଼ା ମଦଭାଟି ପିକେଟିଂରେ ହରିଜନ ମହିଳାମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ।

ଗାନ୍ଧୀ-ଇର୍‌ୱଇନ୍ ଚୁକ୍ତିର ଖିଲାପ କରି ମୁଙ୍ଗାପଡ଼ାର ବିହାରୀରାମ ତନ୍ତୀଙ୍କ ବୃଦ୍ଧା ମା ତୁଳସୀ ଦେବୀ, ବିହାରୀ ରାମଙ୍କ ପତ୍ନୀ ହୀରାମତୀ ଦେବୀ, ରାମ ଭରୋସେ ବିଭାରଙ୍କ ପତ୍ନୀ ପ୍ରମୁଖ ହାତରେ କଂଗ୍ରେସ ପତାକା ଧରି ଶୋଭାଯାତ୍ରାର ଅଗ୍ରଭାଗରେ ରହିଥିଲେ । ଏହାପରେ ସେମାନେ ଅନ୍ୟମାନଙ୍କ ସହ ସପ୍ତାହେ କାଳ ପିକେଟିଂ କରିଥିଲେ ।

ଖଦୀ ଓ ଚରଖା କେନ୍ଦ୍ରମାନଙ୍କରେ ଅଗଣିତ ମହିଳା ସୂତା କାଟୁଥିଲା ବେଳେ ନିଶା ନିବାରଣ ପାଇଁ ଶହ ଶହ ଆଦିବାସୀ ମହିଳା ଦୁର୍ବାର ଶପଥ ନେଇଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ପାଣିମୋରାର ନାରୀମାନଙ୍କ ଭୂମିକା ଥିଲା ଗୌରବମୟ । ସଂଗ୍ରାମୀ ଚମରୁ ପରିଡ଼ାଙ୍କ ମାତା କେତକୀ ସଂଗ୍ରାମୀମାନଙ୍କୁ ନିଜ ପୁଅ

ଭଳି ସ୍ନେହ ସହଯୋଗ ଦେଉଥିଲେ । ଥରେ ତାଙ୍କ ଘରକୁ ପୋଲିସ୍‌ର ଅନଧିକାର ପ୍ରବେଶ ଯୋଗୁଁ ସେ ସେମାନଙ୍କ ଉପରେ ଗରମ ପେଜ ଫୋପାଡ଼ିଥିଲେ । ଗାଁର ଇନ୍ଦୁ ପ୍ରଧାନ, ଚମ୍ପୋବତୀ ସାହୁ, ସେବତୀ ପ୍ରଧାନ, ଲୀଳାବତୀ ପ୍ରଧାନ ଆଦି ନାରୀ ସଙ୍ଗଠନର ଗୁରୁଦାୟିତ୍ୱ ବହନ କରିଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ହୀରାମତୀ ଦେଈଙ୍କ ଭୂମିକା ଥିଲା ଉଲ୍ଲେଖନୀୟ । ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ କୃତାର୍ଥ ଆଚାର୍ଯ୍ୟଙ୍କ ପତ୍ନୀ ଚଞ୍ଚଳା ଆଚାର୍ଯ୍ୟ, ଟୁକୁର୍ଲା ଗୌନ୍ତିଆ କୁଞ୍ଜବିହାରୀ ମେହେରଙ୍କ ସ୍ତ୍ରୀ ଇଳା ମେହେର, ବାଲିଟିକରାଇ ଗନ୍ଧର୍ବୀ ବେହେରା ଆଦି ସଂଗ୍ରାମୀମାନଙ୍କୁ ଖାଦ୍ୟପେୟ, ଆର୍ଥିକ ସାହାଯ୍ୟ ଯୋଗାଉଥିଲେ । ସବୁ ସଂଗ୍ରାମୀଙ୍କ ପଛରେ ସେମାନଙ୍କ ପତ୍ନୀମାନଙ୍କ ଅବିଚ୍ଛିନ୍ନ ସହଯୋଗ ରହିଥିଲା ।

❑❑❑

# ସ୍ୱାଧୀନତା ସଂଗ୍ରାମରେ ଗୀତ, ଲୋକଗୀତ, ଲୋକନାଟକର ଭୂମିକା

## ।। ଗୀତ ।।

ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମ ପଛରେ ରହିଛି ଅନାଦି କାଳରୁ ଚଳିତ ଆସୁଥିବା ରାଜତନ୍ତ୍ର, ତା'ର ପ୍ରଜାବିରୋଧୀ ଶାସନ ପ୍ରଣାଳୀ, ଇଷ୍ଟଇଣ୍ଡିଆ କମ୍ପାନୀ, ବ୍ରିଟିଶ୍ ସରକାରଙ୍କ ଦୁଇଶହ ବର୍ଷବ୍ୟାପୀ ସାମ୍ରାଜ୍ୟବାଦୀ ଉପନିବେଶିକ ବିଦେଶୀ ଶାସନ ବିରୋଧରେ ଅବରୁଦ୍ଧ ଓ କ୍ରମାଗତ ଜନଅଶାନ୍ତିର ତୀବ୍ର ବିସ୍ଫୋରଣ । ଏ ଯାତ୍ରା ରାଜତନ୍ତ୍ରରୁ ଗଣତନ୍ତ୍ରର ବିଜୟ ଯାତ୍ରା । ମୂଳତଃ ଦେଖିବାକୁ ଗଲେ ସାଧାରଣ ପ୍ରଜାକୁଳ ହିଁ ଏହି ଆନ୍ଦୋଳନର ମହାନାୟକ । ସମାଜର ସବାତଳର ମଣିଷ, କୃଷକ, ଶ୍ରମଜୀବୀମାନଙ୍କ ଅର୍ଥନୈତିକ ବିପର୍ଯ୍ୟୟ, ପିଠିର ଶୋକ ଓ ପେଟର ଭୋକ ହିଁ ଜନଜୀବନରେ ଜୁଆର ଆଣିଥିଲା । ଏହାର ସ୍ପଷ୍ଟ ଚିତ୍ର ତତ୍‌କାଳୀନ ଗୀତ, ଲୋକଗୀତ ଓ ଲୋକନାଟକ ଆଦିରେ ଦେଖିବାକୁ ମିଳେ ।

ପ୍ରତିଷ୍ଠିତ କବି, ସାହିତ୍ୟିକଙ୍କ ଲେଖନୀ ସହିତ ଅପେକ୍ଷାକୃତ ସାଧାରଣ ଲୋକ ଜୀବନର ସତର୍କ ପ୍ରହରୀ କବି, ଲୋକକବି, ନାଟ୍ୟକାର, ନାଟକ ବିଷୟରେ ଏ ସଂପର୍କରେ ସାଧାରଣ ସୂଚନା ଦେବା ସମୀଚୀନ । ଜାଣିଶୁଣି ଏ ପ୍ରସଙ୍ଗରେ ପ୍ରତିଷ୍ଠିତ କାବ୍ୟକାରଙ୍କୁ ବାଦ୍ ଦିଆଯାଉଛି । ସେମାନଙ୍କ ପାଇଁ ଆଲୋଚନାର ପ୍ରଶସ୍ତ କ୍ଷେତ୍ର ଓ ପରିସର ରହିଛି । ତେଣୁ ଅନାଲୋଚିତ କାବ୍ୟବିଭାବ ହିଁ ମୋର ପ୍ରତିପାଦ୍ୟ । ବହୁ ଲେଖା ସ୍ୱାଧୀନତା ସଂଗ୍ରାମ ସହ ହଜିଯାଇଛି । ଅଧିକାଂଶ ମୁଦ୍ରିତ ଅକ୍ଷର ଦେଖିପାରି ନାହିଁ ।

ପ୍ରତ୍ୟେକ ଦେଶର ଜନଜାଗରଣ କ୍ଷେତ୍ରରେ ଗୀତ ମୁଖ୍ୟ ଭୂମିକା ନେଇଆସିଛି । ଆନ୍ଦୋଳନରେ, ଆନ୍ଦୋଳନ ପରବର୍ତ୍ତୀ ଜାତୀୟ ପତାକା ସହ ଜାତୀୟ ସଂଗୀତ ମଧ୍ୟ ଯେ କୌଣସି ଦେଶ ଓ ଜାତିର ଉତ୍ତୁଙ୍ଗ ପରିଚୟ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଆଜାଦ୍ ହିନ୍ଦ୍ ଫୌଜରେ ଜାତୀୟତାବାଦୀ ଗୀତ ଗାଇ ଗାଇ ବହୁ ସଂଗ୍ରାମୀ ଶହୀଦ୍ ହୋଇଛନ୍ତି । ମୃତ୍ୟୁ ପୂର୍ବରୁ ପ୍ରତ୍ୟେକ ଦେଶର ସ୍ୱାଧୀନତାପାଗଳ ଶହୀଦ୍ ମୁହଁରେ ସେ ଦେଶର ଜାତୀୟତାବାଦୀ ଗୀତ ଶେଷ ବେଳର ସାଥୀ ହୋଇ ରହିଥିଲା ।

ଅସହଯୋଗ ଆନ୍ଦୋଳନରୁ ଭାରତଛାଡ଼ ଆନ୍ଦୋଳନ ଯାଏଁ, ଝଣ୍ଡା ଗୀତ ମୁକ୍ତି ସଂଗ୍ରାମୀମାନଙ୍କୁ ପାଗଳ କରି ଦେଇଥିଲା । ଅଧିକାଂଶ ସଂଗ୍ରାମୀ ଗୀତ ଗାଇବାରେ ଧୁରନ୍ଧର ଥିଲେ । ସେମାନେ ବିଭିନ୍ନ କବିଙ୍କ ବା ନିଜ ରଚନାର ଗୀତ ଗାଇ ସୁପ୍ତ ଜନସାଧାରଣଙ୍କୁ ସଚେତନ କରୁଥିଲେ ।

ପାଣିମୋରାର କବି ଦିବ୍ୟକିଶୋର ସାହୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ବିଦେଶୀ ଶାସନ ଓ ଶୋଷଣର ବିରୋଧ କରିଥିଲେ । 'ସ୍ୱାଧୀନତା', 'ସ୍ୱରାଜ', 'ଅସହଯୋଗ', ଅହିଂସା ଆଦି ପୁସ୍ତିକା ରଚନା କରି ତାକୁ କଟକ ପ୍ରେସ୍‌ରେ ଛପାଇ ବିତରଣ କରିଥିଲେ ।

୧୯୨୮ରେ ତାଙ୍କ କଟକ ମୁକୁର ପ୍ରେସ୍‌ରେ ମୁଦ୍ରିତ, ଭାରତ ଜୟଗାନ, ପୁସ୍ତିକାକୁ ସେ ମହାତ୍ମା ଗାନ୍ଧୀଙ୍କୁ ଉତ୍ସର୍ଗ କରିଥିଲେ ।

ସେହିପରି ସଂପ୍ରତି ଝାରସୁଗୁଡ଼ା ଜିଲ୍ଲା ଲଖନପୁର ବ୍ଲକ୍‌ର ରାଜସ୍ୱ ଗ୍ରାମ ରେମଡ଼ା, ବିଚ୍ଛେଦଗଡ଼ର ଗୌନ୍ତିଆ ପରିବାରର ବିଶିଷ୍ଟ କବି ସ୍ୱର୍ଗତଃ ମୌଲାନା ମୁସ୍ତକିମ ଖାଁ ମାଲଗୁଜାର ମଧ୍ୟ ପରାଧୀନ ଭାରତର ଡାକକୁ ଅଶୁଣା କରି ନଥିଲେ । ୧୯୩୮ରେ ସେ ଲେଖିଥିଲେ :

''ଆଜି ସାରା ଭାରତ, ବିପତି ମୁଖେ ହୋଇଛି ପତିତ ଯେ,
ପେଟକୁ ଦାନା ନ ମିଳଇ ସବୁରି
ଅଣ୍ଟାକୁ କନା ପାଇଁ ସଂପଦ ନ ଅଣ୍ଟଇ
ତା'ପରେ ବନ୍ୟା ଶସ୍ୟ ରୋଗ ସର୍ବତ୍ର
ତଥି ଉପରେ ରାଜକର ବର୍ଦ୍ଧିତ ଯେ, ।''

'ତଦୁପରେ ଅନ୍ୟାୟ ପାଣ୍ଟି ଅସୁଲ
ହାହାରବେ ପ୍ରଜାଙ୍କ ଧ୍ୱନି ଉଠୁଥିତ ଯେ
ମୁସ୍ତକୀ' ଭାଷ ଇଷ୍ଟ ସୁଦୟା କର
କୃଷକ କୁଳ ଦୁଃଖୁ ହୋନ୍ତୁ ମୁକତ ଯେ,''

ଭାରତବାସୀଙ୍କ ଦୁର୍ଦ୍ଦଶାର କରୁଣ ଚିତ୍ର ତାଙ୍କ 'କି ଦମ୍ଭ ଧରିବଟି ଭାରତବାସୀ' କବିତାରେ ପ୍ରତିଭାତ । ସ୍ୱାଧୀନତା ସଂଗ୍ରାମ କାଳରେ ଯେଉଁମାନେ ନିଜକୁ ନିରାପଦ ଦୂରତ୍ୱରେ ରଖି ଅନାସକ୍ତ ଭାବରେ ରହି ଯାଇଥିଲେ, ସେମାନଙ୍କୁ ଲକ୍ଷ୍ୟକରି ସେ ଲେଖିଥିଲେ :

''ଆଜି ବୀରଶୂନ୍ୟ ହୋଇଗଲା କ୍ଷିତି ।
ଯେଉଁ ଭାରତ ପରେ, ବୀରଙ୍କ ପ୍ରତାପରେ
ଉଦୟ ଥିଲା ଦିନରାତି ।
ମହାମହା ମଲ୍ଲ ଥିଲେ ଯେବଣ ଭାରତେ
ନାହିଁ କି ତାଙ୍କ ପୁତ୍ର ନାତି ।
ଦାସ ହୋଇଲେ କି ଛାନେ, ଭୂପତି ନନ୍ଦନେ
ଲଜ୍ୟା ନରଖି ଏକ ରତି ।
ରଚକ ମୁସ୍ତକୀ' ଭାଷେ, ଦୁଃଖୀଙ୍କ ନିଶ୍ୱାସେ
ବିଭ୍ରମ ହୋଇଲା କି ମତି ।

ସ୍ୱଦେଶୀ ଆନ୍ଦୋଳନ, ଖଦୀ ଆନ୍ଦୋଳନ, ପଞ୍ଚାୟତ ରାଜକୁ ସମର୍ଥନ କରି ମୁସ୍ତକିମ ଲେଖିଥିଲେ :

''ସ୍ୱଦେଶୀ ବ୍ୟବହାର ଭଲ
ଜନେ ଛାଡ଼ ବିଦେଶୀ ମାଲ ଚାଲ ।
ତୂଲା ଅତୂଳ କର ଅମଲ
ସୁଖରେ କଟିଯିବ କାଳ ।
ରଖ୍ ଚରଖା, କାନ୍ତିଣ କପା
ସେ ବାସ କର ବ୍ୟବହାର ।
ନ ହୁଅ କଳି, ଥାଅ ହେ ମିଳି
ଖରଚ କଚେରୀ ଜଂଜାଳ ।
ପଞ୍ଚେ ଗ୍ରାମର, ନିଷତ୍ତି କର
ଭାଷେ ମୁସ୍ତକୀ କବି ବାଳ ।

ସ୍ୱାଧୀନତା ସଂଗ୍ରାମୀ ଦୁର୍ଗାପ୍ରସାଦ ଗୁରୁ ଜଣେ ସଫଳ କବି ସାଙ୍ଗକୁ ଗାୟକ ମଧ୍ୟ ଥିଲେ । ବ୍ରଜରାଜନଗର କାଗଜ କଳର ଏହି ଶ୍ରମିକ ସଙ୍ଗଠକଙ୍କ ଏକ କବିତା ବହି ୧୯୪୧ରେ 'ବିପ୍ଳବ ଝଙ୍କାର' ନାମରେ ପ୍ରକାଶ ପାଇଥିଲା ।

ସମଲେଇପଦରର ତୁଳସୀରାମ ଗିରି ପାଣିମୋରାର ଏକ ସାଧାରଣ ସଭାରେ କବି ଖଗେଶ୍ୱର ଶେଠଙ୍କର 'ଆମେ ଗରୀବ କାହିଁକି' ଗୀତ ଆବୃତ୍ତି କରି ଚାରି ମାସ ବିଚାରାଧୀନ ବନ୍ଦୀ ରହି ତିନି ମାସ କାରାଦଣ୍ଡ ଭୋଗ କରିଥିଲେ । କେବଳ ଗୀତ ଗାଇ ସ୍ୱାଧୀନତା ସଂଗ୍ରାମୀ ଭାବରେ ଜେଲଦଣ୍ଡ ଭୋଗିବାରେ ସେ ଥିଲେ ଜିଲାର ପ୍ରଥମ ବ୍ୟକ୍ତି ।

ବରଗଡ଼ର ଧନପତି ପଣ୍ଡା 'ଭାରତଛାଡ଼', 'ବିଦେଶୀ ବସ୍ତ୍ର ବର୍ଜନ' କବିତା ମାଧ୍ୟମରେ ଇଂରେଜ ସରକାରଙ୍କ ଅକଥନୀୟ ଅନାଚାର, ଅତ୍ୟାଚାରର ଚିତ୍ରଣ କରିଥିଲେ ।

ସଂଗ୍ରାମୀ କବି ପ୍ରଫୁଲ୍ଲ ପଟ୍ଟନାୟକ ହିନ୍ଦୀରେ ଅନେକ କାବ୍ୟ ସଂଗ୍ରହ ରଚନା କରି ଭାରତର ସ୍ୱାଧୀନତା ଆନ୍ଦୋଳନକୁ ସମୃଦ୍ଧ କରିଛନ୍ତି । ଲକ୍ଷ୍ମୀନାରାୟଣ ମିଶ୍ର ଅନେକ ଗୀତ, କବିତା ରଚନା କରିବା ସହ 'ଗୀତା ଓ କୁରାନ୍' ଓ 'ବିଦ୍ୟାପତିଙ୍କ ରଚନାର ଅନୁବାଦ ତାଙ୍କ ଅନବଦ୍ୟ କୃତି । ଝାରସୁଗୁଡ଼ାର ବିହାରୀରାମ ତନ୍ତୀ ସ୍ୱାଧୀନତା ଆନ୍ଦୋଳନକୁ କେନ୍ଦ୍ରକରି ଅନେକ ଗୀତ ରଚନା କରି ଗାନ କରୁଥିଲେ । ଲୋକଙ୍କୁ ମନ୍ତ୍ରମୁଗ୍ଧ କରିବାର ଶକ୍ତି ଥିଲା ତାଙ୍କର ।

ସମଲେଇପଦରର ରାମଚନ୍ଦ୍ରପୁରି ଗାଁରେ ସଞ୍ଚାର ନୃତ୍ୟ ଓ ଗୀତିନାଟ୍ୟ ଦଳ ଗଠନ କରି ଗ୍ରାମ୍ୟର ଏକତା ରକ୍ଷା କରିବା ସହ ତାଙ୍କ ଦଳକୁ ସ୍ୱାଧୀନତା ସଂଗ୍ରାମରେ ସଂଶ୍ଳିଷ୍ଟ କରାଇ ପାରିଥିଲେ । ତାଙ୍କ ପ୍ରଚେଷ୍ଟାରେ ଗାଁର ୯ଜଣ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିଲେ ।

କେତେକ ମୁକ୍ତି ପିପାସୁ ରଙ୍ଗକର୍ମୀ ବରଗଡ଼ର ପୃଥିବୀର ବୃହତ୍ତମ ଖୋଲାମଞ୍ଚ ଥିଏଟର 'ଧନୁଯାତ୍ରା'କୁ ସ୍ୱାଧୀନତା ସଂଗ୍ରାମର ପ୍ରତୀକାତ୍ମକ ମଞ୍ଚ ରୂପେ ବ୍ୟବହାର କରିଥିଲେ । ୧୯୧୫-୧୬ରୁ ବନ୍ଦ ରହିଥିବା ଧନୁଯାତ୍ରା ୧୯୩୨-୩୩ରେ ବାଉରୀବନ୍ଧୁ ମହାନ୍ତି, କଂଗାଳୀ ନାୟକ, ଗୋପାଳ ସରାଫ, ରେଙ୍ଗଟୁ ଗୁଡ଼ିଆ, କୁଂଜବିହାରୀ ସରାଫ ଆଦିଙ୍କ ଉଦ୍ୟମରେ ପୁନରାରମ୍ଭ ହେଲା ମାତ୍ରକେ ସେମାନଙ୍କ ଏ କାର୍ଯ୍ୟକଳାପ ବିରୁଦ୍ଧରେ ଗିରଫ ପରୁଆନା ଜାରି ହୋଇ ଯାଇଥିଲା । ଫଳରେ ଏହା ପୁଣି ବନ୍ଦ ହୋଇ ଯାଇଥିଲା ।

ପରେ ଏହା ଭାରତଛାଡ଼ ଆନ୍ଦୋଳନ ସମୟରେ ପୁଣି ଆରମ୍ଭ କରାଯାଇଥିଲା । ମୁକ୍ତିପାଗଳ ରଙ୍ଗକର୍ମୀମାନେ କଂସର ଅତ୍ୟାଚର ମାଧ୍ୟମରେ ଇଂରେଜ ସରକାର, ତାର ପଦଲେହନକାରୀ ରାଜତନ୍ତ୍ର, ସାମନ୍ତବାଦୀ ଶୋଷଣକୁ ନିପୂଣ ଅଭିନୟ ମାଧ୍ୟମରେ ପ୍ରତୀକାତ୍ମବ ଭାବରେ ଚିତ୍ରଣ କରି ଜନସାଧାରଣଙ୍କ ଅବଦମିତ ଅସନ୍ତୋଷ ଓ କ୍ରୋଧକୁ ରୂପ ଦେଇଥିଲେ । ଗାନ୍ଧୀଜୀ ରାମରାଜ୍ୟର ସ୍ୱପ୍ନରେ ମଜଗୁଲ ଥିଲାବେଳେ ଏମାନେ କୃଷ୍ଣରାଜ୍ୟର ସ୍ୱପ୍ନରେ ବିଭୋର ଥିଲେ । ଏହା ଏ ଅଞ୍ଚଳର ଆଞ୍ଚଳିକ ଐକ୍ୟକୁ ବାନ୍ଧି ରଖି କଳାକାର ସମବାୟର ଏକ ଉତ୍କୃଷ୍ଟ ନମୂନା ଥିଲା । ସ୍ୱଦେଶୀ କଳା, ସଂସ୍କୃତିର ସଂଗମ ଥିଲା ।

ବିଭିନ୍ନ ଲୀଳା, ଗୀତାଭିନୟ, ଯାତ୍ରା, ସୁଆଙ୍ଗ ଆଦିର ଅତ୍ୟାଚାରୀ ଦାନବ ଚରିତ୍ର ବସ୍ତୁତଃ ରାଜକୀୟ ଅତ୍ୟାଚାରକୁ ଆଖିରେ ରଖି ପ୍ରସ୍ତୁତ କରାଯାଉଥିଲା । ମନୋରଂଜନ

ମାଧ୍ୟମରେ ଜନସଚେତନତା ସୃଷ୍ଟି କରି ତାକୁ ସ୍ୱାଧୀନତା ସଂଗ୍ରାମ ଦିଗରେ ମୁହାଁଇବା ଏ ଗୁଡ଼ିକର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ରହିଥିଲା । ଲୋକେ ଏସବୁ ଦେଖି ଚିନ୍ତା କରିବାର ଖୋରାକ ପାଉଥିଲେ । ଏ ଚିନ୍ତା ସେମାନଙ୍କୁ ମୁକ୍ତିପଥର ଯାତ୍ରୀ ହେବାର ପ୍ରେରଣା ଯୋଗାଉଥିଲା ।

## ଲୋକ ଗୀତ

ଲୋକଗୀତ ଲୋକଙ୍କ ଆତ୍ମାର ବାଣୀ ହୋଇଥିବାରୁ ପୃଥିବୀର ପ୍ରତ୍ୟେକ ସ୍ୱାଧୀନତା ସଂଗ୍ରାମରେ ଏହା ଲୋକଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ଠିଆ ହୋଇଛି । ଭାରତ ବା ପଶ୍ଚିମାଞ୍ଚଳର ସମ୍ବଲପୁର ତାର ବ୍ୟତିକ୍ରମ ନୁହେଁ । ସମ୍ବଲପୁରୀ ଲୋକଗୀତ ସମୂହର ଛତ୍ରେ ଛତ୍ରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଚିତ୍ର ଦେଖିବାକୁ ମିଳେ ।

ସ୍ୱାଧୀନତା ସଂଗ୍ରାମ ଗୋଟିଏ ଦେଶର ରାଜନୈତିକ ମୁକ୍ତି ସଂଗ୍ରାମ ହୋଇଥିଲା ବେଳେ ଲୋକଗୀତ ସର୍ବ ଅମଙ୍ଗଳ ଓ ଅନାଚାରରୁ ମୁକ୍ତିକାମୀ ଆତ୍ମାର ଅମର ସମରଗୀତିକା । ରାଜନୈତିକ ତାରକାମାନଙ୍କ ଅଗ୍ନିବର୍ଷୀ ଉଦ୍‌ଗାର ଗଣଜୀବନର ସ୍ୱତଃସ୍ଫୂର୍ତ୍ତି ଦୀର୍ଘ ପ୍ରଭାବକାରୀ ଗୁଞ୍ଜରଣ । ଏ ଆତ୍ମାର ଗୀତ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଗ୍ରାମ ଓ ବନାଞ୍ଚଳବାସୀ ସମାଜର ଶତକାଡ଼ା ୭୦ରୁ ୮୦ ଭାଗ ବଞ୍ଚିତ ଓ ଗରୀବ ଲୋକଙ୍କୁ ଐକ୍ୟବଦ୍ଧ ଓ ଅନୁପ୍ରେରିତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଛି । ସଞ୍ଚାର ସାଧନର ସୁଯୋଗ ନଥିଲା ବେଳେ ଏକ ନିରନ୍ତର ବିସ୍ତୃତ ଓ ସୁଦୂରପ୍ରସାରୀ ସନ୍ଦେଶ ଭାବରେ ବିଭିନ୍ନ ଅଞ୍ଚଳକୁ ଏକ ସଂଗ୍ରାମ ସୂତ୍ରରେ ବାନ୍ଧିଛି । ଏ ମୁହଁରୁ ସେ ମୁହଁ, ଏ କାନରୁ ସେ କାନ ହୋଇ ସର୍ବବ୍ୟାପୀ ହୋଇଛି ଲୋକଗୀତ ।

ସମ୍ବଲପୁର ଅଞ୍ଚଳ ଏମିତି ଏକ ଅଞ୍ଚଳ ଯେଉଁଠି ୧୮୫୭ର ପ୍ରଥମ ସ୍ୱତନ୍ତ୍ରତା ସଂଗ୍ରାମର ତିନିଦଶକ ଆଗରୁ ଭାରତର ଆଦି ମୁକ୍ତିସଂଗ୍ରାମ ଆରମ୍ଭ ହୋଇଥିଲା ଓ ସମଗ୍ର ଦେଶର ଅବଦମିତ ହେବାର ୭ବର୍ଷ ପରେ ମଧ୍ୟ ଜାତୀୟବୀର ସୁରେନ୍ଦ୍ର ସାଏ ଏ ଅଞ୍ଚଳରେ ସଶସ୍ତ୍ର ବିପ୍ଳବର ବହ୍ନି ସ୍ଫୁଲିଙ୍ଗକୁ ପ୍ରଜ୍ଜଳିତ କରି ରଖିଥିଲେ । ଭାରତର ଅନ୍ୟତମ ପ୍ରଥମ ସ୍ୱତନ୍ତ୍ରତା ସଂଗ୍ରାମୀ ବୀର ସୁରେନ୍ଦ୍ର ସାଏ ଏ ମାଟିର ବଣପାହାଡ଼ରେ ନିଜର ଘାଟି ପ୍ରତିଷ୍ଠା କରି ସୂର୍ଯ୍ୟାସ୍ତ ହେଉନଥିବା ବ୍ରିଟିଶ ଶାସନ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଫୁଙ୍କିଥିବା ପ୍ରଥମ ରଣସିଂଘାର ନିନାଦ ଏବେ ମଧ୍ୟ ଲୋକଗୀତରେ ମୁଖରିତ ।

୧୮୫୭ ସ୍ୱାଧୀନତା ସଂଗ୍ରାମରେ ଘେଁସ ଜମିଦାର ପରିବାରର ମାଧୋ ସିଂହ, ହଟେ ସିଂହ, କୁଞ୍ଜଳ ସିଂହ, ବୈରୀ ସିଂହ, ଐରୀ ସିଂହ, ନାରାୟଣ ସିଂହ, ଗୋବିନ୍ଦ ସିଂହ,

ପୁନିମାଙ୍କ ସମେତ ଛବିଳ ସାଏ, ଉଜ୍ଜଳ ସାଏ, ଉଦନ୍ତ ସାଏ, ଧ୍ରୁବ ସାଏ, ମେଦିନୀ ସାଏ, ମିତ୍ରଭାନୁ ସାଏ, ବଳରାମ ସିଂହ, ଗଜରାଜ ସିଂହ, ନୀଳାମ୍ବର ସିଂହ, ଲୋକନାଥ ଗଡ଼ତିଆ, କରୁଣାକର ଗଡ଼ତିଆ, କୃପାସିନ୍ଧୁ ବେହେରା,ମୋହନ ସିଂହ ଦାଓ, ବଳଭଦ୍ର ସିଂହ ଦାଓ, କମଳ ସିଂହ, ଜଗବନ୍ଧୁ ହୋତା, ଶ୍ରଦ୍ଧାକର ମଲ୍ଲିକ, ମୃତ୍ୟୁଞ୍ଜୟ ପାଣିଗ୍ରାହୀ, ପଦ୍ମନାଭ ଗୁରୁ, ବାବା ମିଟୁ କୁଅଁର, ନନ୍ହେଁ ଦିୱାନ, ଦିଆଲ ସରଦାର, ଧରଣୀଧର ମିଶ୍ର, ଶାଳେଗ୍ରାମ ବେରିହା, କାନକଟା ଗଡ଼ତିଆ ପ୍ରମୁଖ ବ୍ରିଟିଶ ସରକାର ସହ ସମ୍ମୁଖ ଯୁଦ୍ଧରେ ସହିଦ ହୋଇଥିଲେ । ସୁରେନ୍ଦ୍ର ସାଏ ମଧ୍ୟପ୍ରଦେଶର ଅସିରଗଡ଼ ଜେଲରେ ପ୍ରାଣପାତ କରିଥିବା ବେଳେ ଘେଁଷର ହଟେ ସିଂହ ହେଉଛନ୍ତି ଏକମାତ୍ର ଓଡ଼ିଆ, ଯିଏ ଆଣ୍ଡାମାନର ସେଲୁଲାର ଜେଲରେ କଳାପାଣି ଭୋଗିବା ଅବସ୍ଥାରେ ଅତି ଦୟନୀୟ ଭାବରେ ମୃତ୍ୟୁବରଣ କରିଥିଲେ । ଇତିହାସର ଅନ୍ଧାରୀ ଗୁହା ଭିତରେ ଏମାନଙ୍କ ଓ ଏମାନଙ୍କ ପରି ବହୁ ଜାତି, ଦେଶପ୍ରାଣମାନଙ୍କ ପ୍ରାଣବଳି ହଜି ଯାଉଥିଲା ବେଳେ ଲୋକଗୀତ ଭିତରେ ସେ ବୀର ଇତିହାସର କେତେକ ଝଲକ ଏବେ ବି ବିଦ୍ୟମାନ, ଅବଶ୍ୟ ଭାରତରେ ଆଧୁନିକ ସଭ୍ୟତାର ସଂକ୍ରମଣ ଫଳରେ ଯାହା ଅଛି ତାହା ମଧ୍ୟ ଦ୍ରୁତ ବିଲୀୟମାନ ।

ପାହାଡ଼ ଅରଣ୍ୟଘେରା, ପ୍ରାକୃତିକ ସମ୍ପଦଭରା ପଶ୍ଚିମ ମାଳାଞ୍ଚଳରେ ସ୍ୱାଧୀନତା ସଂଗ୍ରାମ ହେଉ କି ମହାତ୍ମା ଗାନ୍ଧୀଙ୍କ ଅହିଂସା ଅସହଯୋଗ ଆନ୍ଦୋଳନ ହେଉ ଏ ଅଞ୍ଚଳର ମାଟିପୁତ୍ର ମାନଙ୍କର ପଟାନ୍ତର ନାହିଁ । ଆଜିଠୁଁ ୧୭୩ ବର୍ଷ ତଳେ ସୁରେନ୍ଦ୍ର ସାଏ ତାଙ୍କ ସଂଗ୍ରାମକୁ ସମ୍ବଲପୁରରୁ ମଧ୍ୟପ୍ରଦେଶର ରାୟପୁର ଯାଏଁ ସମ୍ପ୍ରସାରିତ କରିଥିଲା ବେଳେ ଅବିଭକ୍ତ ସମ୍ବଲପୁରର ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ ୧୯୪୧ର ଅଗଷ୍ଟ ବିପ୍ଳବ ବେଳେ ବିହାରର ଦୁମ୍‌କା, ସାନ୍ତାଳ ପ୍ରଗଣାରେ ପାହାଡ଼ିଆମାନଙ୍କ ସଙ୍ଗେ ମିଶି ସଶସ୍ତ୍ର ସଂଗ୍ରାମର ନେତୃତ୍ୱ ନେଇଥିଲେ । ସୁରେନ୍ଦ୍ର ସାଏଙ୍କ ମୁକ୍ତି ମଶାଲ ଏ ଅଞ୍ଚଳର ନୃସିଂହ ଗୁରୁ, ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀ, ଲକ୍ଷ୍ମୀ ନାରାୟଣ ମିଶ୍ର, ଜମ୍ବୁବତୀ ଦେବୀ, ଚିନ୍ତାମଣି ପୂଜାରୀ, ବିହାରୀରାମ ତନ୍ତୀ, ଦୟାନନ୍ଦ ଶତପଥୀ, ଭାଗିରଥୀ ପଟ୍ଟନାୟକ ପ୍ରମୁଖ ବିଶିଷ୍ଟ କଂଗ୍ରେସ ସ୍ୱାଧୀନତା ସଂଗ୍ରାମୀଙ୍କୁ ଯେ କେବଳ ଆଲୋକିତ କରିଥିଲା ତା' ନୁହେଁ ବରଗଡ଼ରେ ପାଣିମୋରା ଭଳି ସ୍ୱାଧୀନତା ସଂଗ୍ରାମୀ ଗାଁକୁ ମଧ୍ୟ ଜନ୍ମ ଦେଇଥିଲା ।

ସମ୍ବଲପୁରୀ ସଜନୀ, ରସରକେଲି, ଡାଲଖାଇ, ମାଏଲାଜଡ଼, ହୁମୋବଉଲି, ହଲିଆ ଗୀତ, ଲହକି ଆଦି ଲୋକଗୀତ ଏ ଅଞ୍ଚଳରେ ବିଦେଶୀ ଶାସନ ବିରୁଦ୍ଧରେ ନିରନ୍ତର କ୍ଷୋଭ, ଘୃଣା, ଅଶାନ୍ତିକୁ ନିଜ ଭିତରେ ସମାହିତ କରିବା ସହ ତତ୍‌କାଳୀନ ସାମାଜିକ,

ଅର୍ଥନୈତିକ, ପ୍ରଶାସନିକ ଦୁରବସ୍ଥା ଓ ଅତ୍ୟାଚାରର ଖୋଲା ଚିତ୍ରଣ କରି ପ୍ରତିରୋଧର ଭୂମିକା ଗ୍ରହଣ କରିଥିଲା ଓ ଲୋକଙ୍କୁ ସଂଗ୍ରାମମୁଖୀ କରି ତୋଳିଥିଲା । କେବଳ ବ୍ରିଟିଶ ପ୍ରଶାସନ ନୁହଁ ସେମାନଙ୍କ ବଚସ୍ପର ରାଜା,ଜମିଦାର, ମାଲଗୁଜାର, ଗୌନ୍ତିଆ, ବିରତିଆ ଆଦିଙ୍କ ବିରୁଦ୍ଧରେ ମଧ୍ୟ ଅଗ୍ନିମୁଖ ହୋଇଥିଲା ।

## ସଜନୀରେ ସ୍ୱାଧୀନତା ସଂଗ୍ରାମ

ବୀର ସୁରେନ୍ଦ୍ର ସାଏଙ୍କ ଶକ୍ତି ଓ ବୀରବିକ୍ରମରେ ପ୍ରେମ ପ୍ରଣୟର ଗୀତ 'ସଜନୀ' ଜାତିପ୍ରେମର ଗୀତରେ ଉଦ୍‌ବୁଦ୍ଧ ହୋଇ ସମ୍ବଲପୁରୀ ସ୍ୱାଭିମାନର ଜୀବନ୍ତ ପ୍ରତିଭୂରେ ପରିଣତ ହୋଇଥିଲା । ଶକ୍ତି ଓ ବୀରପୂଜା ଏ ଅଞ୍ଚଳର ସହଜାତ ଆଦିମ ପରମ୍ପରା । ଶକ୍ତିର ଦେବୀ ମା ସମଲେଶ୍ୱରୀଙ୍କ ମାଟିର ପୁତ୍ରମାନଙ୍କ କାନ୍ଧରେ ସଜନୀ ବନ୍ଧୁକ ଧରାଇ ଦେଇଥିଲା ।

''ସାଏକଲର ଯୁଡ଼ା ଚକ<br>
ହାତେ ଚକମକ, ଖନ୍‌ଧେଁ ବନ୍ଧୁକରେ<br>
ସଥେ, ସମଲପୁରିଆ ଲୋକ, ସଜନୀରେ...''

ଯେଉଁମାନେ ନିଶହୀନ, ଯେଉଁ ପୁରୁଷମାନଙ୍କର 'ମେଛା' ନାହିଁ, ନିଶର ସ୍ୱାଭିମାନ ନାହିଁ, ସେମାନଙ୍କୁ 'ସଜନୀ' ତାଚ୍ଛଲ୍ୟ କରି ହଳରେ ଯୋଚି ଯୋଗ୍ୟ ବଳଦ ସହ ତୁଳନା କରିଛି-

''କୁଲିହା ଗାଡ଼ର ହଦ<br>
ମୁହେଁ ମେଛା ନାଇଁ କାଏଁ ମରଦ ହୋ<br>
ସତେ, ଗହଲ ଫନ୍ଦା ବଳଦ, ସଜନୀରେ...''

ଏ ବୀରବିକ୍ରମରେ ନାରୀମାନେ ମଧ୍ୟ ପଛରେ ନାହାନ୍ତି । ଘେଁସ ଜମିଦାର ପରିବାରର ଝିଅ ପୁନିମା (ପୂର୍ଣ୍ଣିମା)ଶହୀଦ ପରିବାରର ଦୁଃଖାନଳରେ ଜଳି ଜଳି ଶହିଦ ହେଲାପରେ ସମ୍ବଲପୁରୀ ନାରୀ ମଧ୍ୟରେ ବି' ତାର ସ୍ୱାଭିମାନ ଫୁଟି ଉଠିଛି ।

''ଆଲିରେ ଦୁଇ ବୁନ୍ଦା ଘିଅ<br>
ଆମେ ଚାଲିଗଲେ ନାଇଁ ହଲେ ଦିହରେ<br>
ସଥେ, ସମଲପୁରିଆ ଝିଅ, ସଜନୀରେ...''

ବିଦେଶୀ ଶାସନ ଅମଳରେ ଯେଉଁ ଗୌନ୍ତିଆ, ଜମିଦାରମାନେ ନିଜ ସ୍ୱାର୍ଥ ସାଧନ ଲାଗି ଦେଶଦ୍ରୋହିତା କରି ଇଂରେଜ ସରକାରର ପଦଲେହନ କଲେ, 'ସଜନୀ' ସେମାନଙ୍କ ପ୍ରତି ତୀବ୍ର ଘୃଣାରେ ଜର୍ଜରିତ :

''ବାଏଗନ ତରକାରୀ
ଗାଁର ଗଉଁତିଆ ପରଦୁଆରୀହୋ
ସଥେ, ଗାଁ ହେଲା  ସରକାରୀ, ସଜନୀରେ....''

୧୮୪୯ ମସିହାରେ ସମ୍ବଲପୁର ମହାରାଜା ନାରାୟଣ ସିଂହ ଅପୁତ୍ରିକ ଅବସ୍ଥାରେ ପରଲୋକ ଗମନ କରିବାରୁ ସମ୍ବଲପୁର ରାଜ୍ୟସ୍ୱତ୍ୱଲୋପ ନୀତି ଅନୁସାର ବ୍ରିଟିଶ ଶାସନାଧିନ ହେଲା । ବହୁ ଗୌନ୍ତିଆ ଜମିଦାର ହୀନ ସ୍ୱାର୍ଥ ପାଇଁ ବିଦେଶୀ ସରକାର ଆଗରେ ପଗଡ଼ି ବିକି ଦେଲେ । ନାରାୟଣ ସିଂହଙ୍କ ପୋଷ୍ୟପୁତ୍ର ତଥା ସମ୍ବଲପୁର ସିଂହାସନର ଉତ୍ତରାଧିକାରୀ ସୁରେନ୍ଦ୍ର ସାଏ ସେତେବେଳକୁ ଦେଶଦ୍ରୋହୀ ରାମପୁର ଜମିଦାର ଦରିଆର ସିଂହଙ୍କୁ ହତ୍ୟାକରି ହଜାରୀବାଗ ଜେଲରେ ଥାନ୍ତି । ସେ ସମୟରେ ଚିତ୍ର ଦେଇ 'ସଜନୀ' ଗାଇଛି -

''ହଳଦି ଦୁଇ ଖଁଡ ଗଜା
ସମଲପୁରରେ ନାଇଁନ ରଜା ହୋ
ସଥେ, ପିରିଙ୍ଗି ମାରୁଛେ ମଜା ସଜନୀରେ...''

ବିଶ୍ୱାସଘାତୀ, ଦେଶଦ୍ରୋହୀ ରାଜାମାନଙ୍କୁ ସେମାନଙ୍କ ରାଣୀ ମଧ୍ୟ କ୍ଷମା କରି ନାହାନ୍ତି -

''କଳିଆ ଘୁଡ଼ାର ଟାପୁ
ରଜା ବିଜେ କଲେ ଗାଙ୍ଗପୁରକୁରେ
ଧନ, ରାନୀ ଖାଇ ଦେଲେ ଆଫୁ, ସଜନୀରେ...''

## ଲହକୀ ଗୀତରେ ସୁରେନ୍ଦ୍ର-ସଂଗ୍ରାମ

ଲହକୀ ହୋଇଛି ବିଞ୍ଝାଲମାନଙ୍କ ବୀରରସାଶ୍ରିତ ବିବାହ ଗୀତ । ଘେଁସ ଜମିଦାର ମାଧୋ ସିଂହ ଥିଲେ ସୁରେନ୍ଦ୍ରଙ୍କ ଘନିଷ୍ଠ ସହଯୋଗୀ । ସେ ଥିଲେ ପ୍ରବଳ ସ୍ୱାଧୀନଚେତା । ମରହଟ୍ଟା ଓ ଇଂରେଜମାନଙ୍କୁ ଦସ୍ୟୁ ବୋଲି ସେ ତୀବ୍ର ଘୃଣା କରୁଥିଲେ । ୧୮୪୯ରେ ସମ୍ବଲପୁର ଗୌନ୍ତିଆ ଓ ଜମିଦାରମାନଙ୍କ ଦେୟ ୮୮୦୦ ଥିଲା ବେଳେ ୧୮୫୪କୁ ଏହା ୭୪,୦୦୦ ଟଙ୍କାକୁ ବୃଦ୍ଧି କରାଯାଇ ସେମାନଙ୍କୁ ଖୋଦ୍ ସମ୍ବଲପୁର ଆସି ଖଜଣା ପଇଠ କରିବାକୁ ଚିଫ୍ କମିଶନରଙ୍କ ନିର୍ଦ୍ଦେଶକୁ ସେ ଅବମାନନା କଲେ । ପ୍ରଜାଙ୍କ ଉତ୍ପାଦିତ ସମ୍ପଦକୁ ଖଜଣା ରୂପରେ ଗ୍ରହଣ କରି ବିଳାସବ୍ୟସନର ଜୀବନକୁ ସେ ନାପସନ୍ଦ କରୁଥିଲେ । ନିଜେ

ସାଧାରଣ ପ୍ରକାର ଜୀବନଯାପନ କରିବା ଥିଲା ତାଙ୍କ ବଂଶ ପରମ୍ପରା । ଏ ଅହେତୁକ ଖଜଣା ବୃଦ୍ଧି ତାଙ୍କ ଘୃଣାକୁ ଆହୁରି ଶାଣିତ କଲା । ସେ ଇଂରେଜମାନଙ୍କୁ 'ବେନ୍ଦରା' (ମାଙ୍କଡ଼) ବୋଲି କହୁଥିଲେ । ସେମାନଙ୍କ ବିରୁଦ୍ଧରେ ସେ ସଶସ୍ତ୍ର ସଂଗ୍ରାମ କଲେ : ହଟେ ସିଂହ, କୁଞ୍ଜଲ ସିଂହ ତାଙ୍କ ପିତାଙ୍କ ପଦାଙ୍କ ଅନୁସରଣ କଲେ -

''ହାତୀସିଂହ କୁଞ୍ଜଲ ସିଂହ କାନ୍ଧରେ ଦୁହେଁ ଝୁଲି
ବେନ୍ଦ୍‌ରାମାନ୍‌ରେ ମାରିଦେଲେ
ଆଁଖ ଚହଟା ଗୁଲି''

ଅକ୍ଟୋବର ୭, ୧୮୫୭ ଦିନ ସମ୍ବଲପୁରରେ ବିପ୍ଳବୀମାନେ ବ୍ରହ୍ମପୁର ମନ୍ଦିରରେ ପ୍ରଦୀପ ଜାଳି ଇଂରେଜମାନଙ୍କୁ ଦେଶରୁ ତଡ଼ିବା ପାଇଁ ଓ ସୁରେନ୍ଦ୍ରଙ୍କୁ ଗାଦି ଦିଆଇବା ପାଇଁ ବଜ୍ରଶପଥ ନେଇ ବିନା ରକ୍ତପାତରେ ପୁରୁଣା କିଲା ଦଖଲ କଲେ । ପରେ କୁଟନୀତିର ଆଶ୍ରୟ ନେଇ ଇଂରେଜ କମିଶନର ଆର.ଟି.ଲେ ଛକଡ଼ି ମହାପାତ୍ରଙ୍କ ସାହାଯ୍ୟରେ ସୁରେନ୍ଦ୍ରଙ୍କ ସହ ସନ୍ଧି କଲେ । ସୁରେନ୍ଦ୍ର ବିପ୍ଳବ କିଛି ଦିନ ପାଇଁ ବନ୍ଦ ହେଲା । ଏ ଅବସରରେ ଇଂରେଜମାନେ ନାଗପୁର, ମାନ୍ଦ୍ରାଜ ଆଦିରୁ ଅଧିକ ସୈନ୍ୟ ସଂଗ୍ରହରେ ଲାଗିଲେ । ଇତିମଧ୍ୟରେ ଦିନେ ବିପ୍ଳବୀମାନେ ନିରସ୍ତ୍ର ହୋଇ ମହାନଦୀରେ ସ୍ନାନ କଲାବେଳେ ବ୍ରିଟିଶ ପକ୍ଷରୁ ଅତର୍କିତ ଆକ୍ରମଣ ହେଲା । ବିପ୍ଳବୀମାନେ ପଳାଇ ବୁଢ଼ାରଜା ପାହାଡ଼ରେ ଏକତ୍ରିତ ହୋଇଥିଲା ବେଳେ ଲେଫ୍ଟିନାଣ୍ଟ ହେଡ଼ୋସନ ମାନ୍ଦ୍ରାଜ ଦେଶୀୟ ପଦାତିକ ବାହିନୀ ଓ ରାମଗଡ଼ ଏବଂ ସମ୍ବଲପୁର ବାହିନୀ ନେଇ ଆକ୍ରମଣ କଲେ । ସେନାବାହିନୀର ବିପ୍ଳବୀମାନେ ସମ୍ବଲପୁରକୁ ପ୍ରବେଶ ପଥ ଅବରୋଧ କରିବାକୁ ବିଭିନ୍ନ ଘାଟିରେ ଜଗି ରହିଲେ । ମାଧୋ ସିଂହ ଅବରୋଧ କରିଥିବା ସିଂଘୋଡ଼ା ଘାଟି ଉଦ୍ଧାର କରିବାକୁ କେପ୍‌ଟେନ୍ ଇ.ଜି. ଉଡ୍‌ଙ୍କ ବିଫଳତାର ପରେ ସେନାପତି ସେକ୍‌ସପିୟର ମଧ୍ୟ ପରାଜିତ ହୋଇ ପଳାୟନ କଲେ । ଲହକୀ ଗୀତରେ ଏ ଘଟଣାର ଚିତ୍ର-

''ଆମ୍ ଖାଏଲିଁ ଜାମ ଖାଏଲିଁ
ପକେଇ ଦେଲି ଟାଁକୋ
ବନ୍ ତଳର କାଗଜ୍ ପତର୍
ସୁନ୍ଦର୍ ବରିହାକେ ଡାକୋ ।
ସୁନ୍ଦର୍ ବରିହା ବଏଲା ଭାଇ
ତୁମେ ଦିଅ କାଁଥି
ସବୁ ଲସ୍‌କର ପଲେଇ ଗଲେ

ସିଂଘଡ଼ା ମୁହାର ଘାଟି ।
କିଏ ଦେଲା ଗୁଡ଼ ଗୁରସ୍ କିଏ ଦେଲା ଚୁରା
ସିଂଘଡ଼ା ଘାଟିଥି ମାରଗଲା...
ଯାଇଫୁଲ... କରାପାଏନ...
ମକୁଟ୍ ବନ୍ଧା ଘୁଡ଼ା...''

ଏହାର ପ୍ରତିଶାଧ ନେବାକୁ ମେଜର ଫରଷ୍ଟର ବିଶାଳ ସେନାବାହିନୀ ନେଇ ଘେଁସ ଘେରାଉ କରି ସମଗ୍ର ଗାଁ ପୋଡ଼ି ଛାରଖାର କରିଦେଲେ-

''ରିଶେ ମିଶେ ଆଏଲା ସାହେବ
ଘେଁସ ଦେଲା ପୁଡ଼େଇ
କିଏ ରହେଲା ଗାଁ ଗହଲି
କିଏ ରହେଲା ଝାରେ
ଆଁଠେ ରକତ୍ ବୁହିଗଲା...ଯାଇଫୁଲ କରାପାଏନ୍...
କୁଞ୍ଜଲ ସିଂହର ମାରେଁ...''

## ଗଣହତ୍ୟାର ଅଜ୍ଞାତ ଇତିହାସ

ଘେଁସ ଅଞ୍ଚଳର ଲୋକଗୀତ ଗୁଡ଼ିକରେ ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ଖଣ୍ଡିତ ଚିତ୍ର ଦେଖାଯାଏ । କର୍ଣ୍ଣେଲ ଫରଷ୍ଟର ଘେଁସ ପୋଡ଼ି ମାଧୋ ସିଂହଙ୍କୁ ଫାଶି ଦେଲା ପରେ ଜମିଦାର ପରିବାର ବିଭିନ୍ନ ସ୍ଥାନକୁ ପଳାୟନ କଲେ । ମାଧୋ ସିଂହଙ୍କ ଚତୁର୍ଥ ପୁଅ ଐରୀ ସିଂହ ନିଜ ଅନୁଚରବର୍ଗଙ୍କ ସହ ପଳାୟନ କରି ୪୫ ଏକର ପରିମିତ ଉଚ୍ଚ ମାଳଭୂମି ମଧ୍ୟରେ ଅବସ୍ଥିତ ଏକ ପଥର ଚଟାଣ ଖୋଲ 'ସାଇଦୁଲି'ରେ ୧୨ଟି ପରିବାର ସହ ଆତ୍ମଗୋପନ କରି ରହିଥିଲେ । ରାତିରେ ଐରୀ ସିଂହ, ନିଜ ଦଳ ସହ ବାହାରି ଇଂରେଜ ସମର୍ଥକ ଗୌନ୍ତିଆ, ଜମିଦାରମାନଙ୍କ ଗ୍ରାମ ଲୁଣ୍ଠନ କରୁଥିଲେ । ରାସ୍ତାକଡ଼ରେ ଲୁଚି ଇଂରେଜ ସେନାମାନଙ୍କୁ ଆକ୍ରମଣ କରୁଥିଲେ । ଇଂରେଜ ଶାସନ ଏମାନଙ୍କୁ ଖୋଜିବା ଦାୟିତ୍ୱ ଜାରିଙ୍ଗ ଗାଁର ଦାମ ଗଡ଼ତିଆକୁ ଦେଲେ । ସେ ଜମିଦାରମାନଙ୍କୁ ଧରେଇବାରେ ଇଂରେଜମାନଙ୍କୁ ସାହାଯ୍ୟ କରୁଥିଲେ ।

ଦାମ ଗଡ଼ତିଆ ଐରୀ ସିଂହଙ୍କ ସନ୍ଧାନ ପାଇଁ ସନୁ ଭାଟ ଓ ଫଗୁନୀ ଭାଟେନ ଦମ୍ପତିଙ୍କୁ ନିଯୁକ୍ତ କଲେ । ସେମାନଙ୍କ ରିପୋର୍ଟ ଦେବାକୁ ଶ୍ରୀମଦ୍ ଚୌକିଦାରକୁ ଘୋଡ଼ା ସହ ନିଯୁକ୍ତି

କରାଯାଇଥିଲା । ଖବର ପାଇ ଦିନେ ଇଂରେଜବାହିନୀ ସାଇଦୁଲି ବା ସାଇବିବର ଘେରଉ କରି ବିବର ମୁହଁରେ କୁଟାକାଠି ଦେଇ ନିଆଁ ଲାଗି ଦେଲେ । ରୁଦ୍ଧଶ୍ୱାସ ହୋଇ ଐରୀ ସିଂହ ଓ ଅନ୍ୟ ୧୨ଟି ପରିବାର ସେଇ ଖୋଲ ମଧ୍ୟରେ ପ୍ରାଣତ୍ୟାଗ କଲେ । ଲୋକ ଗୀତରେ-

''ବାଇଶ ପାଁଚ ପାଲିରେ ଭାଇ
ଦାମ ଗଡ଼ତିଆ ବଡ଼
ନରସିଂ ନାଥେ କିରିଆ କଲା
ତାର୍ ପୁଓ୍‌କେ ମାଇଲା ପୋଡ଼ ।
-ସାଇଦୁଲି ଲୁକିଥିଲା ଅଇରୀ ସିଂହ ମଲା
ନାଇଁ ହଟ୍‌ଲା ହଟେ ସିଂହ କଲାପାଏନ ଗଲା ।
-କାଲିଆ ଘୁଡ଼ାଇ କାନ୍
ମାଧୋ ସିଂହର ପାଁଚଟା ଖୁଁଟି ଧନ ମୋର
ବାଁଚଲା ନାରେନ୍, ରସ ରସିକା ରତନ୍
ଚେଚା ଆଁଠି ଜୀବନ ଦେଲା
ମୁଡ଼୍‌କଟା ଘେଁସ ଦୁଆନ ।
-ଦୁକ୍‌ତା ଭାଙ୍ଗର ଗୁନ୍ ପିଲେ
ମାଗୁର ମାଛର୍ ମୁଁଡ଼୍
କୁଞ୍ଜଲ ସିଂହ ସାହେବକେ ମାର୍‌ଲା
ଅଲ୍ଲ ପଡ଼ଲା ମୁଡ଼''

## ହୁମୋ ବଉଲିରେ ମୁକ୍ତି ସଂଗ୍ରାମ

ହୁମୋ ବଉଲି ଗୀତରେ ସମ୍ବଲପୁରୀ ନାରୀର ସ୍ୱଦେଶ ଓ ମାତୃଭୂମି ପ୍ରୀତି ଅନବଦ୍ୟ । ବ୍ରିଟିଶ ଶାସନରେ ସେମାନଙ୍କ ଆଗରେ ପରଷା ଯାଇଥିବା ଆଧୁନିକତାର ବିଦେଶୀ ସ୍ୱର୍ଗକୁ ପଦାଘାତ କରି ସମଲପୁରୀ ଝିଅ ଗାଇଛି-

''ହମୋ ନୁନ ନୁନ ଦୁଶ ବଉଲିରେ
ହୁମୋ ନୁନ୍ ଦୁଶ
ନ ଖାଉଁ ନ ପାଉଁ ଗୁଆ ପନସ
ନ ଖାଉଁ ନ ପିଉଁ ଗୁଆ ପନସ

ନ ଯାଉଁ ତୁମର ଦେଶ ବଉଲିରେ
ନ ଯାଉଁ ତୁମର ଦେଶରେ..''

ସମ୍ବଲପୁରୀ ଝିଅ ପ୍ରତ୍ୟେକଟି ପ୍ରଜାବତ୍ସଳ ଶାସକକୁ ନିଜ ଭାଇ ହେବାର ଗୌରବ ଦେଇଛି ।

''କର୍‌ଡ଼ି ଦୁଇ ଖଁଡ଼ ଗଜା ବଉଲିରେ
କର୍‌ଡ଼ି ଦୁଇ ଖଁଡ଼ ଗଜା
ଆମର ସାନଭାଇ ରାଇଜେ ରଜା
ସୁଖରେ ପାଲୁଛେ ପର୍‌ଜା ବଉଲିରେ
ସୁଖରେ ପାଲୁଛେ ପର୍‌ଜାରେ...''

ଇଂରେଜ ସେନାଶିବିରକୁ ଆକ୍ରମଣ ଅଭିଯାନରେ ଯାଉଥିବା ସଂଗ୍ରାମୀକୁ ବଡ଼ଭାଇର ସମ୍ମାନ ଦେଇ କହିଛି-

''ସେମିଫୁଲ କେରା କେରା
ମୋର ଦଦା ଯଉଛେ ସିପେଇ ଡେରା
ଲୋକମାନେ ଟରାଟରା ବଉଲିରେ
ଲୋକମାନେ ଟରାଟରାରେ...''

ସୁରେନ୍ଦ୍ର ସାଏଙ୍କ ଭାଇ ଛବିଲ ସାଏଙ୍କୁ କୁଦୋପାଲି ଗାଁ ଭିତରେ ଇଂରେଜମାନେ ଗରିଲା ଯୁଦ୍ଧରେ ନିହତ କରିଥିଲେ ।

''ଉଲି ଉଲି ଉଲି ଉଲି
ଛବିଲ ସାଏକେ ବାଜଲା ଗୁଲି
କୁଦୋପାଲି ମଝା ଖୁଲି ବଉଲିରେ
କୁଦୋପାଲି ମଝା ଖୁଲିରେ...''

## ଭକାନୀ, ଧନ୍ଦାରେ ସ୍ୱାଧୀନତା ସଂଗ୍ରାମ

ସମ୍ବଲପୁରୀ ଭକାନୀ, ଧନ୍ଦା ବା ନାଁଦିଆରେ ମଧ୍ୟ ଇଂରେଜମାନଙ୍କ ଅନୁପ୍ରବେଶ ଘଟିଛି । ନାଲିପଗଡ଼ି ପରିହିତ ବ୍ରିଟିଶ ପୁଲିସ ଏକଦା ଆତଙ୍କର ପ୍ରତୀକ ଥିଲେ । ସେହିପରି ଭାରତଛାଡ଼ ଆନ୍ଦୋଳନରେ ଭାରତୀୟ ସତ୍ୟାଗ୍ରହୀଙ୍କ ଦମନ ପାଇଁ ଅନେକତ୍ର ଆମେରିକାନ ଟମି ବାହିନୀର ସାହାଯ୍ୟ ନିଆଯାଇଥିଲା । ଏହି ଲାଲ ବା ନୀଳ ସାହେବମାନଙ୍କ ପ୍ରତି ପ୍ରଚ୍ଛନ୍ନ

ଘୃଣା ସମ୍ବଲପୁରୀ ଭକାନୀରେ ଦେଖିବାକୁ ମିଳେ-

''ଲାଲ୍ ଲାଲ୍ ଲାଲ୍ ସାହେବ
ପାସ୍‌କେ ଗଲେ ମାର୍ ଖାଏବ...''

ଏମାନଙ୍କୁ ବିରୁଡ଼ି ସହ ମଧ୍ୟ ତୁଳନା କରାଯାଇଛି ।

## ହଲିଆ ଗୀତରେ ପାଇକ ବିଦ୍ରୋହ

୧୮୦୪ ମସିହାରେ ଇଂରେଜମାନେ ଖୋର୍ଦ୍ଧାର ଗଜପତି ରାଜାଙ୍କ ପ୍ରଭୁତ୍ୱ କ୍ଷୁର୍ଣ୍ଣ କରି ମେକର ଫ୍ଲେଚର କ୍ଷମତାସୀନ ହୋଇ ରାଜା ମୁକୁନ୍ଦ ଦେବଙ୍କୁ ବାରବାଟି ଦୁର୍ଗରେ ବନ୍ଦି କଲେ । ତାଙ୍କୁ ଶ୍ରୀମନ୍ଦିରର ସମସ୍ତ ଅଧିକାରରୁ ଛିନ୍ନ କରାଗଲା । ପରେ ତାଙ୍କୁ ମୁକ୍ତି ଦିଆଗଲେ ମଧ୍ୟ ଗଜପତିଙ୍କ ଅଧିନରେ ଯୁଦ୍ଧ, ଦେଶରକ୍ଷା, ସେବାରେ ନିୟୋଜିତ ପାଇକମାନଙ୍କ ଜାଗିର ଉଚ୍ଛେଦ କରି ନିଆଗଲା । ଅସନ୍ତୁଷ୍ଟ ପାଇକମାନେ ବକ୍‌ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ୧୮୧୭ରେ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ସଶସ୍ତ୍ର ସଂଘର୍ଷ କଲେ, ସେଇ ପାଇକ ବିଦ୍ରୋହର ଅସ୍ତ୍ରର ଝଣତ୍‌କାର ସମ୍ବଲପୁରୀ ହଲିଆ ଗୀତରେ ଏବେ ବି ଧ୍ୱନିତ ।

ରାଜନୀତି ଭାଙ୍ଗିଲା ବେଳେ ଲୋକନୀତି ଗଢ଼େ । ଆଜି ରାଜନୀତି ଯୋଗୁଁ ଉପକୂଳ ଓ ପଶ୍ଚିମାଞ୍ଚଳ ମଧ୍ୟରେ ବିଭେଦ, ଅନିମିୟତାର ପ୍ରାଚିର ଗଢ଼ି ତୋଳା ଯାଉଥିଲା ବେଳେ ସମ୍ବଲପୁରୀ ଲୋକଗୀତ ଆଜିଠୁ ୧୮୩ ବର୍ଷ ତଳେ ଖୋର୍ଦ୍ଧାରେ ଘଟିତ ପାଇକ ବିଦ୍ରୋହର ସ୍ୱରରେ ସ୍ୱର ମିଳାଇ ଆପଣେଇ ନେଇଥିଲା । ସେତେବେଳେ ଯାତାୟାତ, ଯୋଗାଯୋଗର ସାଧନ ନଥିଲା ବେଳେ ମଧ୍ୟ ତିନି ଶତାଧିକ କିଲୋମିଟର ଦୂରରେ ଇଂରେଜମାନଙ୍କ ବିରୁଦ୍ଧରେ ପାଇକମାନଙ୍କ ବିଦ୍ରୋହର ସ୍ୱରରେ ସ୍ୱର ମିଳାଇଥିଲା ସମ୍ବଲପୁରୀ ଲୋକଗୀତ । ସ୍ୱାଧୀନତା ପାଇଁ ପ୍ରାଣପାତ କରୁଥିବା ପାଇକମାନଙ୍କୁ ଈଶ୍ୱରଙ୍କ ଆସନ ଦେବା ସହ ଓଡ଼ିଆ ଜାତି ଓ ଭାରତୀୟ ନ୍ୟାଯ୍ୟ ଅଧିକାର ସଂଗ୍ରାମରେ ରତ୍ନସିଂହସାନ ଛାଡ଼ି ଜଗନ୍ନାଥଙ୍କୁ ବି ପାଇକ ଭାବରେ ରଣାଙ୍ଗନରେ ଅବତୀର୍ଣ୍ଣ ହେବାର ଦୃପ୍ତ ଆହ୍ୱାନ ଦେଇଥିଲା ।

''ବଏଲାରେ
ଗଉର ଘର ଗଲି ଯେ, ପାରି ଦେଲି ବେନି
ନେତ୍ର ଉଡ଼ିଶାରେ କିରେ ଖଂଜନୀ
ଖଂଜନୀ, ପାଇକ ରଘୁମଣି ହୋ...''

# ଲୋକନାଟକ

ପଶ୍ଚିମାଞ୍ଚଳର ଦୁଆରୀ ଗୀତରେ ସ୍ୱାଧୀନତା ସଂଗ୍ରାମର ସ୍ୱର ଅତି ତୀବ୍ର । ପଶ୍ଚିମ ଓଡ଼ିଶା ଓ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଅବିଚ୍ଛେଦ୍ୟ । ୧୮୫୭ର ପ୍ରଥମ ଭାରତୀୟ ସଂଗ୍ରାମର ତିନି ଦଶକ ଆଗରୁ ଭାରତର ଆଦି ମୁକ୍ତି ସଂଗ୍ରାମ ଏ ଅଞ୍ଚଳରେ ଆରମ୍ଭ ହୋଇଥିଲା ଓ ତଥାକଥିତ 'ସିପାହୀ ବିଦ୍ରୋହ' ଦମନର ୭ବର୍ଷ ପରେ ମଧ୍ୟ ଏ ସଂଗ୍ରାମ ଜାରି ରହିଥିଲା । ଏ ଆନ୍ଦୋଳନର ମହାନାୟକ ଥିଲେ ଜାତୀୟ ବୀର ସୁରେନ୍ଦ୍ର ସାଏ । ବ୍ରିଟିଶ ଶାସନ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମର ଧ୍ୱଜାଧାରୀ ସୁରେନ୍ଦ୍ରଙ୍କ ଅଗଣିତ ସହଯୋଗୀ ଶହୀଦ ହୋଇଥିଲେ । ଏ ସଂଗ୍ରାମ ସମ୍ବଲପୁରରୁ ମଧ୍ୟପ୍ରଦେଶର ରାୟପୁର, ବିଲାସପୁର ଯାଏଁ ସଂପ୍ରସାରିତ ଥିଲା । ଆଣ୍ଡାମାନ ସେଲୁଲାର ଜେଲରେ ଶହୀଦ ହୋଇଥିବା ଘେଁସ ଜମିଦାର ହଟେ ସିଂହ ଦେଶରେ ଏକମାତ୍ର ଶହୀଦ । ସେହିପରି ଘେଁସ ଜମିଦାର ପରି ଗୋଟିଏ ପରିବାରର ପିତା, ତିନି ପୁତ୍ର ଓ ଝିଅ ସ୍ୱାଧୀନତା ପାଇଁ ଶହୀଦ୍ ହେବାର ଉଦାହରଣ ଭାରତ ଇତିହାସରେ ଅଦ୍ୱିତୀୟ ଘଟଣା ।

ସ୍ୱାଧୀନତା ପାଇଁ ସ୍ୱତନ୍ତ୍ର ସଂଗ୍ରାମ ପରି ୧୯୧୯ରୁ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ,ଲବଣ ସତ୍ୟାଗ୍ରହ, ଆଇନଅମାନ୍ୟ ଆନ୍ଦୋଳନ, ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନ, ବାମଣ୍ଡା, ରେଢ଼ାଖୋଲ ପ୍ରଜାମଣ୍ଡଳ ଆନ୍ଦୋଳନ ସହ ଖଦୀ ଓ ଚରଖା ଆନ୍ଦୋଳନ, ମଦ ବିରୋଧୀ, ଅସ୍ପୃଶ୍ୟତା ନିରୋଧ ଆନ୍ଦୋଳନରେ ଏ ଅଞ୍ଚଳ ଅଗ୍ରଣୀ ରହିଥିଲା । ସମ୍ବଲପୁର ଜିଲା ସ୍କୁଲର ଛାତ୍ରମାନେ ଦେଶରେ ସର୍ବପ୍ରଥମ ସ୍କୁଲ ବର୍ଜନ କରିଥିଲେ । ୧୯୨୧ର ସମ୍ବଲପୁରର ହରତାଳ ସ୍ୱାଧୀନତା ସଂଗ୍ରାମରେ ଦେଶର ପ୍ରଥମ ହରତାଳ ଥିଲା । ଓଡ଼ିଶାର ପ୍ରଥମ ଜାତୀୟ ବିଦ୍ୟାଳୟ ସମ୍ବଲପୁରରେ ପ୍ରତିଷ୍ଠିତ ହୋଇଥିଲା । ୧୯୪୧ରେ ପ୍ରଫୁଲ୍ଲ ପଟ୍ଟନାୟକ ବରପାଲିରୁ ଯାଇ ବିହାରର ସାନ୍ତାଳ ପ୍ରଗଣାରେ ପାହାଡ଼ିଆ ସାନ୍ତାଳୀଙ୍କ ସଶସ୍ତ୍ର ବିଦ୍ରୋହର ନେତୃତ୍ୱ ନେଇଥିଲେ । ସମ୍ବଲପୁରୀ ଲୋକଗୀତ ସମୂହର ଛନ୍ଦେ-ଛନ୍ଦେ ଭାରତୀୟ ଗଣସଂଗ୍ରାମ ଚିତ୍ର ଦେଖିବାକୁ ମିଳେ । ଲୋକନାଟ୍ୟର ସୂତ୍ରଧାର 'ଦୁଆରୀ ଗୀତ' ମଧ୍ୟ ତାର ବ୍ୟତିକ୍ରମ ନୁହେଁ ।

ପଶ୍ଚିମ ଓଡ଼ିଶାର ଗ୍ରାମାଞ୍ଚଳରେ ଏକଦା ବହୁଳ ଭାବରେ ପ୍ରଚଳିତ ଲୋକନାଟ୍ୟ କହିଲେ ବିଭିନ୍ନ ପୌରାଣିକ ସୁଆଙ୍ଗ, ଗୀତାଭିନୟ, ହରଣ, ବଧ, ଡଁଡ଼, ବାଁଡିବୁତଲ୍ ଆଦି 'ନାଚ୍'କୁ ବୁଝାଏ । ପଶ୍ଚିମ ଓଡ଼ିଶାର ଏହି 'ନାଚ୍'ର ବିଦ୍ରୋହୀ ମହାନାୟକ ହେଉଛି ଦୁଆରୀ ।

ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ନାଟ୍ୟ ପରମ୍ପରାରେ ସଂଯୋଜକ ଭୂମିକାରେ ରହିଥିବା ସୂତ୍ରଧର,ଡଗର, ଦୂତ, ବିଦୂଷକ ଆଦି ଉପ-ଚରିତ୍ରମାନଙ୍କର ସମ୍ମିଳିତ ରୂପରେ ମହାନାୟକ ଦୁଆରୀର ଅବତାରଣା । ବିଭିନ୍ନ ନାଟ୍ୟର ଏକ ସଂଯୋଜକ ଚରିତ୍ର ହେବା ସାଙ୍ଗକୁ ଦୁଆରୀର ଏକ ସ୍ୱତନ୍ତ୍ର ଚରିତ୍ର ମଧ୍ୟ ରହିଛି । ସେ ରଜା ସହିତ ରଜା, ରାଣୀ ସହିତ ରାଣୀ, ରାମ ସଙ୍ଗେ ରାମ, ରାବଣ ସହ ରାବଣ, ଦାସୀ ସହ ଦାସୀ ଆଦି ସମସ୍ତ ଚରିତ୍ର ସହ ମିଶି ସେମାନଙ୍କ ଭୂମିକାକୁ ଜୀବନ୍ତ କରି ଗଢ଼ି ତୋଳିବାରେ ସହାୟକ ହୁଏ । ସହଗାନ, ସହାଭିନୟ ସହ ସହନୃତ୍ୟର ସେ ଅଂଶୀଦାର ହେଲେ ମଧ୍ୟ ତାର ବେଶଭୂଷା ସ୍ୱତନ୍ତ୍ର । ସ୍ୱାଧୀନ ଭାବରେ ମଞ୍ଚକୁ ଆସିଲା ବେଳେ ତା'ଗୀତ ମଧ୍ୟ ନିଆରା । ତା'ବେଶଭୂଷା ବିଚିତ୍ର, ହାସ୍ୟ ଉଦୀପକ,ଗୀତ, ଠାଣି ମଧ୍ୟ ସ୍ୱତନ୍ତ୍ର । ଦୁଆରୀ ଆସିଲା ବେଳେ ହସାଇ, ରସାଇ, ମଜ୍ଜାଇ ଆସି ଗଲା ପରେ କିଛି କାରୁଣ୍ୟ, ଅସହାୟତା ଓ ଚିନ୍ତାପାଇଁ ଖୋରାକ ଯୋଗାଇ ଚାଲିଯାଏ । ଏଇଠାରେ ହିଁ ତାର ସୁଦୂରପ୍ରସାରୀ ସ୍ଥାୟୀ ପ୍ରଭାବ, ଗୁରୁତ୍ୱ ଓ ଗୌରବ ।

ମୁଖ୍ୟତଃ ନାଟ୍ୟର ଗୁରୁମାନେ ହିଁ ଏହି ଗୁରୁତ୍ୱପୂର୍ଣ୍ଣ, ଅତ୍ୟନ୍ତ କଠିନ, ଜଟିଳ, ଚରିତ୍ରରେ ଅବତୀର୍ଣ୍ଣ ହୋଇଥାନ୍ତି । ନିଜ ପରିପାର୍ଶ୍ୱ, ପରିବାର, ସମାଜକୁ ନେଇ ସେ ନିଜେ ହିଁ ଜୀବନ୍ତ ଗୀତ ରଚନା କରେ ଓ ଜୀବନ ଓ ସମାଜର ବିଡ଼ମ୍ବିତ ଜ୍ୱଳନ୍ତ ପ୍ରଶ୍ନକୁ ମନୋରଂଜନ ଭୂମିକାରେ ପରିବେଷଣ କରେ । ମନୋରଂଜନ ମାଧ୍ୟମରେ ସମାଜ, ଶାସନର ପୀଡ଼ିତ ନାଡ଼ିକୁ ଜନସାଧାରଣଙ୍କ ଆଗରେ ନିଖୁଣ ପରିବେଷଣ ମୂଳରେ ଲୋକଙ୍କୁ ସଚେତନ ଓ ସକ୍ରିୟ କରାଇବାର ପ୍ରଚ୍ଛନ୍ନ ଭାବନା ରହିଥାଏ ।

ନାଟ୍ୟର ସବୁ ଚରିତ୍ରର ସଂଳାପ ଓ ଗୀତ ତାର ମୁଖସ୍ଥ ଥାଏ । ଅନ୍ୟାନ୍ୟ ଚରିତ୍ର ପାଇଁ ସେ ଅପ୍ରତ୍ୟକ୍ଷ ଭାବରେ ସ୍ମାରକର କାର୍ଯ୍ୟନିର୍ବାହ କରୁଥିଲା ବେଳେ ତାର ଅବାଧ ସ୍ୱାଧୀନତା ମଧ୍ୟ ରହିଥାଏ । ସମୟ, ସ୍ଥାନ, ପାତ୍ର ଦେଖି ଦର୍ଶକ ମନଲାଖି ଗୀତ, ନୃତ୍ୟ, ଅଭିନୟ, ଭାବ ପ୍ରୟୋଗକାରୀ ଦୁଆରୀମାନଙ୍କୁ ଏକ ଦୃଶ୍ୟରେ ବହୁ ଅଭିନୟ ସେମାନଙ୍କ ପରାକାଷ୍ଠା, ସାଧନା ବି ସିଦ୍ଧି ମଧ୍ୟ ।

ଦୁଆରୀ ଅନ୍ୟାନ୍ୟ ଚରିତ୍ରମାନଙ୍କର ଏକ ଧରାବନ୍ଧା ପ୍ରତିବିମ୍ବ ବା ପ୍ରତିଧ୍ୱନି ନହୋଇ ଏକ ସ୍ୱାଧୀନ ସତ୍ତା । ବିଦୂଷକ ପରିଚୟର ଛଦ୍ମ ଆବରଣ ଭିତରେ ସମାଜ-ରାଜନୀତିରେ ପ୍ରଚଳିତ ପାରମ୍ପରିକ ଦୁର୍ନିତି ଓ ଅନାଚାର ବିରୁଦ୍ଧରେ ଏକ ସୁଦୃଢ଼ ପ୍ରତିବାଦ ଓ ବିଦ୍ରୋହୀ ସ୍ୱର ।

ଦୁଆରୀ ହେଉଛି ଦାଣ୍ଡର ମଣିଷ । ଅନ୍ତପୁରକୁ ତାର ପ୍ରବେଶ ଅଧିକାର ନଥିଲେ ମଧ୍ୟ ସେ ଦର୍ଶକର ଅନ୍ତର ଭିତରେ ପ୍ରବେଶ କରେ । ସେ ମଧ୍ୟ ରାଜାଜ୍ଞା ପାଳନକାରୀ

ହୁକୁମ୍‌ର ଚାକର ଓ ଦ୍ୱାରପାଳ । ସେ ରାଜାଙ୍କ ରାଜ୍ୟ, ଉଆସ, ଭଣ୍ଡାର, ଧନ, ଜନ, ଜୀବନ, ମାନ ମର୍ଯ୍ୟାଦା ସବୁର ସଂରକ୍ଷକ, ହେଲେ ତା'ନିଜ ଜୀବନ ସଂସାର ଅସୁରକ୍ଷିତ । ଏତେ ପରେ ବି ତାକୁ ପୁରସ୍କାର ନୁହେଁ ଭର୍ତ୍ସନା ମିଳେ । କବି ମୁସ୍ତକୀମଙ୍କ ଦ୍ୱାରା ଗୀତରେ :

''ଶୁନ୍‌ବେ ଶାଲା ହାରାମଜାଦା
ଡାକ୍ ଦେଲେ ଝଟ୍ ଆସୁନାଇଁ ।
ବଡ଼ ଠାକୁରଙ୍କ ହୁକୁମ ଅଛି
ବସିଥିବୁ ତୁଇ ଦୁଆର ଜଗି
ଡାକୁ ସିନ୍ଧିଫୋଡ଼, ଦଗାବାଜ୍ ଚୋର୍
କୁକୁର ମାକର ପଶାବୁ ନାଇଁ ।
ମୁସ୍ତକିମ୍ ବୋଲେ ଶୁନ୍‌ବେ ଉଲୁ
କାଏଲ୍‌କେ ଆଏବୁ ବଡ଼େ ସଖାଲୁ
ଦିନ୍ ଷୁଲ୍‌ହ ଘଡ଼ି, ରାଏତ୍, ଷୁଲ୍‌ହ ଘଡ଼ି
ଠିକ୍ ଜଗିଥିବୁ ଶୁଇବୁଂ ନାଇଁ ।''

ସ୍ୱାଧୀନତା ପୂର୍ବରୁ ସାମାଜିକ ଅନାଚାର, ଦୂରାଚାର ବିରୁଦ୍ଧରେ ତା'ମନମତାଣିଆ ଗୀତ୍ ନାଚ୍ ମାଧ୍ୟମରେ ଦୁଆରୀ ପ୍ରତିବାଦ ଜଣାଇ ଆସୁଥିଲା । ସମାଜରେ ଦିନକୁ ଦିନ ବୃଦ୍ଧି ପାଉଥିବା ନୈତିକ ମୂଲ୍ୟବୋଧର ଅବକ୍ଷୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ଆଚାର, ବିଚାର, ନ୍ୟାୟଅନ୍ୟାୟ ବିହୀନ ନାରୀ ଜନ୍ମ ଧିକ୍‌କାରର ପାତ୍ର:

''ଧିକ୍ ଆଏ ମାଏଝି ଜନମ୍, ଆଚାର୍ ବିଚାର୍ କିଛି ନାଇଁ
ନିଆଏ ଅନିଆଏ ବିଚାର
ନାଇଁ କରନ୍ ରାଁଡ଼େ ଘଏତାଖାଇ''

ସାମାନ୍ୟ କଥାକୁ ବୁଝାମଣା ନହୋଇ ସ୍ତ୍ରୀମାନଙ୍କୁ ଛାଡ଼ପତ୍ର ଦିଆନିଆ ଭଳି ଗର୍ହିତ ଅପରାଧୀକୁ ସେ ଭଗବାନ ହୁଅନ୍ତୁ ପଛକେ ଦୁଆରୀ ଝିଂଗାସି କହେ :

''ଛିଃ ଛିଃ ଛିଃ ଛଡ଼ାର ଶଳେ
ଛଡ଼ାଛଡ଼ି ହେଲ ଛାର୍ କଥାରେ ।''

ଦୁଆରୀ ଭାଷା ଅଧାଶାସ୍ତ୍ରୀୟ, ଅଧା ଲୋକଭାଷା, ହିନ୍ଦୀ, ଇଂରେଜୀ, ବଙ୍ଗଳା ଆଦିର ସମ୍ମିଶ୍ରଣର ଏକ ଘାଣ୍ଟତିଅଣ । ଦୁଆରୀର ଭାଷା ସାର୍ବଭୌମ ଗଣତାନ୍ତ୍ରିକ । ତାର ଭାଷା ଆନ୍ତର୍ଜାତୀୟ । ଅତି ଭଦ୍ର ମାର୍ଜିତ ଭାଷା ସହ ଖୋଲାଖୋଲି ଅପଭ୍ରଂଶ ଭାଷାର ଯୁଗପଦ୍ ବ୍ୟବହାର ତାର ବୈଶିଷ୍ଟ୍ୟ । ଭାଷାର ସଂକୀର୍ଣ୍ଣତାବାଦୀଙ୍କ ପ୍ରତି ଏକ ଆହ୍ୱାନ ।

ଭାଷାର ଜଗତିକରଣର ଉଜ୍ଜ୍ୱଳ ନମୂନା । ଦୁଆରୀ ଗୀତରେ ବିଭିନ୍ନ ଭାଷା ଓ ଆଞ୍ଚଳିକ ଭାଷାର ଅବାଧ ସମ୍ମିଶ୍ରଣ ଭାଷାଗତ ସଂହତିର ଜ୍ୱଳନ୍ତ ଉଦାହରଣ । ଦୁଆରୀ ଭଳି ସାଧାରଣ ମଣିଷର ସମ୍ଭ୍ରାନ୍ତ ଶବ୍ଦାବଳୀ ଗୁରୁଚଣ୍ଡାଳ ଦୋଷ ପ୍ରୟୋଗଜନିତ ଶ୍ଳେଷ ମୂଳରେ ନିମ୍ନଶ୍ରେଣୀର ଉଚ୍ଚ, ଧନୀ ସହିତ ଗରୀବ, ଅଶିକ୍ଷିତ ସହ ଶିକ୍ଷିତ ଶ୍ରେଣୀର ସମକକ୍ଷ ହେବାର ଉଦ୍ଦାମ ଅଭିଳାଷର ଅନିର୍ବାର୍ଯ୍ୟ ପରିଣତି କେବଳ ରହିନାହିଁ ମନ କଥାକୁ ଅବାଧରେ ବୁଝାଇ ପାରିବାର ଉଦଗ୍ର ମୋହ ମଧ୍ୟ ବିଦ୍ୟମାନ ।

ଠିକ୍ ସେହିପରି ତାର ମନୋରଂଜକ ବିଚିତ୍ର ବେଶଭୂଷା । କେତେବେଳେ ଧୋତି, ଗେଂଜି, ଗାମୁଛା ତ କେତେବେଳେ ହାଫ୍‌ପେଣ୍ଟ,ଟୋପ୍ । ଗୋଟିଏ ଗୋଡ଼ରେ ପାଇଜାମା, ଫୁଲପେଣ୍ଟ ତ ଅନ୍ୟଗୋଡ଼ରେ ହାଫପେଣ୍ଟର ଅଧେ ବା ଡୋରିଆ ଅଣ୍ଡରୱେର । ଗୋଟିଏ ପଦରେ ଛିଣ୍ଡା ବୁଟ୍ ତ ଆର ପାଦରେ ଚପଲ । ମୁହଁରେ କେତେବେଳେ ଚୂନ ତ କେତେବେଳେ କଳା । ତାର ଚାଲିବା,ନାଚିବା, ଗାଇବା,କଥାକହିବା ଠାଣି ମଧ୍ୟ ନିଆରା । ତା'ପାଇଁ ଆଗରୁ ବାଜୁଥିବା, ଗୀତରେ ବାଜୁଥିବା ବାଦ୍ୟ ମଧ୍ୟ ହାସ୍ୟ ରସାତ୍ମକ । ତାର ଏ ରଙ୍ଗୀନ ବେଶଭୂଷା ତାକୁ 'ରଂଗିଆ ଦୁଆରୀ' ଭାବେ ମଧ୍ୟ ପରିଚିତ କରାଇଥାଏ ।

''ଦ୍ୱାରୀ ଡାକେ ଦାଣ୍ଡେ ଦାଣ୍ଡେରେ
ମେଛା କାଣ୍ଡେ କାଣ୍ଡେ ।
ଦ୍ୱାରୀ ଆସେ ଧାଇଁ ଧାଇଁରେ
ଘରେ ମାଏଝି ନାଇଁ । (ଚୈତନ୍ୟକଣ୍ଟା)
''-ରଂଗିଆ ଦୁଆରୀ ଅଇଲା ଲୋ
ରଂଗିବୁଢ଼ୀ ମନ ମୋହିଲା ।
ରଂଗିଆ ଜଂଘିଆ, ଦଗଲି ରଙ୍ଗିଆ
ରଂଗା ଟୋପି ଶିରେ ବୋହିଲା ଲୋ ।
ମୋ କନିଆଁ କାଲି, ଦେଲା ଲାତ ମାରି
ହୁଣ୍ଡାର ମଲକୁ ପିଇଲି
ରଂଗ ବାନା ଭୁଜେ, କି ରଂଗ ବିରାଜେ
ରଂଗେ ମୁସ୍ତକିମ କହିଲା ଲୋ ।''

ଦୁଆରୀ କାହାର ଧାର ଧରେ ନାହିଁ କି କାହାକୁ ଖାତର ମଧ୍ୟ କରେ ନାହିଁ । ସ୍ୱାଧୀନତା ତାର ପ୍ରଥମ ଓ ଏକମାତ୍ର ସର୍ତ୍ତ । ତା' ବ୍ୟଙ୍ଗମୟ ଆଖିରେ ଚଣ୍ଡାଳୁଣୀ ବାଛୁରୀ ଲାଂଜକୁ ଦାନ୍ତକାଠି କରି ମଇଷିର ଅନ୍ତନାଡ଼ି ଓଲାରି ଖାଉଥିବା ଜଣେ ବଂଭଙ୍ଗ ସ୍ତ୍ରୀ ହେଲା ବେଳକୁ

ଦେବର୍ଷି ନାରଦ ''ଖଡ଼ାଚୋର ଜଟିଆ ଖେଚଡ଼ା ବୁଢ଼ା'' ଯିଏ ''ହେଟା ଲଣ୍ଡିର ଚିତା ଚଢ଼ଇତନ ମାଖି ପଟର ପଇତା ପିନ୍ଧିବାବାଲା । ଦୁଆରୀର ବ୍ୟଙ୍ଗବାଣରୁ କାହାର ତ୍ରାହି ନାହିଁ :

''ଦେଖ୍‌ତାର ଭାଇ କଳିଯୁଗ
କେନ୍‌ତା ଢଂଗେ ଚଲୁଛେ ।
ଗାଁ ଗାଁ ହେଲା କାରଖାନା ଜୁରି
ଉଧ୍‌ଲିଆ ପଲାଲେ ଜୁଲି କେ ଜୁଲି
ଜୁଲି କେ ଜୁଲି
ଭୋଜ୍ ନାଇଁ ଲାଗେ, ଭାତ୍ ନାଇଁ ଲାଗେ
ଆଛା, ସଜ୍ ବନିଛେ ।

ସ୍ୱାଧୀନତା ପରବର୍ତ୍ତି ଏ ପ୍ରଦୂଷିତ ସମାଜର ବେକାରୀର ଚିତ୍ର ଦେଇ ଗାଏ ଦୁଆରୀ

-ଗାଁ ଗାଁ କେ ହେଲା ବତର
କିଏ ଚଢୁଛେ ସାଏକଲ ମଟର, ସାଏକଲ୍ ମଟର
କେନ୍ ଲୋକଟା ବିନା କାମେ
ଆସି ଯାଇ ମରୁଛେ... ଦେଖ୍‌ତରେ ଭାଇ....

ସ୍ୱାଧୀନତା ପାଇଁ ଲୋକଙ୍କ ପରି ଦୁଆରୀର ସ୍ୱପ୍ନ ମଧ୍ୟ ଭାଙ୍ଗିଛି । ଗଣତନ୍ତ୍ର ନାମରେ ଦେଶରେ ଚାଲିଥିବା ମଦ, ଟଙ୍କା ଓ ବାହୁବଳର ଆତଙ୍କରାଜରେ ଗଣତନ୍ତ୍ର ଭୂଲୁଣ୍ଠିତ । ତା'ସହିତ ଦାରିଦ୍ର୍ୟର ଅସହାୟତା ମଧ୍ୟ ରହିଛି । ମୁଠେ ଖାଇ, ଖଣ୍ଡେ ପିନ୍ଧି ଦଣ୍ଡେ ବଞ୍ଚିବାର ବୈକଲ୍ୟ ମଧ୍ୟ ରହିଛି । ଭ୍ରଷ୍ଟ ରାଜନେତାଙ୍କୁ ଆକ୍ଷେପ କରିଛି ଦୁଆରୀ ଗୀତ :

''କେ ବଲୁଛେ ଦେଲେ ଭୋଟ୍
ମୁଇଁ ଦେମି ଟଙ୍କା ଲୋଟ୍, ଟଙ୍କା ଲୋଟ୍
ଛୁଆ ପୁତାକେ ଶୁଏଇ କରି
ମାଏଝି ଭୋଟ୍ ଦଉଛେ
ଦେଖ୍‌ତରେ ଭାଇ କଳିଯୁଗ....
(ନାରାୟଣ ପୂଜାରୀ, ଅଡ଼ାପରା)

ଦୁଆରୀର ସଂସାର ଖଟିଖିଆ ମଣିଷର ସାଧାରଣ ସଂସାର । ଦୁଆରୀ ହସେ, ଦୁଆରୀ କାନ୍ଦେ, ଜଞ୍ଜାଳ ଜାଲରେ ଛନ୍ଦି ହୁଏ । ତା'ପିଲାଝିଲା ଭୋକ ଓପାସରେ ଛିଣ୍ଡାକୋତରା କନ୍ଥା, ଅଖା ଘୋଡ଼େଇ ଶୋଇବାର ଅପଚେଷ୍ଟା କରନ୍ତି । ସେ ବର୍ଷାରେ

ଭିଜେ, ଖରାରେ ସିଝେ, ଶୀତକାକରରେ କାଲୁଆ ପାଲଟି ପାଏ । ତା' ପରିବାର କୁଣ୍ଡା ପିଡ଼ିଆକୁ ପିଠା ବୋଲି ଖାଏ, କୁଣ୍ଡା ଖିରୀ ଖାଇବାକୁ ମାଇପ ଲୁଷେ । ଏକ ତଥାକଥିତ ସମୃଦ୍ଧ ଶାସନ ବ୍ୟବସ୍ଥାରେ ଏକ ଅସହ୍ୟ ଦୁଃଖଦୁର୍ବିପାକ ମଧ୍ୟରେ କାଳାତିପାତ କରୁଥିବା ଜଣେ ସାଧାରଣ ଭାରତୀୟ ପ୍ରଜାନାଗରିକର ସାଧାରଣ ଜୀବନ ସଂସାର । ତା'ଉପରେ ପୁଣି ଚାକିରୀର ତାବ୍ଦା -

''କିଏ ପାଡୁଛି ବୋବାଳି ଦ୍ୱାରୀ ଦ୍ୱାରୀ ବୋଲି
ଟୋଳ ପିରୁଆକୁ ପିଠା ବୋଲି ଖାଉଁ
ରାତି ଛେରି ଛେରି ମଲି ।
କୁଣ୍ଡା ଖିରୀ ପାଇଁ ନାରୀ ଲୁଷିଛଇଁ
ଏଣୁ ଗୋଡ଼ ଘଷୁଥିଲି...''

ପୃଥିବୀର ସବୁଦେଶରେ ବିଦେଶୀ ସାମ୍ରାଜ୍ୟବାଦୀ ଉପନିବେଶବାଦ ବିରୁଦ୍ଧରେ ସେ ଦେଶର ସାହିତ୍ୟପରି ନାଟକ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି । ରାଜନୀତିକ ସଂଗ୍ରାମ ପାଇଁ ଜନମାନସକୁ ସମାବେଶ କରିବାର ମହନୀୟ ଭୂମିକାରୁ ମୁହଁ ମୋଡ଼ି ନାହିଁ । ସେ ଦିଗରେ ପଶ୍ଚିମାଞ୍ଚଳର ନାଟ୍ ମଧ୍ୟ ପଛେଇ ଯାଇନାହିଁ ।

ଉନବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ହିଁ ଭାରତର ବିଭିନ୍ନ ଅଞ୍ଚଳରେ ଦେଶଭକ୍ତି ମୂଳକ ଗୀତ ଓ କବିତା ରଚ଼ନା ହୋଇଆସିଛି । ଦେଶଭକ୍ତିପୂର୍ଣ୍ଣ ନାଟକ ଲିଖିତ ଓ ଅଭିନୀତ ହୋଇ ଆସିଛି । ଏହି ସମୟରେ ବଙ୍ଗର ରଙ୍ଗଲାଲ-ବନ୍ଦୋପାଧାୟ, ମଧୁସୂଦନ ଦତ୍ତ, ସତ୍ୟେନ୍ଦ୍ରନାଥ ଠାକୁର, ଦୀନବନ୍ଧୁ ମିତ୍ର, ଦକ୍ଷିଣ ରଂଜନ ଚଟ୍ଟୋପାଧ୍ୟାୟ ଆଦିଙ୍କ ଯୁଗାନ୍ତକାରୀ ନାଟକଗୁଡ଼ିକରେ ନୀଳଚାଷୀ, ଚା'ବଗାନ ଶ୍ରମିକ ଓ ଜନସାଧାରଣଙ୍କ ଉପରେ ଗୋରାସରକାରର ଅମାନୁଷିକ ଅତ୍ୟାଚାରର ମର୍ମଥରା ନଗ୍ନଚିତ୍ର ପ୍ରକାଶ ପାଇଲା । ୧୮୬୦ରେ ଉପେନ୍ଦ୍ରନାଥ ଦାସ ତାଙ୍କର 'ସୁବୋଧ-ଦିନୋଦିନୀ' ନାଟକର ପ୍ରଥମ ପୃଷ୍ଠାରେ ଲେଖିଲେ - ''ଯଦି ମୁହୂର୍ତ୍ତକ ପାଇଁ ହେଲେ ସ୍ୱାଧୀନ ଜୀବନ ମିଳିଯାଏ, ତେବେ ସ୍ୱର୍ଗସୁଖ ଓ ନନ୍ଦନକାନନ ଲୋଡ଼ା ନାହିଁ ।''

ଦେଶଭକ୍ତି ମୂଳକ ନାଟକର ଅପାର ଲୋକପ୍ରିୟତା ଓ ପ୍ରଭାବ ଲୋକଙ୍କୁ ବ୍ରିଟିଶ ବିରୋଧୀ ସଙ୍ଗଠନମାନଙ୍କୁ ମୁହାଁଇବାକୁ ଲାଗିଲା । ସେମାନଙ୍କ ସଙ୍ଗଠନକୁ ମଜବୁତ୍ କରି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଶକ୍ତି ଯୋଗାଇବାକୁ ଲାଗିଲା । ଏଥିରେ ଭୟଭୀତ ହୋଇ ଇଂରେଜ ସରକାର ୧୮୭୬ ମସିହାରେ ''ନାଟ୍ୟାଭିନୟ ନିୟନ୍ତ୍ରଣ ଆଇନ'' ପ୍ରଣୟଣ

କରି ଅବିଳମ୍ୱେ ଲାଗୁ କଲେ । ବରିଷ୍ଠ ପୁଲିସ ଅଧିକାରୀମାନଙ୍କୁ ପାଣ୍ଡୁଲିପି ଦେଖାଇ ଲିଖିତ ଅନୁମତି ପାତ୍ର ବିନା ଯେ କୌଣସି ନାଟ୍ୟାଭିନୟ ନିଷିଦ୍ଧ କରାଗଲା । ଏହାର ବିରୁଦ୍ଧାଚରଣକାରିଙ୍କୁ କଠୋର କାରାବାସରେ ଦଣ୍ଡିତ କରାଗଲା ।

୧୮୭୬ ହେଉଛି ସେହି ଯୁଗାନ୍ତକାରୀ ବର୍ଷ, ଯାହା ଆଗରେ ନିଛକ ବିଦୂଷକଧର୍ମୀ ଦୁଆରୀ ଭୂମିକା ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଲା । ଏବଂ ଏହାର ତୀବ୍ର ପ୍ରଭାବ ସମ୍ବଲପୁର ଅଞ୍ଚଳରେ ଅନୁଭବ କରାଗଲା । ଅବଶ୍ୟ ସରକାର, ପୁଲିସ ଆଖିରେ ଧୂଳି ଦେଇ ଦେଶଭକ୍ତ,ନାଟ୍ୟକାରମାନେ କେଉଁ ପଥ ଅନୁସରଣ କଲେ ବା ନିରବ ରହିଲେ, ବିଭିନ୍ନ ଭାଷାରେ ଏ ବିଷୟ ଗବେଷଣାର ବିଷୟ । ହେଲେ ଓଡ଼ିଆ ନାଟକ ଆଲୋଚ଼ନାରେ ଏହି ଚରିତ୍ରକୁ ଏକ ଗୌଣ ଚରିତ୍ର ଭାବରେ ଉପେକ୍ଷା କରାଯାଇଥିବାରୁ ତାର ସଠିକ ବିବରଣୀ ମିଳେନାହିଁ । କିନ୍ତୁ ପଶ୍ଚିମାଞ୍ଚଳର ଏବେ ପ୍ରାୟ ଅବଲୁପ୍ତ ନାଚ୍‌ର ଦୁଆରୀଗୀତରେ ବ୍ରିଟିଶ ବିରୋଧୀ ସଂଗ୍ରାମର ଉତ୍ତାପ ବେଶ୍ ବାରିହୁଏ । ଏ ଦିଗରେ ଏଯାଏଁ ଆମ ନାଟ୍ୟପ୍ରେମୀ ବା ନାଟ୍ୟ ଆଲୋଚ଼କମାନଙ୍କ ଦୃଷ୍ଟି ଯାଇନାହିଁ । ନାଚ୍‌ର ଅବଲୁପ୍ତି ସହିତ ଦୁଆରୀ ଅଭିନେତାମାନେ ମଧ୍ୟ ମରିହଜି ଗଲେଣି । ସଂଗ୍ରହ ଅଭାବରୁ ମଧ୍ୟ ସବୁ ଗୀତ ପାଇ ହେଉ ନାହିଁ । ତେବେ ଏ ଦିଗରେ ଏକ ଆଦ୍ୟ ଉଦ୍ୟମ କରି ଏଯାବତ୍ ଯାହା ଗୀତ ମିଳି ପାରିଛି, ସେଥିରୁ ଏ ଉଜ୍ଜ୍ୱଳ ଦିଗର ଯଥେଷ୍ଟ ଚିତ୍ର ମିଳେ ।

ନାଚ୍‌ର ସ୍ୱୀକୃତ କାନଭାସ୍ ଭିତରେ ଥାଇ ମନୋରଂଜକ ବ୍ୟଙ୍ଗ ମାଧ୍ୟମରେ ଦୁଆରୀଗୀତ ଏ ଦେଶ ଓ ଜାତିର ମହାନ୍ ସାଂସ୍କୃତିକ ପରମ୍ପରା ଓ ଐତିହ୍ୟର ସୁରକ୍ଷା ଦାୟିତ୍ୱ ଗ୍ରହଣ କଲା । ଏକ ଦିଗରେ ଅର୍ଥଗୃଧ୍ନ, ଅପଶାସନର ନିର୍ମମ ଅତ୍ୟାଚାର, ଦୁର୍ନୀତି, ଶୋଷଣ, ପୀଡ଼ନ ସହିତ ଦେଶୀୟ ସମାଜର ଥିଲାବାଲା ଓ ନଥିଲାବାଲାଙ୍କ ଶ୍ରେଣୀବୈଷମ୍ୟକୁ ସମସାମୟିକ ସମାଜଚିତ୍ରଣ ମାଧ୍ୟମରେ ପରିପ୍ରକାଶ କଲା । ପାରିବାରିକ ଦୁରବସ୍ଥା ଓ ଦୁର୍ବଳ ଅର୍ଥନୀତିର ଉପହାସ ମାଧ୍ୟମରେ ବିଷମତା ଓ ପରାଧୀନତା ବିରୁଦ୍ଧରେ ବିଦ୍ରୋହର ଦୃପ୍ତ ଡାକରା ଦେଲା ।

ଘନ ଅନ୍ଧାର ରାତିରେ ବି ରାଜାଜ୍ଞା ପାଇଲେ ଦୁଆରୀ ଘରେ ଶୀତରେ ଥରଥର ଭୋକିଲା ପରିବାରକୁ ଛାଡ଼ି ଯିବାକୁ ବାଧ୍ୟ । ତାର ନିଜ ବିଶ୍ରାମ ଉପରେ, ନିଜ ଆଖିର ନିଦ ଉପରେ ବି ତାର ଅଧିକାର ନାହିଁ । ତାର ଦୁର୍ଦ୍ଦଶାର ଚିତ୍ର ଦୁଆରୀ ଗୀତରେ ପ୍ରକାଶ କରେ-

"ପରପଞ୍ଚ ହୋ, ପର ଚାକିରୀ କରା ।
ସଁପୁର ଚାଉଳ ବାବୁଙ୍କ ଆହାର, ବାବୁଙ୍କ ଆହାର
ଆମ୍ଭର କରମରେ ପଡ଼େ ବଗଡ଼ା
ବରି ବାଏଗନ କଦଲି ତାଙ୍କର କଦଲି ତାଙ୍କର
ଆମ୍ଭର କରମେ କୁଶେର ବାଡ଼ିର ଖଡ଼ା
ପରପଞ୍ଚ ହୋ..."
(ଡିଙ୍ଗର, ସାଡେରା)

ଭାରତ କୃଷିପ୍ରଧାନ ଦେଶ । ଏହାର ସଂସ୍କୃତି ଆତ୍ମନିଯୁକ୍ତିକାରୀ ଓ ଲକ୍ଷେଲୋକ ପୋଷା ସଂସ୍କୃତି । ହେଲେ ବିଦେଶୀ, ଶିଳ୍ପ ସଂସ୍କୃତି ଚାକିରୀ ସଂସ୍କୃତି । ଏ ସଂସ୍କୃତି ବ୍ୟକ୍ତିଗତ ସ୍ୱାର୍ଥର ସଂସ୍କୃତି । ଇଂରେଜମାନେ ଏ ଦେଶର କୃଷି, ଗ୍ରାମ୍ୟଶିଳ୍ପ ନଷ୍ଟ କରି ଶିଳ୍ପ ସଂସ୍କୃତି ଓ ନୌକରଶାହୀ ଲଦିବା ବିରୋଧରେ ଦୁଆରୀ କହିଲା-

"ପରହର ସେବା କେତେ କରିବି
ଛି ଛି ଚାକିରୀ ଛାଡ଼ିବି
ଜଙ୍ଗଲକୁ ଯିବି ଲଙ୍ଗଲ ଆନିବି ଲଙ୍ଗଲ ଆନିବି
ନଇବାଲି ଚାଷ କରିବି, ଛି ଛି ଚାକିରୀ ଛାଡ଼ିବି !" (ଡିଙ୍ଗର ସା, ସାଡେରା)

ସ୍ୱରାଜ୍ୟ, ଗ୍ରାମ୍ୟ ସ୍ୱରାଜ୍ୟ, ସ୍ୱଦେଶୀ ଜିନିସ ପ୍ରୀତିର ସ୍ୱର ଏଭଳି ଅନେକ ଛନ୍ଦ୍ରେ ଛନ୍ଦ୍ରେ ଗୁଞ୍ଜିତ :

"ଦୂତ ଦୂତ ବୋଲି ମତେ କିଏ ଡାକୁଛି
ତାର ଡାକ ଗୋଟି ମୋ କର୍ନେ ପଡ଼ୁଛି
ପରର ଚାକିରୀ କରା ପଡ଼ୁଅଛି ଧରାମରା
ଏ ଚାକିରୀ ନ କରିବ ମନେ ଭାବୁଛି ।" (ବାଗମୁଡ଼ିଆ, ସାଡେରା)

ବିଦେଶୀ ଶିଳ୍ପ ସଂସ୍କୃତିକୁ ଯେତେବେଳେ ଭାରତୀୟ ନାରୀ 'ଫେଶନ' ଭାବରେ ଗ୍ରହଣ କରେ, ସେମାନଙ୍କ ଏ ଅବସ୍ଥାରେ ଦୁଆରୀ ଗୀତର ଛାତି ଫାଟିଗଲା । ଏହାକୁ ପୌରାଣିକ ସର୍ବନାଶୀ କଲିଯୁଗର ଆଗମନ ଭାବେ ସେ ଅଭିହିତ କଲା :

-କଲିଯୁଗ ଆଏଲା, ସତ ପଲାଲା ଆସନ ଛାଡ଼ି
କାହୁଁ ଆଏଲା କାପକାପି ଫୁଲ

ଲୁକି ଗଲାନ ଚଉଁରୀ ମୁଡ଼ି ।
ସପଟାପର୍‌କେ କିଏ ପଚାରେ
ବୁଢ଼ୀଏ ପିନ୍ଧଲେ ବଂଗାଲି ସାଢ଼ି । (ଦେବାର୍ଚନ ପ୍ରଧାନ, ଅଢ଼ାପରା)

ବିଦେଶୀ ସଂସ୍କୃତି ଅର୍ଥସର୍ବସ୍ୱ ସଂସ୍କୃତି । ଏହା ଘରର ପରିବାରିକ ଜୀବନ ଭାଙ୍ଗି ଦେଇ ସମସ୍ତଙ୍କୁ ସ୍ୱାର୍ଥପର କରିଦେଲା । ବାପ-ପୁଅର ସଂପର୍କ ମଧ୍ୟରେ ପାଚେରୀ ଗଢ଼ିଲା :

''ହଇକି ଭାଇରେ କଳିକାଳ ଆସି ହେଲା ଠିଆ
ବାପର୍ କଥା ପୁଅ ନାଇଁମାନେ
ବହ ଭାଜୁଛେ ଜିଆ''
(ଦେବାର୍ଚ୍ଚନ ପ୍ରଧାନ, ଅଢ଼ାପର ।)

ଦାଂପତ୍ୟ ସଂପର୍କରେ ମଧ୍ୟ ବ୍ୟାଘାତ ଓ ବ୍ୟବଧାନ ସୃଷ୍ଟି କରାଗଲା । 'ବୈକୁଣ୍ଠ ସମାନ ଘର'ର ଅବଧାରଣା ଭାଙ୍ଗି ଚୁରମାର ହେଲା :

-ଘଏତା ମାଏପୋ ଗାଇଲ୍ ଲାଗ୍‌ଲେ
ନେଇ ଯା' ତୋର ଛୁଆ
ବଏଲା ବଏଲେଁ
ମନ୍‌କେ ଆଏଲେ ରହେମି ରହେମି, ରହଲେ ରହେମି
ଠିକ୍ ଟାକିଥିବୁ ନନୀ ତୋତେ ନାକ୍ ତଲମେ ଠିଆ

-ଭାରିଜା ମୋ ସାକ୍ଷାତେ ଚଣ୍ଡୀ
ମୋତେ ସେ ଦଉଛେ ଭଣ୍ଡି
ଦିନରାତି ତାର ପାଦ ନ ଘଷିଲେ
ପିଠିରେ ଝାଡୁ ପ୍ରହାର ଖାଉଛି...
ଦ୍ୱାରୀ ଦ୍ୱାରୀ କିଏ ଡାକୁଛି...''

ସ୍ୱାଧୀନତା ସଂଗ୍ରାମକାଳରେ ଦମନର ଶିକାର ସାଧାରଣ ମଣିଷର ମୁଖର ରାଜନୈତିକ ସ୍ୱର ଭାବରେ ନିଜକୁ ନିୟୋଜିତ କରି ଦୁଆରୀ ଗୀତ ନିଜକୁ ଏକ କମନ୍ ମେନର, ମାମୁଲି ମଣିଷର ସ୍ୱରରେ ପରିଣତ କରିଛି । ତାର ପ୍ରତିଧ୍ୱନି ଏବେ ବି ବେଳେବେଳେ ଶୁଣାଯାଏ । ଲୋକଙ୍କ ଭିତରେ ସେମାନଙ୍କ ବାସ୍ତବ ଅବସ୍ଥାର ନିଷ୍ଠୁର ପ୍ରତିଫଳନ ଘଟାଇ ମୁକ୍ତିର ପ୍ରଖରପ୍ରବକ୍ତା ଭାବରେ ଲୋକ ହୃଦୟ ଓ ଜନମାନସକୁ ଆନ୍ଦୋଳିତ କରିଛି ।

ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ଲୋକଙ୍କ ମଧ୍ୟରେ ସମ୍ବେଦନା ଓ ସମର୍ଥନ ସୃଷ୍ଟି କରିଛି । ସେମାନଙ୍କୁ ଅଭୟ ଆଶ୍ରୟ ଓ ସହାୟକ ପ୍ରେରଣା ଯୋଗାଇଛି । ସେମାନଙ୍କ ସ୍ୱର ଓ ଅଭିଯାନକୁ ସଂପ୍ରସାରିତ କରି ଏଭଳି ଏକ ଭୂମିକା ଗ୍ରହଣ କରିଛି, ଯାହା ବିନା ଆନ୍ଦୋଳନର ସଫଳତା ସଂଦିଗ୍ଧ ହୋଇ ରହିଥାନ୍ତା ।

ଅଣ୍ଡରଗ୍ରାଉଣ୍ଡ ବିଦ୍ରୋହୀ ଭାବରେ ହାସ୍ୟରସର ପୁଟ ଭିତରେ ବିଦେଶୀ ପ୍ରଶାସନ ଆଖିରେ ଧୂଳି ଦେଇ ମନୋରଞ୍ଜନ ମାଧ୍ୟମରେ ଜନସାଧାରଣରେ ସ୍ୱାଧୀନତାର ସଂଦେଶ ଓ ସଚେତନତା ଏଭଳି ଭାବରେ ଦେଇ ଆସିଛି ଯେ ତାହା ଦେଖି ଇଂରେଜ ଅଧିକାରୀ ବର୍ଗ ହସି ହସି ଗଡ଼ିଛନ୍ତି, ପୁରସ୍କୃତ କରିଛନ୍ତି ଓ ନିଜ ଅଜାଣତରେ ଏ ମାଟିରୁ ନିଜର ଚେର ମଧ୍ୟ କାଟିଛନ୍ତି ।

ତା'ପରବର୍ତ୍ତୀ ସମୟରେ ଏ ଗୀତ ନିଜକୁ ସାମାଜିକ ସଂସ୍କାର କ୍ଷେତ୍ରରେ ନିୟୋଜିତ କରିଛି । ପରବର୍ତ୍ତୀ କାଳରେ ତାହା ମନୋରଞ୍ଜନ ଓ ସମାଜ ସଂସ୍କାରରେ ନିଜକୁ ଏକ ଧରାବନ୍ଧା ଚରିତ୍ରରେ ପରିଣତ କରିଛି । ନିଜେ ଦୁଆରୀମାନେ ମଧ୍ୟ ନିଜର ଏ ଐତିହାସିକ ମହାନ୍ ଭୂମିକା ନେଇ ଉଦାସୀନ । ଲୋକସେବାକୁ ବ୍ରତ କରି ନେଇଥିବା ଏ ଦୁଆରୀ ଗୀତ ବାସ୍ତବରେ ଏକ ରଣ ସଙ୍ଗୀତର ପର୍ଯ୍ୟାୟବାଚୀ । ପଶ୍ଚିମାଞ୍ଚଳର ଏହି ମହାଚରିତ୍ରଟି ସବୁବେଳେ ସାଧାରଣ ଗଣଜୀବନର ସ୍ୱାର୍ଥର ସୁରକ୍ଷା କରି ଆସିଛି । ହେଲେ ଆଜି ଯେତେବେଳେ ଦେଶ ଆଉଥରେ ସ୍ୱାଧୀନତା ପରେ ଦେଶୀ କଳାସାହେବଙ୍କ ହାତରେ ପରାଧିନ ହୋଇଛି, ରାଜନୀତିକ, ସାଂସ୍କୃତିକ, ଧାର୍ମିକ ବିପର୍ଯ୍ୟୟ ଚାଲିଛି, ସେତେବେଳେ ରାଜତନ୍ତ୍ର, ସାମନ୍ତ ଓ ଉପନିବେଶବାଦ, ସାମାଜିକ ଜୀବନର ବିଷମତା ଘନେଇ ଉତ୍କଟ ହୋଇ ଚାଲିଛି, ପ୍ରଜାନାଗରିକର ଅମଙ୍ଗଳକାରୀ ରାଜସତ୍ତାର ବିରୋଧିତା ଏକ ଅନିବାର୍ଯ୍ୟ ଆବଶ୍ୟକତାରେ ପରିଣତ ହୋଇଛି । ଯେତେବେଳେ କି ଏହି ଗୀତର ବେଶୀ ଆବଶ୍ୟକତା ଉପଲବ୍ଧି କରାଯାଇଛି; ଠିକ୍ ସେତିକିବେଳେ ବିଦେଶୀ ନାଟ୍ୟ, ସଙ୍ଗୀତ, ସଂସ୍କୃତି, ବୈଦ୍ୟୁତିକ ଗଣମାଧ୍ୟମ ଓ ପ୍ରଚାରତନ୍ତ୍ରର ବନ୍ୟାରେ ଦୁଆରୀ ଗୀତ ଦ୍ରୁତ ଅବଲୁପ୍ତ । ଗ୍ରାମାଞ୍ଚଳ ଭିତ୍ତିକ ନାଟ୍ୟର ଜୀବନ ସରି ଆସିବା ସାଙ୍ଗକୁ ଜନସ୍ୱାର୍ଥର ଏ ବିଦ୍ରୋହୀ ପ୍ରହରୀ ଧୀରେ ଧୀରେ ଅନ୍ତରାଳରେ ଲୁଚି ଯିବା ପୂର୍ବରୁ ଯାହାବି ସମ୍ଭବ ତା' ସ୍ୱରର ସଂଗ୍ରହ ଓ ସଂରକ୍ଷଣ ଜାତୀୟ କର୍ତ୍ତବ୍ୟ । ନହିଲେ ଦ୍ୱାରୀ ବିନା ଆମ ଦ୍ୱାର ଠିଆମୁକୁଳା ଓ ଅରକ୍ଷିତ ହୋଇଯିବ, କିଛି ହେଲେ ସୁରକ୍ଷିତ ରହିବ ନାହିଁ ।

❑❑❑

# ସ୍ୱପ୍ନଭଙ୍ଗର ସ୍ୱରଲିପି

ସ୍ୱାଧୀନତା ସଂଗ୍ରାମ ଯଜ୍ଞର ପୂର୍ଣ୍ଣାହୁତି ପଡ଼ିଲା । ସଂଗ୍ରାମୀମାନଙ୍କ ସ୍ୱାଧୀନତାର ସାଧନା ପୂର୍ଣ୍ଣ ହେଲା । ପଛରେ ଅନେକ ରକ୍ତ, ତ୍ୟାଗ, ତପସ୍ୟା, ନିର୍ଯ୍ୟାତନାର ଅଶ୍ରୁଳ ନଈ ଓ ବିଭାଜନର ବିଭୀଷିକା । ମଧ୍ୟରାତ୍ରୀର ଅନ୍ଧକାରରେ ଅଗଷ୍ଟ ୧୫,୧୯୪୭ରେ ତ୍ରିରଙ୍ଗା ଉପରକୁ ଉଠିଲା, ୟୁନିୟନ ଜେକ୍ ତଳକୁ ନଇଁଲା । ସେ ଅଦମ୍ୟ ଉଦ୍ଦୀପନାର ଉତ୍ସବରେ ଜାତିର ପିତା ରାଜଧାନୀରୁ ଶହଶହ ମାଇଲ ଦୂର ଦଙ୍ଗାଗ୍ରସ୍ତ ନୂଆଖାଲିରେ ଅନଶନରତ ଥିଲେ ।

ସ୍ୱାଧୀନତା ପରେ ସଂଗ୍ରାମୀମାନଙ୍କ ସମସ୍ତ ସ୍ୱପ୍ନ ଧୂଳିସାତ ହେଲା । ବିଭାଜନର ରକ୍ତାକ୍ତ କ୍ଷତରେ ଦେଶ ଭାଙ୍ଗି ପଡ଼ିଥାଏ । ମଦଭାଟି ଉଠିଲା ନାହିଁ । ଦେଶୀ ଦୋକାନ ସହିତ ବିଦେଶୀ ମଦର ବିକ୍ରୀ-ବନ୍ୟା ଛୁଟିଲା । ପ୍ରାଦେଶିକ ସରକାରମାନେ କରିଥିବା ନିଶା ନିବାରଣ ଶପଥ କୁଆଡ଼େ ମିଳେଇଗଲା । କେନ୍ଦ୍ର ସରକାର ଏହା ପ୍ରତି ଧ୍ୟାନ ଦେଲେ ନାହିଁ ।

କୃଷକ ଓ ଶ୍ରମିକଙ୍କ ହିତ ଲାଗି କୌଣସି ଫଳପ୍ରଦ ପଦକ୍ଷେପ ନିଆଗଲା ନାହିଁ । କୃଷିଜାତ ଦ୍ରବ୍ୟର ମୂଲ୍ୟ ବୃଦ୍ଧି ଘଟିଲା କିନ୍ତୁ କୃଷକମାନେ ଲାଭ ପାଇଲେ ନାହିଁ । କଳଜାତ କୃଷି ଉପକରଣ, ସାର, କୀଟନାଶକର ମୂଲ୍ୟ ବହୁ ଗୁଣ ବଢ଼ିଲା । କୃଷକଙ୍କ ଦୁରବସ୍ଥା ଦୂର ନ ହେଲା ବେଳକୁ ଶ୍ରମିକମାନଙ୍କ ମଜୁରି ବୃଦ୍ଧି ହେଲା ନାହିଁ । କିଣିଖିଆଙ୍କ ଅଭାବ, ଅନଟନ ବଢ଼ିଲା । ଭୂସଂସ୍କାର ଯଥାଯଥ ଭାବରେ କାର୍ଯ୍ୟକାରୀ ହେଲା ନାହିଁ । ସୁଷମ ଜଳସେଚନ ବ୍ୟବସ୍ଥା କରାଗଲା ନାହିଁ । ପୂର୍ବରୁ କଂଗ୍ରେସ ଦ୍ୱାରା ଆହୂତ କୃଷକ, ଶ୍ରମିକ ସମ୍ମିଳନୀମାନଙ୍କରେ ଯେଉଁ ଦାବି, ପ୍ରସ୍ତାବମାନ ଗୃହୀତ ହୋଇଥିଲା ତାହା କାର୍ଯ୍ୟକାରୀ ହେଲା ନାହିଁ ।

ଗଡ଼ଜାତ ଓ ଜମିଦାରୀ ଉଚ୍ଛେଦ ହୋଇଥିଲେ ମଧ୍ୟ ରାଜସ୍ୱ ବିଭାଗ କର୍ମଚାରୀମାନଙ୍କ ଦାଉ ଅଧିକ ହେଲା । ଗାନ୍ଧୀଙ୍କ ହତ୍ୟା ସାଙ୍ଗକୁ ଗାନ୍ଧୀ ଦର୍ଶନ ଓ ହରିଜନ ଅସ୍ପୃଶ୍ୟ ଶବ୍ଦର ପର୍ଯ୍ୟାୟବାଚୀ ହୋଇ ପଡ଼ିଲା । ମନ୍ଦିରଗୁଡ଼ିକର ହରିଜନ ପ୍ରବେଶ କେବଳ କଥାରେ ରହିଗଲା । ହରିଜନ ନିର୍ଯ୍ୟାତନା ବ୍ୟାପକ ହେଲା । ଖଦୀ ଭଣ୍ଡାରମାନ 'ଖଦୀ ଏମ୍ପୋରିୟମ'ରେ ପରିଣତ ହୋଇ ବଡ଼ବଡ଼ିଆ ଏବଂ ତଥାକଥିତ ଦେଶସେବୀଙ୍କ ପାଇଁ ମିଶ୍ରିତ ସରୁ ଖଦୀ ତିଆରି କଲା । ଖଦୀର ମୂଲ୍ୟ ବଢ଼ିଲା ।

ବିଧାନସଭା ଓ ସଂସଦ ନିର୍ବାଚନରେ ପ୍ରକୃତ ନିଷ୍ପାପର କର୍ମୀଙ୍କ ସ୍ଥାନ ରହିଲା ନାହିଁ । ସୁବିଧାବାଦୀ, ଧନୀ, ରାଜା ଜମିଦାରମାନଙ୍କୁ କଂଗ୍ରେସ ଟିକଟ ଦିଆଗଲା, ଯେଉଁମାନେ ନିଜ ଧନ, ପ୍ରଭାବ, ବାହୁବଳ ଖଟାଇ ଭୋଟ କିଣିବାକୁ ସମର୍ଥ ଥିଲେ । ପ୍ରାଦେଶିକ ଶାସନରେ ସ୍ୱାର୍ଥପର ଓ କ୍ଷମତାଲିପ୍ସୁଙ୍କ ସଂଖ୍ୟା ବଢ଼ିଲା । ପ୍ରକୃତ ନେତା ଓ ଭଣ୍ଡ ନେତାଙ୍କୁ ଚିହ୍ନିବା କାଠିକର ପାଠ ହେଲା ।

କ୍ରମଶଃ ସଂପୂର୍ଣ୍ଣ ଶାସନ କଳ ଧନୀ ଓ ସୁବିଧାବାଦୀଙ୍କ କରଗତ ହେଲା । ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ସେମାନେ ସରକାରୀ ମନ୍ତ୍ରୀ, ଅଫିସରମାନଙ୍କୁ ଭ୍ରଷ୍ଟ କଲେ । ଅମଲାତନ୍ତ୍ରିକ ଦୁର୍ନୀତିରେ ଦେଶ ଉବୁଟୁବୁ ହେଲା ।

ସୂତା ଓ ବସ୍ତ୍ର ଉପରେ ଏଭଳି କଂଟ୍ରୋଲ ଜାରି ହେଲା ଯେ ଲୋକଙ୍କ ପକ୍ଷରେ ତାହା ସୁବିଧା ଓ ସହଜରେ ପାଇବା ସମ୍ଭବ ହେଲା ନାହିଁ । କେନ୍ଦ୍ର ଓ ପ୍ରାଦେଶିକ ସରକାର ପୁଞ୍ଜିପତି, ଧନୀ, ବ୍ୟବସାୟୀ, ଶିଳ୍ପପତିମାନଙ୍କ ଠାରୁ ଭୋଟ ଚାନ୍ଦା ନେଇ ସେମାନଙ୍କୁ ସବୁ ରକମ ସୁବିଧା ସୁଯୋଗ ଯୋଗାଇ ଦେଲେ । ଅତ୍ୟାବଶ୍ୟକ ଦ୍ରବ୍ୟର ଦରବୃଦ୍ଧି ସାଙ୍ଗକୁ କଳାବଜାର ବ୍ୟାପକ ହେଲା ।

ସ୍ୱାଧୀନତା ପୂର୍ବରୁ କଂଗ୍ରେସ ସଂଗଠନ ଓ ମହାଅଧିବେଶନ ଗୁଡ଼ିକର ଅଧିକାଂଶ ବ୍ୟୟ ଭାର ଘନଶ୍ୟାମ ଦାସ ବିରଳା ପ୍ରଭୃତି ଧନୀ ବ୍ୟବସାୟୀମାନେ ବହନ କରି ଆସୁଥିଲେ । ପ୍ରମାଣିତ ହୋଇଗଲା ଯେ ଦେଶ ପ୍ରତି ସେମାନଙ୍କ କୌଣସି ରକମ ଦରଦ ନଥିଲା ବରଂ ସେମାନେ ଚାଲ କରି ଦେଶରେ ନିଜର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ପୁଞ୍ଜି ଖଟାଇଥିଲେ ।

ସ୍ୱାଧୀନତା ପରେ ଗାନ୍ଧୀ, ନେହେରୁ ସମେତ ସମସ୍ତ ତୁଙ୍ଗ ନେତା ଭାରତର ଅର୍ଥନୀତିକୁ ଗୌରବର ସହିତ ସେମାନଙ୍କ ହାତକୁ ଟେକିଦେଲେ । ଏହି ଅର୍ଥନୀତିର ମୂଳ କଥା ଥିଲା 'ଟ୍ରଷ୍ଟିସିପ୍' । ଏଭଳି ଜାରଜ ଅର୍ଥନୀତି, ଯାହା ଏବେ ବି ମିଶ୍ରିତ ଅର୍ଥନୀତି ଭାବରେ ରହିଛି ତାହା ସ୍ୱାଧୀନତା ସଂଗ୍ରାମୀମାନଙ୍କ ମନରେ ଗଭୀର ଆଘାତ ଦେଲା ।

ସେମାନଙ୍କ ମନରେ ଦୃଢ଼ ଧାରଣା ହେଲା ଯେ ମିଳିଥିବା ସ୍ୱାଧୀନତାଟା ସେମାନେ ଲଢ଼େଇ କରି ପାଇଥିବା ସ୍ୱାଧୀନତା ନୁହେଁ ବରଂ ଇଂରେମାନେ ହାତ ଟେକି ଭିକ୍ଷାରେ ହସ୍ତାନ୍ତରିତ କରି ଯାଇଥିବା ସ୍ୱଦେଶ ଶାସନର କ୍ଷମତା, ଯାହାକୁ ଏ ଦେଶର ନେତୃବର୍ଗ ପୁଣି ଥରେ ପୁଞ୍ଜିପତିମାନଙ୍କ ହାତରେ ଟେକିଦେଲେ ।

ଦେଶର ସଂପୂର୍ଣ୍ଣ ଅର୍ଥନୀତି ଧନୀ, ପୁଞ୍ଜିପତିଙ୍କ କବଳିତ ହେଲା । ସରକାର ହାତରେ ରହିଲା ନାମକୁ ମାତ୍ର ପ୍ରଶାସନ ଓ ସେନା ବାହିନୀ । ଭାରତର ଅର୍ଥ ସବୁ ଧନୀ, ପୁଞ୍ଜିପତିଙ୍କ

ପରିବାରର ପୈତୃକ ସଂପତ୍ତି ହୋଇ ରହିଲା । ସରକାର ସେ ସଂପତ୍ତିର ପ୍ରହରୀ ଭୂମିକାରେ ରହିଲେ ।

ଅତ୍ୟନ୍ତ ପ୍ରଗତିଶୀଳ ସଂଗ୍ରାମୀମାନେ ଯୋଗ ଦେଲେ କମ୍ୟୁନିଷ୍ଟ ପାର୍ଟିରେ, ଆଉ ଦଳେ ଯୋଗ ଦେଲେ ସୋସାଲିଷ୍ଟ ପାର୍ଟିରେ । ମୋହ ବଶତଃ ଯେଉଁମାନେ କଂଗ୍ରେସ ଛାଡ଼ି ପାରିଲେ ନାହିଁ ସେମାନେ ସର୍ବୋଦୟ ସଙ୍ଗଠନରେ ଯୋଗଦେଲେ ।

ସ୍ୱାଧୀନତାର ଅନେକ ପୂର୍ବରୁ ଭିନ୍ନଭିନ୍ନ ମତବାଦର ନେତୃବୃନ୍ଦ ସ୍ୱତନ୍ତ୍ର ଭାବେ ଅନୁଷ୍ଠାନମାନ ଗଠନ କରି ସାରିଥିଲେ । ଏଥି ମଧ୍ୟରେ ମୁସଲିମ୍ ଲିଗ୍, ଫରଓ୍ୱାର୍ଡ ବ୍ଲକ୍, କମ୍ୟୁନିଷ୍ଟ ପାର୍ଟି ଅନ୍ୟତମ । ରାଜନୈତିକ ସ୍ୱାଧୀନତା ପ୍ରାପ୍ତି ପରେ ଅର୍ଥନୈତିକ ସ୍ୱାଧୀନତା, ଆର୍ଥିକ ବୈଷମ୍ୟ ଦୂରୀକରଣ ପାଇଁ ବିଭିନ୍ନ ଦଳରେ ମିଶି ସେମାନେ ସଂଗ୍ରାମ ବଜାୟ ରଖିଲେ ।

କମ୍ୟୁନିଷ୍ଟମାନେ ତେଲେଙ୍ଗାନାରେ ଆରମ୍ଭ କଲେ ସଶସ୍ତ୍ର ଭୂମି ଆନ୍ଦୋଳନ । ଏହା ଫଳରେ ସର୍ବୋଦୟୀଙ୍କ ମନରେ ଛନକା ପଶିଲା । ସେମାନେ ହଠାତ୍ ସଚେତନ ହୋଇ ଉଠିଲେ । ଗୋଟିଏ ଦିଗରେ ଗାନ୍ଧୀ ଓ ଅହିଂସାକୁ ରଖି ଅନ୍ୟ ଦିଗରେ କମ୍ୟୁନିଷ୍ଟମାନଙ୍କ ସମ୍ଭାବିତ ଭୂମିକ୍ରାନ୍ତି ଦେଖି ବିନୋବାଙ୍କ ମନରେ ବିକଳ୍ପ ଭୂମି ଆନ୍ଦୋଳନ 'ଭୂ-ଦାନ' ବିଚାର ଜାତ ହେଲା ।

ହେଲେ ତେଲେଙ୍ଗାନା ଭୂମି ଆନ୍ଦୋଳନକୁ ଭଣ୍ଡୁର କରିବାକୁ କରାଯାଇଥିବା ବିନୋବାଙ୍କ 'ଭୂ-ଦାନ ଆନ୍ଦୋଳନ' ମଧ୍ୟ ଆପେ ଆପେ ଭଣ୍ଡୁର ହୋଇଗଲା ।

ସ୍ୱାଧୀନତା ପରେ ବହୁ ସଂଗ୍ରାମୀ ବିଭିନ୍ନ ଗଠନାତ୍ମକ କାର୍ଯ୍ୟ, ସର୍ବୋଦୟ, ଭୂ-ଦାନ, କୃଷକ ସଂଗଠନ, ଶ୍ରମିକ ସଂଗଠନ, ସମାଜ ସେବା ଆଦିରେ ଯୋଗ ଦେଲେ । କେତେକ ସମାଜବାଦୀ, ସାମ୍ୟବାଦୀ, ବିଶ୍ୱ ଶାନ୍ତି, ଗଣ ସଂଗ୍ରାମରେ ଯୋଗଦେଲେ ।

ସମ୍ବଲପୁର ଜିଲା ମଧ୍ୟ ଏହାର ବ୍ୟତିକ୍ରମ ନଥିଲା ।

ପାଣିମୋରାର ଧନଞ୍ଜୟ ପଧାନ ବୁଦ୍ଧଗୟା ସମ୍ମିଳନୀରେ ଜୟପ୍ରକାଶ ନାରାୟଣଙ୍କ ଆହ୍ୱାନ କ୍ରମେ ଭୂ-ଦାନ ତଥା ଦେଶ ସେବା ପାଇଁ ଜୀବନ ଦାନ ଘୋଷଣା କରିଥିଲେ ।

ସି.ପି.ଆଇ.ର ତତ୍କାଳୀନ ସଂପାଦକ ବି.ଟି.ରଣଦିବେ ପାର୍ଟିର ଲକ୍ଷ୍ୟ ସାଧନ ନିମନ୍ତେ ସାମ୍ୟବାଦୀ ଭାବଧାରାରେ ପାର୍ଟିର ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଅବ୍ୟାହତ ରଖିବାକୁ, ଆବଶ୍ୟକ ସ୍ଥଳେ ଲୁଚିଛପି କାର୍ଯ୍ୟ କରିବାକୁ ଆହ୍ୱାନ ଦେଇଥିଲେ ।

ଏହି ଡାକରାରେ ଓ ମାର୍କସବାଦ ଦ୍ୱାରା ପ୍ରଭାବିତ ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୂଜାରୀ, ମାୟାଧର ପୁରୋହିତ ୧୯୪୫ରେ ବ୍ରଜରାଜନଗରର, ତେଲେନପାଲିଠାରେ ଗଙ୍ଗାଦତ୍ତ ଦାସଙ୍କ ଘରେ ସମ୍ବଲପୁରର କମ୍ୟୁନିଷ୍ଟ ପାର୍ଟି ଶାଖା ଗଠନ କଲେ । ପରେ ଫକୀର ବେହେରା, କୃପାସିନ୍ଧୁ ଖୁଣ୍ଟିଆ, ଭାଗୀରଥି, ପ୍ରଫୁଲ୍ଲ, ଗଙ୍ଗାଧର ସରାଫ, ମଙ୍ଗଳୁ ପ୍ରଧାନ, ଟୁକୁର୍ଲା ଗୌନ୍ତିଆଣୀ ଇଚ୍ଛାବତୀ ମେହେର ପ୍ରମୁଖ ଏଥିରେ ଯୋଗ ଦେଲେ ।

୧୯୪୬ରେ ଭାରତୀୟ ଜାତୀୟ କଂଗ୍ରେସ କମିଟିର ନିର୍ଦ୍ଦେଶ ଅନୁସାରେ ଦଳରୁ ଭିନ୍ନ ମତାବଲମ୍ବୀମାନଙ୍କୁ ବହିଷ୍କାର କରାଗଲା । ଦୟାନନ୍ଦ କଂଗ୍ରେସ ସଂପାଦକ ଦାୟିତ୍ୱ ଶିବନାରାୟଣ ପାଢ଼ୀଙ୍କୁ ଦେଇ ନିଜେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜିଲା ସଂପାଦକ ରହି ଦଳର ନିର୍ଦ୍ଦେଶ ଅନୁସାରେ କଂଗ୍ରେସ କାର୍ଯ୍ୟକ୍ରମକୁ ଆଗେଇ ନେବାରେ ପୂର୍ଣ୍ଣ ସହଯୋଗ କଲେ ।

୧୯୪୬ରେ ଗଡ଼ଜାତ ଆନ୍ଦୋଳନରେ ପ୍ରଜାମଣ୍ଡଳ ସଂଗଠନ ତଥା ଜନସାଧାରଣଙ୍କୁ ପ୍ରେରଣା ଦେବା କାର୍ଯ୍ୟ ସେ ଗୁପ୍ତରେ ଚଳାଇଥିଲେ ।

ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଡ. ହରେକୃଷ୍ଣ ମହତାବଙ୍କ ପରାମର୍ଶରେ ସେ ଗୁପ୍ତ ଭାବରେ 'ଆମକୋ-ସିମକୋ ଗୁଳି କାଣ୍ଡ'ର ଅନୁସନ୍ଧାନ କରିବାକୁ ଯାଇଥିଲେ । ସମ୍ବଲପୁରରୁ ସେ ବାମଣ୍ଡା, ରେଢ଼ାଖୋଲ ଓ ସୋନପୁର ପ୍ରଜାମଣ୍ଡଳ ଆନ୍ଦୋଳନ ପାଇଁ ବିଭିନ୍ନ ପଦକ୍ଷେପ ନେବାରେ ସାହାଯ୍ୟ କରିଥିଲେ । ବରଗଡ଼ ଅଞ୍ଚଳର କୃଷକ ସଂଗଠନ, ବ୍ରଜରାଜନଗର ଓରିଏଣ୍ଟ କାଗଜ କଳ ଶ୍ରମିକ ସଂଗଠନ ପାର୍ଟିର ଅନ୍ତର୍ଗତ ଥିଲା ।

ସ୍ୱାଧୀନତା ସଂଗ୍ରାମ ସରିଛି । ସମ୍ବଲପୁର ପୋଲିସ ପରେଡ ପଡ଼ିଆରେ ସ୍ୱାଧୀନତା ସଂଗ୍ରାମୀ ତାମ୍ରପତ୍ର ପ୍ରଦାନ ଉତ୍ସବରେ ବ୍ରିଟିଶ ଜେଲ ଯାତନାରେ ସଂପୂର୍ଣ୍ଣ ଦୃଷ୍ଟିଶକ୍ତି ହରାଇଥିବା ଓଡ଼ିଶା-ବିହାରର ସ୍ୱାଧୀନତା ସଂଗ୍ରାମୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ କୋହଭରା କଣ୍ଠରେ ସରକାରୀ ମାଇକ୍‌ଟା ଯେମିତି କ୍ଷୋଭରେ ବିଳପି ଉଠୁଥିଲା-

-ମାନ୍ୟବର ଡେପୁଟି କମିଶନର ମହୋଦୟ,

ମୁଁ ଅସ୍ୱୀକାର କରୁଛି ଆପଣଙ୍କ ଏ ମାନପତ୍ରକୁ । ମୋତେ ଦିଆ ଯାଉଥିବା ଏ ସ୍ୱାଧୀନତା ସଂଗ୍ରାମୀ ଫଳକକୁ ଚାରି ଖଣ୍ଡ କରି ଚିରି ଦିଆଯାଉ । ଖଣ୍ଡିଏ ମଦଭାଟିରେ, ଖଣ୍ଡିଏ କଳାବଜାରୀଙ୍କ ଦୋକାନ ଆଗରେ, ଖଣ୍ଡିଏ କଚେରିରେ ଆଉ ଖଣ୍ଡେ ବିଧାନସଭା ଭବନରେ ଝୁଲାଇ ଦିଆଯାଉ ।

ଆମେ ଦିନେ ଯେଉଁ ସ୍ୱାଧୀନତାର ସ୍ୱପ୍ନ ଦେଖିଥିଲୁ, ତାହା ଆଜି ଚୂର୍ଣ୍ଣୀଭୂତ । ସେହି ଭଙ୍ଗା କାଚ ଟୁକୁରାରେ ଝଲସି ଉଠୁଛି ଏ ଦେଶର ଅତ୍ୟନ୍ତ ବିକୃତ, ବୀଭତ୍ସ ଓ ଭଙ୍ଗାରୁଜା ଚିତ୍ର । ଏ ସ୍ୱାଧୀନତାଟା ତ ମଦ ବ୍ୟବସାୟୀମାନଙ୍କ ସ୍ୱାଧୀନତା, ମଦ୍ୟପ ଛାତ୍ର, ଅଧ୍ୟାପକ ସର୍ବସାଧାରଣଙ୍କ ସ୍ୱାଧୀନତା, ଦୁଇ ନମ୍ବରୀ କଳା ବଜାରୀମାନଙ୍କ ସ୍ୱାଧୀନତା, ନିର୍ଲଜ୍ଜତାର ସହ ଲାଞ୍ଚ ନେବା ଲାଗି କଚେରିରେ ଛୋଟବଡ଼ କର୍ମଚାରୀମାନଙ୍କ ସ୍ୱଧୀନତା...ଶାଗୁଣା ତ ମୃତ ଶବର ମାଂସ ଭକ୍ଷଣ କରେ, ହେଲେ ଆଜିର ବିଧାୟକ, ସାଂସଦ, ମନ୍ତ୍ରୀମାନେ ଏ ଜୀବନ୍ତ ଦେଶର ପୁଳାପୁଳା ମାଂସ ଓଲାରି ଖାଉଛନ୍ତି । ଭାଇମାନେ, ସ୍ୱାଧୀନତାର ଶବକୁ ଏବେ ଶାଗୁଣାମାନେ ଝୁଣି ଖାଉଛନ୍ତି । ଝୁଣି ଖାଉଛନ୍ତି ମୋର ଭାରତ ମାତାଙ୍କୁ ତିଳତିଳ କରି...

ଦେଶର କୃଷକ, ଶ୍ରମିକ ଓ ଅବହେଳିତ ଜନସାଧାରଣଙ୍କ ପକ୍ଷରେ ପ୍ରକୃତ ସ୍ୱରାଜ୍ୟ ହାସଲ ହୋଇପାରି ନାହିଁ । ସ୍ୱାଧୀନତାଟା ତ ଆମର ଆହୁରି ଆସିନାହିଁ । ସଂଗ୍ରାମ ତ ଏବେ ଆରମ୍ଭ ହେବ...' ସେ ଦିନଠୁ ଆଜିଯାଏଁ ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ କାନରେ ଜାତୀୟ ସଙ୍ଗୀତ ସ୍ୱାଧୀନତାର ଶୋକଗୀତ ଭାବରେ ଶୁଭୁଛି, ଡାକରା ଦେଉଛି ଆଉ ଏକ ସ୍ୱାଧୀନତା ସଂଗ୍ରାମର ?

❑❑❑

# ପରିଶିଷ୍ଟ

## ପ୍ରଥମ ସ୍ୱାଧୀନତା ସଂଗ୍ରାମୀଗଣ : ୧୮୨୭-୧୮୬୭

୧. ରାଣୀ ରତ୍ନ କୁମାରୀ
୨. ଅବଧୂତ ସିଂହ : ବିଶେଇକେଲା (ଭେଡ଼େନ)
୩. ଅନନ୍ତ ସିଂହ : ମୁଣ୍ଡୋମାହାଲ
୪. ଅଙ୍ଗାରୀ ସିଂହ : କୁଡ଼ାବଗା
୫. ଅର୍ଜୁନ ସିଂହ : ଲୋଇସିଂହ
୬. ଅରକ୍ଷିତ
୭. ଅନିରୁଦ୍ଧ ଗୁଡ଼ିଆ
୮. ଅଜିତ ସିଂହ : ବରଗଡ଼
୯. ଉଜଳ ସାଏ : ଖିଣ୍ଡା
୧୦. ଉଦନ୍ତ ସାଏ : ଖିଣ୍ଡା
୧୧. କମଳ ସିଂହ : ଘେଁଷ
୧୨. କହ୍ନାଇ ନାୟକ : କୋଲାବିରା
୧୩. କୁଞ୍ଜଲ ସିଂହ : ଘେଁଷ
୧୪. କମଳ ସିଂହ ଦାଓ : ଲଖନପୁର
୧୫. କରୁଣାକର ନାୟକ : କୁଲାବିରା
୧୬. କର୍ଣ୍ଣା ଗଡ଼ିତିଆ : କୁଲାବିରା
୧୭. କୃପାସିନ୍ଧୁ ବେହେରା
୧୮. କୃଷ୍ଣ ବେହେରା
୧୯. କଂଗାଲୁ ସେଠ
୨୦. କାନକଟା ଗଡ଼ତିଆ : ଗଡ଼ଲୁଇସିଂହ
୨୧. ଖଗେଶ୍ୱର ସିଂହ ଦାଓ
୨୨. ଖରସଲ ଭୋଇ
୨୩. ଖଗୁ ନାଏକ : କୋଲାବିରା

୨୪.	ଗଜରାଜ ସିଂହ
୨୫.	ଗଣେଶ ଉପାଧ୍ୟାୟ : ସିଂହାବଗା
୨୬.	ଗଙ୍ଗାଧର ସରାଫ
୨୭.	ଗୋପାଳ ଧ୍ରୁଅା : ଦଲକି
୨୮.	ଗଣପତି ସିଂହ : ସାରସମାଲ
୨୯.	ଗୋବିନ୍ଦ ସିଂହ : ଝାରସୁଗୁଡ଼ା
୩୦.	ଚନ୍ଦନ ଗଡ଼ତିଆ : ଲୁଇସିଂହା
୩୧.	ଚନ୍ଦ୍ର ସିଂହ
୩୨.	ଚନ୍ଦ୍ର ବେହେରା : ବାମଣ୍ଡା
୩୩.	ଛବିଳ ସାଏ
୩୪.	ଜାଲ୍ଲ ସାଏ
୩୫.	ଜନାର୍ଦ୍ଦନ ସିଂହ : ପାହାଡ଼ଶ୍ରୀଗିଡ଼ା
୩୬.	ଜଗବନ୍ଧୁ ହୋତା
୩୭.	ଜନାର୍ଦ୍ଦନ ଗଡ଼ତିଆ
୩୮.	ଜୟ ସିଂହ
୩୯.	ଜଗବନ୍ଧୁ ବାବୁ
୪୦.	ଟଣକାର ବେରିହା
୪୧.	ଡମ୍ବରୁ ବହିଦାର
୪୨.	ଡମ୍ବରୁ କନ୍ଧ
୪୩.	ତ୍ରିଲୋଚନ ରାଏ : ପାହାଡ଼ଶ୍ରୀଗିଡ଼ା
୪୪.	ଦଦୁଆ ଝାଙ୍କର
୪୫.	ଦିଆଳ ସରଦାର, ଖରସଲ
୪୬.	ଦୁର୍ଯ୍ୟୋଧନ ସିଂହ, ରାମପୁର
୪୭.	ଧ୍ରୁବ ସାଏ
୪୮.	ଧନ ସିଂହ
୪୯.	ଧରଣୀଧର ମିଶ୍ର
୫୦.	ନନ୍ଦହେଁ ଦିଓ୍ୱାନ

୫୧. ନରସିଂହ ଘଟୁଆଲ କନ୍ଧ
୫୨. ନାରାୟଣ ସିଂହ : ସୋନାଖାନ
୫୩. ନୀଳାମ୍ବର ସିଂହ
୫୪. ପୀତାମ୍ବର ସିଂହ : ପାଟକୁଲୁଣ୍ଡା
୫୫. ପଦ୍ମନାଭ ଗୁରୁ
୫୬. ପିଲଉ ସା
୫୭. ପେର୍ଦା କନ୍ଧ
୫୮. ପୁରୁଷୋତ୍ତମ ଉପାଧ୍ୟାୟ : ସିଂହାବଗା
୫୯. ପ୍ରସାଦୀ ଉପାଧ୍ୟାୟ : ସିଂହାବଗା
୬୦. ପୁନିମା ସିଂହ
୬୧. ଫତେ ସିଂହ : କୁଡ଼ାବଗା
୬୨. ବଳରାମ ସାଏ : ଖିଣ୍ଡା
୬୩. ବୈରୀ ସିଂହ
୬୪. ବଳଭଦ୍ର ସିଂହ ଦାଓ : ଲଖନପୁର
୬୫. ବଳଭଦ୍ର ରାଏ : ବାମଣ୍ଡା
୬୬. ବଳଭଦ୍ର ଦାଶ ବିର୍ତ୍ତିଆ : ପଡ୍ରାପାଲି
୬୭. ବୁଟି ବାଗ
୬୮. ବାସୁଦେବ ସିଂହ : ସାରସମାଳ
୬୯. ବିଜ୍ଜୁ ଦଫାଦାର
୭୦. ବଡ଼ କନ୍ଧ
୭୧. ଭଗବାନ ସିଂହ
୭୨. ଭୋପାଳ ସିଂହ
୭୩. ଭୋଳାନାଥ ସାହୁ : ଖେରୁଆଲ
୭୪. ଭାକୁର ଭଏଁଷା : ଝାରସୁଗୁଡ଼ା
୭୫. ମେଦିନୀ ସାଏ : ଖିଣ୍ଡା
୭୬. ମିତ୍ରଭାନୁ ସାଏ
୭୭. ମାଧୋସିଂହ ବରିହା : ଘେଁଷ

୭୮. ମୃତ୍ୟୁଞ୍ଜୟ ପାଣିଗ୍ରାହୀ : ବରଗାଁ
୭୯. ମୋହନ ସିଂହ ଦାଓ
୮୦. ମଧୁସୂଦନ ସିଂହ
୮୧. ମାର୍କଣ୍ଡ ବରିହା
୮୨. ମନୋହର ସିଂହ, ବିଶେଇକେଲା, ଭେଡେନ୍
୮୩. ମଧୁ ବାରିକ
୮୪. ମହାଦେବ ଗଡ଼ତିଆ
୮୫. ମଙ୍ଗଲୁ ବରିହା
୮୬. ମାଏଟଖାଉ ସହରା
୮୭. ମଲିଆ ବାଗ
୮୮. ମିଟୁ କୁଅଁର
୮୯. ମହେନ୍ଦ୍ର ସିଂହ : ଝାରସୁଗୁଡ଼ା
୯୦. ମେଦିନୀ ବରିହା : ଖରମୁଣ୍ଡା
୯୧. ମେଘ ରାଏ
୯୨. ରାମ ଗୌନ୍ତିଆ
୯୩. ରତନ ରଣା
୯୪. ରାମକୃଷ୍ଣ ସା
୯୫. ରଣଜିତ ସିଂହ
୯୬. ରାହୁ ବିଶ୍ୱାଳ
୯୭. ଲୋକନାଥ ଗଡ଼ତିଆ : ରଂପେଲା
୯୮. ଲାଲ ସାଏ
୯୯. ଲକ୍ଷ୍ମଣ କର୍ରି
୧୦୦. ଶ୍ରଦ୍ଧାକର ମଲ୍ଲିକ
୧୦୧. ଶାଳେଗ୍ରାମ ବେରିହା
୧୦୨. ଶିବନାଥ ରାଏ : କୁଡ଼ାବଗା
୧୦୩. ଶିକ୍ରୁ ଦଫାଦାର
୧୦୪. ଶୋଭାନାଥ ଗଣ୍ଡ

୧୦୫. ସୁରେନ୍ଦ୍ର ସାଏ : ଖିଣ୍ଡା
୧୦୬. ସହଦେବ ସା
୧୦୭. ସୁକ୍ରୁମାଲି ସେନ୍ଦରିଆ
୧୦୮. ସଦେଇ ସାହୁ
୧୦୯. ସତ୍ୟାନନ୍ଦ ଦାସ : ତେଲେନପାଲି
୧୧୦. ସଦାଶିବ ମାଝୀ
୧୧୧. ସଂଗ୍ରାମ ସିଂହ : ସାରଙ୍ଗଗଡ଼ ରାଜା
୧୧୨. ମୋହନ ଦେଓ
୧୧୩. ହଟେ ସିଂହ : ଘେଁଷ
୧୧୪. ହଟେ ସିଂହ : କୁଡ଼ାବଗା
୧୧୫. ହୀରାଧର ପଟେଲ ଓ ଅନ୍ୟମାନେ

❑❑❑

## ସୁରେନ୍ଦ୍ର ସାଏଙ୍କ ବିଭିନ୍ନ ସଂଗ୍ରାମର ଘାଟି

୧. ଡେବ୍ରୀଗଡ଼ ଘାଟି
୨. ସିଂଘୋଡ଼ା ଘାଟି
୩. ଗଡ଼ପାଟି ଘାଟି
୪. ଝାରଘାଟି
୫. ପାହାଚ ଶିର୍‌ଗିଡ଼ା
୬. କୁଦୋପାଲି
୭. ନିଶା ଘାଟି
୮. ସୋରାତୋଲା ଘାଟି
୯. ଢୁନାଗଡ଼
୧୦. ମାଣିକ ଗଡ଼
୧୧. ଶିଶୁପାଳ ଗଡ଼
୧୨. ଗୁଡ଼ା ପାହାଡ଼
୧୩. ସୁନାବେର୍ଣା
୧୪. ପପଙ୍ଗା ପାହାଡ଼
୧୫. ନିସତ ଘାଟି

## ସୁରେନ୍ଦ୍ର ସାଏଙ୍କୁ ପରୋକ୍ଷରେ ସାହାଯ୍ୟକାରୀ

୧. ରାଜା କୃଷ୍ଣଚନ୍ଦ୍ର ଦେବ : ଖରିଆର
୨. ଉମରାଓ ସାଏ : ନୂଆଗଡ଼

❑❑❑

## ସମ୍ବଲପୁର ଜିଲାର ସ୍ୱାଧୀନତା ସଂଗ୍ରାମୀ

୧. ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର
୨. ଦୟାନନ୍ଦ ଶତପଥୀ
୩. ପ୍ରହଲ୍ଲାଦରାୟ ଲାଠ
୪. ନୃସିଂହ ଗୁରୁ
୫. ଯୁଧିଷ୍ଠିର ମେହେର
୬. ରାଧାଶ୍ୟାମ ମେହେର
୭. ଦିବାକର ମିଶ୍ର
୮. ପ୍ରେମାନନ୍ଦ ମେହେର
୯. ଆନନ୍ଦ ମେହେର : ସାକ୍ଷୀ ଗୋପିନାଥପଡ଼ା, ସଦର
୧୦. ବ୍ରହ୍ମାନନ୍ଦ ପୂଜାରୀ : ଝାଡୁଆପଡ଼ା, ସଦର
୧୧. ବୃନ୍ଦାବନ ଗୁରୁ : ଦୁଲମପୁର
୧୨. ତ୍ରିଲୋଚନ ସାହା : ଦୁଲମପୁର
୧୩. ଦୁର୍ଗା ଗୁରୁ
୧୪. ରଘୁବୀର ଗଡ଼ତିଆ
୧୫. ସତ୍ୟାନନ୍ଦ ବାବାଜି
୧୬. ଦୁଃଖୀ କେଉଟ
୧୭. ଅମ୍ବିକାମାଧବ ପ୍ରସାଦ ପଟ୍ଟନାୟକ : ମହାନ୍ତିପଡ଼ା, ସଦର
୧୮. ଉପେନ୍ଦ୍ର ପାଣିଗ୍ରାହୀ : ବରଗାଁ
୧୯. ବିନାୟକ ପାଢ଼ୀ : ବରଗାଁ
୨୦. ବୋଧରାମ ଦୁବେ : ସଦର
୨୧. ଚନ୍ଦ୍ରଶେଖର ବେହେରା
୨୨. ଭଗୀରଥ ମିଶ୍ର : ସଦର
୨୩. ଧରଣୀଧର ମିଶ୍ର
୨୪. ରାମକୃଷ୍ଣ ବେହେରା
୨୫. ଗୌରୀଶଙ୍କର ସାହାଣି
୨୬. ପର୍ଶୁରାମ ସାହାଣି

୨୭. ଲଦାଭାଇ ଆରିଆ

୨୮. ଦାଶରଥି ମିଶ୍ର

୨୯. ବ୍ରଜମୋହନ ପଣ୍ଡା

୩୦. ମହମ୍ମଦ ହୁସେନ ଅବଦୁଲ ମଜିଦ

୩୧. ବାଳମୁକୁନ୍ଦ ମିଶ୍ର

୩୨. ଭଗବାନ ପ୍ରସାଦ

୩୩. ଗଣେଶ ପ୍ରସାଦ ପାଢ଼ୀ

୩୪. ଜନାର୍ଦ୍ଦନ ସୂପକାର

୩୫. ଗୋପାଳ ନନ୍ଦ

୩୬. ହରିହର ବେହେରା

୩୭. ହରିଚରଣ ପାଢ଼ୀ

୩୮. ମହେନ୍ଦ୍ର ଶର୍ମା

୩୯. ରତନ ସିଂହ ହଂସରାଜ

୪୦. ରାମପ୍ରତାପଜୀ

୪୧. ଅନନ୍ତରାମ ସୂପକାର

୪୨. ନାଗରମଲ କେଡିଆ

୪୩. ରାମଦେବ ଅଗ୍ରୱାଲ

୪୪. ରାମରକ୍ଷା ଶୁକ୍ଳ

୪୫. ସୁଧାଂଶୁ ଗୁପ୍ତ

୪୬. କେଶବ ମେହେର

୪୭. ଗୌରୀଶଙ୍କର ରାୟଗୁରୁ

୪୮. ରତ୍ନାକର ବେହେରା

୪୯. ଅନନ୍ତରାମ ବେରିହା

୫୦. ଶ୍ରଦ୍ଧାକର ସୂପକାର

୫୧. ବେଣୀମାଧବ ସୂପକାର

୫୨. ଶଙ୍କର ପାଢ଼ୀ

୫୩. ଲିଙ୍ଗରାଜ ମେହେର, ସମ୍ବଲପୁର

୫୪.    ଅଚ୍ୟୁତାନନ୍ଦ ପୁରୋହିତ
୫୫.    ରାମହରି ପଣ୍ଡା
୫୬.    ଶ୍ରୀପତି ମାଝୀ
୫୭.    ଅର୍ଜୁନ ଦଲାଇ
୫୮.    ବଜରଙ୍ଗ ଅଗ୍ରୱାଲ
୫୯.    ଲକ୍ଷ୍ମୀନାରାୟଣ ଅଗ୍ରୱାଲ
୬୦.    ମାଖନଲାଲ ଅଗ୍ରୱାଲ
୬୧.    ରାଜନାରାୟଣ ତେୱାରୀ
୬୨.    ରାମକିଶନ ଶାରଡା
୬୩.    ଧୋବା ବାରିକ
୬୪.    ରାମପ୍ରସାଦ ସୁପାରି
୬୫.    ଗରିବାଦାସ ତନ୍ତୀ
୬୬.    ଆନନ୍ଦରାମ ଗୋପ
୬୭.    ଦୁର୍ଗାପ୍ରସାଦ ନାୟକ
୬୮.    ପ୍ରସନ୍ନ କୁମାର ରାୟଗୁରୁ
୬୯.    ଯୋଗେଶ୍ୱର ଶର୍ମା
୭୦.    ଶିବନାରାୟଣ ପାଢ଼ୀ
୭୧.    ଲକ୍ଷ୍ମୀପ୍ରସାଦ ମିଶ୍ର
୭୨.    ବୀରେନ ସରକାର
୭୩.    ନାରାୟଣ ମେହେର
୭୪.    କୁଞ୍ଜବିହାରୀ ପଟ୍ଟନାୟକ
୭୫.    ବୈକୁଣ୍ଠ ପାଢ଼ୀ : ବରଗାଁ
୭୬.    ଗଜରାଜ ସାହୁ
୭୭.    ପଦ୍ମଲୋଚନ ବେହେରା
୭୮.    ମିତ୍ରଭାନୁ ପାଣିଗ୍ରାହୀ
୭୯.    ଦାମୋଦର ପାଢ଼ୀ
୮୦.    ଗୌରଚନ୍ଦ୍ର ପୁରୋହିତ : ବାଲପୁର

୮୧. ଅନନ୍ତରାମ ବେହେରା : ବଡେମୁରା
୮୨. ସଦାନନ୍ଦ ପଣ୍ଡା : ଖୁଣ୍ଟି
୮୩. ଡମ୍ବରୁଧର ପଟ୍ଟନାୟକ : ଧମା
୮୪. ଚକ୍ରଧର ପଣ୍ଡା : ବାଉଁଶୁଣି
୮୫. ମନ ସାହୁ : ଝାରମୁଣ୍ଡା
୮୬. ହାରାଧନ ବାରିକ : ସରକଣ୍ଡା

## ରେଢ଼ାଖୋଲ

୮୭. ମୁରଲୀଧର ପଧାନ : ରଙ୍ଗାମାଟିଆ
୮୮. ବ୍ରଜବନ୍ଧୁ ପଧାନ : ମୂଷାକଟା
୮୯. ଶଶିଭୂଷଣ ପଧାନ : ଚାରମାଲ
୯୦. ଦକ୍ଷପ୍ରଜାପତି ପଧାନ : ରେଢ଼ାଖୋଲ
୯୧. ସତ୍ୟନାରାୟଣ ତିଓ୍ୱାରି
୯୨. ଚକ୍ରଧର ମିଶ୍ର : ରାମପୁର
୯୩. ନିତ୍ୟାନନ୍ଦ ସାହୁ : ରାମପୁର
୯୪. ଶ୍ରୀପତି ପ୍ରଧାନ : ନାକଟିଦେଉଳ
୯୫. ବନମାଳୀ ବିଶି : ପେଣ୍ଡବାହାଲ
୯୬. ମୁକୁନ୍ଦ ବିଶି : ପେଣ୍ଡବାହାଲ
୯୭. ଯୋଗୀନ୍ଦ୍ର ସାହୁ : ଜଗନ୍ନାଥପ୍ରସାଦ
୯୮. ମଧୁସୂଦନ ନନ୍ଦ : ବୁଢ଼ାକଟା
୯୯. ବୃନ୍ଦାବନ ତିଓ୍ୱାରୀ : ରାମପୁର
୧୦୦. ରାଧାକିଶନ ଅଗ୍ରଓ୍ୱାଲ : ରାମପୁର
୧୦୧. ଆଦିକନ୍ଦ ନାୟକ : ରାମପୁର
୧୦୨. ଅଭୟାନନ୍ଦ ତ୍ରିପାଠୀ : ଚାରମାଲ
୧୦୩. ଆଦିକନ୍ଦ ଦାସ : ରାମପୁର

### କୁଚିଣ୍ଡା

୧୦୪. ପୂର୍ଣ୍ଣଚନ୍ଦ୍ର ହରିଜନ : ପାରୁଆଭାଡ଼ି
୧୦୫. ଦୀନବନ୍ଧୁ ଚୌଧୁରି : କେନାଢ଼ିପା
୧୦୬. ମଦନମୋହନ ପଟେଲ : ପାରୁଆଭାଡ଼ି
୧୦୭. ବିଶ୍ୱନାଥ କର
୧୦୮. ମଦନ ନାୟକ
୧୦୯. ଶରତଚନ୍ଦ୍ର ପଟେଲ
୧୧୦. ଛାଳ ଚୌଧୁରି
୧୧୧. ଦୀନବନ୍ଧୁ ପଟେଲ
୧୧୨. କୃଷ୍ଣଚନ୍ଦ୍ର ପଟେଲ : ଢମନକିରା
୧୧୩. ବାଣେଶ୍ୱର ମାଝୀ
୧୧୪. ନୃପଲାଲ ପଟେଲ
୧୧୫. ଯତୀନ୍ଦ୍ର ପଟେଲ
୧୧୬. ବିଶ୍ୱେଶ୍ୱର ଖୁଣ୍ଟିଆ
୧୧୭. ଲକ୍ଷ୍ମଣ ପୂଜାରୀ : କୁଲୁଣ୍ଡି
୧୧୮. ପୂର୍ଣ୍ଣଚନ୍ଦ୍ର ପଟେଲ : ଭୋଜପୁର
୧୧୯. ବାଲମୁକୁନ୍ଦ ସେଠ ଅଗ୍ରୱାଲ : କୁଚିଣ୍ଡା
୧୨୦. ଧ୍ରୁବଚରଣ ମହାନ୍ତି
୧୨୧. ଶ୍ରଦ୍ଧାକର ପୃଷେଠ୍, ଲାଡ଼
୧୨୨. ଦାଶରଥ୍ ମିଶ୍ର : ରାମଝାଲି
୧୨୩. ଗୋପାଳ ପାଣିଗ୍ରାହୀ : ବୁଦଲାପାଲି
୧୨୪. ରାମଚନ୍ଦ୍ର ନାୟକ : ବଗାଡିହି
୧୨୫. ଶ୍ରୀମତୀ ରେବତୀ ପଟେଲ : ଲାଖପଡ଼ା
୧୨୬. ରାଜୀବଲୋଚନ ପଟେଲ : ଉଲୁଣ୍ଡା
୧୨୭. ଦୀନବନ୍ଧୁ ଚୌଧୁରି : କେନାଡିପା
୧୨୮. ଧରଣୀଧର ନାୟକ : ନୂଆଡିହି
୧୨୯. ଦାଶରଥ୍ ପଟେଲ : ବଡ଼ ମୁଣ୍ଡାଲଇ
୧୩୦. ଭବାନୀଚରଣ ପାଳ : ଗୋବିନ୍ଦପୁର
୧୩୧. ଅହମ୍ମଦ ଅମୀର
୧୩୨. ଗୁଣନିଧି ପଟେଲ : ସାତକମା

୧୩୪. ହୃଷୀକେଶ ପଟେଲ : ରାମତିଲେଇମାଲ
୧୩୫. ଦୁର୍ଯ୍ୟୋଧନ ଭୋଇ : ଉଲୁଣ୍ଡା
୧୩୬. ଦୟାନିଧି ପାଣିଗ୍ରାହୀ : ବୁଦୁଲାପାଲି
୧୩୭. ବୁଧରାୟ ପଟେଲ : ସାତକମା
୧୩୮. ଦୁର୍ଗାଚରଣ ନାୟକ : ହାଡ଼ିପାଲି
୧୩୯. ପଦ୍ମନ ନାୟକ : ହାଡ଼ିପାଲି
୧୪୦. ଦାଶରଥ ନାୟକ : ସାହାଜବାହାଲ
୧୪୧. ଲୋକନାଥ ଶର୍ମା : ଶିରିଡ଼ି
୧୪୨. କୃଷ୍ଣଚନ୍ଦ୍ର ପଟ୍ଟନାୟକ : ଜମନକିରା
୧୪୩. କାଶୀରାମ ପଟେଲ
୧୪୪. ବୃନ୍ଦାବନ ପଟେଲ : କେନାଢ଼ିପା
୧୪୫. ଭରତ ପଟେଲ : ଧୁଡ଼ିପାଲି
୧୪୬. ରମଣୀରଞ୍ଜନ ପଟେଲ : ଗୁଣ୍ଡୁରୁଚୁଆଁ
୧୪୭. ରତ୍ନାକର ପଟେଲ
୧୪୮. ପ୍ରଫୁଲ୍ଲ ପଟେଲ : କୁନ୍ତରା
୧୪୯. ପରମାନନ୍ଦ ପଟେଲ : କୁସୁମି
୧୫୦. ଚୂଡ଼ାମଣି ପଟେଲ : କୁସୁମି
୧୫୧. ଧନେଶ୍ୱର ପଟେଲ : କୁଟୁରାଚୁଆଁ
୧୫୨. ସୁରେଶଚନ୍ଦ୍ର ନାୟକ : ହାଡ଼ିପାଲି
୧୫୩. ଶ୍ରୁତିଧର ନାୟକ : ହାଡ଼ିପାଲି
୧୫୪. ଜୀବରଜ ପଟେଲ :
୧୫୫. ଉଦୟଚନ୍ଦ୍ର ପ୍ରଧାନ : ମାତାମହୁଲ
୧୫୬. ଶୁଭରାମ ପରିଡ଼ା : ଶାନ୍ତିମାଳ
୧୫୭. ଅଭିମନ୍ୟୁ ମହାପାତ୍ର : ବଲଣ୍ଡା
୧୫୮. ଅରକ୍ଷିତ ପଟେଲ :ସାହାଜବାହାଲ
୧୫୯. ଗଦାଧର ପଟେଲ
୧୬୦. ଗୌରୀଶଙ୍କର ମହାପାତ୍ର : କୀରା ଶାସନ
୧୬୧. ରାଧାନାଥ ଶର୍ମା
୧୬୨. ଜୟନାରାୟଣ ନାଏକ : ଲାଖପଡ଼ା

❑❑❑

## ବରଗଡ଼ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀ

୧. ଅମିୟ ଭୂଷଣ ବିଶ୍ୱାସ : ବରଗଡ଼
୨. ଫକୀର ବେହେରା : ବାଲିଟିକିରା
୩. ଗଙ୍ଗାଧର ସରାଫ : ବରଗଡ଼
୪. ସେବା ସୁରୁଜାଲ
୫. ଗୋପାଳ ଗଣ୍ଡା
୬. ରାମେଶ୍ୱର ଗଡ଼ତିଆ
୭. ନରେନ୍ଦ୍ର ସରାଫ
୮. ଯୋଗୀନ୍ଦ୍ର ପ୍ରଧାନ
୯. ନିତ୍ୟାନନ୍ଦ ମହାପାତ୍ର
୧୦. ଯୁଧିଷ୍ଠିର କଠାର
୧୧. ରଙ୍କମଣି ସାହୁ
୧୨. ଚନ୍ଦ୍ରଭାନୁ ପାଇକ
୧୩. ଲକ୍ଷ୍ମଣ ମହାପାତ୍ର
୧୪. କୃତାର୍ଥ ଆଚାର୍ଯ୍ୟ
୧୫. ସୁଗ୍ରୀ ଭୋଇ
୧୬. ପଣ୍ଡିତ ମାଙ୍ଗିଲାଲ ଶର୍ମା
୧୭. ଉପେନ୍ଦ୍ର ସରାଫ
୧୮. ପର୍ଶୁରାମ ଛାପରିଆ
୧୯. ଶିବ ନାରାୟଣ ଲାଠ
୨୦. ସୂରଜମଲ ସୁନାର
୨୧. ମଧୁସୂଦନ ସରାଫ
୨୨. ମହାବୀର ପ୍ରସାଦ କଟାରୁକା
୨୩. ଦୀନବନ୍ଧୁ ବେହେରା
୨୪. ଉଦ୍ଧବ ଦାସ
୨୫. ଲକ୍ଷ୍ମୀନାରାୟଣ ଅଗ୍ରୱାଲ
୨୬. ଉପେନ୍ଦ୍ର ସରାଫ

୨୭. ଦୀନବନ୍ଧୁ ପଣ୍ଡା
୨୮. ଯଦୁମଣି ସରାଫ
୨୯. ବାସୁଦେବ ସରାଫ
୩୦. ନରେନ୍ଦ୍ର ସରାଫ
୩୧. ଚତୁର୍ଭୁଜ ଶର୍ମା
୩୨. ଗୋପାଳ ସରାଫ
୩୩. ବିଶ୍ୱେଶ୍ୱର ଦାସ : ଗୁଡ଼େଶିରା
୩୪. ମାଖନୁ ସାହୁ : ବେହେରା
୩୫. ଭାଗୀରଥି ପଟ୍ଟନାୟକ : ବରପାଲି
୩୬. ଜମ୍ବୁବତୀ ଦେବୀ
୩୭. ପ୍ରଫୁଲ୍ଲ ପଟ୍ଟନାୟକ
୩୮. ମଙ୍ଗଳୁ ପ୍ରଧାନ : ରେମଣ୍ଡା
୩୯. ବାବାଜି ମେହେର : ଚୋପ
୪୦. ଲକ୍ଷ୍ମଣରାମ ଜୟଶ୍ୱାଲ
୪୧. ବାଲିଶର ସାହୁ
୪୨. ମହେଶ୍ୱର ନାୟକ
୪୩. ହନୁ ପ୍ରଧାନ
୪୪. ରାମଚରିତ ବର୍ମା
୪୫. ମାଧ ସାଥୁଆ
୪୬. ବେଣୁଧର ପ୍ରଧାନ
୪୭. ପରମେଶ୍ୱର ସରାଫ
୪୮. ଅନୁପାନନ୍ଦ କର
୪୯. ଭୀମସେନ ସାହୁ
୫୦. ନୀଳକଣ୍ଠ ମେହେର
୫୧. ପ୍ରଭାକର ସରାଫ
୫୨. ଭୀମସେନ ମେହେର
୫୩. ଘନଶ୍ୟାମ ପାଣିଗ୍ରାହୀ : ମାନପୁର
୫୪. ତୀର୍ଥବାସୀ ପୁରୋହିତ : ଡାଲବି

୫୫. ନିତ୍ୟାନନ୍ଦ ପାଢ଼ୀ : ପଦ୍ମପୁର
୫୬. ରାଜେନ୍ଦ୍ର ପ୍ରସାଦ ପଣ୍ଡା : କୁଚିପାଲି
୫୭. କପିଳେଶ୍ୱର ଦାସ
୫୮. ଗୌରାଙ୍ଗ ମେହେର : ଭେଉଁରିଆ
୫୯. ପାରେଶ୍ୱର ସାହୁ
୬୦. ବଂଶୀଧର ସାହୁ
୬୧. ବଂଶୀଧର ସାହୁ
୬୨. ସୁନ୍ଦରମଣି ପଟେଲ
୬୩. ସୁରେନ୍ଦ୍ର ସାହୁ
୬୪. ମଧୁସୂଦନ ସାହୁ
୬୫. ମନବୋଧ ହରିଜନ
୬୬. ନରସିଂହ ପୁରୋହିତ
୬୭. ଉଗ୍ରସେନ ବନଛୋର : ଟେମରି
୬୮. ରାମନାଥ ବେହେରା : ଦେଉଲି
୬୯. ବନମାଳୀ ସାହୁ
୭୦. କପିଳ ବିଶ୍ୱାସ
୭୧. ଲକ୍ଷ୍ମଣ ବିଶ୍ୱାସ
୭୨. ମୁରଲୀଧର ସାହୁ
୭୩. ଧନଂଜୟ ମିଶ୍ର : କନସିଂଗା
୭୪. ଉଦ୍ଧବ ଚରଣ ସାହୁ : ଗଣ୍ଡିଡିହି
୭୫. ଜୟକୃଷ୍ଣ ସାହୁ : ସତୀଭଟା
୭୬. ପୁରୁଷୋତ୍ତମ ସାହୁ : ପଳସଦା
୭୭. ପଞ୍ଚମାନ ସାହୁ
୭୮. ଦୈତାରୀ ମିଶ୍ର : ଦହିଗାଁ
୭୯. ରାମଚନ୍ଦ୍ର ପୁରୀ : ସମଲେଇପଦର
୮୦. ପାର୍ବତୀ ଗିରି
୮୧. ଦ୍ୱାଦଶୀ ରଣା

୮୨. ମଙ୍ଗଳ ଗିରି
୮୩. ଉଚ୍ଛଳ ଗିରି
୮୪. ଦ୍ୱିତୀୟା ଗିରି
୮୫. ପ୍ରଭାବତୀ ଦେବୀ, ବରଗଡ଼
୮୬. ହୃଷୀକେଶ ନାୟକ : କୁଲୁଣ୍ଡା
୮୭. ପବିତ୍ର ଦାଶ : ସିନ୍ଦୁରବାହାଲ
୮୮. ଶ୍ୟାମସୁନ୍ଦର ମେହେର : ବାଗବାଡ଼ି
୮୯. ଦ୍ୱାରକାନାଥ ମହାପାତ୍ର : ରେମଣ୍ଡା
୯୦. ରାମଚନ୍ଦ୍ର ନନ୍ଦ
୯୧. ବିଦ୍ୟାଧର ପ୍ରଧାନ : ରୁଚିଦା
୯୨. କୁଞ୍ଜବିହାରୀ ଦାସ : ମୁରୁମକେଲ
୯୩. ବିରଞ୍ଚି ନାରାୟଣ ପ୍ରଧାନ : କମଗାଁ
୯୪. ସଚ୍ଚିଦାନନ୍ଦ ପାଢ଼ୀ : ପଦ୍ମପୁର
୯୫. ମାୟାଧର ପୁରୋହିତ : ଟେମରୀ
୯୬. ବୈରାଗୀ ଭଣ୍ଡା
୯୭. ତୁଳସୀରାମ ଗିରି : ସମଲେଇପଦର
୯୮. ଅମୃତ ଦେବୀ
୯୯. ସନ୍ତୋଷ ସ୍ୱାଇଁ
୧୦୦. କୁବେର ଗିରି
୧୦୧. ଶ୍ୟାମସୁନ୍ଦର ସାହୁ : ପାଣିମୋରା
୧୦୨. ଋଷି ସରାଫ
୧୦୩. ଯଶୋବନ୍ତ ଭୋଇ
୧୦୪. ଗୋକୁଳଚନ୍ଦ୍ର ନାୟକ
୧୦୫. ଧନେଶ୍ୱର ପ୍ରଧାନ
୧୦୬. ଫକୀର ପରିଡ଼ା
୧୦୭. ହଜାରୁ ନାୟକ
୧୦୮. ଚମରୁ ପରିଡ଼ା

୧୦୯. ଦିବ୍ୟସୁନ୍ଦର ସାହୁ
୧୧୦. ଧନଞ୍ଜୟ ପ୍ରଧାନ
୧୧୧. ରାଘବଚରଣ ପ୍ରଧାନ
୧୧୨. ଡମ୍ବରୁଧର ଦେଓ୍ୱାନ
୧୧୩. ଚୈତନ୍ୟ ସରାଫ
୧୧୪. ଫୁଲଶର ପ୍ରଧାନ
୧୧୫. ଶଙ୍କର ପ୍ରଧାନ
୧୧୬. ଧନସିଂହ ପ୍ରଧାନ
୧୧୭. ଚନ୍ଦ୍ରଭାନୁ ପରଡ଼ିଆ
୧୧୮. ଶ୍ରୀବସ୍ତ ନାୟକ
୧୧୯. ଦୟାନିଧି ନାୟକ
୧୨୦. ପ୍ରଭାକର ସାହୁ
୧୨୧. ଚୈତନ୍ୟ ସାହୁ
୧୨୨. ପ୍ରଭାକର ପ୍ରଧାନ
୧୨୩. ମୀନକେତନ ସରାଫ
୧୨୪. ଜିତେନ୍ଦ୍ର ପ୍ରଧାନ
୧୨୫. ପୂର୍ଣ୍ଣଚନ୍ଦ୍ର ପ୍ରଧାନ
୧୨୬. କହ୍ନାଇଲାଲ ସାହୁ
୧୨୭. ମଦନ ଭୁଏ
୧୨୮. ସୁନାଧର ସାହୁ
୧୨୯. ଗୋକୁଳଚନ୍ଦ୍ର ନାୟକ
୧୩୦. ମଦନ ମୋହନ ପ୍ରଧାନ
୧୩୧. ହରିହର ଭୋଇ
୧୩୨. ଦଶରଥ ନାୟକ
୧୩୩. କଏରା ସାହୁ
୧୩୪. ଶୁକସାରଣ ଭୋଇ
୧୩୫. ସର୍ବେଶ୍ୱର ଦୋରା : ଲାଉନସରା

୧୩୬. ଚତୁର୍ଭୁଜ ଶର୍ମା
୧୩୭. ବୀରବର ଦାସ
୧୩୮. ରାମକୃଷ୍ଣ ଦାସ
୧୩୯. ସୀତାରାମ ଦାସିଆର
୧୪୦. ନୀଳକଂଠ ମେହେର
୧୪୧. ମଦନ ଭୋଇ : ପାଣିମୋରା
୧୪୨. ଧନେଶ୍ୱର ପ୍ରଧାନ
୧୪୩. ଚନ୍ଦ୍ରଶେଖର ସାହୁ (ବେହେରା)
୧୪୪. ପୁରୁଷୋତ୍ତମ ସାହୁ : ପଳସଦା
୧୪୫. ଉଦ୍ଧବ ପ୍ରଧାନ : ଲଖମରା
୧୪୬. ନୃସିଂହ ପୁରୋହିତ : ଟେମରି
୧୪୭. ଯୋଗେନ୍ଦ୍ର ଦୋରା : ରେମଣ୍ଡା
୧୪୮. ଭାଲୁ ଦୋରା
୧୪୯. ଭୀମସେନ ମେହେର : ବୁର୍ଦା
୧୫୦. ପ୍ରଭାକର ପାଣିଗ୍ରାହୀ
୧୫୧. ବସନ୍ତ କୁମାର ସାହୁ ଓ ଅନ୍ୟମାନେ

ବି. : ବୌଦର ପ୍ରେମଶଙ୍କର ପଟ୍ଟନାୟକ, ଚକ୍ରଧର ମିଶ୍ର, ପ୍ରହଲ୍ଲାଦ ବିଶି ବରଗଡ଼ରେ ଗିରଫ ହୋଇ ଜେଲ ଯାଇଥିଲେ ।

❑❑❑

## ଝାରସୁଗୁଡ଼ା ଜିଲାର ସ୍ୱାଧୀନତା ସଂଗ୍ରାମୀ

୧. ମହାବୀର ସିଂହ
୨. ଭାନୁଶଙ୍କର ମୋହନଲାଲ ଯୋଶୀ
୩. ତୁଳସୀ ଦେବୀ
୪. ଋଷଭ ତନ୍ତୀ
୫. ଚିନ୍ତାମଣି ପୂଜାରୀ : ପଞ୍ଚପଡ଼ା
୬. ହାରାଧନ ପୂଜାରୀ
୭. ଶୁଖା ତନ୍ତୀ
୮. ଶୁକା ବୁଡ଼ା :
୯. ମୁକୁନ୍ଦ ତନ୍ତୀ : ତାଳପଟିଆ
୧୦. କଷ୍ଟରାମ ତନ୍ତୀ
୧୧. କଳବୀ ତନ୍ତୀ
୧୨. ସୁରେନ ବାନାର୍ଜୀ
୧୩. ଲକ୍ଷ୍ମୀ ଦେବୀ, ଖଲୁରାମ
୧୪. ଚନ୍ଦ୍ର ଗଣ୍ଡା : ମୁଙ୍ଗପଡ଼ା
୧୫. କଇଦରାମ ତନ୍ତୀ : ତାଳପଟିଆ
୧୬. ଦ୍ୱାରିକା କୁସୁମ : ମଙ୍ଗସପୁର
୧୭. ଦୈତାରୀ ତନ୍ତୀ
୧୮. ପୁରୁଷୋତ୍ତମ ପଣ୍ଡା : ସରବାହାଲ
୧୯. ଗଣପତି ସିଂହ : ସଂସାରିମାଲ
୨୦. ବାସୁଦେବ ସିଂହ
୨୧. ମୋହନ ସିଂହ, ବେଲପାହାଡ଼
୨୨. ମହେନ୍ଦ୍ର ସିଂହ : ସଂସାରିମାଲ
୨୩. ଦ୍ୱୀପାୟନ ଗୁପ୍ତା : ଫଟାପାଲି
୨୪. ଚିନ୍ତାମଣି ଗୁପ୍ତା
୨୫. ପୂର୍ଣ୍ଣଚନ୍ଦ୍ର ସାହୁ
୨୬. ମହେଶ୍ୱର ସାହୁ
୨୭. ଅର୍ଜ୍ଜୁନ ଗୁପ୍ତା
୨୮. ଟେକାରୁ ଭୋଇ : ଡିଲିଆ
୨୯. କମଳଲୋଚନ ପ୍ରଧାନ

୩୦. ଯୁଧିଷ୍ଠିର ପାଣିଗ୍ରାହୀ : ଉର୍ଦ୍ଧା
୩୧. ଦୀନବନ୍ଧୁ ପଣ୍ଡା : କୁମ୍ଭାରବନ୍ଧ
୩୨. ରାଜୀବଲୋଚନ ତିୱାରୀ : ଲଏଡ଼ା
୩୩. ରତ୍ନାକର ପଟେଲ : ଝିରଲାପାଲି
୩୪. ଅଯୋଧ୍ୟା ସରାଫ : ରଘୁନାଥପାଲି
୩୫. ସୌଷ୍ଟବ ଗୌନ୍ତିଆ : ଲପଙ୍ଗା
୩୬. ମସଦ୍ ହରିଜନ : ସିଆରମା
୩୭. ଶେକବ ବଖରା
୩୮. ଅଏମନ ବାଗ
୩୯. ସାଧୁଚରଣ ପଟ୍ଟନାୟକ : ସାହକସପୁର
୪୦. ପରମାନନ୍ଦ ପଣ୍ଡା : କୁର୍ଲା
୪୧. ରାସବିହାରୀ ଦାସ : ଲପଙ୍ଗା
୪୨. ଧନଞ୍ଜୟ ବେହେରା
୪୩. ଲମ୍ବୋଦର ବେହେରା
୪୪. ପୁରନ୍ଦର ପଣ୍ଡା : କୁମ୍ଭାରବନ୍ଧ
୪୫. ବଂଶୀଧର ଦାସ : ତେଲେନପାଲି
୪୬. ଗଙ୍ଗାଦତ୍ତ ଦାସ
୪୭. ରମେଶଚନ୍ଦ୍ର ପଣ୍ଡା
୪୮. ବିହାରୀରାମ ତନ୍ତୀ : ମୁଙ୍ଗାପଡ଼ା
୪୯. ହାରାଚାନ୍ଦ ପୂଜାରୀ : ପଞ୍ଚପଡ଼ା
୫୦. ରଘୁନାଥ ତନ୍ତୀ : ମୁଙ୍ଗାପଡ଼ା
୫୧. ଚନ୍ଦ୍ର ବଗର୍ତ୍ତୀ (ମହାନନ୍ଦ)
୫୨. ରାମଭରୋସେ ବିଭାର : ମୁଙ୍ଗାପଡ଼ା
୫୩. ଶୁକଦେବ ଶ୍ରୀୱାସ
୫୪. ଇତନଲାଲ
୫୫. ପି. ରାମାରାଓ
୫୬. ବ୍ରିଜମଙ୍ଗଲ ସିଂହ : ଡିପୁପଡ଼ା
୫୭. ମାଲିକରାମ ଯାଦବ
୫୮. ଚମନଲାଲ ଶ୍ରୀୱାସ
୫୯. ବୁଦ୍ଧଦେବ ମହାନନ୍ଦ : ତାଳପଟିଆ
୬୦. ବୈଦେଶ୍ୱର ତନ୍ତୀ
୬୧. ଜଗନ ମଗର : ନଇସୁଗୁଡ଼ା

୬୨. ମକୁନ୍ଦ ତନ୍ତୀ : ଚନ୍ଦମପୁର
୬୩. ରାମ ଉଗ୍ରସେନ ତନ୍ତୀ : ମୁଙ୍ଗାପଡ଼ା
୬୪. ଦେବାନନ୍ଦ ଗୁପ୍ତା : ଫଟାପାଲି
୬୫. ଧନେଶ୍ୱର ପୃଷ୍ଟି : ଫଟାପାଲି
୬୬. ହରିହର ପୃଷ୍ଟି
୬୭. ମହେଶ୍ୱର ସାହୁ
୬୮. ଶିବାନନ୍ଦ ଗୁପ୍ତା
୬୯. ବେଣୁଧର ଗୁପ୍ତା
୭୦. ଆର୍ତ୍ତତ୍ରାଣ ପୂଜାରୀ : ପୂଝାରୀପଲି
୭୧. ନିରଞ୍ଜନ ପ୍ରଧାନ : ଡିଲିଆ
୭୨. ତାରାଚାନ୍ଦ ପ୍ରଧାନ
୭୩. କ୍ଷୀରୋଦ ପ୍ରଧାନ
୭୪. ପବନ ସିଂହ
୭୫. ନବୀନ ସିଂହ
୭୬. ମହେନ୍ଦ୍ର ସିଂହ
୭୭. ରାମହରି ମିଶ୍ର : କୁମ୍ଭାରବନ୍ଧ
୭୮. ଯୁଧିଷ୍ଠିର ମିଶ୍ର : ରମେଲା
୭୯. ବାଞ୍ଛାନିଧି ସିଂହ
୮୦. ବାସୁଦେ ସିଂହ
୮୧. ପ୍ରଭାକର ମିଶ୍ର : ରାଜପୁର
୮୨. ଜଳନ୍ଧର ସାହୁ : ଫଟାପାଲି
୮୩. ସୁଧାଂଶୁ ଶେଖର ଗୁପ୍ତା

## ପରୋକ୍ଷ ଅଂଶଗ୍ରହଣକାରୀ ସଂଗ୍ରାମୀ

୧. ଲକ୍ଷ୍ମଣଜୀ କୃଷ୍ଣାଜୀ : ପୁରୁଣାବସ୍ତି, ଝାରସୁଗୁଡ଼ା । ୧୯୪୭ ଅଗଷ୍ଟ ୧୫ରେ ଝାରସୁଗୁଡ଼ା କଂଗ୍ରେସ କାର୍ଯ୍ୟାଳୟରେ ପ୍ରଥମ ଜାତୀୟ ପତାକା ଉତ୍ତୋଳନ କରିଥିଲେ ।
୨. ଅର୍ଜୁନ ତ୍ରିପାଠୀ : ରାଜପୁର ସଂଗ୍ରାମୀ ପ୍ରଭାକର ମିଶ୍ରଙ୍କ ଛାତ୍ର । 'ସମାଜ'ରେ ସାମ୍ବାଦିକତା ।
୩. ଶଙ୍କର ପ୍ରସାଦ ପାଣ୍ଡେ : କଂଗ୍ରେସ ସଂଗଠନର ଉତ୍ସାହର ଉତ୍ସ ଥିଲେ ।

❑❑❑

## ଦେବଗଡ଼ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀ

୧. ଦୟାନନ୍ଦ ଶତପଥୀ
୨. ବିଲ ନାୟକ : ଟିଙ୍କବୀର
୩. କୀର୍ତ୍ତିକିଆ ବେହେରା : କରଲଗା
୪. ନେତ୍ରାନନ୍ଦ ବେହେରା
୫. ଗୋପାଳ ପ୍ରଧାନ
୬. ବୈଷ୍ଣବଚରଣ ନାୟକ : ଟିଙ୍କବୀର
୭. ସହଦେବ ସାହୁ : ତାଲବାହାଲି
୮. କୃଷ୍ଣଚନ୍ଦ୍ର ପ୍ରଧାନ : ଟିଙ୍କବୀର
୯. ବିଦ୍ୟାଧର ସାହୁ : କୁଡ଼ାପରା
୧୦. ବଳଭଦ୍ର ସାହୁ : କୁଡ଼ାପରା, ଟିମ୍ପୁର
୧୧. କନ୍ଦର୍ପ ପ୍ରଧାନ : ବୁଢ଼ାପାଇ
୧୨. ଶ୍ରୀଧର ବେହେରା : ସଂଘାପଣି
୧୩. ଦିବାକର ମିଶ୍ର : ଗମ୍ଭୀରୀପାଳି
୧୪. ବ୍ରଜବନ୍ଧୁ ବେହେରା : ସଂଘାପଣି
୧୫. ଦାଶରଥି ମହାପାତ୍ର : ଟିଙ୍କବୀର
୧୬. ମହାଦେବ ପ୍ରଧାନ : କାଦୋପଡ଼ା
୧୭. ମାନଗୋବିନ୍ଦ ପ୍ରଧାନ : ବାଘାବୀର
୧୮. ଭୁବନେଶ୍ୱର ପ୍ରଧାନ : ବାଘାବୀର
୧୯. ବୈଷ୍ଣବ ବେହେରା : କରଲଗା
୨୦. କୁନ୍ଦନ ବେହେରା : କରଲଗା
୨୧. ଭଗବାନ ପ୍ରଧାନ : ବୁଢ଼ାପାଳି
୨୨. ବ୍ରଜମୋହନ ପ୍ରଧାନ : ଆଡ଼ଙ୍ଗ
୨୩. ଧର୍ମ୍ମଧର ଭୁକ୍ତା
୨୪. ସୌଭାଗ୍ୟଚନ୍ଦ୍ର ଦ୍ୱିବେଦି : ଖଜୁରୀଖମଣ
୨୫. ଗଦାଧର ପ୍ରଧାନ : ସଇଡ଼ା

୨୬.  ବିଶ୍ୱନାଥ ପଧାନ : ରିଆମାଳ
୨୭.  ଗଦାଧର ସାହୁ : ବାରକୋଟ
୨୮.  ଯୋଗେଶ୍ୱର ମିଶ୍ର
୨୯.  କାହ୍ନୁଚରଣ ନନ୍ଦ : ରିଆମାଳ
୩୦.  ବଳଭଦ୍ର ପଧାନ : ସଇଡ଼ା
୩୧.  ଗୋପାଳଚନ୍ଦ୍ର ପାଣିଗ୍ରାହୀ : ବାମଣ୍ଡା
୩୨.  ଚନ୍ଦ୍ରଶେଖର ପାଣିଗ୍ରାହୀ
୩୩.  ରାଜୀବଲୋଚନ ପଟେଲ
୩୪.  ଦଶରଥ ନାୟକ
୩୫.  ଅରକ୍ଷିତ ପଟେଲ
୩୬.  ଦିବାକର ବେହେରା : ସଂଘାପସି
୩୭.  ସୁଦର୍ଶନ ପ୍ରଧାନ : କାଦୋପଡ଼ା
୩୮.  ଡମ୍ବରୁ ଗଡ଼ନାୟକ

❑❑❑

## ସ୍ୱାଧୀନତା ସଂଗ୍ରାମୀମାନଙ୍କ ଫଟୋଚିତ୍ର




ବୀର ସୁରେନ୍ଦ୍ର ସାଏ



ଘେଁଷ ସହୀଦ
ସ୍ମୃତି ସ୍ତମ୍ଭ

ଫଟୋ :
ଭଗବାନ ପୂଜାହାରୀ



ଘେଁଷ ଜମିଦାର ପରିବାରର ଐତିହାସିକ ଘର ଫଟୋ : ଶାନ୍ତନୁ ବିଶ୍ୱାଳ



ଲଢକୁରା, ବ୍ରଜରାଜନଗର ଠାରେ ଭଗବାନ ରୂପେ ପୂଜିତ
ଅମର ଶହୀଦ ବାବା ମିଟ୍ଠୁ କୁଅଁର

ଫଟୋ : ରାଜ ଷ୍ଟୁଡିଓ, ଲବ୍ଥର୍ମାଇ





ପାଣିମୋରାର ଓ ଅନ୍ୟ ସ୍ୱାଧୀନତା ସଂଗ୍ରାମୀଗଣ ଏକ ସମାବେଶରେ, ବରଗଡ଼



ସ୍ୱାଧୀନତା ସଂଗ୍ରାମୀଙ୍କ ଏକ ସମାବେଶ-୧
(ବାଲିଟିକରା, ବରଗଡ଼)



ସମାବେଶ-୨
(ବାଲିଟିକରା, ବରଗଡ଼)



ଘେଁସ୍ ଜମିଦାର ମଧୁସିଂହଙ୍କ ବନ୍ଧୁକ




ମାଣିକଗଡ଼ ପର୍ବତ ପାଦଦେଶରୁ ସଂଗୃହୀତ ସୁରେନ୍ଦ୍ର ସାଏଙ୍କସୈନ୍ୟମାନଙ୍କର ପଥରର ଅସ୍ତ୍ର



ହାତୀସିଂହଙ୍କ ଅସ୍ତ୍ରଶସ୍ତ୍ର



ପାହାଡ଼ ସିର୍‌ଗିଡା ଜମିଦାର
ଜନାର୍ଦ୍ଦନ ସିଂହଙ୍କର ଅସ୍ତ୍ରଶସ୍ତ୍ର



ସୁରେନ୍ଦ୍ର ସାଏଙ୍କ
ଅସ୍ତ୍ରଶସ୍ତ୍ର

WEAPONS USED BY VIR
SURENDRA SAI




ସୁରେନ୍ଦ୍ର ସାଏଙ୍କ ସଂଗ୍ରାମ

(ସୌଜନ୍ୟ : ହୀରାଖଣ୍ଡ ବସନ୍ତ ମିଳନ ସ୍ମରଣିକା)

-ସହଦେବ ସାହୁ, I.A.S



ଗୁଣନିଧି ଗୌନ୍ତିଆ
(ସାଟକଣା)



ଶୋଭାରାମ ପରିଡ଼ା
(ଶାନ୍ତିମାଇ)



ଦଶରଥ ନାଏକ
(ସାହାଜବାହାଲ, କୁଚିଣ୍ଡା)



ଶ୍ରୀପତି ମିଶ୍ର



ଧରଣୀଧର ମିଶ୍ର



ବଳଭଦ୍ର ସୁପକାର



ମହନ୍ତ ବିହାରୀ ଦାସ



ବୈକୁଣ୍ଠନାଥ ପୂଜାରୀ



ଲୋକନାଥ ଗଡ଼ନ୍ତିଆ
(ଅଙ୍କନ:ଏସ୍. ଶାହଜାଦା)



ବୀରେନ୍ ସରକାର
(ସମ୍ବଲପୁର)



ଚନ୍ଦ୍ରଶେଖର ବେହେରା
(ସମ୍ବଲପୁର)



ଚମନଲାଲ ଶ୍ରୀବାସ
(ଝାରସୁଗୁଡା)



ଉପେନ୍ଦ୍ର ଦୀକ୍ଷିତ
(କୁଦୋପାଲି)



ଶୁର୍କଦେବ ଶ୍ରୀବାସ
(ଝାରସୁଗୁଡା)



ଚନ୍ଦ୍ର ମହାନନ୍ଦ
(ଝାରସୁଗୁଡା)



ଯଶୋବତୀ ପଟ୍ଟନାୟକ
(ବରପାଲି)



ପ୍ରଭାବତୀ ଦେବୀ
(ବରଗଡ଼)



ପାର୍ବତୀ ଗିରି
(ସମଲେଇପଦର)


ଲିଙ୍ଗରାଜ ମେହେର
(ସମ୍ବଲପୁର)


ଯୁଧିଷ୍ଠିର ମେହେର
(ସମ୍ବଲପୁର)


ନାରାୟଣ ମେହେର
(ସମ୍ବଲପୁର)


ଅନନ୍ତରାମ ବେରିହା
(ସମ୍ବଲପୁର)


ରାଧେଶ୍ୟାମ ପାଢୀ


ଗଣନାଥ ପାଣିଗ୍ରାହୀ


ବ୍ରଜମୋହନ ପଣ୍ଡା
(ଲରମ୍ଭା)


ବୋଧରାମ ଦୁବେ
(ସମ୍ବଲପୁର)


ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର
(ସମ୍ବଲପୁର)



ଚୈତନ୍ୟ ସାହୁ
(ପାଣିମୋରା)



ମୀନକେତନ ସରାଫ୍
(ପାଣିମୋରା)



ଚନ୍ଦ୍ରଭାନୁ ମରହିଆ
(ପାଣିମୋରା)



ମଦନ ଭୋଇ
(ପାଣିମୋରା)



ସୁନାଧର ସାହୁ
(ପାଣିମୋରା)



ଢଏରା ସାହୁ
(ପାଣିମୋରା)



ରାଘବ ଚରଣ ପ୍ରଧାନ
(ପାଣିମୋରା)



ଦିବ୍ୟସୁନ୍ଦର ସାହୁ
(ପାଣିମୋରା)



ଚମରୁ ପରିଡ଼ା
(ପାଣିମୋରା)



ପରମେଶ୍ୱର ପ୍ରଧାନ
(ଚୌଧୁରୀ ପ୍ରଧାନ)
ରେଢ଼ାଖୋଲ



ଘନଶ୍ୟାମ ପାଣିଗ୍ରାହୀ
(ମାନମୁର)



ମାୟାଧର ପୁରୋହିତ
(ଟେମରୀ)



ଉପେନ୍ଦ୍ର ସରାଫ୍
(ବରଗଡ଼)



ଭାଗୀରଥି ପଟ୍ଟନାୟକ
(ବରପାଲି)



ତୁଳସୀରାମ ଗିରି
(ସମଲେଇ ପଦର)



ସନ୍ତୋଷ ସ୍ୱାଇଁ
(ସମଲେଇପଦର)



କୁବେର ଗିରି
(ସମଲେଇପଦର)



ହୃଷିକେଶ ନାୟକ
(କୁଲୁଣ୍ଡା)



ଦୟାନିଧି ନାଏକ
(ପାଣିମୋରା)



ଜମ୍ବୁଧର ଦେୱାନ୍
(ପାଣିମୋରା)



ଜିତେନ୍ଦ୍ର ପ୍ରଧାନ
(ପାଣିମୋରା)



ବସନ୍ତ କୁମାର ସାହୁ
(କୁମ୍ଭାରୀ)



ନରେନ୍ଦ୍ର ସରାଫ୍
(ବରଗଡ଼)



ଗୌରୀଶଙ୍କର ଦାଶ
(ବରଗଡ଼)



ସ୍ୱାଧୀନତା ସଂଗ୍ରାମୀ ସ୍ମୃତିପୀଠ : (ପାଣିମୋରା)

*ଫଟୋ - ପ୍ରସନ୍ନ ମିଶ୍ର*


ପ୍ରଭାକର ପାଣିଗ୍ରାହୀ
(ବରଗଡ଼)


ପବିତ୍ର ମୋହନ ଦାଶ
(ସିନ୍ଦୁରବାହାଲ)


କୁଂଜବିହାରୀ ଦାଶ
(ମୁରୁମଡେଲ)


ବିଦ୍ୟାଧର ପ୍ରଧାନ
(ରୁଚିନ୍ଦା)


ମଂଗଳୁ ପ୍ରଧାନ
(ରେମଣ୍ଡା)


ବୈରାଗୀ ରଣା
(ଟେମରୀ)


ବିରଞ୍ଚି ନାରାୟଣ ପ୍ରଧାନ
(ନିମଗାଁ)


ସଚିଦାନନ୍ଦ ପ୍ରଧାନ


ଦ୍ୱାରିକାନାଥ ମହାପାତ୍ର
(ରେମଣ୍ଡା)


ଗଙ୍ଗାଦର ଦାଶ
(ତେଲେନପାଲି)


ବଂଶୀଧର ଦାଶ
(ତେଲେନପାଲି)


ପ୍ରଭାକର ମିଶ୍ର
(ରାଜପୁର)


ରତ୍ନାକର ମଟେଲ
(ଝିର୍ଲାପାଲି)


ଦେବାନନ୍ଦ ଗୁପ୍ତା
(ଫଟାପାଲି)


ଦୟାନନ୍ଦ ଶତପଥୀ
(ଦେବଗଡ଼-ସମ୍ବଲପୁର)


ବିଶ୍ୱନାଥ କର
(ପାରୁଆଭାଡ଼ି)


ଲକ୍ଷ୍ମଣ ପୂଜାରୀ
(କୁଲୁଣ୍ଡି)


ରାଜୀବଲୋଚନ ତିୱାରୀ
(ଲଉଡ଼ା)



ଆନନ୍ଦ ମେହେର
(ସମ୍ବଲପୁର)



ନୃସିଂହ ଗୁରୁ
(ସମ୍ବଲପୁର)



ଡ. ଶ୍ରଦ୍ଧାକର ସୁପକାର
(ସମ୍ବଲପୁର)



ପର୍ଶୁରାମ ସାହାଣୀ
(ସମ୍ବଲପୁର)



ଶିବନାରାୟଣ ପାଢ଼ୀ
(ସମ୍ବଲପୁର)



ବେଣୀମାଧବ ସୁପକାର
(ସମ୍ବଲପୁର)



ପ୍ରହ୍ଲାଦ ରାୟ ଲାଠ
(ସମ୍ବଲପୁର)



ଗଙ୍ଗାଧର ସରାଫ
(ବରଗଡ଼)



ବାବାଜୀ ମେହେର
(ଟୋପ)



ଶଙ୍କର ପ୍ରଧାନ
(ପାଣିମୋରା)



ଧନସିଂ ପ୍ରଧାନ
(ପାଣିମୋରା)



ଚୈତନ୍ୟ ସରାଫ
(ପାଣିମୋରା)



ଶ୍ୟାମସୁନ୍ଦର ସାହୁ
(ପାଣିମୋରା)



ଯଶୋବନ୍ତ ଭୋଇ
(ପାଣିମୋରା)



ଫୁଲଶର ପ୍ରଧାନ
(ପାଣିମୋରା)



ଦଶରଥ ନାଏକ
(ପାଣିମୋରା)



ଶୁକ୍ରସାରଣ ଭୋଇ
(ପାଣିମୋରା)



ଫକୀର ବେହେରା
(ପାଣିମୋରା)



ବୀରବର ଦାଶ
(ବରଗଡ଼)



କୃତାର୍ଥ ଆଚାର୍ଯ୍ୟ
(ବରଗଡ଼)



ଶଙ୍କର ପ୍ରସାଦ ପାଢ଼ୀ



ବିହାରୀରାମ ତନ୍ତୀ
(ଝାରସୁଗୁଡ଼ା)



ବିଶ୍ୱେଶର ଖୁଣ୍ଟିଆ
(ଜମନକିରା)



ନୀଳମଣୀ ବିଦ୍ୟାରତ୍ନ
(ବାମଣ୍ଡା)



ଦାଶରଥି ମିଶ୍ର
(ରାମଝାଲ)



ଲକ୍ଷ୍ମୀନାରାୟଣ ବାବୁ '
(ସମ୍ବଲପୁର)



ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ
(ବରପାଲି)

## ସହାୟକ ଗ୍ରନ୍ଥ : ପତ୍ରପତ୍ରିକା


ଓଡ଼ିଶା ଇତିହାସ ( ଦ୍ୱିତୀୟ ଭାଗ ) ଡ. ଯଜ୍ଞକୁମାର ସାହୁ
ନାଳନ୍ଦା, କଟକ. 1984.

2. ସମ୍ବଲପୁର ଇତିହାସ : ଶିବପ୍ରସାଦ ଦାସ
ବିଶ୍ୱଭାରତୀ ପ୍ରେସ, ସମ୍ବଲପୁର.1962.

3. ରକ୍ତତୀର୍ଥ ଇରମ : ଡ. ଜଗନ୍ନାଥ ପଟ୍ଟନାୟକ
କଟକ. 1964.

4. ସମ୍ବଲପୁରରେ ଭାଷା ଆନ୍ଦୋଳନ
ଶଙ୍କର ପ୍ରସାଦ ପାଢ଼ୀ, ଡ. ଶ୍ରଦ୍ଧାକର ସୂପକାର. ସମ୍ବଲପୁର.

5. ଶିମଳା ଯାତ୍ରା : ଶ୍ରୀପତି ମିଶ୍ର
ସମ୍ବଲପୁର.

6. ଗାନ୍ଧୀଜୀ ଓ ଓଡ଼ିଶା : ଡ. ହରେକୃଷ୍ଣ ମହତାବ

7. ଅଗ୍ନିପଥ-ଅଗ୍ନିପଥ : କୁମାର ହସନ
ଭାଗୀରଥି ସ୍ମୃତି ପରିଷଦ, ବରପାଲି 1991.

11. ବାମଣ୍ଡା ପ୍ରଜା ଆନ୍ଦୋଳନ : ଗୁଣନିଧି ଗୌନ୍ତିଆ
ସମ୍ବଲପୁର ବିଶ୍ୱବିଦ୍ୟାଳୟ. 1994.

12. ଅଗଷ୍ଟ କ୍ରାନ୍ତି : ପ୍ରଫେସର ବଳଦେବ ନାରାୟଣ
ପାଟନା. 1947.

13. ଅକ୍ଷୟ ତାରକା ଚନ୍ଦ୍ରଶେଖର : ଶଙ୍କର ପ୍ରସାଦ ପାଢ଼ୀ
ସମ୍ବଲପୁର

14. ବିପ୍ଳବୀ ସୁରେନ୍ଦ୍ର ସାଏ : ନନ୍ଦକିଶୋର ପଟେଲ
ମେନକା ପ୍ରକାଶନ, ସମ୍ବଲପୁର. 1989.

15. ସମ୍ବଲପୁରୀ ଲୋକ ସାହିତ୍ୟ : କୁମାର ହସନ୍
କେ.କେ. ମିଶ୍ର ଏଣ୍ଡ କୋ., କଟକ : ୧୯୮୨

16. ବୀର ସୁରେନ୍ଦ୍ର ସାଏ : ଡ. ଯଜ୍ଞକୁମାର ସାହୁ
ଗ୍ରନ୍ଥ ମନ୍ଦିର, କଟକ. 1994.

17. ଲୌହ ମାନବ: ଶଙ୍କର ପ୍ରସାଦ ପାଢ଼ୀ
ସମ୍ବଲପୁର. 1976.

18. ସଂକ୍ଷେପରେ ପଶ୍ଚିମ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ : ଭାଗବତ ପ୍ରସାଦ ନନ୍ଦ
ସମ୍ବଲପୁର.

19. ଶ୍ରଦ୍ଧାର୍ପଣ : ନବୀନ କିଶୋର ପରଡ଼ିଆ
ପାଣିମୋରା. 1985.
20. ଆମ ଗର୍ବ ଓ ଗୌରବ : ନବୀନ କିଶୋର ପରଡ଼ିଆ
ପାଣିମୋରା. 1997-98.
21. ସହିଦ ତୀର୍ଥ ଘେଁଷ : ଅମୃତଲାଲ ସାହୁ
ବରଗଡ଼. 1998.
22. ଉପେକ୍ଷିତ ବରପୁତ୍ର
ଓଡ଼ିଶା ସାଂସ୍କୃତିକ ସମାଜ, ସମ୍ବଲପୁର. 1992.
23. କୋଶଳାନନ୍ଦମ : ଗଙ୍ଗାଧର ମିଶ୍ର
ସମ୍ବଲପୁର ବିଦ୍ୟାଳୟ. 2000.
24. ଇତିହାସର ପରିହାସ : ଡ. ଶ୍ରଦ୍ଧାକର ସୂପକାର
ସମ୍ବଲପୁର. 1968.
25. ଧୂସର ଧୂଳିରୁ ଚେନାଏ : ସୁରେନ୍ଦ୍ରନାଥ ମିଶ୍ର
ସମ୍ବଲପୁର. 1968.
26. ବ୍ରଜରାଜନଗର ନିର୍ବାଚନ ମଣ୍ଡଳୀ ଜନସାଧାରଣଙ୍କ
ଜୀବନ ସଂଗ୍ରାମର ଇତିହାସ : କୁମାର ହସନ, ସି.ପି.ଆଇ. ସମ୍ବଲପୁର ।
27. ମଧ୍ୟମ ପୁରୁଷ : ଡ. ଶ୍ରଦ୍ଧାକର ସୂପକାର
କଟକ ଲେଖକ ସହଯୋଗ ସମିତି. 1982.
28. ହଜିଲା ଦିନ : ମଙ୍ଗଳୁଚରଣ ବିଶ୍ୱାଳ
ସାରସ୍ୱତ . ସମ୍ବଲପୁର. 2000.
29. ସମ୍ବାଦପତ୍ରରୁ ଓଡ଼ିଶାର କଥା : ସୁଧାକର ପଟ୍ଟନାୟକ
କଟକ. 1972.
30. ମୁକ୍ତିଶିଖା : ସ୍ମରଣିକା
ସମ୍ବଲପୁର. 1973.
31. କଂଗ୍ରେସ ସ୍ମରଣିକା, ଭୁବନେଶ୍ୱର. 1988.
32. ଦୟାନନ୍ଦ ଶତପଥୀ ସ୍ମରଣିକା, ସମ୍ବଲପୁର.1983.
33. ବସନ୍ତମିଳନ ସ୍ମରଣିକା
ଦୈନିକ ହୀରାଖଣ୍ଡ, ସମ୍ବଲପୁର. 1981.
34. ମୁକ୍ତି ସଂଗ୍ରାମୀ : ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସମ୍ମିଳନୀ
ସମ୍ବଲପୁର. 1974.

ବରପୁତ୍ର 1992, 93, 95, 97, 98, 99, 2000.
ଗାନ୍ଧି ସ୍ମୃତି ପାଠାଗାର, ବରଗଡ଼
36. ସପ୍ତର୍ଷି : ପଶ୍ଚିମ ଓଡ଼ିଶା ବିଶେଷାଙ୍କ
ସମ୍ବଲପୁର ବିଶ୍ୱବିଦ୍ୟାଳୟ. 1978.
37. ଉତ୍କଳ ପ୍ରସଙ୍ଗ : ସୁରେନ୍ଦ୍ର ସାଏ ଶତବାର୍ଷିକୀ ବିଶେଷାଙ୍କ
ଭୁବନେଶ୍ୱର ।
38. ବୈଜୟନ୍ତୀ, ଚନ୍ଦ୍ରଶେଖର ବେହେରା ବିଶେଷାଙ୍କ
ସମ୍ବଲପୁର. 1988-89.
39. ସଦ୍‌ଭାବନା ମାସିକ : ଉଦ୍‌ଘାଟନ ସଂଖ୍ୟା
ଭୁବନେଶ୍ୱର. 1998.
40. ଉତ୍କଳ ଦୀପିକା. 1989.
41. ପ୍ରଜାତନ୍ତ୍ର ସାପ୍ତାହିକୀ, କଟକ
42. ଦୈନିକ ସମ୍ବାଦ : ନବବର୍ଷ ସଂଖ୍ୟା
ଭୁବନେଶ୍ୱର. 2000.
43. ଦୈନିକ ସମାଜ, କଟକ. 5.2.1930.
44. ଦୈନିକ ପ୍ରଜାତନ୍ତ୍ର : ଅଗଷ୍ଟ 15, 1999 ବିଶେଷାଙ୍କ
45. ସାଧନା 23.9.1994. ସମ୍ବଲପୁର
46. ଉତ୍କଳ ସେବକ : ୧୯୩୦
47. Sambalpur District Gazetteers : N. Senapati, 1971.
48. Glimpses of Orissa. Ed. Binod S. Das. 1986.
49. A Study of History of Orissa. A. C. Pradhan. 1992.
50. New Aspects of History of Orissa. Vol. 5.
Sambalpur University. 1986.
50. Political History of Orissa. P.K.Mishra. 1979.
51. History of Orissa. Dr. N. K. Sahu.
52. Accounts of Kittoe.
53. Settlement Reports. Dewar.
54. Illustrious sons of Sambalpur. B. K. Kar 1996.
55. History of the Freedom Movement in Bihar. Vol. III.
Dr. K. K. Dutta. Patna. 1956.
56. Santal Parganas in the Revolution of 1942.
Motilal Kezriwal. Patna.

57. Report on the Land tenures and the Revenue system of Orissa and the Revenue system of Orissa and Chhatisgarh States. Vol. 1.
R. K. Ramadhyani.
58. Sambalpur Settlement Report. 1926.
59. Orissa Judicial Report. No. 196. Cockburn to Govt. of Bengal.
60. Orissa Revenue Records. Sambalpur Papers. No. 3.
61. Orissa State Archives. Sambalpur Records, Who is Who Compilation No. 5.
62. Nagpur Residency Records. Vol. 1.
63. Freedom Movement in India - Contribution of Western Orissa. Ed. Dr. J. P. Sahu Menaka Prakashani. Sambalpur. 1999.
64. Souvenir. P. G. Dept. of History. Sambalpur University. 1995.
65. Contribution of Pt. Laxminarayan Mishra Smt. Sanghamitra Mishra. S.U. 1980 (Ms).
66. Freedom Movement of Sambalpur Dr. C. R. Mishra.
67. The Greater Common Good. Arundhati Roy 1999.
68. National Seminar on Surendra Sai. Souvenir Sambalpur University. 1985
69. Note on the Hirakud Project (Supplementary Copy). Rajasevaskta M. G. Rangaiya.
70. Note on the Hirakud Project. IBD. M.G. Rangaiya
71. Mahanadi Valley Development Hirakud Dam Project. The latest proposal made in the Project Report dated June, 1947 issued by the Chairman Central Waterways, Irrigation and Navi gation Commission.

❑❑❑



## କୁମାର ହସନ୍

**ଜନ୍ମ : ଅକ୍ଟୋବର ୨୦, ୧୯୬୦**

ଓଡ଼ିଆର ପ୍ରଖର ଯୁବ କବି, କଥାକାର, ପ୍ରାବନ୍ଧିକ, ଆଲୋଚକ, ଲୋକସାହିତ୍ୟିକ, ଗବେଷକ, ଅନୁବାଦକ ଓ ସାମ୍ବାଦିକ । ଏ ଯାଏଁ ଓଡ଼ିଆ ଓ ହିନ୍ଦୀରେ ୩୫ ଖଣ୍ଡରୁ ଉର୍ଦ୍ଧ୍ୱ ପୁସ୍ତକ ପ୍ରକାଶିତ । ଲେଖା ପ୍ରାୟ ସମସ୍ତ ଭାରତୀୟ ଭାଷା ସମେତ ଇଂରାଜୀ, ଫ୍ରେଞ୍ଚ, ଜର୍ମାନ୍, ରୁଷୀୟ ଆଦିରେ ଅନୁଦିତ ।

ଉଲ୍ଲେଖନୀୟ ସାହିତ୍ୟ କୃତି ପାଇଁ ବିଶ୍ୱ ଶାନ୍ତି ପରିଷଦ, ଫିନ୍‌ଲେଣ୍ଡ ତଥା ବହୁ ଜାତୀୟ ଓ ପ୍ରାଦେଶିକ ପୁରସ୍କାର ପ୍ରାପ୍ତ ଏବଂ ରାଜ୍ୟ ଓ ରାଜ୍ୟ ବାହାରେ ସମ୍ମାନିତ । ବହୁ ରାଜ୍ୟସ୍ତରୀୟ ପତ୍ରପତ୍ରିକାର ସମ୍ପାଦନା ଓ ରାଜ୍ୟ ବାହାରେ ଅତିଥି ସମ୍ପାଦନା । କେନ୍ଦ୍ର ସାହିତ୍ୟ ଏକାଡେମୀ, ନେଶନାଲ୍ ବୁକ୍ ଟ୍ରଷ୍ଟ, ଜାତୀୟ ଅନୁବାଦ ବ୍ୟୁରୋର ଜାତୀୟ ଅନୁବାଦକ । ସଂପ୍ରତି ଦୈନିକ. 'ସମାଜ' ସମ୍ବଲପୁରର ସମ୍ପାଦନା ବିଭାଗରେ କାର୍ଯ୍ୟରତ ।